# ମହାପୁରୁଷ ପରିଚୟ ଓ ବାଣୀ


ସଂକଳକ

ନମାଇଁ ଚରଣ ଦାସ



ପ୍ରକାଶକ

ଶ୍ରୀ ଧର୍ମାନନ୍ଦ ଦାସ

ରେଖା ପବ୍ଲିଶିଂ ହାଉସ୍

କଟକ – ୨


ମୂଲ୍ୟ--୪-୪୦

ବନ୍ଧାଇ—୧-୦୦ ଅଧିକ

Digitized by srujan ka@gmail.com

# ନିବେଦନ

ମୋର ପୂଜ୍ୟ ପିତାମହ ସ୍ୱର୍ଗତ ନିମାଇଁ ଚରଣ ଦାସଙ୍କ ସାଧକ ଜୀବନର ଶେଷକୃତି 'ମହାପୁରୁଷଙ୍କ ପରିଚୟ ଓ ବାଣୀ' ଆଜି ତାଙ୍କର ଏକାଦଶାବ୍ଦ ଅବସରରେ ଦେଶବାସୀଙ୍କ ହସ୍ତରେ ଅର୍ପଣ କରି ନିଜକୁ ଧନ୍ୟ ମନେ କରୁଅଛୁ । ବିଶୁକର୍ମା ଦାସ ଏ ଗ୍ରନ୍ଥ-କୋଣାର୍କର ନିର୍ମାଣ କାଳରେ ଦିବ୍ୟଧାମ ପ୍ରାପ୍ତ ହେବାରୁ ଆଜି 'ଧରମା'ର 'ମୁଣ୍ଡି ମାରିବା' ପାଳି । ତାଙ୍କର ଗଢ଼ା ଦେଉଳର ଦଧିନଉତି ଉପରେ ବସିଛି; ସେ କଥା ବିଚାର କରିବାର ଦାୟିତ୍ୱ ଦେଶବାସୀଙ୍କର ।

ସୀମିତ ସମୟ ମଧ୍ୟରେ ଏ ଗ୍ରନ୍ଥ ପ୍ରକାଶ କରିବାକୁ ସକ୍ଷମ ହୋଇଥିବାରୁ ମୁଁ ପ୍ରଜାତନ୍ତ୍ର ଛାପାଖାନାର ପରିଚାଳକ ତଥା କର୍ମଚାରୀବୃନ୍ଦଙ୍କୁ କୃତଜ୍ଞତା ଜ୍ଞାପନ କରୁଅଛୁ ।

ପରିଶେଷରେ ଗ୍ରନ୍ଥ ପ୍ରକାଶନରେ ମୋତେ ଭଗ୍ନବ୍ରତ ହେବାକୁ ହୋଇଥିବାରୁ ତଜ୍ଜନିତ ତ୍ରୁଟି-ବିଚ୍ୟୁତି ନିମନ୍ତେ ସୁଧୀ ପାଠକସମାଜ ନିକଟରେ କ୍ଷମା ପ୍ରାର୍ଥନା କରୁଅଛୁ ।

ବିନୀତ

| | |
|---|---|
| ବାର୍ମିସାହି | ଧର୍ମାନନ୍ଦ ଦାସ |
| କଟକ -୯ | ତା ୧୧-୧୨-୭୦ |

Digitized by srujan ka@gmail.com

# ସୂଚୀପତ୍ର



Digitized by srujan ka@gmail.com

Digitized by srujan ka@gmail.com

Digitized by srujan ka@gmail.com

।



---

Digitized by srujan ka@gmail.com

# ଭାରତ ବର୍ଣ୍ଣନା

( ମହର୍ଷି ପରାଶରଙ୍କ ଦୃଷ୍ଟିରେ ଭାରତ )

ମୈତ୍ରେୟଙ୍କ ମୁଖ ଶୁଣି ପରାଶର ଋଷି ।
କହନ୍ତି ଅତି ମଧୁରେ ମନ୍ଦେ ମନ୍ଦେ ହସି ।।
ଭାରତବର୍ଷର କଥା ବଡ଼ଇ ବିଚିତ୍ର ।
ଏକମନ ହୋଇ ବତ୍ସ ଶୁଣ ଯେ ଚରିତ୍ର ।।
ହିମାଳୟର ଦକ୍ଷିଣେ ସମୁଦ୍ର ଉତ୍ତରେ ।
ଶୋଭଇ ଭାରତବର୍ଷ ଅତି ମନୋହରେ ।।
ଏଠାରେ ଭରତବଂଶୀ ସର୍ବ ପ୍ରଜାକୁଳ ।
ରହିଛନ୍ତି ମହାନନ୍ଦେ ହୋଇ ଏକମେଳ ।।
ଏହି ଯେ ଭାରତ ଭୂମି ମାନସ ରଞ୍ଜନ ।
ନବ ହଜାର ଯୋଜନ ଅଟେ ଆୟତନ ।।
ସୁଖମୟ ନିକେତନ ରମ୍ୟସ୍ଥଳ ଏହି ।
ଅଶେଷ ରତନ ସଦା ପରିପୂର୍ଣ୍ଣ ଯହିଁ ।।
ସୁନାର ରାଇଜ ସବୁ ମହାଐଶ୍ୱର୍ଯ୍ୟେ ପୂର୍ଣ୍ଣ ।
ଏ ଭାରତ ବସୁନ୍ଧରା ଧନ୍ୟ ଧନ୍ୟ ଧନ୍ୟ ।।
ମହାସୁଖ୍ୟାତ ସର୍ବଦା ଭାରତ ଜନନୀ ।
ବିରାଜେ ପରମ ସୁଖେ ସ୍ନେହ କନ୍ୟା ଯେହ୍ନି ।।
ମୋକ୍ଷକାମୀ ସ୍ୱର୍ଗକାମୀ ନରମାନଙ୍କର ।
ଏ ଭାରତ କର୍ମଭୂମି ଅଟଇ ନିକର ।।
ଏ ସ୍ଥାନରୁ ସ୍ୱର୍ଗପୁରୀ ମହାମୁକ୍ତି ଧନ ।
କେହି ବା ନରକେ ହୋଇ ଥାଆନ୍ତି ପତନ ।।
ଏ କାରଣୁ ଏହି ସ୍ଥାନେ ପୁଣ୍ୟ ଆଉ ପାପ ।
ଯାଗ ଆଦି କାର୍ଯ୍ୟବିଧି ସକଳ ହିଁ ତପ ।।

Digitized by srujan ka@gmail.com

ସତ୍ୟ ତ୍ରେତୟା ଦ୍ୱାପର ପୁଣ କଳିଯୁଗ ।
ଭାରତବାସୀ ସକଳେ କରୁଛନ୍ତି ଭୋଗ ॥
ଯେଣୁ ଭାରତରେ ଅଛୁ ଧର୍ମ ହ୍ରାସ ବୃଦ୍ଧି ।
ଅନ୍ୟ କାହିଁ ନାହିଁ ଏହୁ ଦେଶପର ସିଦ୍ଧି ॥
ଭାରତେ ମୁନିଏ ତପ କରନ୍ତି ସତତ ।
ହୋମ କର୍ମରୁ ଯାଜ୍ଞିକେ ନ ହୁଅନ୍ତି କ୍ଷାନ୍ତ ॥
ସମାଦରେ ଏ ଭାରତବାସୀ ପ୍ରାଣୀଗଣେ ।
କରନ୍ତି ଦାନ ଦକ୍ଷିଣା ମଙ୍ଗଳ କାରଣେ ॥
ପରକାଳପାଇଁ ପୁଣ୍ୟ କରନ୍ତି ସଞ୍ଚୟ ।
କେବଳ ଏହୁ ଭାରତବାସୀ ଲୋକଚୟ ॥
ଯଜ୍ଞେଶ୍ୱର ହରିଙ୍କି ଯେ ଯଜ୍ଞ ଅନୁଷ୍ଠାନେ ।
ପୂଜା କରନ୍ତି ସର୍ବଦା ଜମ୍ବୁଦ୍ୱୀପ ଜନେ ॥
ଅନ୍ୟାନ୍ୟ ଦ୍ୱୀପରେ ଚନ୍ଦ୍ର ସୂର୍ଯ୍ୟ ଆଦି ଦେବେ ।
ନରତେ ପୂଜା କରନ୍ତି ସେ ଦେଶ ମାନବେ ।
ଜମ୍ବୁଦ୍ୱୀପ ମଧ୍ୟେ ଶ୍ରେଷ୍ଠସ୍ଥାନ ଏ ଭାରତ ।
ନବଖଣ୍ଡ ମେଦିନୀରେ ସାର ବୋଲି ଖ୍ୟାତ ॥
ଏ ଭାରତ କର୍ମଭୂମି ପ୍ରମାଣ ଅଟଇ ।
ତେଣୁକରି ସବୁଠୁଁ ପ୍ରଧାନ ଯେ ଏହୁ ॥
ଆଉର ଯେତେକ ସ୍ଥାନମାନ ରହିଅଛୁ ।
ସେ ସ୍ଥାନମାନ ଯେ ଭୋଗଭୂମି ବୋଲାଇଛୁ ॥
ହେ ମୈତ୍ରେୟ ପୂର୍ବକୃତ ପୁଣ୍ୟବଳେ ନରେ ।
ସହସ୍ର ସହସ୍ର ଜନ୍ମ ଲଭିବା ଉତ୍ତାରେ ॥
ଏ ଭାରତବର୍ଷେ ଆସି ଜନମ ହୁଅନ୍ତି ।
ଦେବତାଏ ଗୀତଗାନ ଏମନ୍ତେ କରନ୍ତି ॥

Digitized by srujan ka@gmail.com

ବୋଲନ୍ତି ଆମ୍ଭମାନଙ୍କ ଅପେକ୍ଷା ସେ ଧନ୍ୟ ।
ଭାରତରେ ଯେଉଁମାନେ ପୁଣ୍ୟବନ୍ତ ଜନ ॥
ସ୍ୱର୍ଗପ୍ରଦ ମୋକ୍ଷପ୍ରଦ ଯେ ଭାରତଭୂମି ।
ତହିଁ ଭାଗ୍ୟବନ୍ତ ପ୍ରାଣୀ ଥାଆନ୍ତି ଜନମି ॥
ଦେବଗଣେ ଏହା ଭାବୁଥାନ୍ତି ଅନୁକ୍ଷଣ ।
ଭାରତବର୍ଷ ନିବାସୀ ଜନମାନେ ଧନ୍ୟ ॥
ଦେବଗଣଠାରୁ ଶ୍ରେଷ୍ଠ ଅଟନ୍ତି ସେ ଜନେ ।
ଧନ୍ୟ ଧନ୍ୟ ଭାରତ ଭୂମିର ଲୋକମାନେ ॥
ଭାରତେ ନରନାରୀ ଏ ନିଷ୍କାମନା ଚିତ୍ତେ ।
ମଙ୍ଗଳ କର୍ମରେ ନିତ୍ୟେ ମାତି ଅବିରତେ ॥
ଅନନ୍ତ ବିଷ୍ଣୁଙ୍କ ଅଙ୍ଗେ ଲୀନ ହୋଇ ଯାଇ ।
ଭାରତ ସମାନ ସ୍ଥାନ କଦାଚିତ ନାହିଁ ॥
ଏଣୁ ଭାରତବର୍ଷରେ ସର୍ବ ଦେବଗଣ ।
ଜନ୍ମ ଲଭିବାକୁ ଭାବୁଥାନ୍ତି ଅନୁକ୍ଷଣ ॥
ଭାରତେ ଜନମ ଲଭ କରେ ଯେଉଁ ପ୍ରାଣୀ ।
ଧନ୍ୟ ଧନ୍ୟ ଶତଧନ୍ୟ ନିଜ ମନେ ମଣି ॥
ବିଷ୍ଣୁଙ୍କ ପାଦକୁ କରୁଥାନ୍ତି ଆରାଧନା ।
ତାହାଙ୍କର ଭାଗ୍ୟକୁ ବା କି ଦେବ ତୁଳନା ॥
ଏ କର୍ମଭୂମିରେ ପାପଶୂନ୍ୟ ବ୍ୟକ୍ତିମାନେ ।
ଜନ୍ମ ଲଭିଣ ନିଷ୍କାମ କର୍ମ ଅନୁଷ୍ଠାନେ ॥
ସେହି କର୍ମ ବିଷ୍ଣୁଠାରେ ଅର୍ପଣ କରନ୍ତି ।
ବିଷ୍ଣୁପଦେ ଐକ୍ୟ ହୋଇ ନିର୍ବାଣେ ଯାଆନ୍ତି ॥
ବିଚାରୁଥାନ୍ତି ଏପରି ମନେ ମନେ ଦେବେ ।
ସ୍ୱର୍ଗପଦ କର୍ମ ଊଣା ହୋଇଗଲେ କେବେ ॥

Digitized by srujan ka@gmail.com

ନ ଜାଣୁ ଜନମ ହେବୁ ପୁନରପି କାହିଁ ।
ଭାରତଭୂମିରେ ସତେ ଅୟୁ ହେବୁଁ ଯାଇ ॥
ଧନ୍ୟ ଧନ୍ୟ ସେ ଭାରତନବାସୀ ମାନବେ ।
ନ ହୋଇ ଇନ୍ଦ୍ରିୟାଧୀନ ଯେଉଁମାନେ ଭବେ ॥
ଜନମ ଲଭିଅଛନ୍ତି ଭାରତବର୍ଷରେ ।
ଜ୍ଞାନକର୍ମ ଲଭି ଇନ୍ଦ୍ରିୟଙ୍କ ସାହାଯ୍ୟରେ ।
ସେ ଇନ୍ଦ୍ରିୟମାର୍ଗେ ଜ୍ଞାନକର୍ମ ସିଦ୍ଧି କରି ।
ସଂସାରକ୍ଷେତ୍ରେ ଭ୍ରମନ୍ତି ସୁଖେ ନରନାରୀ ॥
ଧନ୍ୟ ଧନ୍ୟ ଏ ଭାରତ ମହାପୁଣ୍ୟମୟ ।
ସକଳ ଦ୍ୱୀପରୁଁ ଶ୍ରେଷ୍ଠ ଏ କଥା ନିଶ୍ଚୟ ॥
ଧନ୍ୟ ଭାରତ ଜନନୀ ଧନ୍ୟ ତୋ ମହିମା ।
ତୋ ସର୍ବ ସନ୍ତାନେ ପୁଣ୍ୟବନ୍ତ ମହାତ୍ମା ॥
ସକଳେ କହନ୍ତି ତୋତେ ସୁନାର ଭାରତ ।
ତୁହି କାଳେ କାଳେ ଅଟୁ ରତ୍ନଗର୍ଭା ମାତ ॥
ଧନ୍ୟ ମା ପରମମୟୀ ଭାରତଜନନୀ ।
ତୋର ପାଦତଳେ ମାଗୋ ଅଶେଷ ଦୟ୍ନିଶୀ ॥
ଏତେ ବୋଲି ପରାଶର ଭାରତେ ନମିଲେ ।
ମୈତ୍ରେୟ ଋଷିଙ୍କି ସ୍ୱଧର୍ମତେ ବୁଝାଇଲେ ॥
ଶୁଣି ମଇତ୍ରେୟ ହେଲେ ଭାବେ ଗଦଗଦ ।
ବନ୍ଦିଲେ ଶ୍ରୀଗୁରୁ ପରାଶରଙ୍କର ପାଦ ॥

ଇତି ଶ୍ରୀ ମହାବିଷ୍ଣୁ ପୁରାଣେ ଦ୍ୱିତୀୟଖଣ୍ଡେ
ଭାରତବର୍ଷ ବର୍ଣ୍ଣନଂ ନାମ
ତୃତୀୟୋଽଧ୍ୟାୟଃ ।

———

Digitized by srujan ka@gmail.com

# ଭାରତ

ଶ୍ରୀ ବ୍ରଜବନ୍ଧୁ ଦାସ, ଆଡ଼ଭୋକେଟ, ଏମ୍, ଏ, ବି,ଏଲ,

ପୃଥିବୀ ପୃଷ୍ଠରେ ଯେତେ ଦେଶ ଅଛି, ତନ୍ମଧ୍ୟରେ ଭାରତ ସର୍ବଶ୍ରେଷ୍ଠ । ଭଗବାନ ଏହାକୁ ଦେବସ୍ଥଳୀରୂପେ ସୃଷ୍ଟି କରିଅଛନ୍ତି । ଅଭ୍ରଭେଦୀ ଉତ୍ତୁଙ୍ଗ ହିମାଳୟ ପର୍ବତଶ୍ରେଣୀ ଭାରତର ଉତ୍ତର ଦିଗର ପ୍ରାଚୀର ପରି ଦଣ୍ଡାୟମାନ । ଏହାଭଳି ପ୍ରାକୃତିକ ସମ୍ପଦ ଅନ୍ୟ କୌଣସି ଦେଶରେ ନାହିଁ । ଭାରତରେ ସର୍ବ ପ୍ରଥମେ ଆର୍ଯ୍ୟ-ବସତି ସ୍ଥାପିତ ହୋଇ ସେହିଠାରେ ପ୍ରଥମେ ବେଦ ବେଦାନ୍ତ ଉପନିଷଦ ରଚିତ ହୋଇଥିଲା । ତାହା ସମସ୍ତ ଜଗତରେ ଜ୍ଞାନସାଗର ପ୍ରବର୍ଦ୍ଧମାନ କରାଇ ନେଲା । ବ୍ୟାସ, ବାଲ୍ମୀକି, ଅତ୍ରି, ଅଙ୍ଗିରା, ଭୃଗୁ ଆଦି ଋଷିମଣ୍ଡଳ ଚିନ୍ତା, ତପସ୍ୟା ଓ ସାଧନା ଫଳରେ ଯେଉଁ ଆଧ୍ୟାତ୍ମିକ ତତ୍ତ୍ୱମାନ ବଖାଣି ଯାଇଛନ୍ତି, ତାହାଦ୍ୱାରା ପୃଥିବୀପୃଷ୍ଠରୁ ଅଜ୍ଞାନ ଅନ୍ଧାର ଦୂରୀଭୂତ ହୋଇଯାଇଅଛି । ଏହି ଭାରତରେ ଈଶ୍ୱରଙ୍କ ସୃଷ୍ଟିସମ୍ବନ୍ଧୀୟ ତଥ୍ୟମାନ ପ୍ରଥମେ ପ୍ରକାଶିତ ହୋଇଅଛି । ଜୀବାତ୍ମା କ'ଣ, ପରମାତ୍ମାଙ୍କ ସଙ୍ଗେ ଏହାର କି ସମ୍ପର୍କ, ଏ ସୃଷ୍ଟିର ଉତ୍ପତ୍ତି କେଉଁଠୁ, କାହିଁକି ହେଲା ଓ ଏହାର ଲକ୍ଷ୍ୟ ଓ ଉଦ୍ଦେଶ୍ୟ କ'ଣ ଏ ସମ୍ବନ୍ଧରେ ମୁନି ଋଷିମାନେ ଆଲୋକପାତ କରି ମାନବ-ସମାଜକୁ ସତ୍ୟ, ନ୍ୟାୟ ଓ ଧର୍ମପଥରେ ଚାଳିତ ହେବାର ପଥ ପ୍ରଦର୍ଶନ କରିଯାଇଅଛନ୍ତି ।

Digitized by srujan ka@gmail.com

ଆଧ୍ୟାତ୍ମିକଭାବରେ ଅନୁପ୍ରାଣିତ ହୋଇ ଜଣେ ଦେଶପ୍ରେମୀ ମହାପଣ୍ଡିତ ଲେଖିଛନ୍ତି, "ଏହି ପ୍ରାଚୀନ ଭାରତଭୂମି ଯାହାର ଆଧ୍ୟାତ୍ମିକ ପ୍ରବାହ ଜଡ଼ ରାଜ୍ୟରେ ସାଗର ସଦୃଶ ଯେଉଁଠାରେ ହିମାଚଳର ଶିଖରରାଜି ସ୍ୱର୍ଗରାଜ୍ୟର ରହସ୍ୟଆଡ଼କୁ ଦୃଷ୍ଟିପାତ କରୁଅଛି, ଏହି ସେ ଭାରତ ଯେଉଁଠାରେ ସର୍ବପ୍ରଥମ ଅନ୍ତର୍ଜଗତର ରହସ୍ୟ ଉଦ୍‌ଘାଟନ କରି ମାନବ ନିଜ ସ୍ୱରୂପ ଅନୁସନ୍ଧାନରେ ଅଗ୍ରସର ହୋଇଥିଲା । ଏହିଠାରେ ସର୍ବପ୍ରଥମେ ଜୀବାତ୍ମାର ଅମରତ୍ୱ ଓ ପରମାତ୍ମା ସଙ୍ଗେ ତା'ର ସମ୍ପର୍କ ବିଷୟ ଉଦ୍ଭାବିତ ହୋଇଥିଲା । ଏହିଠାରେ ଧର୍ମ ଓ ଦର୍ଶନର ସମନ୍ୱୟ ହୋଇ ସମସ୍ତ ଜଗତକୁ ଅଭିଭୂତ କରିଥିଲା । ଏହିଠାରେ ତ୍ୟାଗ ଧର୍ମର ଉତ୍ପତ୍ତି । ପୁଣି ଏହି ସେହି ଭାରତ ଯାହା ଶତ ଶତ ଶତାବ୍ଦୀର ଅତ୍ୟାଚାର, ବୈଦେଶିକ ଆକ୍ରମଣ ରାଜମାନଙ୍କ ବିପର୍ଯ୍ୟୟ ସହି ମଧ୍ୟ ଅକ୍ଷୁଣ୍ଣ ରହିଅଛି । ଏହି ଧୀରତଭୂମିର ଆତ୍ମା ଅନାଦି ଓ ଅନନ୍ତ ସ୍ୱରୂପ । ଦିନ ପୁଣି ଆସୁଛି, ଏହି ଭାରତ ତା'ର ପୂର୍ବ ଗୌରବ ସ୍ଥାନ ଅଧିକାର କରି ସମଗ୍ର ବିଶ୍ୱକୁ ତା'ର ସଭ୍ୟତା, ଦର୍ଶନ, ଆଧ୍ୟାତ୍ମିକତାଦ୍ୱାରା ପ୍ରଭାବିତ କରି ମାନବସମାଜ ମଧ୍ୟରେ ଐକ୍ୟ, ଶାନ୍ତି ଓ ସୁଖ ଆଣିବ । ଜର୍ମାନଦେଶୀୟ ମହାପଣ୍ଡିତ ମୋକ୍ଷମୂଲରଙ୍କର ପାଇଁ ଭାରତ ଥିଲା ଭୂ-ସ୍ୱର୍ଗ । ଗଙ୍ଗାନଦୀର ଦର୍ଶନ ଲାଭ କରି ନ ଥିଲେ ମଧ୍ୟ ସେ ଏହାର ପ୍ରାଚୀନ ସୌନ୍ଦର୍ଯ୍ୟର ଜଣେ ବଶିଷ୍ଟ ପୂଜାରୀ ଥିଲେ । ୧୮୮୩ ମସିହାରେ "ଭାରତ, ଏହା ଆମକୁ କ'ଣ ଶିକ୍ଷା ଦେଇପାରେ" ଶୀର୍ଷକ ଲେଖାରେ ମୋକ୍ଷମୂଲର କହିଥିଲେ; ଯେବେ ସମସ୍ତ ପ୍ରକୃତିଦତ୍ତ ଧନ, କ୍ଷମତା ଓ ସୌନ୍ଦର୍ଯ୍ୟର ଆଧାରଭୂମି ଏପରି କୌଣସି ଦେଶକୁ ପୃଥିବୀରେ ଖୋଜିବାର ଦାୟିତ୍ୱ ମୋତେ ଦିଆଯାଏ, ତାହେଲେ କେତେ-

Digitized by srujan ka@gmail.com

କାଂଶରେ ଏହି ସର୍ତ୍ତ ପୂରଣ କରିଥିବା ଭୂ-ସ୍ୱର୍ଗ ଭାରତବର୍ଷକୁ ହିଁ ମୁଁ ଦେଖାଇ ଦେବି । ଯଦି ମୋତେ ପଚରାଯାଏ କେଉଁ ଆକାଶର ତଳେ ମନୁଷ୍ୟର ମନ ତା'ର ଶକ୍ତିର ସର୍ବଶ୍ରେଷ୍ଠ ବିକାଶ ଘଟାଇ ପାରିଛି, ପ୍ରଧାନତମ ସମସ୍ୟାମାନଙ୍କର ସମ୍ପର୍କରେ ଗଭୀରଭାବରେ ଚିନ୍ତା କରିପାରିଛି ଏବଂ ଦାର୍ଶନିକ ପ୍ଲାଟୋ ଓ କ୍ୟାଣ୍ଟଙ୍କୁ ଯେଉଁମାନେ ଅଧ୍ୟୟନ କରନ୍ତି, ସେମାନଙ୍କ ଦୃଷ୍ଟିକୁ ଆକର୍ଷଣ କଲାଭଳି କେତେକ ସମାଧାନ କରିପାରିଛି—ତାହେଲେ ମୁଁ କେବଳ ଭାରତ-ବର୍ଷକୁ ହିଁ ଦେଖାଇ ଦେବି ଏବଂ ମୁଁ ଯଦି ନିଜକୁ ପଚାରେ ଆମ୍ଭେ-ମାନେ, ଯେଉଁମାନେ କି ଗ୍ରୀକ୍, ରୋମାନ୍ ଓ ଇହୁଦୀ ଚିନ୍ତାଧାରାଦ୍ୱାରା ବିଶେଷଭାବରେ ପ୍ରଭାବିତ ହୋଇଛୁଁ କେଉଁ ଦେଶର ସାହିତ୍ୟରୁ ଆମ୍ଭେମାନେ ଶକ୍ତି ଆହରଣ କରିପାରିବୁଁ ଯଦ୍ଦ୍ୱାରା ଆମ୍ଭମାନଙ୍କର ହୃଦୟ ଅଧିକ ସ୍ୱଚ୍ଛ ଓ ବିକଶିତ, ଅଧିକ ଉଦାର, ବିଶ୍ୱପ୍ରେମୀ ଓ ଅଧିକ ମାନବିକ ହେବ, ଏପରି ଏକ ଜୀବନଯାପନ କରିବୁଁ ଯାହାକି କେବଳ ବର୍ତ୍ତମାନ-ପାଇଁ ନୁହେଁ, ଚିରନ୍ତନ ସତ୍ୟ ଭିତରେ ନିୟୋଜିତ ହୋଇପାରିବ, ତାହେଲେ, ମୁଁ କହିବି ତାହା ହେଉଛି ଭାରତବର୍ଷ ।

ଉତ୍କଳକବି ବ୍ରହ୍ମର୍ଷି ମଧୁସୂଦନ ରାଓ ତାଙ୍କ "ଭାରତ ଭାବନା" କାବ୍ୟରେ ଭାରତକୁ ଲକ୍ଷ୍ୟକରି ଯେଉଁ ବର୍ଣ୍ଣନା କରିଅଛନ୍ତି ତହିଁରୁ ଚତୁର୍ଥ ଶ୍ଳୋକରୁ ପ୍ରାଚୀନ ଭାରତର ମାହାତ୍ମ୍ୟ ପ୍ରକଟିତ ହୁଏ, ତାହା ଏହି :—

ନାହିଁ କି ଏହିବନ ଯେଉଁ ପବିତ୍ର ଆଶ୍ରମେ
ସମାସୀନ ବ୍ରହ୍ମବାଦୀ, ଆର୍ଯ୍ୟ ଋଷିଗଣ ।
ବଶିଷ୍ଠ, ବଶିଷ୍ଠ, ଅତ୍ରି ଅଚଳ ସଞ୍ଜମେ
ଅଗ୍ନିସଂକାଶ, ଅଙ୍ଗିରା, ବ୍ୟାସ ତପୋଧନ ।

Digitized by srujan ka@gmail.com

ରାଜର୍ଷି ଜନକ ନିତ୍ୟ ଶାନ୍ତିପରାୟଣ
ଧାଇଁଲେ ସୃଷ୍ଟିର ତତ୍ତ୍ୱ ମଜ୍ଜି ତପସ୍ୟାରେ ।
ଆନନ୍ଦେ ବିସ୍ମୟେ ଆହା କଲେ ଦରଶନ
ବ୍ୟାପି ଅକୂଳ ଅନନ୍ତ ଘୋର ଅନ୍ଧକାରେ ।
ବିରାଜିତ ବ୍ରହ୍ମଜ୍ୟୋତି ନିସ୍ତରଙ୍ଗକାଳ ପାରାବାରେ ।

ଭାରତୀୟ ମୁନି-ଋଷିମାନଙ୍କର ପ୍ରଧାନ ନିର୍ଦ୍ଦେଶ ହେଲା—"ଈଶ୍ୱରଙ୍କୁ ସର୍ବତ୍ର ଦେଖ" ଏବଂ ଈଶ୍ୱରଙ୍କଠାରେ ସବୁ ଦେଖ ଏହାହିଁ ଆଧ୍ୟାତ୍ମିକ ପୂର୍ଣ୍ଣତା ପାଇବାର ପ୍ରକୃତ ପନ୍ଥା ।

ଏ ସଂସାରରେ ସୁଖ ଅଛି ଓ ତାହାକୁ ଯୋଗ ଓ ସାଧନା ବଳରେ ଲାଭ କରି ହେବ ବୋଲି ସେମାନେ କହିଛନ୍ତି । ଏହି ଭାରତବର୍ଷରେ ଗଙ୍ଗା, ଯମୁନା ଓ ସରସ୍ୱତୀ ନଦୀକୂଳରେ ଯେଉଁ ସଭ୍ୟତା ଓ ସଂସ୍କୃତି ଗଢ଼ି ଉଠିଥିଲା ଓ ଯେପରି ଭାବରେ ତାହା ପୃଥିବୀର ବିଭିନ୍ନ ପ୍ରାନ୍ତକୁ ପ୍ରସାରିତ ହୋଇଥିଲା ତାହା ସମକକ୍ଷ କିଛି ଅନ୍ୟ କୌଣସି ଦେଶରେ ନାହିଁ ।

ଏହି ଦେଶରେ ରାମ ଓ କୃଷ୍ଣ ଜନ୍ମ ଗ୍ରହଣ କରି ଅବତାର-ରୂପେ ଭଗବାନଙ୍କ ଲୀଳାକୁ ପ୍ରକଟ କରାଇ କିପରି ବ୍ୟକ୍ତିଗତ ଜୀବନ, ପାରିବାରିକ ଜୀବନ, ସାମାଜିକ ଓ ଜାତୀୟଜୀବନଯାପନ କରିବାକୁ ହେବ ସେ ସବୁର ଆଦର୍ଶ ଦେଖାଇଦେଇ ଅଛନ୍ତି । ରାମାୟଣ ଓ ମହାଭାରତ ଗ୍ରନ୍ଥଦ୍ୱୟ ପ୍ରାଚୀନ ଭାରତ ସଭ୍ୟତାର ପ୍ରତୀକ । ମହା ମହା ଦାର୍ଶନିକ ପଣ୍ଡିତମାନେ ଦର୍ଶନଶାସ୍ତ୍ରମାନ ରଚନା କରି ଯାଇଛନ୍ତି । କାଳିଦାସ, ଭବଭୂତି, ମାଘପ୍ରଭୃତି କବିମାନେ କଳ୍ପନା ରାଜ୍ୟରେ ବିଚରଣ କରି ଜନସମାଜ ସମୀପରେ ସଭ୍ୟତା ଓ ସଂସ୍କୃତିର ସୌନ୍ଦର୍ଯ୍ୟ ପ୍ରକାଶ କରି

Digitized by srujan ka@gmail.com

ଯାଇଅଛନ୍ତି । ଚନ୍ଦ୍ରଗୁପ୍ତ, ଅଶୋକ, ବିକ୍ରମାଦିତ୍ୟ, ହର୍ଷବର୍ଦ୍ଧନ-ପ୍ରଭୃତି ଆଦର୍ଶ ନୃପତିମାନେ ଦେଶରେ ସୁଶାସନ ଓ ଧର୍ମଗତ ଜୀବନଯାପନ ସମ୍ବନ୍ଧରେ ପ୍ରଣାଳୀମାନ ଖଞ୍ଜି ଯାଇଅଛନ୍ତି । ବୁଦ୍ଧଦେବଙ୍କ ପ୍ରଚାରିତ ନିର୍ବାଣତତ୍ତ୍ୱ ସେକାଳର ଜଗତରେ ଏକ ଧର୍ମବିପ୍ଳବ ସୃଷ୍ଟି କରିଥିଲା । ଚାଣକ୍ୟଙ୍କ ପ୍ରଚାରିତ ରାଜନୀତି-ତଥ୍ୟ, ସୁଶାସନ ଓ ଦେଶ ପ୍ରତିରକ୍ଷା କ୍ଷେତ୍ରରେ ଚିରକାଳ ଆଦର୍ଶ-ସ୍ଥାନୀୟ ହୋଇ ରହିବ । କଳା ଓ ସ୍ଥାପତ୍ୟ କ୍ଷେତ୍ରରେ ଭାରତୀୟ-ମାନେ ବିଶେଷ ଉନ୍ନତି ଲାଭ କରିଥିଲେ; ବରାହମିହିର, ଭାସ୍କରା-ଚାର୍ଯ୍ୟଙ୍କ ପରି ଅଦ୍ଭୁତକର୍ମା ଜ୍ୟୋତିଷଶାସ୍ତ୍ର ବିଶାରଦ ପଣ୍ଡିତମାନେ ଭାରତର ଗୌରବ । କୋଣାର୍କର ସୂର୍ଯ୍ୟମନ୍ଦିର ସ୍ଥାପତ୍ୟର ପରାକାଷ୍ଠାର ଚିହ୍ନ । ମଧ୍ୟଯୁଗରେ ମୁସଲମାନ ପ୍ରଭାବ ପ୍ରସାରିତ ହେବାପରେ ପ୍ରାଚୀନ ଭାରତୀୟ ପରମ୍ପରାରେ ବାଧା ଘଟିଥିଲା । ପ୍ରତାପ, ଶିବାଜୀ ପ୍ରଭୃତି ମହାରଥୀମାନେ ଭାରତୀୟ ଜାତୀୟତାର ପୁନରୁଦ୍ଧାର କରିଥିଲେ । ହିନ୍ଦୁଧର୍ମର ପୁନରୁତ୍ଥାନରେ ଶଙ୍କରାଚାର୍ଯ୍ୟ ମାଧବାଚାର୍ଯ୍ୟ, ରାମାନୁଜାଚାର୍ଯ୍ୟ ଆଦି ଅଗ୍ରଦୂତ । ଶଙ୍କରାଚାର୍ଯ୍ୟ ଭାରତରେ ଚାରିଧାମ ସୃଷ୍ଟି କରିଥିଲେ । ସେଥିମଧ୍ୟରୁ ନୀଳାଚଳ-ଧାମର ଗୋବର୍ଦ୍ଧନପୀଠ ଆମର ଏ ଉତ୍କଳପ୍ରଦେଶରେ ଅବସ୍ଥିତ । ଭାରତର ବିଭିନ୍ନ ତୀର୍ଥସ୍ଥଳ କେବଳ ଗୋଟିଏ ଅଞ୍ଚଳରେ ସୀମାବଦ୍ଧ ନାହିଁ । ତାହା ଉତ୍ତରରେ କାଶ୍ମୀର ହିମାଳୟ ଓ ଦକ୍ଷିଣରେ କନ୍ୟାକୁମାରୀ, ପୂର୍ବରେ ଆସାମ ଓ ପଶ୍ଚିମରେ ଗୁଜରାଟ, ସିନ୍ଧୁ-ଦେଶ ପର୍ଯ୍ୟନ୍ତ ବିଭିନ୍ନ ଅଞ୍ଚଳରେ ରହିଛି । "ଗଙ୍ଗେଚ, ଯମୁନେ-ଚୈବ, ଗୋଦାବରି ସରସ୍ୱତି, ନର୍ମଦେ, ସିନ୍ଧୁ କାବେରି, ଜଳେସ୍ମିନ୍ ସନ୍ନିଧିଂ କୁରୁ ।"

ତୁଳସୀଦାସ, ତୁକାରାମ ଓ କବିରପ୍ରଭୃତି ଭକ୍ତମାନେ ଉତ୍ତର ପଶ୍ଚିମ ଭାରତରେ ଓ ଚୈତନ୍ୟ ପୂର୍ବଭାରତରେ ଉକ୍ତ ଧର୍ମ ପ୍ରଚାର

Digitized by srujan ka@gmail.com

କରିଥିଲେ । ମୁସଲମାନ ଶାସନର ଅବସାନ ପରେ ଇଉରୋପୀୟ-
ମାନେ ବାଣିଜ୍ୟ ନିମିତ୍ତ ଏ ଦେଶକୁ ଆସି ଅଧିକାର କରି ପାଶ୍ଚାତ୍ୟ
ସଭ୍ୟତା ପ୍ରବେଶ କରାଇଲେ । ଏଥିରେ ଏକ ସଂଘର୍ଷ ଘଟିବା
ଫଳରେ ଦୟାନନ୍ଦ ସରସ୍ୱତୀ ଆର୍ଯ୍ୟ ଧର୍ମ ଓ ରାମମୋହନରାୟ ବ୍ରାହ୍ମ
ଧର୍ମ ସ୍ଥାପନ କଲେ । ବ୍ରିଟିଶଙ୍କ ଅମଳରେ ଯଦିଓ ସେମାନେ ଏ
ଦେଶରୁ ଅର୍ଥନୈତିକ ସହରେ ଶୋଷଣ କଲେ ତଥାପି ଏ ଦେଶରେ
ଶାସନ କ୍ଷେତ୍ରରେ ଅନେକ ପରିବର୍ତ୍ତନ ଆଣାଇ ଥିଲେ । ରେଳର
ପ୍ରଚଳନ ଓ ଗମନାଗମନର ସୁବିଧା ପାଇଁ ଯୋଗ ପ୍ରଚଳନରେ ପୂର୍ବ
ପାଶ୍ଚାତ୍ୟ ଦେଶରେ ସଂଘର୍ଷ ଘଟିଲା । ଇଂରାଜୀ ଭାଷା ଶିକ୍ଷାଦ୍ୱାରା
ଭାରତର ଚକ୍ଷୁ ଦେଶ ବିଦେଶ ଅଡ଼କୁ ଫିଟିଲା ଓ ଆନ୍ତର୍ଜାତୀୟ
କ୍ଷେତ୍ରରେ ଭାରତ ପରିଚିତ ହେଲା । ଭାରତରେ ଜାତୀୟ ଆନ୍ଦୋ-
ଳନର ସୂତ୍ରପାତ ହେବା ଫଳରେ ବ୍ରିଟିଶମାନେ ବୁଝି ପାରିଲେ
ଯେ ଭାରତକୁ ଆଉ ବେଶିଦିନ କର-କବଳିତ କରି ରଖି ହେବ-
ନାହିଁ । ଏହି ଆନ୍ଦୋଳନ ମହାତ୍ମାଗାନ୍ଧୀଙ୍କ ପ୍ରେରଣାରେ ପ୍ରବଳତର
ହେଲା ଓ ଆନ୍ତର୍ଜାତିକ ପରିସ୍ଥିତିର ଚାପରେ ଭାରତ ସ୍ୱାଧୀନତା
ଲାଭକଲା । ଗତ ବିଂଶ ବର୍ଷ ମଧ୍ୟରେ ଭାରତ ଶାସନକ୍ଷେତ୍ରରେ
ଆଶ୍ଚର୍ଯ୍ୟ ପ୍ରକାରର ଉନ୍ନତି ଲାଭ କରିଅଛି । ନୂତନ ଗଣତାନ୍ତ୍ରିକ
ସମ୍ବିଧାନ ଗଢ଼ା ହୋଇଅଛି । ଜାତୀୟ ସଂହତି ସୁଦୃଢ଼ ହୋଇ-
ଅଛି । ଆନ୍ତର୍ଜାତିକ କ୍ଷେତ୍ରରେ ଭାରତ ଏକ ଧର୍ମନିରପେକ୍ଷ ସ୍ୱାଧୀନ
ରାଷ୍ଟ୍ରରୂପେ ପ୍ରଶଂସା ପାଉଅଛି । ଭାରତର ନୌବାହିନୀ, ସ୍ଥଳବାହିନୀ
ଓ ବ୍ୟୋମବାହିନୀ ବିଭାଗମାନଙ୍କରେ ଅଜସ୍ର ଅର୍ଥ ବ୍ୟୟ କରାଯାଇ
ଭାରତର ପ୍ରତିରକ୍ଷାକୁ ସୁଦୃଢ଼ କରା ଯାଇଅଛି ଓ ଭାରତର ସାମ-
ରିକ ବଳ ବୃଦ୍ଧି ପ୍ରଭୂତ ହେଲାଣି ବୋଲି ଅନ୍ୟ ଦେଶମାନେ
ସ୍ୱୀକାର କଲେଣି । ଭାରତରେ ବ୍ୟୋମଯାନ ତିଆରି ହେଲାଣି ।

Digitized by srujan ka@gmail.com

ଭୂଗର୍ଭ-ସମ୍ପଦମାନ ଆବିଷ୍କୃତ ହେବା ଫଳରେ ବୃହତ୍ତର ଶିଳ୍ପାଗାର-ମାନ ସ୍ଥାପିତ ହେଲାଣି ଓ ଜାତିସଂଘରେ ଭାରତ ଏକ ପ୍ରଧାନ ଭୂମିକା ଗ୍ରହଣ କରିଅଛି ଓ ଦିନକୁ ଦିନ ପ୍ରଗତିପଥରେ ଅଗ୍ରସର ହେଉଅଛି । ଭାରତୀୟର ବୈଜ୍ଞାନିକମାନେ ନାନା ଗବେଷଣା କରୁ-ଅଛନ୍ତି । ଗତ ଶତାବ୍ଦୀରେ ଉତ୍କଳର ସାମନ୍ତ ଚନ୍ଦ୍ରଶେଖର ସିଂହଙ୍କ ଜ୍ୟୋତିଷ ଚର୍ଚ୍ଚା ଏ ଦିଗରେ ଭାରତରେ ବିଶେଷ ସମ୍ମାନ ଲାଭ କରିଅଛି ଓ ଆଣବିକ ଅସ୍ତ୍ର ସର୍ଜନା ଓ ବ୍ୟବହାର ଦିଗରେ ଭାରତ ଅନ୍ୟଦେଶମାନଙ୍କ ପଛରେ ପଡ଼ି ରହିଥିଲେ ସୁଦ୍ଧା ଏହାକୁ ଶାନ୍ତିପୂର୍ଣ୍ଣ କାର୍ଯ୍ୟରେ ପ୍ରୟୋଗ କରିବାପାଇଁ ପଦକ୍ଷେପ ନିଆଯାଇଛି ।

ଆଧ୍ୟାତ୍ମିକ ଦିଗରେ ରାମକୃଷ୍ଣ, ବିବେକାନନ୍ଦ ଓ ଅରବିନ୍ଦ-ପ୍ରଭୃତି ଅଗ୍ରଗଣ୍ୟ । ମୋଟ ଉପରେ କହିବାକୁ ଗଲେ ପ୍ରାଚୀନ କାଳରେ ଭାରତ ସଭ୍ୟତା ଓ ସଂସ୍କୃତିରେ ଯେଉଁ ଖ୍ୟାତି ଅର୍ଜନ କରିଥିଲା, ଆଜି ଏ ନବଯୁଗରେ ସେ ସଂସ୍କୃତି ପ୍ରବଳ ବେଗରେ ଦେଶ ବିଦେଶରେ ପ୍ରସ୍ଫୁରିତ ହେଉଅଛି ।

ବର୍ତ୍ତମାନ ସମୟ ଆସିଲାଣି ଆଉ ଅତୀତପାଇଁ ଶୋଚନା କରିବାର ନାହିଁ । ବର୍ତ୍ତମାନ ଭାରତ ଯେପରି ଆଗେଇଛି ତା'ର ଭବିଷ୍ୟତ ଅତି ଉଜ୍ଜ୍ୱଳ । ଭାରତ ଆବହମାନ କାଳରୁ ସର୍ବଶ୍ରେଷ୍ଠ ଦେଶ ଥିଲା । କାଳକ୍ରମେ ତା'ର ସଭ୍ୟତା ସାମୟିକ ଭାବରେ ଶିଥିଳ ହୋଇ ପଡ଼ିଥିଲେ ହେଁ ବର୍ତ୍ତମାନ ନବ ତେଜରେ ଭାସମାନ ହେଉଅଛି ଓ ଭବିଷ୍ୟତରେ ଏହା ପୃଥିବୀକୁ ଆଧ୍ୟାତ୍ମିକ ଓ ବୈଷ-ୟିକ ମାର୍ଗରେ ନିୟନ୍ତ୍ରଣ କରିବ । ଭାରତର ମୁନି ଋଷିମାନେ ଧର୍ମ ଶାସ୍ତ୍ର, ଅର୍ଥଶାସ୍ତ୍ର, ଭାଷାଶାସ୍ତ୍ର, ସଙ୍ଗୀତଶାସ୍ତ୍ର, କାମଶାସ୍ତ୍ର, ବୈଜ୍ଞାନିକ ଶାସ୍ତ୍ରମାନ ସଭ୍ୟତା ଓ ସଂସ୍କୃତିର ବିକାଶପାଇଁ ରଚନା କରି-ଯାଇ ଅଛନ୍ତି ।

Digitized by srujan ka@gmail.com

ମନୁ ସଂହିତା, ପରାଶର ସଂହିତା, ଯାଜ୍ଞବଲ୍‌କ୍ୟ ସଂହିତା, ଚାଣକ୍ୟ ନୀତିଶାସ୍ତ୍ର ପ୍ରଭୃତି ରାଜନୀତି, ରାଜ୍ୟ ଶାସନ ଓ ସାମାଜିକ ଗତି ନିୟନ୍ତ୍ରଣ ଦିଗରେ ପୃଥିବୀର ପଥ ପ୍ରଦର୍ଶକ ।

ରାମାୟଣ ଓ ମହାଭାରତ ଓ ପୁରାଣମାନଙ୍କରେ ଆଦର୍ଶ ରାଜନୀତିକ, ସାମାଜିକ ଓ ଆଧ୍ୟାତ୍ମିକ ଜୀବନର ଚିତ୍ର ଦିଆଯାଇ ଅଛି । ପରବର୍ତ୍ତୀ କାଳରେ ବିକ୍ରମାଦିତ୍ୟ ସଭାର କାଳିଦାସ ପ୍ରଭୃତି ନବରତ୍ନମାନେ ରାଜ୍ୟଶାସନ, କଳା, ସାହିତ୍ୟ, ସଙ୍ଗୀତ ଓ ସମର ବିଦ୍ୟା ସମ୍ବନ୍ଧରେ ଅନେକ ଉପାଦେୟ ଗ୍ରନ୍ଥ ରଚନା କରିଅଛନ୍ତି । ରାଜନୀତି ଓ ଧର୍ମନୀତିକୁ ଏକତ୍ର କରି ପ୍ରଜାନୁରଞ୍ଜକ ଶାସକଭାବରେ ପ୍ରିୟଦର୍ଶୀ ଅଶୋକଙ୍କ ଚରିତ୍ର ଭାରତ କାହିଁକି ସମଗ୍ର ପୃଥିବୀରେ ମଧ୍ୟ ବିରଳ । ରାଜା ହର୍ଷବର୍ଦ୍ଧନ ହିନ୍ଦୁ ଓ ବୌଦ୍ଧଧର୍ମର ସମ୍ମିଶ୍ରଣ ଘଟାଇଥିବା ବିଷୟ ଚୀନ୍ ପରିବ୍ରାଜକ ହୁଏନ୍‌ସାଂ ତାଙ୍କ ଭ୍ରମଣ କାହାଣୀରେ ଉଲ୍ଲେଖ କରିଅଛନ୍ତି । ଭାରତରେ ମୁସଲମାନ ଅଧିକାର ପରେ ଭାରତୀୟ ସଭ୍ୟତାର କ୍ରମବିକାଶ ବାଧା ପାଇ-ଥିଲେ ସୁଦ୍ଧା ତୁଳସୀ ଦାସ, ଚୈତନ୍ୟ, କବୀର ପ୍ରଭୃତି ବଡ଼ ବଡ଼ ଯୋଗୀମାନେ ଭକ୍ତିମାର୍ଗ ଓ ଆଧ୍ୟାତ୍ମିକ ଭାବର ଆଲୋକରେଖା ଜଳାଇ ରଖିଥିଲେ ।

ଏହି ଭାରତରେ ବ୍ୟାସ, ବାଲ୍ମୀକି, ବଶିଷ୍ଠ, ବିଶ୍ୱାମିତ୍ରଙ୍କ ପରି ଆଦର୍ଶ ଋଷି, ଶଙ୍କର, ବୁଦ୍ଧଙ୍କ ପରି ଆଦର୍ଶ ତ୍ୟାଗୀ ଯୁଧିଷ୍ଠିର ଓ ରାମଚନ୍ଦ୍ରଙ୍କ ପରି ଆଦର୍ଶ ରାଜା, ଜନକଙ୍କ ପରି ଆଦର୍ଶ ରାଜର୍ଷି ସୀତା ସାବିତ୍ରୀଙ୍କ ପରି ଆଦର୍ଶ ରମଣୀ, ଭରତ, ଲକ୍ଷ୍ମଣଙ୍କ ପରି ଆଦର୍ଶ ଭ୍ରାତା, ଉଦ୍ଧବ, ପ୍ରହଲ୍ଲାଦ, ହନୁମାନ ପରି ଆଦର୍ଶ ଭକ୍ତ, ପ୍ରତାପ, ଶିବାଜୀଙ୍କ ପରି ଆଦର୍ଶ ବୀର ଗୌରାଙ୍ଗଙ୍କ ପରି ଆଦର୍ଶ

Digitized by srujan ka@gmail.com

ପ୍ରେମିକ, ଭକ୍ତ କାଳିଦାସଙ୍କ ପରି ଆଦର୍ଶ କବି ଯେ କେତେ ଜନ୍ମ - ଥିଲେ ତା'ର ଇୟତ୍ତା ନାହିଁ । ଏ ଦେଶରେ ଭଗବାନଙ୍କ କୃପାରୁ ବର୍ତ୍ତମାନ ମଧ୍ୟ ମହାପୁରୁଷ, ମହାତ୍ମା ଓ ଗୁଣୀ ଜ୍ଞାନୀଙ୍କର ଅଭାବ ନାହିଁ । ଧର୍ମକ୍ଷେତ୍ରରେ ସ୍ୱାମୀ ବିବେକାନନ୍ଦ, ଶ୍ରୀ ରାମକୃଷ୍ଣ, ସ୍ୱାମୀ ଦୟାନନ୍ଦ ସରସ୍ୱତୀ, ଶ୍ରୀ ଅରବିନ୍ଦ, ସାହିତ୍ୟକ୍ଷେତ୍ରରେ ବଙ୍କିମଚନ୍ଦ୍ର, ରବୀନ୍ଦ୍ରନାଥ ଠାକୁର, ସୁବ୍ରହ୍ମଣ୍ୟ ଭାରତୀ, ପ୍ରେମଚନ୍ଦ, ରାଜନୀତି କ୍ଷେତ୍ରରେ ବାଲଗଙ୍ଗାଧର ତିଳକ, ମହାତ୍ମାଗାନ୍ଧୀ, ଜବାହାରଲାଲ ନେହରୁ ଆଦି ଓଡ଼ିଶା କଥା କହିବାକୁ ଗଲେ ଖାରବେଳ, ଚୋଳଗଙ୍ଗ, ଅନଙ୍ଗଭୀମ ଓ କପିଳେନ୍ଦ୍ରଙ୍କ ପରି ଦିଗ୍‌ବିଜୟୀ ଦେଶପ୍ରେମୀ ରାଜା ଓ ଶାସକ, ସାରଳାଦାସ ଓ ପଞ୍ଚସଖା ଅର୍ଥାତ୍ ଜଗନ୍ନାଥ ଦାସ, ବଳରାମ ଦାସ, ଯଶୋବନ୍ତ ଦାସ, ଅନନ୍ତ ଦାସ, ଓ ଅଚ୍ୟୁତାନନ୍ଦ ଦାସଙ୍କ ଭଳି ଭକ୍ତ ଓ ଧର୍ମପ୍ରଚାରକ; ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ ଦାସ ଓ ଅଭିମନ୍ୟୁ ସାମନ୍ତସିଂହାରଙ୍କ ପରି ଭକ୍ତିମାର୍ଗରସର ସାହିତ୍ୟିକ ଓ ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତଙ୍କ ଭଳି ବୈଜ୍ଞାନିକ ଓ ଜ୍ୟୋତିଷବିଶାରଦ ଏ ପ୍ରଦେଶରେ ଜନ୍ମଗ୍ରହଣ କରି ଭାରତର ସଭ୍ୟତାକୁ ଅବଦାନ ଦେଇ ତାକୁ ପରିପୁଷ୍ଟ କରି-ଅଛନ୍ତି ।

ପଣ୍ଡିତ ଜବାହରଲାଲ ଯଥାର୍ଥରେ କହିଅଛନ୍ତି ଭାରତ ବିଶ୍ୱର ଗୁରୁସ୍ଥାନୀୟ । ଭାରତୀୟ ମୁନିଋଷିଙ୍କ ପ୍ରଦର୍ଶିତ ମାର୍ଗରେ ଓ ଆଧୁନିକ ବୈଜ୍ଞାନିକ ଯୁଗରେ ଆନ୍ତର୍ଜାତିକ କ୍ଷେତ୍ରରେ ହେଉଥିବା ବିକାଶ ପ୍ରତି ଦୃଷ୍ଟି ଦେଇ ଗତିକଲେ ସ୍ୱାଧୀନ ଭାରତର ସଭ୍ୟତା ଓ ସଂସ୍କୃତି ପୃଥିବୀର ଅନ୍ୟାନ୍ୟ ଦେଶମାନଙ୍କୁ ଓ ମାନବସମାଜକୁ ସଭ୍ୟତା ଓ ସଂସ୍କୃତି ଦିଗରେ ବାଟ ବତାଇବ ।

Digitized by srujan ka@gmail.com

"ସର୍ବେ ଲୋକାଃ ସମସ୍ତାଃ ସୁଖିନୋ ଭବନ୍ତୁ"
"ବସୁଧୈବ କୁଟୁମ୍ବକଂ"

ଏହି ଭାବ ପ୍ରଥମେ ଭାରତରେ ଜାଗରିତ ହୋଇଥିଲା । ବର୍ତ୍ତମାନ ଯୁଗରେ ସାଂସ୍କୃତିକ ସଙ୍କଟ ଘଟିଛି; କିନ୍ତୁ ଏ ଦେଶ-ବାସୀଙ୍କୁ ପ୍ରେରଣା, ନିର୍ଦ୍ଦେଶ ଓ ଶକ୍ତି ଆହରଣ କରିବାକୁ ହେଲେ ପରମ୍ପରା ଆଡ଼କୁ ଦୃଷ୍ଟି ଦେଇ ଆଧୁନିକ ବୈଜ୍ଞାନିକ ଯୁଗର ଗତି ସଙ୍ଗେ ସମନ୍ୱୟ ରଖି ପୁରାତନ ଓ ନୂତନର ମଧୁର ସମ୍ମିଶ୍ରଣର ଯୋଜନା କରିବାକୁ ହେବ । ସତ୍ୟ, ଅହିଂସା ସମନ୍ୱୟ ସହକାରିତା, ସମାନତ୍ୱ ମୈତ୍ରୀ ଓ ଜନକଲ୍ୟାଣକୁ ଲକ୍ଷ୍ୟ ରଖି ଭାରତର ପ୍ରାଚୀନ ଭାବଧାରାକୁ ଯୁଗୋପଯୋଗୀ ନୂତନ ପନ୍ଥାରେ ଚାଳନ କରିବାକୁ ହେବ । ନୈତିକ, ଆଧ୍ୟାତ୍ମିକ, ସାଂସ୍କୃତିକ, ସାମାଜିକ,ଅର୍ଥନୈତିକ, ବୈଜ୍ଞାନିକ ସମସ୍ତ କ୍ଷେତ୍ରରେ ଦେଶବାସୀ ଯୁବକମାନଙ୍କୁ ସଂଗଠନ-ମୂଳକ ଶକ୍ତି ଆହରଣ କରିବାକୁ ହେବ ଓ ବିଶ୍ୱନିୟନ୍ତାଙ୍କ ଆଶୀର୍ବାଦରେ ଭାରତ ତା'ର ପୂର୍ବ ଗୌରବ ଉଦ୍ଧାର କରିବ ଓ ଜଗତର ଗୁରୁ ରୂପେ ପୂଜା ପାଇବ ।

———

Digitized by srujan ka@gmail.com

# ଭାରତୀୟ ସଂସ୍କୃତି

ଶ୍ରୀ ପ୍ରାଣନାଥ ମହାନ୍ତି ଏମ୍, ଏ, ଆଇ, ଏ, ଏସ୍ (ଅବସରପ୍ରାପ୍ତ)

ଭାରତୀୟ ସଂସ୍କୃତି ଶାନ୍ତି, ମୈତ୍ରୀ ଏବଂ ଅହିଂସାର ସଂସ୍କୃତି । ପ୍ରତ୍ୟେକ ଶୁଭକାର୍ଯ୍ୟ ବା ସାମାଜିକ ଅନୁଷ୍ଠାନ ଶେଷରେ ତିନ ଥର ଶାନ୍ତି ମନ୍ତ୍ର ଉଚ୍ଚାରଣ କରାଯାଏ ଯଥା—ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ । ଭାରତର ସର୍ବତ୍ର ଏହି ପ୍ରଥା ପ୍ରଚଳିତ । ପ୍ରଥମ 'ଶାନ୍ତିଃ' ଶବ୍ଦର ଅର୍ଥ ହେଲା ବୈୟକ୍ତିକ ଶାନ୍ତି ଅର୍ଥାତ୍ ପ୍ରତ୍ୟେକ ଲୋକ ଶାନ୍ତିରେ ରହୁ । ଦ୍ୱିତୀୟ 'ଶାନ୍ତିଃ' ଶବ୍ଦର ଅର୍ଥ ହେଲା ରାଷ୍ଟ୍ରୀୟ ଶାନ୍ତି ଅର୍ଥାତ୍ ରାଷ୍ଟ୍ରରେ ଶାନ୍ତି ବିରାଜମାନ କରୁ । ମନୁଷ୍ୟ ନିଜେ ସୁଖଶାନ୍ତିରେ ଥିଲେ ମଧ୍ୟ, ରାଷ୍ଟ୍ରରେ ଯଦି ଅଶାନ୍ତି ବ୍ୟାପେ, ମନୁଷ୍ୟ ପକ୍ଷରେ ବୈୟକ୍ତିକ ଶାନ୍ତି ଅସମ୍ଭବ ହୋଇପଡ଼ିବ । ତେଣୁ କୁହାଯାଇଛି —

'ସ୍ୱସ୍ତି ପ୍ରଜାଭ୍ୟଃ ପରିପାଳୟନ୍ତୁ
ନ୍ୟାୟେନ ମାର୍ଗେଣ ମହୀଂ ମହୀଶାଃ,
ଗୋବ୍ରାହ୍ମଣେଭ୍ୟଃ ଶୁଭମସ୍ତୁ ନିତ୍ୟଂ
ଲୋକାଃ ସମସ୍ତାଃ ସୁଖିନୋ ଭବନ୍ତୁ ।"

Digitized by srujan ka@gmail.com

ଏଠାରେ ରାଜ୍ୟରେ ସୁଶାସନ ଏବଂ ନ୍ୟାୟ ଶାସନଜନିତ ଶାନ୍ତିର ପରିକଳ୍ପନା କରାଯାଇଅଛି । ରାଷ୍ଟ୍ରରେ ଶାନ୍ତି ରହିଲେ ସମସ୍ତ ଲୋକେ ସୁଖଶାନ୍ତିରେ ରହିପାରିବେ । ତୃତୀୟ 'ଶାନ୍ତିଃ' ଶବ୍ଦର ଅର୍ଥ ହେଉଛି ବିଶ୍ୱଶାନ୍ତି । ବିଶ୍ୱରେ ଶାନ୍ତି ନ ରହିଲେ କିମ୍ବା ବିଶ୍ୱରେ ସମର ଲାଗିଗଲେ ତା'ର କୁପ୍ରଭାବ ସବୁ ଦେଶମାନଙ୍କ ଉପରେ ପଡ଼ିବ ଏବଂ ତା ଫଳରେ ଭାରତରେ ସାମାଜିକ ବା ରାଷ୍ଟ୍ରୀୟ ଶାନ୍ତି ଏବଂ ଭାରତୀୟ ଲୋକମାନଙ୍କ ମଧ୍ୟରେ ବୈୟକ୍ତିକ ଶାନ୍ତି ସମ୍ଭବ ହେବ ନାହିଁ । ତେଣୁ ଭାରତୀୟ ସଂସ୍କୃତିରେ ବିଶ୍ୱଶାନ୍ତି ବା ବିଶ୍ୱ-କଲ୍ୟାଣର ପରିକଳ୍ପନା ଏହିପରି କରାଯାଇଅଛି । ଯଥା—

ସର୍ବେ ଭବନ୍ତୁ ସୁଖିନଃ
ସର୍ବେ ସନ୍ତୁ ନିରାମୟାଃ ।
ସର୍ବେ ଭଦ୍ରାଣି ପଶ୍ୟନ୍ତୁ
ମା କଶ୍ଚିତ୍ ଦୁଃଖଭାକ୍ ଭବେତ୍ ॥

ଅର୍ଥାତ୍ ବିଶ୍ୱର ସମସ୍ତେ ସୁଖଶାନ୍ତିରେ ରହନ୍ତୁ; ନୀରୋଗ ହୁଅନ୍ତୁ; ଭଦ୍ର କଥା ଦେଖନ୍ତୁ, ଶୁଣନ୍ତୁ ଓ କହନ୍ତୁ ଏବଂ କେହି ହେଲେ ଦୁଃଖଭୋଗୀ ନ ହୁଅନ୍ତୁ ।

ବେଦ, ଉପନିଷଦ, ଗୀତା ଏବଂ ପୁରାଣାଦି ଭାରତୀୟ ସଂସ୍କୃତିର ସର୍ବଶ୍ରେଷ୍ଠ ପ୍ରାମାଣିକ ଗ୍ରନ୍ଥମାନଙ୍କରେ ଅହିଂସା ଓ ମୈତ୍ରୀ ମନ୍ତ୍ରମାନଙ୍କର ଜୟଗାନ ପୁଷ୍କଳଭାବରେ କରାଯାଇଅଛି ।

"ସର୍ବଂ ଖଳ୍ୱିଦଂ ବ୍ରହ୍ମ", "ଅହଂ ବ୍ରହ୍ମାଽସ୍ମି", "ତତ୍ତ୍ୱମସି" ଆଦି ଉପନିଷଦର ମହାବାକ୍ୟମାନ ପ୍ରମାଣିତ କରୁଛି ଯେ ପ୍ରତ୍ୟେକ ମନୁଷ୍ୟଠାରେ ବ୍ରହ୍ମସତ୍ତା ବା ଭଗବତ୍-ସତ୍ତା ବିଦ୍ୟମାନ; ତେଣୁ

Digitized by srujan ka@gmail.com

ମନୁଷ୍ୟ ମନୁଷ୍ୟ ଭିତରେ ହିଂସାଭାବ ବା ଶତ୍ରୁତା ରହିବା ଅନୁଚିତ । ଭଗବଦ୍ ଗୀତାରେ କୁହାଯାଇଅଛି—

ବିଦ୍ୟା ବିନୟ-ସମ୍ପନ୍ନେ
ବ୍ରାହ୍ମଣେ ଗବି ହସ୍ତିନି ।
ଶୁନି ଚୈବ ଶ୍ୱପାକେ ଚ
ପଣ୍ଡିତାଃ ସମଦର୍ଶିନଃ ॥(ଗୀତା ୫ । ୧୮)

ଅର୍ଥାତ୍ ଜ୍ଞାନୀମାନେ ବିଦ୍ୟା ଓ ବିନୟଯୁକ୍ତ ବ୍ରାହ୍ମଣ ଏବଂ ଗୋରୁ, ହସ୍ତୀ, କୁକୁର ଓ ଚଣ୍ଡାଳ—ଏ ସମସ୍ତଙ୍କୁ ସମାନଭାବରେ ଦେଖନ୍ତି ।

ସର୍ବଭୂତସ୍ଥମାତ୍ମାନଂ ସର୍ବଭୂତାନି ଚାତ୍ମନି ।
ଈକ୍ଷତେ ଯୋଗଯୁକ୍ତାତ୍ମା ସର୍ବତ୍ର ସମଦର୍ଶନଃ ॥ (ଗୀତା ୬ । ୨୯)

ଅର୍ଥାତ୍, ଯୋଗଦ୍ୱାରା ସମାହିତଚିତ୍ତ ଓ ସର୍ବଭୂତରେ ସମଦର୍ଶୀ ଯୋଗୀ ଆତ୍ମାକୁ ବା ନିଜକୁ ସର୍ବଭୂତରେ ଦର୍ଶନ କରନ୍ତି ଏବଂ ସର୍ବଭୂତଙ୍କୁ ନିଜଠାରେ ଦର୍ଶନ କରନ୍ତି ।

ଏପରି ସମଦର୍ଶନଭାବରେ ଅନୁପ୍ରାଣିତ ହେଲେ ମନୁଷ୍ୟ ମନୁଷ୍ୟ ଭିତରେ ଭେଦ ଭାବ, ହିଂସାଭାବ ବା ଶତ୍ରୁତା ଭାବ ରହିବ ନାହିଁ । ମହାତ୍ମା ଗାନ୍ଧୀ ଏହି ସମଦର୍ଶନଭାବ ବା ଅହିଂସାଭାବର ଚିରନ୍ତନ ଉପାସକ ଥିଲେ । Tolerance ବା inter-religious understanding (ଅହିଂସା ଓ ମୈତ୍ରୀ ଭାବ) ଭାରତୀୟ ସଂସ୍କୃତିର ସର୍ବସ୍ୱ । ଉପନିଷଦରେ ତା'ର ସୂଚନା ଦିଆଯାଇଅଛି—ବ୍ରହ୍ମର ସର୍ବବ୍ୟାପକତ୍ୱ ଏବଂ ଏକତ୍ୱ ମାଧ୍ୟମରେ । "ହିଂସା ପ୍ରଣୋଦିତ ତରବାରିର ଜୟ ଜୟ ନୁହେଁ"—ଏହି ମହାତଥ୍ୟକୁ ଉଦ୍‌ଘୋଷିତ କରିଥିବା "ଦେବାନାଂ ପ୍ରିୟଦର୍ଶୀ" ଭାରତ ସମ୍ରାଟ୍ ଅଶୋକ ତାଙ୍କର ଦ୍ୱାଦଶ ଶିଳାଲେଖରେ ସାମ୍ୟ ଓ ମୈତ୍ରୀ ଧର୍ମର ନିର୍ଦ୍ଦେଶ ଏହିପରି ଦେଇଛନ୍ତି—

Digitized by srujan ka@gmail.com

"He who does reverence to his own sect, while disparaging the sects of others, wholly from attachment to his own, with intent to enhance the glory of his own sect, in reality, by such conduct, inflicts the severest injury on his own sect. Concord, therefore, is meritorious, to wit, hearkening and hearkening willingly to the law of piety as accepted by other people."

( ୨ )

ଭାରତୀୟ ସଂସ୍କୃତି ଭାରତୀୟ ଚିନ୍ତାଧାରା ବା ଭାରତୀୟ ଐକ୍ୟର ସଂସ୍କୃତି। ବିଭିନ୍ନ ପ୍ରାଦେଶିକ ସଭ୍ୟତା ଓ ସଂସ୍କୃତିମାନଙ୍କଦ୍ୱାରା ରସାଣିତ ଏବଂ ପରିପୁଷ୍ଟ ଭାରତୀୟ ସଂସ୍କୃତିରେ ପ୍ରାଦେଶିକ ଭେଦଭାବ ବା ପ୍ରାଦେଶିକ ସଂକୀର୍ଣ୍ଣତାର ସ୍ଥାନ ନାହିଁ। ପ୍ରାଦେଶିକ ବିଭିନ୍ନତା ସତ୍ତ୍ୱେ, ଧର୍ମ, ଶିକ୍ଷାଗତ, ଆଚାର-ବ୍ୟବହାର ଏବଂ ସାଂସ୍କୃତିକ ଚିନ୍ତାଧାରାରେ ଐକ୍ୟ ଭାରତର ସର୍ବତ୍ର ପରିଦୃଷ୍ଟ ହୁଏ; ଏହି ଏକତ୍ୱ ଭାରତୀୟ ଜୀବନରେ ବହୁ ପୂର୍ବ କାଳରୁ ପ୍ରତିଷ୍ଠିତ। ସର୍ବଭାରତୀୟ ଭାବ ଏହି ଜାତୀୟତାର ପରିପୋଷକ। ଆମେ ସମସ୍ତେ ପ୍ରଥମେ ଭାରତୀୟ; ତା'ପରେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ ଆଦି ଅଥବା ଓଡ଼ିଆ, ବଙ୍ଗାଳୀ, ମହାରାଷ୍ଟ୍ର, ତେଲଗୁ, ତାମିଲ ଆଦି। ଏହି ମହାଭାରତୀୟଭାବରେ ଅନୁପ୍ରାଣିତ ହୋଇ ସମଗ୍ର ଭାରତର ଉନ୍ନତିକଳ୍ପେ କାର୍ଯ୍ୟାନୁଷ୍ଠାନ କଲେ, ପ୍ରାଦେଶିକ ସଂକୀର୍ଣ୍ଣତା ବା ଭେଦଭାବ ଏବଂ ଧର୍ମାନ୍ଧତାର ସ୍ଥାନ ରହିବ ନାହିଁ।

ବହୁ ପ୍ରାଚୀନ କାଳରୁ ପ୍ରଚଳିତ ପ୍ରଥା ହୋଇଛି ଯେ, କୌଣସି ଧର୍ମ କାର୍ଯ୍ୟାନୁଷ୍ଠାନ ପୂର୍ବରୁ ସଂକଳ୍ପ କଲାବେଳେ ସମଗ୍ର

Digitized by srujan ka@gmail.com

ଭାରତର ତୀର୍ଥସ୍ଥାନୀୟ ନଦୀମାନଙ୍କର ଆବାହନ କରାଯାଇଥାଏ । ଯଥା—

"ଗଙ୍ଗେ ଚ ଯମୁନେ ଚୈବ ଗୋଦାବରି ସରସ୍ୱତି ।
ନର୍ମଦେ ସିନ୍ଧୋ କାବେରି ଜଲେଽସ୍ମିନ୍ ସନ୍ନିଧିଂ କୁରୁ ॥

ଏଠାରେ ଉତ୍ତର ଭାରତର ଗଙ୍ଗା, ଯମୁନା ଓ ସରସ୍ୱତୀ ନଦୀମାନ, ଦକ୍ଷିଣ ଭାରତର ଗୋଦାବରୀ ଓ କାବେରୀ ନଦୀମାନ ପଶ୍ଚିମ ଭାରତର ନର୍ମଦା ନଦୀ ଏବଂ ଉତ୍ତର ପଶ୍ଚିମ ପଞ୍ଜାବର ସିନ୍ଧୁ ନଦୀ ଏ ସବୁକୁ ଏକତ୍ର ଆହ୍ୱାନ କରିବା ଦ୍ୱାରା ମହାଭାରତୀୟ ଭାବର ଏବଂ ଭାରତୀୟ ଜାତୀୟତାର ପ୍ରତିଷ୍ଠା କରାଯାଇଅଛି । ତେଣୁ ଓଡ଼ିଆ କବି ରାଧାନାଥ ଭାରତୀୟ ଏକତା ବିଷୟରେ ଉଦ୍‌ବୋଧନ ଦେଇଛନ୍ତି ତାଙ୍କ "ଭାରତଗୀତିକା" କବିତାରେ ଯଥା—

"ସର୍ବେଷାଂ ନୋ ଜ ନ ନୀ ଭାରତ ଧରଣୀ କଳ୍ପଲତେୟଂ ।
ଜନନୀ ବତ୍ସଲ ତନୟଗଣୈସ୍ତତ୍ ସମ୍ୟକ୍ ଶର୍ମବିଧେୟଂ ॥
ହିମଗିରି ସୀମନ୍ତିତ-ମସ୍ତକମିଦ ମମ୍ବୁଧି ପରିଗତ ପାର୍ଶ୍ୱମ୍ ।
ଅସ୍ତୁ ଜନ୍ମଦମନ୍ନଦମନଘଂ ଶୌତସ୍ରୁବାରିତନମାର୍ଷମ୍ ॥
ବିଜନିତହର୍ଷଂ ଭାରତବର୍ଷଂ ବିଶ୍ୱୋତ୍କର୍ଷବିଧାନମ୍ ।
ଭାରତ ଶର୍ମଣି କୃତ ମସ୍ମାଭି ର୍ବରମିଦମୈକ୍ୟବିଧାନମ୍ ॥

× × × ×

ଭାରତବୃତ ନିଷ୍ପାଦନମେବହି କାର୍ଯ୍ୟମିହାସ୍ମମଭିପାକମ
ଭାରତବର୍ଜ୍ଜଂ କମପି ନ କାର୍ଯ୍ୟଂ ନାସ୍ତି ତ ମିତ୍ୟସ୍ମାକମ୍ ॥

ସେହିପରି ଜାତୀୟ-ସଂହତି ରକ୍ଷା ବିଷୟରେ ଉଦ୍‌ବୋଧନ ଦେବାକୁ ଯାଇ ଭକ୍ତକବି ମଧୁସୂଦନ ତାଙ୍କ "ଜନ୍ମଭୂମି" କବିତାରେ ଗାଇଛନ୍ତି—

Digitized by srujan ka@gmail.com

ତୁହି ମା ଜନମ ଭୂମି ପବିତ୍ର ଭାରତ ଭୂମି
ତୋହର ସନ୍ତାନ ଆମ୍ଭେମାନେ ସରବେ,
ତୋର ଶ୍ରୀଚରଣ ସେବା ପାଇଁ ମନ ପ୍ରାଣ ଦେବା
ଗାଇବା ତୋହର ନାମ ଆନନ୍ଦରବେ
ତୋ ଆନନ୍ଦେ ହୋଇବା ସୁଖୀ,
କାନ୍ଦିବା ଦୁଃଖରେ ତୋର ହୋଇଣ ଦୁଃଖୀ ।
ଧନ୍ୟ ମହିମା ତୋହର ନାହିଁ ତାର ପଟାନ୍ତର
ମସ୍ତକରେ ହିମାଳୟ ପର୍ବତବର,
ଦୁଇ ପାରୁଶେ ଜଳଧି ବ୍ରହ୍ମପୁତ୍ର ସିନ୍ଧୁ ନଦୀ
ଚରଣରେ ବିରାଜିତ ମହାସାଗର ।
ବିନ୍ଧ୍ୟ ଗିରିବର କଟିରେ,
ଗଙ୍ଗା ଆଦି କେତେ ନଦୀ ଶୋଭେ ଶରୀରେ ।
ଜନମିଲେ ତୋ କୋଳରେ କେତେ ସୁର, ବୀର, ନରେ
ରାମଚନ୍ଦ୍ର ଭୀଷ୍ମ ଦ୍ରୋଣ କର୍ଣ୍ଣ ଅର୍ଜୁନ,
ମହାକବି ବେଦବ୍ୟାସ ବାଲ୍ମୀକି କାଳିଦାସ
ଗାଇଲେ ପବିତ୍ର କଣ୍ଠେ ତୋହର ଗୁଣ ।
ଚୈତନ୍ୟାଦି ମହାତ୍ମା ଜନେ
ପ୍ରଚାରିଲେ ବିଷ୍ଣୁ ନାମ ଆନନ୍ଦ ମନେ ।
କେତେ କେତେ ପୁଣ୍ୟବତୀ କେତେ ପତିବ୍ରତା ସତୀ
କେତେ ବୀର ନାରୀ କେତେ ବୀର ଜନନୀ,
ସମସ୍ତେ ତୋର ଦୁହିତା ପଦ୍ମିନୀ ପାର୍ବତୀ ସୀତା
ଦୁର୍ଗାବତୀ ଆଦି କେତେ ବୀର ରମଣୀ ।
ନମଇ ମା ଭକତିଭରେ
ଅଧମ ଅକ୍ଷମ ସୁତ ତୋ ଚରଣରେ ।

Digitized by srujan ka@gmail.com

( ୩ )

ଭାରତୀୟ ସଂସ୍କୃତି କର୍ମଯୋଗର ସଂସ୍କୃତି–ଭଗବଦ୍‌ଗୀତାରେ କର୍ମଯୋଗ, ଜ୍ଞାନଯୋଗ, ଧ୍ୟାନଯୋଗ ଏବଂ ଭକ୍ତିଯୋଗ—ଏ ଚାରିଯୋଗର ସମନ୍ୱୟ ସାଧିତ ହୋଇଥିଲେ ମଧ୍ୟ, କର୍ମଯୋଗର ଶ୍ରେଷ୍ଠତ୍ୱ ପ୍ରତିପାଦନ କରାଯାଇଅଛି । ନିଜ ଧର୍ମରେ ସ୍ଥିର ରହି କର୍ମଯୋଗ କରିବାକୁ ଅର୍ଥାତ୍ କର୍ମଫଳ ତ୍ୟାଗ ଏବଂ କର୍ମଫଳକୁ ଭଗବାନ୍‌ଙ୍କଠାରେ ସମର୍ପଣପୂର୍ବକ କର୍ତ୍ତବ୍ୟ କର୍ମ ସମ୍ପାଦନ କରିବାପାଇଁ ଭଗବାନ୍ ଶ୍ରୀକୃଷ୍ଣ ମାନବସମାଜର ଶ୍ରେଷ୍ଠ ପ୍ରତିନିଧି ଅର୍ଜୁନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ।

ସ୍ୱେ ସ୍ୱେ କର୍ମଣ୍ୟଭିରତଃ ସଂସିଦ୍ଧିଂ ଲଭତେ ନରଃ ।
ସ୍ୱକର୍ମନିରତଃ ସିଦ୍ଧିଂ ଯଥା ବିନ୍ଦତି ତଚ୍ଛୃଣୁ । (ଗୀତା. ୧୮/୪୫)
ଯତଃ ପ୍ରବୃତ୍ତିର୍ଭୂତାନାଂ ଯେନ ସର୍ବମିଦଂ ତତମ୍ ।
ସ୍ୱକର୍ମଣା ତମଭ୍ୟର୍ଚ୍ଚ୍ୟ ସିଦ୍ଧିଂ ବିନ୍ଦତି ମାନବଃ ।। (ଗୀତା: ୧୮/୪୬)
ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ ପରଧର୍ମାତ୍ ସ୍ୱନୁଷ୍ଠିତାତ୍ ।
ସ୍ୱଭାବନିୟତଂ କର୍ମ କୁର୍ବନ୍ନାପ୍ନୋତି କିଲ୍‌ବିଷମ୍ ।। (ଗୀତା: ୧୮।୪୭)

ଅର୍ଥାତ୍, ମନୁଷ୍ୟ ନିଜ ନିଜ କର୍ମରେ ରତ ହେଲେ ସମ୍ପୂର୍ଣ୍ଣ ସିଦ୍ଧି ଲାଭ କରନ୍ତି । ଯେଉଁ ଅନ୍ତର୍ଯାମୀ ପରମେଶ୍ୱରଙ୍କଠାରୁ ଭୂତମାନଙ୍କର ଉତ୍ପତ୍ତି ସେ ସମସ୍ତ ଜଗତ୍‌କୁ ବ୍ୟାପି ରହିଛନ୍ତି । ମନୁଷ୍ୟମାନେ ନିଜ ନିଜ ବର୍ଣ୍ଣାଶ୍ରମାଦି କର୍ମଦ୍ୱାରା ତାହାଙ୍କ ଅର୍ଚ୍ଚନା କରି ସିଦ୍ଧି ଲାଭ କରନ୍ତି । ସ୍ୱଧର୍ମ ଅଙ୍ଗହୀନ ହେଲେ ମଧ୍ୟ, ସମ୍ୟକ୍ ରୂପରେ ଅନୁଷ୍ଠିତ ପରଧର୍ମ ଅପେକ୍ଷା ଶ୍ରେଷ୍ଠ, କାରଣ ସ୍ୱଭାବ ବିହିତ କର୍ମର ଅନୁଷ୍ଠାନ କଲେ ପାପ ହୁଏ ନାହିଁ ।

କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ
ମା କର୍ମଫଳ ହେତୁର୍ଭୂର୍ମା ତେ ସଙ୍ଗୋଽସ୍ତ୍ୱକର୍ମଣି । (ଗୀତା ! ୨/୪୭)

Digitized by srujan ka@gmail.com

ଅର୍ଥାତ୍, ହେ ଅର୍ଜୁନ ! କର୍ମରେ ହିଁ ତୁମର ଅଧିକାର, କର୍ମଫଳରେ ନୁହେଁ । କର୍ମଫଳ ତୁମର କର୍ମପ୍ରବୃତ୍ତିର ହେତୁ ନ ହେଉ ଏବଂ କର୍ମଫଳ ବନ୍ଧନର କାରଣ ମନେକରି କର୍ମର ଅକରଣରେ ଯେପରି ତୁମର ଆସକ୍ତି ନ ହୁଏ ।

ମୟି ସର୍ବାଣି କର୍ମାଣି ସନ୍ନ୍ୟାସ୍ୟାଧ୍ୟାତ୍ମଚେତସା ।
ନିରାଶୀର୍ନିର୍ମମୋ ଭୂତ୍ୱା ଯୁଧ୍ୟସ୍ୱ ବିଗତଜ୍ୱରଃ ।। (ଗୀତା: ୩/୩୦)

ଅର୍ଥାତ୍—ହେ ଅର୍ଜୁନ ! ସବୁ କର୍ମ ମୋଠାରେ ସମର୍ପଣ କରି ଅର୍ଥାତ୍ "ମୁଁ ଅନ୍ତର୍ଯ୍ୟାମୀଙ୍କର ଅଧୀନ ହୋଇ କର୍ମ କରୁଛି, ମୋର ନିଜର କୌଣସି କର୍ମ ନାହିଁ ।" ଏହିପରି ବୁଦ୍ଧିରେ ନିଷ୍କାମ ଓ ମମତାଶୂନ୍ୟ ହୋଇ ଶୋକ ପରିତ୍ୟାଗପୂର୍ବକ ଯୁଦ୍ଧ କର ।

କର୍ତ୍ତବ୍ୟକର୍ମ ସମ୍ପାଦନ ବିଷୟରେ ତୈତ୍ତିରୀୟ ଉପନିଷଦ୍‌ର ପ୍ରଥମ ବଲ୍ଲୀ ଏକାଦଶ ଅନୁବାକରେ ଭାରତୀୟ ଗୁରୁ ଶିଷ୍ୟଙ୍କୁ ଦେଇଥିବା ସର୍ବପ୍ରାଚୀନ ଏବଂ ସର୍ବପ୍ରଥମ ଦୀକ୍ଷାନ୍ତ ଭାଷଣର ପରିଚୟ ମିଳେ । ତାହା ଏହିପରି :—

"ବେଦମନୂଚ୍ୟ ଆଚାର୍ଯ୍ୟୋଽନ୍ତେବାସିନମନୁଶାସ୍ତି । ସତ୍ୟଂ ବଦ ଧର୍ମଂ ଚର । ସ୍ୱାଧ୍ୟାୟାନ୍ମା ପ୍ରମଦଃ । ଆଚାର୍ଯ୍ୟାୟ ପ୍ରିୟଂ ଧନମାହୃତ୍ୟ ପ୍ରଜାତନ୍ତୁଂ ମା ବ୍ୟବଚ୍ଛେତ୍ସୀଃ । ସତ୍ୟାନ୍ନ ପ୍ରମଦିତବ୍ୟଂ । ଧର୍ମାନ୍ନ ପ୍ରମଦିତବ୍ୟଂ । କୁଶଲାନ୍ନ ପ୍ରମଦିତବ୍ୟଂ । ଭୂତ୍ୟୈ ନ ପ୍ରମଦିତବ୍ୟଂ । ସ୍ୱାଧ୍ୟାୟପ୍ରବଚନାଭ୍ୟାଂ ନ ପ୍ରମଦିତବ୍ୟଂ । ଦେବପିତୃକାର୍ଯ୍ୟାଭ୍ୟାଂ ନ ପ୍ରମଦିତବ୍ୟଂ ।

ମାତୃଦେବୋ ଭବ । ପିତୃଦେବୋ ଭବ ଆଚାର୍ଯ୍ୟଦେବୋ ଭବ ଅତିଥିଦେବୋ ଭବ । ଯାନି ଅନବଦ୍ୟାନି କର୍ମାଣି, ତାନି ସେବିତବ୍ୟାନି ନୋ ଇତରାଣି । ଯାନି ଅସ୍ମାକଂ ସୁଚରିତାନି, ତାନି ତ୍ୱୟା ଉପାସ୍ୟାନି । ନୋ ଇତରାଣି ।"

Digitized by srujan ka@gmail.com

ଅର୍ଥାତ୍—ଆଚାର୍ଯ୍ୟ ଶିଷ୍ୟକୁ ବେଦ ଭଲଭାବରେ ଅଧ୍ୟୟନ କରାଇ ସମାବର୍ତ୍ତନ-ସଂସ୍କାର ସମୟରେ ଗୃହସ୍ଥାଶ୍ରମରେ ପ୍ରବେଶ କରି ଗୃହସ୍ଥ-ଧର୍ମର ପାଳନ କରିବାକୁ ଶିକ୍ଷା ଦେଉଛନ୍ତି—"ହେ ପୁତ୍ର ! ତୁମେ ସର୍ବଦା ସତ କଥା କହିବ; ବିପଦ ପଡ଼ିଲେ ମଧ୍ୟ କଦାପି ମିଥ୍ୟାର ଆଶ୍ରୟ ନେବ ନାହିଁ । ନିଜ ବର୍ଣ୍ଣ-ଆଶ୍ରମର ଅନୁକୂଳ ଶାସ୍ତ୍ରସମ୍ମତ ଧର୍ମକୁ ବା କର୍ତ୍ତବ୍ୟ କର୍ମକୁ ଅନୁଷ୍ଠାନ କରିବ । ବେଦ-ଅଧ୍ୟୟନ, ସନ୍ଧ୍ୟାବନ୍ଦନ, ଗାୟତ୍ରୀଜପ ଏବଂ ଭଗବନ୍ନାମ-ଗୁଣ-କୀର୍ତ୍ତନ ଆଦି ନିତ୍ୟକର୍ମ ସବୁକୁ ଅନାଦର କରିବ ନାହିଁ ବା ଆଳସ୍ୟବଶତଃ ତ୍ୟାଗ କରିବ ନାହିଁ । ଗୁରୁ-ଦକ୍ଷିଣା-ପାଇଁ ଗୁରୁଙ୍କ ରୁଚି ଅନୁସାରେ ଧନ ଆଣି ପ୍ରେମପୂର୍ବକ ଦେବ ଏବଂ ଗୁରୁଙ୍କ ଆଜ୍ଞା ନେଇ ଗୃହସ୍ଥାଶ୍ରମରେ ପ୍ରବେଶ କରି ସ୍ୱଧର୍ମର ପାଳନ କର ଏବଂ ସନ୍ତାନ-ପରମ୍ପରାକୁ ସୁରକ୍ଷିତ ରଖ । ଅର୍ଥାତ୍, ଶାସ୍ତ୍ରର ଅନୁସାରେ ବିବାହିତ ଧର୍ମପତ୍ନୀ ସହିତ ଋତୁକାଳରେ ନିୟମିତ ସହବାସ କରି ସନ୍ତାନୋତ୍ପତ୍ତିର କାର୍ଯ୍ୟ ଅନାସକ୍ତିପୂର୍ବକ କରିବ । ସତ୍ୟ ପଥରୁ କଦାପି ବିଚଳିତ ହେବ ନାହିଁ । ଧର୍ମ ବା କର୍ତ୍ତବ୍ୟ ପଥରୁ କଦାପି ବିଚଳିତ ହେବ ନାହିଁ । ଶୁଭକର୍ମ ଯଥାଯୋଗ୍ୟ ସମ୍ପାଦନ କରିବ । ଧନସମ୍ପତ୍ତି ବୃଦ୍ଧି ପାଇଁ ଯଥାବିଧି ବିହିତ କର୍ମ ଅନୁଷ୍ଠାନ କରିବ । ଅଧ୍ୟୟନ ଏବଂ ଅଧ୍ୟାପନପାଇଁ ଯେଉଁ ମୁଖ୍ୟ ନିୟମମାନ ଅଛି, ସେସବୁକୁ ଅବହେଳା ବା ତ୍ୟାଗ କରିବ ନାହିଁ । ଯଜ୍ଞାଦି ଅନୁଷ୍ଠାନରୂପ ଦେବକାର୍ଯ୍ୟ ଏବଂ ଶ୍ରାଦ୍ଧତର୍ପଣ ଆଦି ପିତୃ କାର୍ଯ୍ୟ ସମ୍ପାଦନରେ ଆଳସ୍ୟ ବା ଅବହେଳା ପ୍ରକାଶ କରିବ ନାହିଁ ।

ମାତାଙ୍କୁ ଦେବତାତୁଲ୍ୟ ଜ୍ଞାନ କର, ପିତାଙ୍କୁ ଦେବତାତୁଲ୍ୟ ଜ୍ଞାନ କର, ଗୁରୁଦେବ ବା ଶିକ୍ଷକଙ୍କୁ ଦେବତାତୁଲ୍ୟ ଜ୍ଞାନ କର

Digitized by srujan ka@gmail.com

ଏବଂ ଅତିଥିଙ୍କୁ ଦେବତା ତୁଲ୍ୟ ଜ୍ଞାନ କର । ମାତା, ପିତା, ଗୁରୁ ଏବଂ ଅତିଥି ଏ ସବୁଙ୍କୁ ଈଶ୍ୱରଙ୍କ ପ୍ରତିମୂର୍ତ୍ତି ବୋଲି ଜ୍ଞାନ କରି ଶ୍ରଦ୍ଧା ଏବଂ ଭକ୍ତିପୂର୍ବକ ସେମାନଙ୍କର ଆଜ୍ଞା ପାଳନ କରିବ ଏବଂ ସେବା କରିବ । ସେମାନଙ୍କ ସହିତ ସର୍ବଦା ବିନୟପୂର୍ଣ୍ଣ ବ୍ୟବହାର କରି ସେମାନଙ୍କୁ ପ୍ରସନ୍ନ ରଖିବ । ସଂସାରରେ ଯେଉଁ ଯେଉଁ କର୍ମ ନିର୍ଦ୍ଦୋଷ ବା ଦୋଷଶୂନ୍ୟ ବୋଲି ସ୍ୱୀକୃତ, ସେହି ସବୁ କର୍ମ କରିବ, ଏସବୁ ଛଡ଼ା ଦୋଷଯୁକ୍ତ ବା ନିଷିଦ୍ଧ କର୍ମ କଦାପି କରିବ ନାହିଁ । ଶାସ୍ତ୍ର ଏବଂ ଶିଷ୍ଟ ପୁରୁଷଙ୍କଦ୍ୱାରା ଅନୁମୋଦିତ ଆଚରଣ ସର୍ବଦା ଅନୁକରଣ କରିବ ।

ଭାରତୀୟ ସଂସ୍କୃତିର ଉପଯୁକ୍ତ କର୍ମଯୋଗର ବାଣୀ ଯୁଗେ ଯୁଗେ ମାନବସମାଜକୁ ଉଦ୍‌ବୁଦ୍ଧ କରୁଅଛି ଏବଂ କରୁଥିବ ।

( ୪ )

## ଭାରତୀୟ ସଂସ୍କୃତି ତ୍ୟାଗ ଏବଂ ସମାଜବାଦର ସଂସ୍କୃତି

ଆମ୍ଭମାନଙ୍କର ଧାରଣା ଯେ ସମାଜବାଦ ଊନବିଂଶ ଶତାବ୍ଦୀରେ ଇଉରୋପରେ ଜନ୍ମଗ୍ରହଣ କରିଥିଲା ଏବଂ Karl Marxଙ୍କ Das capital ପୁସ୍ତକରେ ଜନ୍ମଲାଭ କରିଥିଲା; କିନ୍ତୁ ବେଦ ଓ ଉପନିଷଦ୍ ବିଶ୍ଳେଷଣ କଲେ ଦେଖାଯିବ ଯେ ଆଜକୁ ପ୍ରାୟ ୨୫୦୦ ବର୍ଷ ପୂର୍ବେ ଯଜୁର୍ବେଦ ଏବଂ ଈଶାବାସ୍ୟ ଉପନିଷଦ୍ ସମୟରେ ସମାଜବାଦନୀତି ଭାରତରେ ଜନ୍ମଲାଭ କରିଥିଲା । ଯଜୁର୍ବେଦର ୪୦ଶ ଅଧ୍ୟାୟର ପ୍ରଥମ ସୂକ୍ତ ଏବଂ ଈଶାବାସ୍ୟ ଉପନିଷଦ୍‌ର ପ୍ରଥମ ସୂକ୍ତ ସମାଜବାଦ ଏବଂ ତ୍ୟାଗର ସନ୍ଦେଶ ଉଦ୍‌ଘୋଷିତ କରୁଅଛି । ସେ ସୂକ୍ତଟି ହେଉଛି ଏହିପରି—

Digitized by srujan ka@gmail.com

ଈଶା ବାସ୍ୟ ମିଦଂ ସର୍ବଂ ଯତ୍‌କିଞ୍ଚ ଜଗତ୍ୟାଂ ଜଗତ୍ ।
ତେନ ତ୍ୟକ୍ତେନ ଭୁଞ୍ଜିଥା ମା ଗୃଧଃ କସ୍ୟ ସ୍ୱିଦ୍ ଧନମ୍ ॥

ଏଠାରେ ପ୍ରଥମେ କସ୍ୟ ସ୍ୱିଦ୍ ଧନଂ – ଏ ଶ୍ଳୋକାଂଶର ଅର୍ଥ ବିଶ୍ଳେଷଣ କରାଯାଉ । 'ସ୍ୱିତ୍' ପଦ ଅବ୍ୟୟ ପଦ ଏବଂ ଦ୍ୱ୍ୟର୍ଥକ ଯଥା—"ସ୍ୱିତ୍ ପ୍ରଶ୍ନେ ବିତର୍କେ ଚ" । 'ସ୍ୱିତ୍'କୁ ପ୍ରଶ୍ନବାଚକ ଅର୍ଥରେ ନେଲେ "କସ୍ୟ ସ୍ୱିଦ୍ ଧନଂ"—ଏ ଶ୍ଳୋକାଂଶର ଅର୍ଥ ହେବ—ଧନ କାହାର ? ବା To whom does property belong ? 'ସ୍ୱିତ୍' ପଦକୁ 'ବିତର୍କ' ଅର୍ଥରେ ଗ୍ରହଣ କଲେ ଏବଂ 'କ' ଶବ୍ଦକୁ ବେଦାନୁମୋଦିତ "ପ୍ରଜାପତି"ଙ୍କ ଅର୍ଥରେ (ପ୍ରଜାପତି ର୍ବୈ କଃ) ଗ୍ରହଣ କଲେ, କସ୍ୟ ସ୍ୱିଦ୍ ଧନଂ"—ଏ ଶ୍ଳୋକାଂଶର ଅର୍ଥ ହେବ ଏହିପରି—ଧନଂ (property) ସ୍ୱିତ୍ (ନିଶ୍ଚିତ ଭାବେନ ବା (Conclusively) , କସ୍ୟ (ପ୍ରଜାପତିଙ୍କର) ପ୍ରଜାପତି = ପ୍ରଜାଙ୍କୁ ପାଳନ କରନ୍ତି ଯେ ଅର୍ଥାତ୍ Government ବା State ଏଥିରୁ ଅର୍ଥ ଆସୁଛି ଯେ ଧନ Govt.ଙ୍କର ବା Stateର ଅର୍ଥାତ୍ property belongs to Govt. or the State ଧନ ମୋର ବା ତମର ବୋଲି କହିବାର କିଛି ମାନେ ନାହିଁ । ଆଇନଦୃଷ୍ଟିରୁ ଦେଖିବାକୁ ଗଲେ ଯଦି ମୁଁ ବା କେହି ଗୃହସ୍ୱାମୀ ଉତ୍ତରାଧିକାରୀ ବିନା (heirless) ପ୍ରାଣତ୍ୟାଗ କରନ୍ତି, ତେବେ ମୋର ବା ସେ ଗୃହସ୍ୱାମୀର property (ସମ୍ପତ୍ତି) ସରକାରଙ୍କଠାରେ ବାଜ୍ୟାପ୍ତି ହେବ (will eschert to the State) ଏହା ହିଁ ସମାଜବାଦ-ମତର ପ୍ରଥମ ସୂଚନା ।

"ମା ଗୃଧଃ"—ଏ ଶ୍ଳୋକାଂଶର ଅର୍ଥ ହେଉଛି—ଯେହେତୁ ଧନ ତୁମର ବା ମୋର ନୁହେଁ, ଅଯଥା ଧନପ୍ରାପ୍ତି ପାଇଁ ବା ଅସତ୍

Digitized by srujan ka@gmail.com

ଉପାୟରେ ଧନ ପ୍ରାପ୍ତି ପାଇଁ ଆସକ୍ତ ହୁଅ ନାହିଁ । ପରର ଧନ ପ୍ରତି ଲୋଭାସକ୍ତ ହୁଅ ନାହିଁ । ଏହି ଉପଦେଶ ମାନି ଚାଲିଲେ ସମାଜରେ ଦୁର୍ନୀତି (corruption) ରହିବ ନାହିଁ ।

"ତେନ ତ୍ୟକ୍ତେନ ଭୁଞ୍ଜୀଥାଃ"—ଏ ଶ୍ଲୋକାଂଶର ଅର୍ଥ ହେଉଛି ଯେ ସଂସାରରେ ଜୀବନ ନିର୍ବାହ କରୁଥିବା ମନୁଷ୍ୟ ହାତକୁ ଧନ ନିଶ୍ଚୟ ଆସିବ । ସେଥିରୁ ନିଜର ଓ ପରିବାରର ଭରଣ-ପୋଷଣପାଇଁ ଯାହା ଆବଶ୍ୟକ ତାହା ନିଜେ ଭୋଗ କରି ବାକି ସମ୍ପତ୍ତି ବା ଧନର ସଦ୍‌ବ୍ୟବହାର କରିବାକୁ ହେବ, ତ୍ୟାଗଦ୍ୱାରା ଅର୍ଥାତ୍ ସାମାଜିକ କଲ୍ୟାଣପାଇଁ ସେଥିରୁ ବିନିଯୋଗ କରିବାଦ୍ୱାରା । ପ୍ରାଚୀନ ଭାରତରେ ତ୍ୟାଗର ବହୁ ଉଜ୍ଜ୍ୱଳ ଦୃଷ୍ଟାନ୍ତ ରହିଛି । ରାମ-ଚନ୍ଦ୍ର, କର୍ଣ୍ଣ, ହରିଶ୍ଚନ୍ଦ୍ର, ରଘୁ ପ୍ରଭୃତି ଆଦର୍ଶ ମନୀଷୀମାନେ ଅସୀମ ତ୍ୟାଗର ଦୃଷ୍ଟାନ୍ତ ଦେଖାଇ ଭାରତୀୟ ସଂସ୍କୃତିର ମୁଖକୁ ସମୁଜ୍ଜ୍ୱଳ କରିଯାଇଅଛନ୍ତି । ଭାରତୀୟ ସଂସ୍କୃତିର ନିର୍ଦ୍ଦେଶ ହେଉଛି ଯେ ସମସ୍ତେ ନିଜ ସ୍ଥିତିରେ ସନ୍ତୁଷ୍ଟ ରହି ସମାଜ କଲ୍ୟାଣପାଇଁ ତ୍ୟାଗ-ମୂଳକ କାର୍ଯ୍ୟମାନଙ୍କର ଅନୁଷ୍ଠାନ କରିବେ । ଶଙ୍କରାଚାର୍ଯ୍ୟଙ୍କ ମୋହମୁଦ୍ଗରର ଗୋଟିଏ ଶ୍ଲୋକ ଏଠାରେ ସ୍ମରଣୀୟ—

ମୂଢ଼ ! ଜହୀହି ଧନାଗମ ତୃଷ୍ଣାଂ
କୁରୁ, ତନୁବୁଦ୍ଧେ ! ମନସି ବିତୃଷ୍ଣାଂ
ଯଲ୍ଲଭସେ ନିଜ କର୍ମୋପାତ୍ତଂ
ବିତ୍ତଂ ତେନ ବିନୋଦୟ ଚିତ୍ତଂ ॥

———

Digitized by srujan ka@gmail.com



# ମନୁ

ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ଏମ୍‌. ଏ.

ମନୁ ଭାରତବର୍ଷର ସର୍ବଶ୍ରେଷ୍ଠ ପ୍ରାତଃସ୍ମରଣୀୟ ମହାପୁରୁଷ ଅଟନ୍ତି । ବେଦରେ ମନୁଙ୍କୁ ଅଖିଳମାନବ ଜାତିର ପିତା ବୋଲି କୁହାଯାଇଛି । ସଂସାରରେ ପ୍ରଥମ ଯଜ୍ଞକର୍ତ୍ତା ମନୁ ଥିଲେ । ମନୁ ବଶିଷ୍ଠଙ୍କୁ ବ୍ରହ୍ମବିଦ୍ୟା ଶିଖାଇଥିଲେ । ତାହାର ଫଳରେ ସେହିଁ ବଶିଷ୍ଠ ବ୍ରହ୍ମନିଷ୍ଠ ହୋଇଥିଲେ । ମନୁ ଭାରତବର୍ଷର ସର୍ବଶ୍ରେଷ୍ଠ ସଂହିତାକାର ଅଟନ୍ତି । ତାଙ୍କ ସଂହିତା ପରି ପୃଥିବୀରେ ଦ୍ୱିତୀୟ

Digitized by srujan ka@gmail.com

ସ୍ମୃତିଶାସ୍ତ୍ର ଆଜି କେତେ ଲେଖିନାହାନ୍ତି । ତାଙ୍କ ସଂହିତା ଭାରତ-ବର୍ଷର ସର୍ବଜନ ଗୃହୀତ ଅଟେ ।

ମନୁ ସଂହିତାରେ ବାରଟି ଅଧ୍ୟାୟରେ ଅଢ଼େଇ ହଜାରରୁ କିଛି ଅଧିକ ଶ୍ଲୋକ ଅଛି । ମନୁସଂହିତାରେ ସତ୍ୟଯୁଗର ଧର୍ମବ୍ୟକ୍ତ ହୋଇଅଛି ।

ବେଦ ହେଉଛି ଭାରତୀୟ ସଂସ୍କୃତିର ଆଧ୍ୟାତ୍ମିକ ମଞ୍ଜି ଓ ଉପନିଷଦରେ ଶୀର୍ଷତମ ଜ୍ଞାନ ଓ ଅନୁଭୂତିର ପ୍ରକାଶ ପାଇଅଛି । କିନ୍ତୁ ବ୍ୟକ୍ତିଗତ ଓ ଗୋଷ୍ଠୀଗତ ଜୀବନରେ ସାମାଜିକ, ନୈତିକ ଓ ରାଜନୈତିକ ଦୃଷ୍ଟି ଦିଗରୁ ଆଦର୍ଶ ନିୟମାବଳୀ ମନୁସଂହିତାରେ ଧାରବାହିକଭାବେ ଲିପିବଦ୍ଧ ଅଛି । ଏହା ମାନବ ସମାଜପାଇଁ ସମଗ୍ର ବିଶ୍ୱରେ ସର୍ବ ପ୍ରଥମ ସଂହିତା ବା ଯାହା ଆଜିକାଲି ଆଇନ ନାମରେ ଅଭିହିତ ।

ସୁପ୍ରସିଦ୍ଧ ମାର୍କିନ ଦେଶୀୟ ଲେଖକ ଥୋରେ ଏକ ପ୍ରସଙ୍ଗରେ ଲେଖିଛନ୍ତି ଯେ "ମନୁ ସ୍ମୃତି" ସର୍ବପ୍ରଧାନ ପ୍ରାମାଣିକ ଗ୍ରନ୍ଥ । ଏହା ସୃଷ୍ଟିର ଆଦ୍ୟକାଳରୁ ବ୍ରହ୍ମାଙ୍କ ଦାୟାଦ ମନୁଙ୍କଦ୍ୱାରା ପ୍ରବର୍ତ୍ତିତ ହୋଇଥିଲା ବୋଲି ହିନ୍ଦୁମାନେ ବିଶ୍ୱାସ କରନ୍ତି । ମୋ ଜାଣିବାରେ ଏହା ଅପେକ୍ଷା ଅଧିକ ମହତ୍ତ୍ୱପୂର୍ଣ୍ଣ କୌଣସି ପ୍ରାଚୀନ ଗ୍ରନ୍ଥ ନାହିଁ । ଜଣାପଡ଼େ କୌଣସି ପ୍ରାଚ୍ୟ ଗିରିଶୃଙ୍ଗରୁ ସୃଷ୍ଟିର ପ୍ରାରମ୍ଭିକ ପ୍ରଶାନ୍ତିରେ ଏହା ଉଚ୍ଚାରିତ ହୋଇଥିଲା । ପୂର୍ବଘାଟ ଓ ପଶ୍ଚିମଘାଟ ପର୍ବତଶ୍ରେଣୀର ମାଳଭୂମିରୁ ଏହି ଗ୍ରନ୍ଥ ପଢ଼ି ପଢ଼ି ଉନ୍ନୀତ ହୋଇ ଯିବ । ମରୁଭୂମିର ପବନପରି ଏହାର ଛନ୍ଦ । ଗଙ୍ଗାର ଜୁଆରପରି ଏହାର ଗତି ଓ ହିମାଳୟ ପର୍ବତପରି ସମାଲୋଚନାର ସୀମାତୀତ । ଏଥିରୁ ଯେଉଁ ଦୁର୍ଲ୍ଲଭ ଜ୍ଞାନର ଉତ୍ସ ବାହାରେ ତାହା ଆମକୁ ଅବାକ୍

Digitized by srujan ka@gmail.com

କରିଦିଏ । ଏଥିରେ ବିଜ୍ଞାନସମ୍ମତ ସତ୍ୟ ନିହିତ ଅଛି । ଏଥିରେ ଭାରତୀୟ ଦାର୍ଶନିକ ଚିନ୍ତାଧାରା ସୁସ୍ପଷ୍ଟ ହୋଇଅଛି । ମନୁସଂହିତାରେ ଯେଉଁ ରାଜନୀତି, ଧର୍ମନୀତି, ସମାଜ ନୀତି ଓ ଗାର୍ହସ୍ଥ୍ୟ ନୀତି ବର୍ଣ୍ଣିତ ହୋଇଅଛି, ତାହାର ଆଦର୍ଶରେ ଆଜିକାଲିର ଦାର୍ଶନିକମାନେ ନୂତନ ତଥ୍ୟ ପ୍ରକାଶ କରୁଅଛନ୍ତି ।

**ମନୁସଂହିତାରୁ କେତେକ ଉପଦେଶ ଏଠାରେ ଦିଆଗଲା ।**

ପରମାୟୁ, ବିଦ୍ୟା, ବୁଦ୍ଧି, ଧନ, ଯଶ ରୂପ, ବଳ, ଆରୋଗ୍ୟ, ସତ୍‌ସ୍ୱଭାବ, ଗୁଣବତୀ ଭାର୍ଯ୍ୟା, ଗୁଣବାନ ପୁତ୍ର ଏସବୁ ପରମେଶ୍ୱରଙ୍କର ବିଶେଷ ଦାନ ଓ ମନୁଷ୍ୟ ବହୁ ତପସ୍ୟା ଫଳରେ ଏହା ଲାଭ କରିଥାଏ । ଜ୍ଞାନୀଲୋକମାନଙ୍କର ଉଚିତ ଯେ, ଧର୍ମ ପାଳନକରି ଯେତେ ଦୁଃଖ କଷ୍ଟ ପାଇଲେ ମଧ୍ୟ ଅଧର୍ମର ଆଶ୍ରୟ ନେବେ ନାହିଁ ।

ଅଧାର୍ମିକ ପ୍ରଥମେ ଧନରେ ବଢ଼ିଯାଏ । ଶତ୍ରୁ ଜୟ କରେ, ଧନୀ ହୁଏ, ନିଜର ଭଲ ଦେଖେ, ଶେଷରେ ସେ ସମୂଳେ ବିନାଶ ବା ନଷ୍ଟ ହୁଏ ।

ଏପରି ସତ୍ୟ କହିବ ଯାହା ଅନ୍ୟର ପ୍ରିୟ ହେବ । ମାତ୍ର ଅପ୍ରିୟ ସତ୍ୟ କହିବ ନାହିଁ । ମିଛକଥା କହି ଖୁସାମତ କରିବ ନାହିଁ । ଏହା ସନାତନ ଧର୍ମ ଅଟେ ।

ଯେଉଁଠାରେ ବାସକଲେ ଶିକ୍ଷା, ସ୍ୱାସ୍ଥ୍ୟ, ସଭ୍ୟତା ଓ ସମ୍ମାନ ଲାଭ ହେବାର ସୁବିଧା ନଥିବ—ସେ ସ୍ଥାନରେ ବାସ କରିବା ଉଚିତ ନୁହେଁ ।

କ୍ରୋଧୀ, ନାସ୍ତିକ, ସ୍ତ୍ରୀଜାତି, ଲମ୍ପଟ, ଦସ୍ୟୁ, ଆଳସ୍ୟପରାୟଣ ଓ ଶତ୍ରୁ ଏମାନଙ୍କୁ ଗୋପନୀୟ ବିଷୟ କହିବ ନାହିଁ ।

Digitized by srujan ka@gmail.com

ଅତ୍ୟନ୍ତ ଉତ୍ପୀଡ଼ିତ ହେଲେ ସୁଦ୍ଧା କାହାର ମରମକଥା, କାହାର ଅନିଷ୍ଟ କାରକ କଥା ଓ ଯେଉଁ କଥାରେ ଭୟଜାତ ହେବ ସେପରି କଥା କହିବ ନାହିଁ ।

ଯେଉଁ ପରିବାରରେ ନାରୀମାନଙ୍କର ସମ୍ୟକ୍ ସମାଦର ଅଛି ସେଠାରେ ଦେବତା ପ୍ରସନ୍ନ ରହନ୍ତି । ଆଉ ଯେଉଁ ପରିବାରରେ ସ୍ତ୍ରୀମାନେ କଷ୍ଟପାଇ ଶୋକ କରନ୍ତି, ସେ ପରିବାର ଶୀଘ୍ର ନଷ୍ଟ ହୁଏ । ଆଉ ଯେଉଁ ପରିବାରରେ ସେମାନଙ୍କର କୌଣସି ଦୁଃଖ ନାହିଁ, ସେହି ପରିବାରରେ ସର୍ବଦା ଶ୍ରୀବୃଦ୍ଧି ହୁଏ ।

ଯେଉଁ ଗୃହରେ ସ୍ତ୍ରୀ ଓ ସ୍ୱାମୀ ଉଭୟେ ପରସ୍ପର ପ୍ରତି ସନ୍ତୁଷ୍ଟ, ସେହି ଗୃହରେ ମଙ୍ଗଳ ହୁଏ ।

ନବ-ବିବାହିତା ସ୍ତ୍ରୀ, କୁମାରୀ, ରୋଗୀ ଏବଂ ଗର୍ଭବତୀ ସ୍ତ୍ରୀ ଗୃହକୁ ଆସିଲେ ଏମାନଙ୍କୁ ସମସ୍ତଙ୍କ ଆଗରୁ ଖୁଆଇବ ।

ଜୀବିକା ଅର୍ଜ୍ଜନ ପାଇଁ ଅତ୍ୟନ୍ତ କଷ୍ଟହେଲେ ସୁଦ୍ଧା ଅସତ ମାର୍ଗରେ ଧନ ଉପାର୍ଜ୍ଜନ କରିବ ନାହିଁ । ଯେ ଅସତ ଉପାୟରେ ଧନ ଉପାର୍ଜ୍ଜନ କରେ, ସେ କଦାପି ସେହି ଧନରେ ସୁଖ ପାଏ ନାହିଁ ।

ଅଧାର୍ମିକ ବା ପାପୀ ତାହାର ଜୀବନ କାଳରେ ଯଦି ପାପଫଳ ଭୋଗ ନକରେ, ତାହାର ମୃତ୍ୟୁପରେ ତାହାର ପୁଅ, ନାତି ମଧ୍ୟ ତାହାର ପାପର ଫଳ ନିଶ୍ଚୟ ଭୋଗ କରିବେ ।

ପିତା, ମାତା, ଭାଇ, ଭଉଣୀ, ସ୍ତ୍ରୀ, କନ୍ୟା, ପୁତ୍ର, ପୁତ୍ରବଧୂ ଓ ଭୃତ୍ୟବର୍ଗଙ୍କ ସଙ୍ଗେ କଦାପି ବିବାଦ କରିବ ନାହିଁ । ଭାର୍ଯ୍ୟା ଓ ପୁଅ ଆପଣାର ଶରୀର ପରି । ଜ୍ୟେଷ୍ଠଭ୍ରାତା ପିତା ସମାନ । ଏମାନଙ୍କ ସହିତ ବିବାଦ ଅନୁଚିତ ।

କୌଣସି ଜୀବହତ୍ୟାରେ ଅନୁମତିଦାତା, ହନନକାରୀ, ହତ ଜୀବର ଅଂଗ କାଟି ମାଂସ ପୃଥକକାରୀ, କ୍ରେତା, ବିକ୍ରେତା,

Digitized by srujan ka@gmail.com

ରନ୍ଧନକାରୀ, ପରିବେଷଣକାରୀ ଓ ଭକ୍ଷକ—ଏ ଆଠଜଣ ଘାତକ ଅଟନ୍ତି ।

ନ ପଚାରିଲେ କାହାକୁ କିଛି କହିବ ନାହିଁ । ମାତା, ଭଗିନୀ, ବା କନ୍ୟା ସହିତ ଏକାନ୍ତ (ନିର୍ଜନ) ସ୍ଥାନରେ ବସିବ ନାହିଁ । କାରଣ ବଳବାନ ଇନ୍ଦ୍ରିୟ ସକଳ ବିଦ୍ୱାନ ପୁରୁଷଙ୍କୁ ମଧ୍ୟ ଓଟାରି ପାରେ ।

ଯେ ପରର ଭଲକରେ ଈଶ୍ୱର ତା'ର ଭଲ କରନ୍ତି ।

ଅତି ପୁରୁଣା ଘରେ, ଭାଇଭୁକା ଥିବା ଘରେ, ନିଚ୍ଛାଟିଆ ଘରେ, ବାହାର ଘରେ ଏକାକୀ ଶୋଇବ ନାହିଁ ।

ଅତି ସକାଳେ, ସନ୍ଧ୍ୟାରେ, ଦୁଇପ୍ରହର ସମୟରେ, ବର୍ଷା ଉପକ୍ରମ ସମୟରେ ଓ ଅତି ଦରିଦ୍ର ସହିତରେ ଏକାକୀ କେଉଁଠାକୁ ଯିବ ନାହିଁ ।

ଏକୁଟିଆ ହୋଇ ଦୂର ବାଟକୁ ଯିବ ନାହିଁ ।

ରାତିରେ ଗଲାବେଳେ ଗଛମୂଳ ଦେଇ ଯିବ ନାହିଁ ।

ବାଛୁରୀ ବନ୍ଧାହୋଇଥିବା ଦଉଡ଼ି ଡେଇଁ ଯିବନାହିଁ ।

ଉଦୟ ହେଉଥିବା ସୂର୍ଯ୍ୟକିରଣ, ଚିତାର ଧୂମ, ଭଗ୍ନ ଆସନ ବର୍ଜନ କରିବ ।

ଦାନ୍ତରେ ନଖ ଛିଣ୍ଡାଇବ ନାହିଁ । ଭୋଜନପରେ, ମଧ୍ୟରାତ୍ରରେ, ରୋଗରେ, ଅଜ୍ଞାତ ଜଳାଶୟରେ, ଗଭୀର ଜଳରେ ସ୍ନାନ କରିବ ନାହିଁ ।

ଉଦୟ କିମ୍ବା ଅସ୍ତ ହେଉଥିବା ସୂର୍ଯ୍ୟଙ୍କୁ, ଆକାଶରେ ମଧ୍ୟଗତ ସୂର୍ଯ୍ୟଙ୍କୁ, ସୂର୍ଯ୍ୟ ପରାଗ ଓ ଜଳରେ ସୂର୍ଯ୍ୟର ପ୍ରତିବିମ୍ବ ଦେଖିବ ନାହିଁ । ଏଥିରେ ଦୃଷ୍ଟିଶକ୍ତି ହ୍ରାସ ହୁଏ । ଅପରର ବ୍ୟବହୃତ ବସ୍ତ୍ର, ଅଳଙ୍କାର ଓ ଯୋତା ବ୍ୟବହାର କରିବ ନାହିଁ ।

Digitized by srujan ka@gmail.com

ଅତି ଭୋଜନରେ ଅସୁଖ ହୁଏ । ସୁଖ ହୁଏ ନାହିଁ । ଆୟୁଷ କମିଯାଏ ।

ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟପରାଗରେ ଖାଇବ ନାହିଁ । ସୂର୍ଯ୍ୟର ଉଦୟ ଓ ଅସ୍ତକାଳରେ ଖାଇବ ନାହିଁ ।

ସକାଳେ ଗରିଷ୍ଠ ଭୋଜନ କରିଥିଲେ ସନ୍ଧ୍ୟାରେ ଖାଇବ ନାହିଁ ।

ଭଗ୍ନ ପାତ୍ରରେ ଭୋଜନ କରିବ ନାହିଁ । ଭକ୍ଷଦ୍ରବ୍ୟ କୋଳରେ ରଖି ଖାଇବ ନାହିଁ । ଉଚ୍ଛିଷ୍ଟ ଅନ୍ନ କାହାରିକୁ ଦେବ ନାହିଁ । ଭୋଜନ ମଧ୍ୟରେ ରହି ରହି ଖାଇବ ନାହିଁ । ଗ୍ରାସ ଗ୍ରାସ କରି ଖାଇବ ନାହିଁ । ଅଇଁଠା ମୁହଁରେ କେଉଁଠାକୁ ଯିବ ନାହିଁ । ଅଞ୍ଜଳରେ ଜଳପାନ କରିବ ନାହିଁ । ଆପଣାର ରୂପ ଜଳରେ ଦେଖିବ ନାହିଁ ।

କାମାର୍ତ୍ତ ହେଲେ ସୁଦ୍ଧା ରଜସ୍ୱଳା ସ୍ତ୍ରୀ ପାଖକୁ ଯିବ ନାହିଁ ଓ ତାହା ସହିତ ଏକ ଆସନରେ ଶୋଇବ ନାହିଁ । ରଜସ୍ୱଳା ସ୍ତ୍ରୀ ସଙ୍ଗ କଲେ ପୁରୁଷର ପ୍ରଜ୍ଞା, ତେଜ, ବଳ, ଚକ୍ଷୁ ତଥା ଆୟୁ କ୍ଷୟ ହୁଏ ।

କୌଣସି ସ୍ତ୍ରୀକୁ ଉଲଗ୍ନ ଅବସ୍ଥାରେ ଦେଖିବ ନାହିଁ । ଲଙ୍ଗଳା ହୋଇ ଗାଧୋଇବ ନାହିଁ କି ଶୋଇବ ନାହିଁ ।

ନିଆଁକୁ ମୁହଁରେ ଫୁଙ୍କିବ ନାହିଁ । ପାଦଦ୍ୱୟ ଅଗ୍ନିରେ ସେକିବ ନାହିଁ । ଏକାକୀ ସ୍ୱାର୍ଥ ଚିନ୍ତା କରିବ ନାହିଁ । ଦିନବେଳାରେ ଉତ୍ତରମୁଖୀ ହୋଇ ଓ ରାତିରେ ଦକ୍ଷିଣକୁ ମୁହଁ କରି ମଳମୂତ୍ର ତ୍ୟାଗ କରିବ । ମଳ, ମୂତ୍ର, ଶ୍ଳେଷ୍ମ କିମ୍ବା ବିଷ ଜଳରେ ପକାଇବ ନାହିଁ ।

Digitized by srujan ka@gmail.com

# ଦୈନନ୍ଦିନ ଧର୍ମ—ସଞ୍ଚୟ

ଉଇ ଯେପରି ଅଳ୍ପେ ଅଳ୍ପେ ହୁଙ୍କା ତିଆରକରେ, ସେହିପରି ଦୈନନ୍ଦିନ ଜୀବନରେ ପରଲୋକର ସହାୟତାପାଇଁ ଅହିଂସାବ୍ରତ ଯଥାସାଧ୍ୟ ପାଳନ କରି, ଅର୍ଥାତ୍ କାହାରିକୁ ପୀଡ଼ା ନ ଦେଇ ଅଳ୍ପ ଅଳ୍ପ କରି ଧର୍ମ ସଞ୍ଚୟ କରିବ । ପରଲୋକରେ ସହାୟତାପାଇଁ ପିତା, ମାତା, ସ୍ତ୍ରୀ, ପୁତ୍ର ଜ୍ଞାତି କେହି ଥିବେ ନାହିଁ । କେବଳ ଧର୍ମ ହିଁ ତୁମ୍ଭର ସହାୟ ହେବ । ଜୀବ ଏକାକୀ ହିଁ ଉତ୍ପନ୍ନ ହୁଏ, ପୁଣି ଏକାକୀ ହିଁ ଲୟପ୍ରାପ୍ତ ହୁଏ । ପୁଣି ଏକାକୀ ହିଁ ନିଜର ସୁକୃତ ଦୁଷ୍କୃତର ଫଳ ଭୋଗକରେ । ବନ୍ଧୁବାନ୍ଧବମାନେ ମୃତ ଶରୀରକୁ କାଷ୍ଠ ବା ଲୋଷ୍ଟ୍ର ଖଣ୍ଡପରି ଘୃଣା ସହିତ ପରିତ୍ୟାଗ କରି ଘରକୁ ଫେରନ୍ତି । ଏକମାତ୍ର ଧର୍ମ ହିଁ ଜୀବର ଅନୁଗମନ କରେ । ଅତଏବ ପରଲୋକରେ ସହାୟକ ହେବାପାଇଁ ପ୍ରତ୍ୟେହ ଅଳ୍ପ ଅଳ୍ପ କରି ଧର୍ମ ସଞ୍ଚୟ କରିବ । କେବଳ ଧର୍ମର ସହାୟତାରେ ହିଁ ଜୀବ ଦୁସ୍ତର ନରକାଦିରୁ ରକ୍ଷା ପାଇପାରିବ ।

(ମନୁସଂହିତା—୪ର୍ଥ ଅଧ୍ୟାୟ)



Digitized by srujan ka@gmail.com



# ମହର୍ଷି ମାର୍କଣ୍ଡେୟ

ଐତିହାସିକ ଶ୍ରୀ ବ୍ରଜସୁନ୍ଦର ଦାସ

ମୁନି ମାର୍କଣ୍ଡେୟ ଅନାଦି କାଳରୁ ସିଦ୍ଧ ସାଧକ ଭାବରେ ଋଷି ମଣ୍ଡଳରେ ଅଗ୍ରଗଣ୍ୟ, ତ୍ରିକାଳଦର୍ଶୀ, ବ୍ରହ୍ମଜ୍ଞ, ମୃତ୍ୟୁଞ୍ଜୟୀ। ମାର୍କଣ୍ଡେୟଙ୍କ ସମ୍ବନ୍ଧରେ ବହୁ ପୁରାଣ ଓ ଶାସ୍ତ୍ରମାନଙ୍କରେ ଅନେକ କଥା ବର୍ଣ୍ଣିତ ହୋଇଅଛି । ବିଶେଷକରି ପଦ୍ମପୁରାଣ (ଉତ୍ତରା-କାଣ୍ଡ)ରେ ବ୍ରହ୍ମର୍ଷି ବଶିଷ୍ଠ, ରାଜା ଦିଲ୍ଲୀପଙ୍କୁ ମାର୍କଣ୍ଡେୟଙ୍କ ଜୀବନୀ ଓ ମହତ୍ତ୍ୱ ସମ୍ବନ୍ଧରେ ଅନେକ କିଛି କହିଅଛନ୍ତି ।

Digitized by srujan ka@gmail.com

ମହର୍ଷି ମାର୍କଣ୍ଡେୟ ପିତା ମର୍କଣ୍ଡୁ ଓ ମାତା ମରୁଦ୍ୱୋତିଙ୍କ ଏକମାତ୍ର ସନ୍ତାନ । ଏହି ସନ୍ତାନ ଉପଲବ୍ଧ କରିବା ପାଇଁ ମର୍କଣ୍ଡୁ କଠୋର ତପସ୍ୟା ଆଚରଣପୂର୍ବକ ଭଗବାନ ଶିବଙ୍କୁ ବିଶେଷ ଭାବରେ ସନ୍ତୁଷ୍ଟ କରିବାପାଇଁ ପ୍ରୟାସ କରିଥିଲେ । ତାଙ୍କର ଧ୍ୟାନ ଏପରି ନିବିଷ୍ଟ ଥିଲା ଯେ, ଦଳଦଳ ହୋଇ କୃଷ୍ଣସାର ମୃଗ ତାଙ୍କ ଦେହରେ ଘଷି ହେଉଥିଲେ ମଧ୍ୟ ସେ ଆଦୌ ଧ୍ୟାନଭଗ୍ନ ହେଉ ନଥିଲେ । ପ୍ରତ୍ୟହ ମୃଗମାନେ ତାଙ୍କ ସହିତ ଦେହ ଘଷୁ ଥିବାରୁ ବୋଧହୁଏ ସେ ମର୍କଣ୍ଡୁ ନାମରେ ନାମିତ ହୋଇଥିଲେ । ଏହିପରି କଠୋର ତପସ୍ୟାରେ ଅତ୍ୟଧିକ ସନ୍ତୁଷ୍ଟ ହୋଇ ଆଶୁତୋଷ ମହାଦେବ ତାହାଙ୍କୁ ଗୋଟିଏ ବର ପ୍ରଦାନ କରିଥିଲେ । ମର୍କଣ୍ଡୁ ଏକ ପୁତ୍ର ସନ୍ତାନ ପାଇଁ ବିକଳ ପ୍ରାର୍ଥନା କରିବାରୁ ମହାଦେବ ତାଙ୍କୁ "ଏକ ଅଜ୍ଞ ଦୀର୍ଘାୟୁ ପୁତ୍ର କିମ୍ବା ଜ୍ଞାନୀ ଷୋଡ଼ଷ ବର୍ଷୀୟ ଅଳ୍ପାୟୁ ପୁତ୍ର ଚାହାନ୍ତି" ବୋଲି ପଚାରିଥିଲେ । ମର୍କଣ୍ଡୁ ବାଞ୍ଛାତାର ସହ ଜ୍ଞାନୀ ଅଳ୍ପାୟୁ ପୁତ୍ର ପାଇଁ ଆଶାୟୀ ହୋଇଥିଲେ ଏବଂ ମହାଦେବ ତାଙ୍କ ଇଚ୍ଛା ପୂର୍ଣ୍ଣ ହେଉ ବୋଲି ସ୍ୱୀକାର କରିଥିଲେ ।

ଯଥା ସମୟରେ ସାଧ୍ୱୀ ପତିବ୍ରତା ମରୁଦ୍ୱୋତିଙ୍କର ଏକ ସୁନ୍ଦର କମନୀୟ ପୁତ୍ର ସନ୍ତାନ ଜାତ ହେଲା । ମର୍କଣ୍ଡୁଙ୍କ ନାମାନୁସାରେ ନବଜାତ ଶିଶୁର ନାମ ରଖାଗଲା ମାର୍କଣ୍ଡେୟ । ଶୁକ୍ଳ ପକ୍ଷର ଚନ୍ଦ୍ରପରି ମାର୍କଣ୍ଡେୟ ରୂପ, ଗୁଣରେ ସମସ୍ତଙ୍କୁ ମୁଗ୍ଧ କରି ବୟଃପ୍ରାପ୍ତ ହେବାକୁ ଲାଗିଲେ । ବାଲ୍ୟାବସ୍ଥାରୁ ସେ ଏପରି ବିଚକ୍ଷଣ, ବୁଦ୍ଧିମତ୍ତା ସମ୍ପନ୍ନ ହୋଇ ଉଠିଲେ ଯେ କିଶୋର ଅବସ୍ଥା ବେଳକୁ ସେ ଏକ ଶାସ୍ତ୍ରଜ୍ଞ ପଣ୍ଡିତ ନାମରେ ସର୍ବଜନାଦୃତ ହେଲେ । ତାଙ୍କ ଗୁଣ, ଗାରିମାରେ ପିତା ମର୍କଣ୍ଡୁ ଓ ମାତା ମରୁଦ୍ୱୋତି ଯେତିକି ଉଲ୍ଲସିତ ହେଉଥିଲେ, ଷୋଡ଼ଶ ବର୍ଷରେ

Digitized by srujan ka@gmail.com

ପୁତ୍ରର ମୃତ୍ୟୁ କଥା ଶୁଣି ଚିନ୍ତିତ ବିମର୍ଷ ହେଉଥିଲେ । ଅବଶ୍ୟ ପିତାମାତାଙ୍କ ଦୁଃଖର କାରଣ ମାର୍କଣ୍ଡେୟଙ୍କୁ ଅବିଦିତ ରହିଲା ନାହିଁ । ନିଜ ଜୀବନପ୍ରତି ସେ ଯେତେ ମୋହଗ୍ରସ୍ତ ନହେଲେ ତା' ଅପେକ୍ଷା ପିତାମାତାଙ୍କୁ ସୁଖୀ କରିବା ପାଇଁ ବିଶେଷଭାବରେ ଚିନ୍ତିତ ହୋଇ ପଡ଼ିଲେ । ଅବଶେଷରେ ମୃତ୍ୟୁଞ୍ଜୟୀ ହେବାପାଇଁ ସେ କଠୋର ବ୍ରତ ପାଳନ କରି ଶିବାରାଧନାରେ ମଗ୍ନ ହେଲେ । ଯଥା-ସମୟରେ ତାଙ୍କର ମୃତ୍ୟୁକାଳ ଉପସ୍ଥିତ ହୋଇଥିଲେ ମଧ୍ୟ ସେ ଶିବଭକ୍ତିରେ ଏପରି ତେଜସ୍ୱୀନ ହୋଇ ଉଠିଥିଲେ ଯେ ମୃତ୍ୟୁ ତାଙ୍କୁ ସ୍ପର୍ଶ କରି ପାରିଲା ନାହିଁ । ପରିଶେଷରେ ମୃତ୍ୟୁ ଦେବତା ଯମରାଜ ମାର୍କଣ୍ଡେୟଙ୍କ ଜୀବନ ନେବାପାଇଁ ଆସି ତାଙ୍କର ଗଳାରେ ଚର୍ମରଜ୍ଜୁ ବନ୍ଧନ କରିଥିଲେ; କିନ୍ତୁ ମାର୍କଣ୍ଡେୟ ଶିବଲିଙ୍ଗକୁ ଆକୁଳ ବିକଳରେ କୁଣ୍ଢାଇ ଧରି ଶିବ, ଶିବ ବୋଲି ଚିତ୍କାର କଲେ । ଯମରାଜ ଅଦମିକାରେ ଅନ୍ଧହୋଇ ଚର୍ମରଜ୍ଜୁ ଆକର୍ଷଣ ପୂର୍ବକ ଶିବ ତଥା ତାଙ୍କର ଭକ୍ତମାନଙ୍କ ପ୍ରତି ଅତି ଘୃଣାବ୍ୟଞ୍ଜକ ଭାଷା ପ୍ରୟୋଗ କଲେ । ତାଙ୍କ ତାଚ୍ଛଲ୍ୟପୂର୍ଣ୍ଣ ବାକ୍ୟମାନ ଶୁଣି ଦେବ ଦେବ ମହାଦେବ ପ୍ରଚଣ୍ଡ ମୂର୍ତ୍ତି ଧାରଣ କରି ଉକ୍ତ ଶିବଲିଙ୍ଗରୁ ଆବିର୍ଭୂତ ହୋଇ ଯମରାଜଙ୍କୁ ଉପଯୁକ୍ତ ଶାସ୍ତି ପ୍ରଦାନ ପୂର୍ବକ ମାର୍କଣ୍ଡେୟଙ୍କୁ ଚିର ଅମରତ୍ୱ ପ୍ରଦାନ କଲେ । ମାର୍କଣ୍ଡେୟ ମଧ୍ୟ ଆଶୁତୋଷଙ୍କୁ ନିଜର ବିନମ୍ର ଭକ୍ତି ଓ କାତର ପ୍ରାର୍ଥନା ଦ୍ୱାରା ସନ୍ତୁଷ୍ଟ କରି ତ୍ରିକାଳଦର୍ଶୀ ବ୍ରହ୍ମଜ୍ଞ ପଣ୍ଡିତରେ ପରିଣତ ହେଲେ ।

ଏହିଭଳି ମାର୍କଣ୍ଡେୟ ଅମରତ୍ୱ ଲାଭ କରି କଳ୍ପାନ୍ତରର ମହର୍ଷି ଭାବରେ ପୁରାଣମାନଙ୍କରେ ଶ୍ରେଷ୍ଠତ୍ୱ ଅର୍ଜନ କରିଅଛନ୍ତି । ବର୍ଣ୍ଣିତ ଅଛି ଯେ ଯୁଗ ଶେଷରେ ପ୍ରଳୟ ଉପସ୍ଥିତ ହେଲେ ଭଗବାନ ବିଷ୍ଣୁ ମାର୍କଣ୍ଡେୟ ଋଷିଙ୍କ ସହ ବଟପତ୍ରରେ ଅବସ୍ଥାନ କରି ପ୍ରବଳ

Digitized by srujan ka@gmail.com

ଜଳରାଶିରେ ଭାସମାନ ଅବସ୍ଥାରେ ରହନ୍ତି । ପ୍ରଳୟ ଶେଷରେ ପୁଣି ସୃଷ୍ଟି ସର୍ଜନା ହେଲେ ମାର୍କଣ୍ଡେୟ ସ୍ୱଜ୍ଞାନ ଓ ପାଣ୍ଡିତ୍ୟ ବଳରେ ନବଯୁଗର ମୁନିଋଷିମାନଙ୍କୁ ଜ୍ଞାନାଲୋକରେ ଉଦ୍ଭାସିତ କରନ୍ତି ।

ମାର୍କଣ୍ଡେୟ କେବଳ ଜଣେ ସିଦ୍ଧ, ସାଧକ ନଥିଲେ, ସେ ଥିଲେ ଯଥାର୍ଥରେ କବି, ଦାର୍ଶନିକ ତଥା ଜଗତ୍‌ପୂଜ୍ୟ ଗୁରୁ । ତାଙ୍କ ଦ୍ୱାରା ରଚିତ ମାର୍କଣ୍ଡେୟ ପୁରାଣ, ମାର୍କଣ୍ଡେୟ ସ୍ତୋତ୍ର, ମାର୍କଣ୍ଡେୟ ସଂହିତା ଓ ମାର୍କଣ୍ଡେୟ ସ୍ମୃତି ପୁରାଣ ଜଗତରେ ଅମୂଲ୍ୟରତ୍ନ ତଥା ଆଧୁନିକ ନରନାରୀଙ୍କ ପକ୍ଷରେ ମହାନ୍ ଶିକ୍ଷଣୀୟ ଗ୍ରନ୍ଥ । 'ଦେବୀ ମହାତ୍ମ୍ୟ ପୁରାଣରେ ଜ୍ଞାନୀ କବି ମାର୍କଣ୍ଡେୟ ତାଙ୍କର ପ୍ରିୟଶିଷ୍ୟ ସୁସ୍ତିକ ଭାଗୁରିଙ୍କୁ ସୂର୍ଯ୍ୟପୁତ୍ର ସାବର୍ଣ୍ଣିଙ୍କ ସମ୍ବନ୍ଧରେ ବହୁତ ତତ୍ତ୍ୱପୂର୍ଣ୍ଣ ଜ୍ଞାନମାନ ବ୍ୟାଖ୍ୟା କରିଅଛନ୍ତି ।

## ତାଙ୍କ ବାଣୀ

ଅପ୍ରତିଷ୍ଠା ଦ୍ରବ୍ୟ ଯେହୁ କରନ୍ତି ଭୋଜନ
ମାତା ପରଷିଲେ ହୁଅନ୍ତି ଅସନ୍ତୋଷ ମନ ।
ପଶୁପ୍ରାୟେ ପାଉଥିଲେ ଯେହୁ ଖାଉଥାଇ
ଆପଣାର ଅଙ୍ଗକୁ ଯେ, ଶୌଚ ନ କରଇ ।
ପର କର୍ମ ଧର୍ମ ଦେଖି ଯେ, ପ୍ରାଣୀ ହସନ୍ତି
ସଂଗ୍ରାମରେ ପଶି ପୁଣି ପଛକୁ ଘୁଞ୍ଚନ୍ତି ।
ଦକ୍ଷିଣମୁଖ ହୋଇ ଯେ କରନ୍ତି ଭୋଜନ
ଉତ୍ତରକୁ ଶିର ଦେଇ ଶୁଅନ୍ତି ଯେ ଜନ ।
ଉଦୟାସ୍ତେ ଧର୍ମ କର୍ମେ କରେ ଯେହୁ ଶଙ୍କା
ପରେ ଅପଘାତ କରି ପାରନ୍ତି ସେ ଡଙ୍କା ।
ଦୋଷେ ଥାଇ ମିଛେ ଯେହୁ ନିୟମ କରନ୍ତି
ସଭାରେ ବସି ଯେମାନେ ସପକ୍ଷ ହୁଅନ୍ତି ।

Digitized by srujan ka@gmail.com

ମୂଲଆ ମୂଲରେ ଘୃଣା କରନ୍ତି ଯେ ପ୍ରାଣୀ
କାନ୍ଧାରେ କାଢ଼ଇ ଯେତୁ ସାମାନ୍ୟ ଗଉଣୀ ।
କୁଟୁମ୍ବଙ୍କୁ ନ ପୋଷି ଯେ ଆପେ ହୋଇ ସୁଖୀ
ଅର୍ଜି ହୁଅନ୍ତି ଯେ ପରସ୍ତ୍ରିଙ୍କ ଧନ ଦେଖି ।
ବ୍ରାହ୍ମଣ ପଣ୍ଡିତେ ଦେବେ ହସାଇ ଏ ଦାନ
ଭୋକ ଶୋଷୀ ଦେଖି ଭୁଞ୍ଜାଇଣଥିବେ ଅନ୍ନ ।
ଜନ୍ତୁଠାରେ ଦୟା କରଥିବେ ଅନୁବ୍ରତେ
ସରଳୁ ଯେ, ହିଂସାଭାବ ନଧରିବେ ଚିତ୍ତେ ।
ବିଧବା ବ୍ରାହ୍ମଣୀ ହରେ ଯେତୁ ଜନ କାମେ
ଅନଳ ଲଗାଇ ଦ୍ୟନ୍ତି ପରଘରେ ତମେ ।
ରଣକର ସାହୁଙ୍କୁ ଯେ, ନ ପାରନ୍ତି ଶୁଝି
ଆପଣା ଭୃତ୍ୟଙ୍କୁ ଯେତୁ ଦଣ୍ଡନ୍ତି ନ ବୁଝି ।
ଗୁରୁପତ୍ନୀ ହରଇ ଯେ ଶିଶୁହତ୍ୟା କରେ
ନର୍ଦ୍ଦୋଷ ଲୋକଙ୍କୁ ଯେତୁ ବନ୍ଦୀକରି ମାରେ ।
ବିଶ୍ୱାସଘାତକ ପୁଣି ଅଟନ୍ତି ଯେ ଜନ
ନିନ୍ଦା କରଇ ଯେ ଜନ ଶ୍ରୀଗୁରୁ ବଚନ ।
ମିଛେ ଯତି ହୋଇଣ ଯେ ବୁଲନ୍ତି ଦେଶେ ଦେଶେ
ମାଗଇ ଦ୍ରବ୍ୟ ଆନଙ୍କୁ କୁଟୁମ୍ବର ଆଶେ ।
ବୈଷ୍ଣବ ବୋଲାଇ ଯେତୁ ନ ଭଜଇ ହରି
ନିଶାରେ ଗମନ୍ତି ଯେତୁ ପରଦାର କରି ।
ବ୍ରାହ୍ମଣ ହୋଇ ଯେ, ଶୂଦ୍ର ରତି ରସେ ପ୍ରୀତି
ରାଜାହୋଇ ଯେବେ ସୁଖେ ନ ପାଳଇ ପୃଥ୍ୱୀ ।
ଏ ଲୋକେ ନିଶ୍ଚୟ ଯାନ୍ତି କୁମ୍ଭୀପାକ ନର୍କେ
ଅର୍ଜିଲାର ଫଳ ସେତୁ ଭୁଞ୍ଜନ୍ତି ବିପାକେ ।
ମାର୍କଣ୍ଡେୟ ପୁରାଣ (କୁମ୍ଭୀପାକ ଓ ରୌରବନରକ ଅଧ୍ୟାୟ)

---

Digitized by srujan ka@gmail.com



# ଦେବର୍ଷି ନାରଦ

ନମାଇଁ ଚରଣ ଦାସ

ନାରଦ ବ୍ରହ୍ମାଙ୍କର ମାନସପୁତ୍ର ଓ ମନ୍ତ୍ରଦ୍ରଷ୍ଟା ଋଷି ଥିଲେ । ନାରଦ ଋଷିଙ୍କୁ ଦେବର୍ଷି କୁହାଯାଏ । ଶ୍ରୀମଦ୍ ଭାଗବତ ମତରେ ନାରଦ ଭଗବାନଙ୍କର ତୃତୀୟ ଅବତାର ।

"ନାର" ଶବ୍ଦର ଅର୍ଥ ଜଳ । ସର୍ବଦା ତର୍ପଣପାଇଁ ଏ ଜଳ-ଦାନ କରନ୍ତି ବୋଲି ଏହାଙ୍କର ନାମ ନାରଦ । ନାରଦ ଭାରତର ଋଷିମାନଙ୍କ ଭିତରେ ଶୀର୍ଷସ୍ଥାନୀୟ ଥିଲେ । ଦେବତାମାନେ ମଧ୍ୟ

Digitized by srujan ka@gmail.com

ତାଙ୍କୁ ମାନ୍ୟ କରୁଥିଲେ । ଜନକଙ୍କ ରାଜ୍ୟସଭାଠାରୁ ଦ୍ୱାରକାର ରାଜା ଭଗବାନ ଶ୍ରୀକୃଷ୍ଣଙ୍କର ଅନ୍ତଃପୁର ଯାଏ ତାଙ୍କର ଅବାରିତ ଗତିବିଧି ଥିଲା । ପ୍ରଭୁ ଶ୍ରୀକୃଷ୍ଣ ତାଙ୍କୁ ଅତି ସମାଦର କରି ତାଙ୍କର ପରାମର୍ଶ ଗ୍ରହଣ କରୁଥିଲେ । ଭଗବତ୍ ଇଚ୍ଛାରେ ନିଜକୁ ସଂପୂର୍ଣ୍ଣ-ରୂପେ ନିୟୋଜିତ କରି ଦେବଦତ୍ତ ବୀଣାରେ ହରିଗୁଣ ଗାନକରି ସମସ୍ତଙ୍କୁ ମୋହିତ କରି ପୃଥିବୀ ଭ୍ରମଣ କରନ୍ତି । ଶ୍ରୀକୃଷ୍ଣଙ୍କ ଅନୁ-ଗ୍ରହରୁ ନାରଦ ଜ୍ଞାନଯୋଗ ଓ ଗୀତାଯୋଗ ଉପଦେଶାମୃତ ଶ୍ରବଣ କରି ବ୍ରହ୍ମାନନ୍ଦ ଲାଭ କରିଥିଲେ ।

ମହାଭାରତରେ ଲିଖିତ ଅଛି ନାରଦ ବ୍ରହ୍ମାଙ୍କ ନିକଟରୁ ସଙ୍ଗୀତବିଦ୍ୟା ଶିକ୍ଷା କରିଥିଲେ । ନାରଦ ଅତ୍ୟନ୍ତ ମେଧାବୀ, ପ୍ରତ୍ୟୁତ୍ପନ୍ନମତି, ବାଗ୍ମୀ, ସୁଗାୟକ ଓ ସଙ୍ଗୀତଜ୍ଞ ଥିଲେ । ସାମ, ଦାନ, ଦଣ୍ଡ, ଭେଦ, ରାଜନୀତିର ସବୁ କଥା ତାଙ୍କୁ ଜଣାଥିଲା ।

ନାରଦ ଋକ୍‌ବେଦ, ଯଜୁର୍ବେଦ, ଧନୁର୍ବେଦ, ଶାମବେଦ, ଚତୁର୍ଥସ୍ଥାନୀୟ ଅଥର୍ବବେଦ, ଇତିହାସ—ପୁରାଣ, ନାମକ ପଞ୍ଚମ-ବେଦ, ବ୍ୟାକରଣ, ଶ୍ରାଦ୍ଧତତ୍ତ୍ୱ, ଗଣିତଶାସ୍ତ୍ର, ବେଦବିଦ୍ୟା, ବ୍ରହ୍ମ-ବିଦ୍ୟା, ଭୂତବିଦ୍ୟା, ନକ୍ଷତ୍ରବିଦ୍ୟା, ସର୍ପ ଓ ଦେବଜାନବିଦ୍ୟା ଏ ସବୁ ଜାଣିଥିଲେ । ତାଙ୍କ କୃତ ଗ୍ରନ୍ଥର ନାମ "ନାରଦ ପଞ୍ଚରାତ୍ର ।"

ନାରଦ ସନ୍ନ୍ୟାସୀ ଥିଲେ ମଧ୍ୟ ସାଂସାରିକ, ପାରିବାରିକ, ରାଜନୀତିକ, ବୈଷ୍ଣବିକ, ସବୁ ବିଷୟରେ ତାଙ୍କର ତୀକ୍ଷ୍ଣ ଦୃଷ୍ଟି ଓ ଗଭୀର ଜ୍ଞାନ ଥିଲା । ଇତିହାସ ଓ ପୁରାଣରେ ସେ ପାରଦର୍ଶୀ, ପୂର୍ବକଳ୍ପର ବିବରଣୀ ମଧ୍ୟ ତାଙ୍କୁ ବିଦିତ । ସେ ନ୍ୟାୟ ଶାସ୍ତ୍ରରେ ପାରଙ୍ଗମ ଓ ମନ୍ୱାଦି ପ୍ରଣୀତ ଧର୍ମଶାସ୍ତ୍ର ତତ୍ତ୍ୱଜ୍ଞ ଓ ବେଦର ଷଡ୍-ଜ୍ଞାନରେ ତାଙ୍କର ଉତ୍କୃଷ୍ଟ ଜ୍ଞାନ ଥିଲା । ସେ ନିଜର ଜ୍ଞାନକୁ ପ୍ରତ୍ୟକ୍ଷଭାବରେ କହି ପାରୁଥିଲେ । ସମ୍ବାଦ ଓ ପରାମର୍ଶ ଦାନ,

Digitized by srujan ka@gmail.com

ଯୁଦ୍ଧ ବିଗ୍ରହ, ବିବାହାଦି ସଙ୍ଗଠନରେ ନାନାପ୍ରକାର ବାର୍ତ୍ତାଦାନରେ, ଶିକ୍ଷା ଦାନରେ, ଦୈତ୍ୟ ବିନାଶକ ସହାୟତା ଦାନରେ, ନିସ୍ପୃହ ନିର୍ଦ୍ଦେଶ ଓ ନୀତି ପରାମର୍ଶ ଦାନରେ ନାରଦଙ୍କର କୃତିତ୍ୱ ଅସାଧାରଣ । ( ନିଗମ ତନ୍ତ୍ର )

ଆମ୍ଭମାନଙ୍କର ପ୍ରାଚୀନ ପୁରାଣ ସମୂହରେ ନାରଦ ଜଣେ ଅତୁଳନୀୟ ବ୍ୟକ୍ତି, ନାରଦଙ୍କ ସହିତ କେବଳ ନାରଦଙ୍କୁହିଁ ତୁଳନା କରାଯାଏ । ଏପରି ପୁରାଣ ନାହିଁ, ଏଭଳି କାବ୍ୟ ନାହିଁ, ଯେଉଁଥିରେ ନାରଦ ନାହାନ୍ତି । ଶିବଙ୍କର ବିବାହରେ ନାରଦ ଘଟକ, ବାମନଙ୍କ ଉପନୟନରେ ନାରଦ ଉଦ୍ୟୋଗୀ, ଧ୍ରୁବଙ୍କର ତପସ୍ୟାରେ ନାରଦ ମନ୍ତ୍ରଦାତା, ଦକ୍ଷଙ୍କର ଦର୍ପ ନାଶ ସେଥିରେ ମଧ୍ୟ ନାରଦ । କାବ୍ୟାଦି ମଧ୍ୟରେ ଯେଉଁଠାରେ ଯାହା ପ୍ରଧାନ ବର୍ଣ୍ଣନୀୟ ତାହା ଭିତରେ ମଧ୍ୟ ସେ ଅଛନ୍ତି । ଶିଶୁପାଳର ଅତ୍ୟାଚାରରେ ଜଗତ ନିପୀଡ଼ିତ, ନାରଦ ତାହାର ଉପାୟ ବିଧାତା, ନୈଷଧରେ ଦମୟନ୍ତୀଙ୍କ ବିବାହରେ ନାରଦ ଦେବ ସଭାରେ ତାଙ୍କର ଦୂତ ! ପ୍ରାୟ ସକଳ ବିଷୟରେ ହିଁ ନାରଦ ବିଦ୍ୟମାନ ।

ରାମାୟଣ ରଚୟିତା ମହାକବି ବାଲ୍ମୀକି ପୂର୍ବେ "ରତ୍ନାକର" ନାମରେ ଅଭିହିତ ଥିଲେ । ସେ ଦସ୍ୟୁ ବୃତ୍ତିକରି ସଂସାର ନିର୍ବାହ କରୁଥିଲେ । ଥରେ ଦେବର୍ଷି ନାରଦଙ୍କୁ ହତ୍ୟା କରିବାକୁ ଉଦ୍ୟତ ହେବାରୁ ନାରଦ ତାଙ୍କୁ ଜିଜ୍ଞାସା କରିଥିଲେ, ତା'ର ପିତା-ମାତା-ସ୍ତ୍ରୀ-ପୁତ୍ର ସମସ୍ତେ ତାହାର ଏଇ ପାପର ଭାଗ ନେବେ କି ନାହିଁ ? ସେତେବେଳେ ରତ୍ନାକର ପିତା-ମାତା ପ୍ରଭୃତି ଆତ୍ମୀୟମାନଙ୍କୁ ଏହି ପ୍ରଶ୍ନ କଲାରୁ ସେମାନେ ସମସ୍ତେ ତାହାର ପାପର ଭାଗ ନେବାକୁ ଅସମ୍ମତ ହୋଇଥିଲେ । ସେତେବେଳେ ରତ୍ନାକରଙ୍କର ଚୈତନ୍ୟ ଉଦୟ ହେଲା ଏବଂ ସେତେବେଳେ ରତ୍ନାକର ନାରଦଙ୍କ ନିକଟରୁ

Digitized by srujan ka@gmail.com

ରାମ-ମନ୍ତ୍ରରେ ଦୀକ୍ଷିତ ହୋଇ ସିଦ୍ଧିଲାଭ କରିଥିଲେ । ସରସ୍ୱତୀର ବରପୁତ୍ର ହୋଇ ବାଲ୍ମୀକୀ ଅସାଧାରଣ କବିତ୍ୱ ଲାଭ କରିଥିଲେ ଏବଂ ନାରଦଙ୍କ ଆଦେଶରେ ରାମାୟଣ ରଚନା କରିଥିଲେ । ନାରଦ ଆଦି ଗ୍ରନ୍ଥକାରଙ୍କୁ ପ୍ରେରଣା ଯୋଗାଇ ଥିବା ଭାବିଲେ ବିସ୍ମିତ ହେବାକୁ ହୁଏ ।

## ନାରଦଙ୍କ ବାଣୀ

ଋଷି, ଭକ୍ତଗଣ, ସ୍ତ୍ରୀ ସଙ୍ଗତ୍ୟାଗ କରିବେ । ସ୍ତ୍ରୀ ଲୋକଙ୍କ ରୂପ, ଯୌବନ, ହାବଭାବ ପ୍ରଭୃତିର ବର୍ଣ୍ଣନା ଶୁଣିବେ ନାହିଁ, ସେଥିରେ ମନ ବିଚଳିତ ହେବାର ଖୁବ୍ ସମ୍ଭବ । ପରସ୍ତ୍ରୀ ପ୍ରତି ଲୋଲୁପ ଦୃଷ୍ଟି ପକାଇବ ନାହିଁ, ନିଜର ସ୍ତ୍ରୀ ଜନକୁ ଶ୍ରଦ୍ଧାଧିକ୍ୟ ହେତୁ ଗୁପ୍ତ କଥା କହିବ ନାହିଁ ।

ଯଥାସାଧ୍ୟ କୁସଙ୍ଗ ତ୍ୟାଗ କରି ଦୂରରେ ରହିବାକୁ ହେବ । କୁସଂସର୍ଗପରି ଆଉ ଭକ୍ତି ବିରୋଧୀ କିଛି ନାହିଁ । ଏଥିରୁ ସକଳ ପାପ ଜାତ ହୁଏ ।

ଏ ସଂସାରରେ ଯେ, ଯେପରି କର୍ମ କରେ, ସେ ସେହିପରି ଫଳପାଏ । ନିଜକର୍ମ ଫଳ ନିଜକୁ ହିଁ ଭୋଗିବାକୁ ପଡ଼େ ।

ସମସ୍ତଙ୍କର ଉପକାର କରିବ । କାୟ, ମନ, ବଚନରେ କାହାରିକୁ ପୀଡ଼ା ଦେବ ନାହିଁ । ନିଜର ପିତାମାତାଙ୍କର ଆଜ୍ଞାକାରୀ ହେବ ।

ତଡ଼ାଗ ଖୋଳାଏ ଯେହୁ ନିଜ ଧନବ୍ୟୟେ ।
କି ଅବା ଅନ୍ୟକୁ କହି ତା ଯୋଗେ ଖୋଳାଏ ॥
ଶତଶତ ବରଷରେ ପୁଣ୍ୟ ଫଳତାର ।
ବ୍ୟକ୍ତ କରି କହିବାକୁ ଶକ୍ତି ନାହିଁ ମୋର ॥

× × ×

Digitized by srujan ka@gmail.com

ଶିବ, ବିଷ୍ଣୁ ମନ୍ଦିର ଯେ ପ୍ରତିଷ୍ଠା କରଇ ।
ତାର ଯେଉଁ ପୁଣ୍ୟ ହୁଏ ଶୁଣ କହୁଥାଇଁ ॥
ସେ ମାତୃ କୁଳରୁ ଲକ୍ଷେ କୋଟି ପୂରୁଷଙ୍କୁ ।
ସଙ୍ଗତରେ ନେଇଯାଏ ବୈକୁଣ୍ଠପୁରକୁ ॥

× × ×

ଅନ୍ନ, ଜଳ ଏ ଉଭୟ ଦାନର ସମାନ ।
ଆଉ ଅନ୍ୟ ଦାନ କେହି ନାହିଁ ହେ ସୁଜନ ॥
କ୍ଷୁଧାର୍ତ୍ତ ଜନଙ୍କୁ ଅନ୍ନଦାନ ଯେ ଦଅଇ ।
ପ୍ରାଣଦାନ କରିବାର ଫଳ ସେ ଲଭଇ ॥
ଅନ୍ନରୁ ଶରୀର ଜାତ ହୋଇଅଛି ଜାଣ ।
ଅନ୍ନ ଯୋଗେ ପ୍ରାଣ ଧରିଛନ୍ତି ପ୍ରାଣୀଗଣ ॥
ଏ କାରଣୁ ଅନ୍ନ ଦାନ କରେ ଯେ ପ୍ରାଣୀଙ୍କି ।
ପ୍ରାଣଦାତା ବୋଲି ତାକୁ ସକଳେ କହନ୍ତି ॥
ଅନ୍ତଦାନ ମଧ୍ୟେ ବିଦ୍ୟା ଦାନ ଗଣାଯାଏ ।
ତେଣୁ ମହା ଦାନ ତାକୁ ବୋଲନ୍ତି ସାଧୁଏ ॥
—ନାରଦୀୟ ପୁରାଣ

ଯଉବନ ସୁନ୍ଦର ପଣ ଧନରତ୍ନ ।
ଠାରେ ପଣ୍ଡିତମାନେ ନ କରନ୍ତି ଯତ୍ନ ॥
ଦିବସରେ ଆଳସ ପାଇ ନ ଶୋଇବ ।
ପର ନାରୀ ବିଷୟର ଖତ ନ କହିବ ॥
ପରକୁ ନିନ୍ଦାକରି ଆପଣା ଉତ୍କର୍ଷ ।
ସଭା ମଧ୍ୟରେ ନ କରିବଟି ପ୍ରକାଶ ॥

× × ×

Digitized by srujan ka@gmail.com

ବିଦ୍ୟାବନ୍ତ ଲୋକ ସୁବାସ ଫୁଲ ପରି ।
ଗାଛେ ପଡ଼ିଥିଲେ ଚହଟେ ଚପଷ୍ଟାରି ॥
—ଶାନ୍ତିପର୍ବ ମହାଭାରତ

ସମ୍ପଦ ଆୟୁଷ ଯଶ ବଳର ସହିତ ।
ହୋଇ ବସେ ଅଳ୍ପଦିନେ କ୍ଷୟ ପ୍ରାପ୍ତ ॥

× × ×

ଯେ, ନିରପରାଧୀ ବ୍ୟକ୍ତିକୁ ପୀଡ଼ାଦିଏ ।
ସେ ଦୁଷ୍ଟାତ୍ମା ମହାପାପୀ ବୋଲି ଗଣାଯାଏ ॥
ମୂଢ଼ପଣେ ମିଥ୍ୟା ସାକ୍ଷୀ ହୁଏ ଯେଉଁ ଜନ ।
ଇହେ ନଷ୍ଟଯାଏ ତା'ର ପୁତ୍ର, ନାତି, ଧନ ॥

× × ×

ପାପୀଙ୍କର ପାପକୁ ଯେ ଅଲୋଚନା କରେ ।
ସେ ପାପୀ ହୁଅଇ ଜାଣ ତାହାରି ସଙ୍ଗରେ ॥
ବୃଥାରେ ପରକୁ ନିନ୍ଦା କରେ ଯେଉଁ ଲୋକ ।
ଦେହ ଛାଡ଼ିଗଲେ ସେହୁ ଭୁଞ୍ଜଇ ନରକ ॥
ନ୍ୟାୟ, ଧର୍ମ ବିଷୟରେ ଯେ ପକ୍ଷପାତ କରେ ।
ତାହାର ନିଷ୍କୃତି ନାହିଁ କୌଣସି ପ୍ରକାରେ ॥
ପର ଧନ ହରି ଯେହୁ ଅପରକୁ ଦିଏ ।
ପାପ ଭୋଗପାଇ ସେହି ନର୍କଗାମୀ ହୁଏ ॥
ଧନ ଯାର ଦାନ ଫଳ ତାହାକୁ ମିଳଇ ।
ଦେବାଲୋକ ନରକରେ ପଡ଼ି ସଡ଼ୁଥାଇ ॥
ଗ୍ରାମ ଧ୍ୱଂସ କରେ ଯେହୁ ଅବିବେକୀଜନ ।
କହିବା ତାହାର ପାପ ଶୁଣ ହେ ରାଜନ ॥
ଶତକୋଟି ଜନମରେ ତାର ପାପ ଫଳ ।
ସବୁ କହିବାକୁ ଜାଣ ନାହିଁ ମୋର ବଳ ॥

Digitized by srujan ka@gmail.com

ଧନଧାନ୍ୟ ପାଇବାକୁ ଶ୍ରଦ୍ଧା କରି ମନେ ।
ଭକ୍ତିରେ ଯେ ପ୍ରବର୍ତ୍ତଇ ହରିଙ୍କ ଭଜନେ ॥
ତାର ସେ ଭକତ ଅଟେ ଅଧମ ରାଜସ ।
ଏଥକୁ ଅନ୍ୟଥା ମନେ ନ ବିଚ୍ଚର ଲେଶ ॥

× × × ×

—ନାରଦୀୟ ପୁରାଣ—

ଦେଖ ଯାକରେ ଯେଉଁ ବିପଦ ପଡ଼ିବ ।
ଏକା ହୋଇ ଜଣେ ତହିଁକି ନ ଭାଳିବ ॥

× × × ×

ଅସ୍ଥି, ଚର୍ମ, ରକତ ଦ୍ରବ୍ୟରେ ଗଠିତ ।
ହୋଇଛି ଏ ଦେହଟି ହୋଇଅଛୁ ଜାତ ॥
ଏହାକୁ ଛାଡ଼ି ପୁଣ୍ୟ ଦେହ ପାଇବାକୁ ।
ଯତନ କର କିସ ପୂଛୁଛ ଆମ୍ଭକୁ ॥

—ମହାଭାରତ ଶାନ୍ତିପର୍ବ—

"ଭକ୍ତମାନଙ୍କ ମଧ୍ୟରେ ଜାତି, ବିଦ୍ୟା ଓ ରୂପ କୁଳ ଧନ ଏବଂ କ୍ରିୟାର ଭେଦ ବିଚ୍ଚର ନାହିଁ ।" ସେମାନଙ୍କ ମଧ୍ୟରେ ପୁଣି ବ୍ରାହ୍ମଣ, ଶୂଦ୍ର, ଚଣ୍ଡାଳ ମ୍ଳେଚ୍ଛର ବିଚ୍ଚର ମଧ୍ୟ ନାହିଁ । ସେମାନଙ୍କ ନିକଟରେ ସୁରୂପ, କୁରୂପ, ପଣ୍ଡିତ, ମୂର୍ଖ, ଧନୀ, ଦରିଦ୍ର, ଏ ସବୁ ବିଚ୍ଚର ଥିଲେ ପୃଥିବୀରେ ଆଉ ଶାନ୍ତିର ସ୍ଥଳ କେଉଁଠାରେ ଅଛି ? ଉପାସ୍ୟ ଯେପରି ଉପାସକ ମଧ୍ୟ ସେହିପରି । ଭଗବାନଙ୍କ ନିକଟରେ ଯେପରି ସମସ୍ତେ ସମାନ, ଭଗବତ୍ ଭକ୍ତଙ୍କ ନିକଟରେ ସେହିପରି ସମସ୍ତେ ସମାନ ।

—ନାରଦ ଭକ୍ତିସୂତ୍ର—୭୨

Digitized by srujan ka@gmail.com

# ମହର୍ଷି ଗୌତମ

(ଅକ୍ଷପାଦ)

ଅଧ୍ୟାପକ ଡଃ ବଟକୃଷ୍ଣାନନ୍ଦ ମହାନ୍ତି, ଏମ୍. ଏ, ପି. ଏଇଚ୍. ଡ଼ି
ରେଭେନ୍ସା କଲେଜ

ସେତୟୁଗର ଶ୍ରେଷ୍ଠ ସାଧକ, ତଥା ମହର୍ଷିମାନଙ୍କ ମଧ୍ୟରେ ଗୌତମ ଅନ୍ୟତମ । କୈଶୋର ଜୀବନରୁ ସେ ଅଖଣ୍ଡ ବ୍ରହ୍ମଚର୍ଯ୍ୟ ପାଳନ କରି ଜିତେନ୍ଦ୍ରିୟ ହେବାର ପ୍ରୟାସ କରିଥିଲେ । କଠୋର ତପସ୍ୟା ଆଚରଣପୂର୍ବକ ଗୌତମ ଏକନିଷ୍ଠ ସାଧକ ଭାବରେ ପିତାମହ ବ୍ରହ୍ମାଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ତାଙ୍କର ସଂଯମର ପ୍ରକୃତ ପରୀକ୍ଷାପାଇଁ ବ୍ରହ୍ମା ଛଦ୍ମ ବେଶରେ 'ଅହଲ୍ୟାନାମ୍ନୀ ଏକ ଅନୁପମ ରୂପ-ଲାବଣ୍ୟସମ୍ପନ୍ନା ଷୋଡ଼ଶୀ ତରୁଣୀଙ୍କୁ ତାଙ୍କ ପାଖରେ ଛାଡ଼ି ଦେଇ ଅନ୍ୟତ୍ର ଚାଲି ଯାଇଥିଲେ । ଗୌତମ କିନ୍ତୁ ନିଜ ସାଧନାରେ ଅଟଳ ରହି ଉକ୍ତ ତରୁଣୀ ରତ୍ନଙ୍କର ସମସ୍ତ ପ୍ରକାର ସମ୍ମାନ ରକ୍ଷା କରିଥିଲେ, କେତେକ ବର୍ଷପରେ ବ୍ରହ୍ମା ପୁନର୍ବାର ଫେରି ଆସି ଗୌତମଙ୍କ କର୍ତ୍ତବ୍ୟନିଷ୍ଠା, ଆତ୍ମ ସଂଯମ ଓ ବ୍ରହ୍ମଚର୍ଯ୍ୟ ପାଳନରେ ଦୃଢ଼ତା ଦେଖି ଅତ୍ୟନ୍ତ ପ୍ରୀତ ହୋଇଥିଲେ । ପରିଶେଷରେ ସେ ତାଙ୍କୁ ଏକ ତପୋନିଷ୍ଠ ମହର୍ଷି ଭାବରେ ସମ୍ମାନିତ କରି 'ଅହଲ୍ୟା'ଙ୍କୁ ପତ୍ନୀରୂପେ ତାହାଙ୍କ ହସ୍ତରେ ଅର୍ପଣ କରିଥିଲେ ।

ଗୌତମଙ୍କ ଔରସରେ ଅହଲ୍ୟାଙ୍କ ଗର୍ଭରୁ 'ଅଞ୍ଜନା' ନାମ୍ନୀ ଏକ ରୂପବତୀ ଓ ଗୁଣବତୀ କନ୍ୟା ସମ୍ଭୂତ ହୋଇଥିଲା । ଋଷି ତୀର୍ଥାଟନରେ ଯାତ୍ରା କରି ପତ୍ନୀ ଅହଲ୍ୟା ଓ କନ୍ୟା ଅଞ୍ଜନାକୁ ଆଶ୍ରମରେ ଛାଡ଼ି ଯାଇଥିଲାବେଳେ ଇନ୍ଦ୍ର ଓ ସୂର୍ଯ୍ୟ, ଅହଲ୍ୟାଙ୍କ ଅସାମାନ୍ୟରୂପ ଲାବଣ୍ୟରେ ମୁଗ୍ଧ ହୋଇ ଗୌତମ ମୁନିଙ୍କ ବେଶରେ ତାଙ୍କ ସହ ପ୍ରୀତି କରିଥିଲେ । ଅବଶ୍ୟ ଅହଲ୍ୟା ଇନ୍ଦ୍ର,

Digitized by srujan ka@gmail.com

ସୂର୍ଯ୍ୟଙ୍କର ଏତାଦୃଶ କପଟତା ବୁଝି ନ ପାରି ତାଙ୍କୁ ସ୍ୱାମୀ ଗୌତମ ବୋଲି ଗ୍ରହଣ କରିଥିଲେ । ଇନ୍ଦ୍ର ଓ ସୂର୍ଯ୍ୟଙ୍କର ଔରସରୁ ଅହଲ୍ୟାଙ୍କର ଦୁଇଟି ଯମଜ ସନ୍ତାନ ଜାତ ହୋଇଥିଲେ । କେତେଦିନ ପରେ ଗୌତମ ତୀର୍ଥାଟନରୁ ଫେରି ଉକ୍ତ ଯମଜ ସନ୍ତାନ ଦୁହିଙ୍କୁ ନିଜର ପୁତ୍ର ବୋଲି ମନେ କରିଥିଲେ । କିନ୍ତୁ ଅଞ୍ଜନା, ପୁତ୍ର ଦୁଇଟିଙ୍କର ଜନ୍ମ ରହସ୍ୟ ପିତାଙ୍କ ଆଗରେ ପ୍ରକାଶ କରିବାରୁ ଗୌତମ ଯୋଗ ବଳରେ ସବୁକଥା ଜାଣି ପାରିଲେ; ପ୍ରଥମେ ସେ ଜାରଜ ସନ୍ତାନ ଦୁଇଟିଙ୍କୁ ବାନର ରୂପ ଧାରଣ କରିବ ପାଇଁ ଅଭିଶାପ ଦେଲେ, ତତ୍‌କ୍ଷଣାତ୍ ଶିଶୁ ଦୁଇଟି ବାନରରେ ପରିଣତ ହୋଇଗଲେ, ଇନ୍ଦ୍ର ପୁତ୍ର ପ୍ରଥମ ବାନର ହେଲେ ତ୍ରେତୟା ଯୁଗର କପି-ସମ୍ରାଟ ବାଳୀ ଏବଂ ସୂର୍ଯ୍ୟ ପୁତ୍ର ଦ୍ୱିତୀୟ ବାନର ହେଲେ ତାଙ୍କର ଅନୁଜ ସୁଗ୍ରୀବ । ତତ୍ପରେ ଗୌତମ ଇନ୍ଦ୍ରଙ୍କୁ ସହସ୍ର ଯୋନୀ ଓ ସୂର୍ଯ୍ୟଙ୍କୁ ସହସ୍ରାଂଶୁ ହେବାକୁ ବ୍ରହ୍ମ ଅଭିଶାପ ଦେବା ଫଳରେ ଇନ୍ଦ୍ରଙ୍କ ଶରୀର ଯୋନୀମୟ ହୋଇଗଲା ଏବଂ ସୂର୍ଯ୍ୟଙ୍କର ଅଖଣ୍ଡ କିରଣ ଖଣ୍ଡ ଖଣ୍ଡ ହୋଇ ସହସ୍ର ଖଣ୍ଡରେ ପରିଣତ ହେଲା । ତତ୍‌ପରେ ଗୌତମ କ୍ରୋଧାନ୍ୱିତ ହୋଇ ପତ୍ନୀ ଅହଲ୍ୟାଙ୍କ ଚରିତ୍ରରେ ଦୋଷାରୋପ କରି ତାଙ୍କୁ ପାଷାଣ ପାଲଟିବା ପାଇଁ ଅଭିଶାପ ଦେଇଥିଲେ । ଏହି ଅହଲ୍ୟା ପାଷାଣୀ ହୋଇ ବହୁ ଦିନ ପଡ଼ି ରହିବା ପରେ ପ୍ରଭୁ ରାମଚନ୍ଦ୍ରଙ୍କର ପାଦ ଲାଗି ପୁନର୍ଜନ୍ମ ଲାଭ କରିଥିଲେ । କନ୍ୟା ଅଞ୍ଜନାଙ୍କ କଥାରେ ଏସବୁ ବିପର୍ଯ୍ୟୟ ହେଲା ଏବଂ ପୁତ୍ର ଦୁଇଟି ଯେ ବାନରରେ ପରିଣତ ହେଲେ, ଏଥିପାଇଁ ଅହଲ୍ୟା ଅଞ୍ଜନାଙ୍କୁ ମଧ୍ୟ ଏକ ବାନର ପୁତ୍ର ଲାଭ କରିବା ପାଇଁ ଅଭିଶାପ ଦେଇଥିଲେ । ତାଙ୍କ କଥାନୁଯାୟୀ କୁମାରୀ ଅଞ୍ଜନାଙ୍କ ଗର୍ଭରୁ ଯଥା ସମୟରେ ତ୍ରେତୟା ଯୁଗର ଶ୍ରେଷ୍ଠ ଭକ୍ତ ଓ ବୀର ହନୁମାନ ଜନ୍ମ ଲାଭ କରିଥିଲେ ।

Digitized by srujan ka@gmail.com

ଅତଏବ ସିଦ୍ଧ ସାଧକ ଗୌତମଙ୍କ କ୍ରୋଧରେ ବହୁତ କିଛି ଅଘଟନ ଘଟି ଯାଇଥିଲେ ମଧ୍ୟ ପରବର୍ତ୍ତୀ ଅବସ୍ଥାରେ ସେ ସମସ୍ତ ଘଟଣା ସମସ୍ତଙ୍କର କଲ୍ୟାଣ ସାଧନ କରିଥିଲା ।

ଏହି ମହାତେଜା ମହର୍ଷି ମନୁଷ୍ୟମାନଙ୍କ ଆଚାର, ସ୍ମୃତିଗତ ବିଷୟରେ 'ଗୌତମ ସଂହିତା' ରଚନା କରିଛନ୍ତି ।

ମହର୍ଷି ଗୌତମଙ୍କର ଏକ ପୁତ୍ର ଥିଲେ ଶରଦ୍ୱାନ । ସେ ଧନୁର୍ବିଦ୍ୟା ଓ ବେଦାଧ୍ୟୟନ ଉଭୟରେ ପ୍ରବୀଣ ଥିଲେ । ଧନୁର୍ବିଦ୍ୟାରେ ପାରଦର୍ଶିତା ଦେଖି ଇନ୍ଦ୍ର ଅସୂୟାବଶତଃ 'ଜାନପଦୀ' ନାମକ ଅପ୍ସରାକୁ ତାଙ୍କ ନିକଟକୁ ପଠାନ୍ତି ସେହି ଅପ୍ସରାର ରୂପରେ ମୋହିତ ହୋଇ କାମ ବଶତଃ ତାଙ୍କର ରେତ ସ୍ଖଳନ ହେଲା ଏବଂ ତାହା ଶରସ୍ତମ୍ଭରେ ପତିତ ହୋଇ ଦୁଇଭାଗ ହେବାରୁ କୃପ ଓ କୃପୀ ଜାତ ହେଲେ । ରାଜା ଶାନ୍ତନୁ ଏମାନଙ୍କୁ କୃପାକରି ପାଳନ କରିଥିଲେ ବୋଲି ସେମାନଙ୍କର ସେପରି ନାମ ହେଲା । ଶରଦ୍ୱାନ ଯୋଗ ବଳରେ ସମସ୍ତ ଜାଣି କୃପଙ୍କୁ ଧନୁର୍ବେଦ ଶିକ୍ଷା ଦେଇଥିଲେ । ଏହି କୃପ ପରବର୍ତ୍ତୀ କାଳରେ କୁରୁ ପାଣ୍ଡବଙ୍କ ଅସ୍ତ୍ରବିଦ୍ୟା-ଶିକ୍ଷକ କୃପାଚାର୍ଯ୍ୟ । ସେ ମହାଭାରତ ଯୁଦ୍ଧରେ ଅଂଶ ଗ୍ରହଣ କରିଥିଲେ ଏବଂ ପାଣ୍ଡବମାନଙ୍କ ମହାପ୍ରସ୍ଥାନ ପରେ ପରୀକ୍ଷିତଙ୍କର ମଧ୍ୟ ଶିକ୍ଷକ ହୋଇଥିଲେ । ସେ ଚିରଞ୍ଜୀବୀ ବୋଲି କଥିତ ।

କୃପୀ ଦ୍ରୋଣାଚାର୍ଯ୍ୟଙ୍କୁ ବିବାହ କରିଥିଲେ ଏବଂ ତାଙ୍କ ଗର୍ଭରୁ ଅଶ୍ୱତ୍ଥାମା ଜାତ ହୋଇଥିଲେ ।

## ଗୌତମଙ୍କ ବାଣୀ

ବହୁ ଭାବରେ ପରୀକ୍ଷିତ ହୋଇଥିବା ବନ୍ଧୁଙ୍କୁ ତ୍ୟାଗ କରିବା ବୁଦ୍ଧିମାନର କାର୍ଯ୍ୟ ନୁହେଁ ।

Digitized by srujan ka@gmail.com

କୌଣସି କାରଣରୁ ସେ କଛୁ ଗୁରୁତର ଦୋଷ କରିଥିଲେ ମଧ୍ୟ ସହନଶକ୍ତି ବଳରେ ବନ୍ଧୁତ୍ୱକୁ ରକ୍ଷା କରିବା ପାଇଁ ଚେଷ୍ଟିତ ହେବ ।

ଯେଉଁ ଲୋକ ରାଗ ମୁହୂର୍ତ୍ତରେ କଛୁ ଅପକର୍ମ କରିବାକୁ କମ୍ବା ରୋଷଭରେ ସହସା କୌଣସି କାର୍ଯ୍ୟପନ୍ଥା ଗ୍ରହଣ କରିବାକୁ କମ୍ବା ଅଭିମାନ, କ୍ରୋଧ ଓ ଅପ୍ରିୟ କର୍ତ୍ତବ୍ୟ କର୍ମ କରିବାକୁ ଯେତେ ଯେତେ ବିଳମ୍ବ କରେ ସେ ସେତେ ଅଧିକ ପ୍ରଶଂସନୀୟ ହୁଏ ।

ବନ୍ଧୁ, ଆତ୍ମୀୟ, ସୁହୃଦ୍, ଭୃତ୍ୟ ଓ ସ୍ତ୍ରୀ ଲୋକମାନେ କୌଣସି ଏକ ଭୁଲ କାମ କରି ଯଦି ଲୁଚାଇ ରଖନ୍ତି ଏବଂ ସେ କଥା ଯଦି ଅନ୍ୟ ସୂତ୍ରରୁ ଜାଣି ଯେଉଁ ଲୋକ ସେମାନଙ୍କୁ ଦଣ୍ଡ ଦେବାରେ ବିଳମ୍ବ କରୁଥାଏ ସେ ପ୍ରଶଂସନୀୟ ଅଟେ ।

ଯେଉଁ ଲୋକ ସର୍ବଦା ଜ୍ଞାନବୃଦ୍ଧ ଓ ବୟୋବୃଦ୍ଧଙ୍କ କଥା ମାନନ୍ତି, ସେମାନଙ୍କର ସେବା ତଥା ସମ୍ମାନ କରନ୍ତି, ସର୍ବଦା ଧର୍ମ-ଭାବାପନ୍ନ ହୁଅନ୍ତି, ହଜି ଯାଇଥିବା ପଦାର୍ଥକୁ ସର୍ବଦା ଖୋଜୁଥାଆନ୍ତି ଏବଂ ସର୍ବଦା ବିନୟାବନତ ହୁଅନ୍ତି ସେ ସମସ୍ତଙ୍କର ପ୍ରିୟପାତ୍ର ହୁଅନ୍ତି ।

ସର୍ବଦା ଧର୍ମକଥା ଶୁଣିବା ଓ କୌଣସି ପ୍ରଶ୍ନର ଉତ୍ତର ବୁଝି ବିଚାରି ଦେବା ହେଉଛି ମହତ୍ ବ୍ୟକ୍ତିର କର୍ତ୍ତବ୍ୟ ।

ଯେ କୌଣସି ଲୋକ ଇନ୍ଦ୍ରିୟର ବଶୀଭୂତ ହୋଇ ତଦନୁଯାୟୀ କର୍ମ କଲେ ତା'ର ଜୀବନ ସର୍ବଦା ସଙ୍କଟାପନ୍ନ ହୁଏ ।

ଯାହାର ମନରେ ସର୍ବଦା ସନ୍ତୋଷଭାବ ଜାଗ୍ରତ ହୁଏ, ସେହି କେବଳ ହେଉଛି ଏ ସଂସାରରେ ପ୍ରକୃତରେ ଧନୀ, ଜ୍ଞାନୀ ଓ ମାନୀ ।

---

Digitized by srujan ka@gmail.com



# ମହର୍ଷି ଅତ୍ରି

ଅଧ୍ୟାପକ ଡକ୍‌ଟର ଦୋଳଗୋବିନ୍ଦ ଶାସ୍ତ୍ରୀ

ମହର୍ଷି ଅତ୍ରି ବ୍ରହ୍ମାଙ୍କ ମାନସ ପୁତ୍ର । ସେ ସପ୍ତର୍ଷିଙ୍କ ମଧ୍ୟରୁ ଜଣେ । ତାଙ୍କ ସ୍ତ୍ରୀଙ୍କ ନାମ ଅନସୂୟା । ତପସ୍ୟା କାଳରେ ଏହାଙ୍କ ନେତ୍ରରୁ ଚନ୍ଦ୍ର ଜନ୍ମିଥିଲେ । ଦତ୍ତାତ୍ରେୟ, ଦୁର୍ବାସା ଓ ସୋମଋଷି ଏହାଙ୍କର ପୁତ୍ର । ଅଥର୍ବ ବେଦରେ ଅତ୍ରିଙ୍କର ପ୍ରାଧାନ୍ୟ ଦେଖାଯାଏ । ଶ୍ରୀରାମଚନ୍ଦ୍ର ତାଙ୍କ ବନବାସ କାଳରେ ଅତ୍ରିଙ୍କ ଆଶ୍ରମରେ କିଛିଦିନ ଥିଲେ । ଶ୍ରୀରାମଚନ୍ଦ୍ର ଅଯୋଧ୍ୟାକୁ ଫେରିଲାବେଳେ ଅତ୍ରି

Digitized by srujan ka@gmail.com

ତାଙ୍କୁ ଆଶୀର୍ବାଦ କରୁଥିଲେ । ତାଙ୍କ ସ୍ତ୍ରୀ ଅନସୂୟା ସୀତାଙ୍କୁ ନାନାବିଧ ବସ୍ତ୍ରାଳଙ୍କାର ଦେଉଥିଲେ ।

## ଅତ୍ରି ମହର୍ଷିଙ୍କ ବାଣୀ

ମନୁଷ୍ୟ ଧନ ଜମେଇ ରଖି ସଂସାରରୁ ବିଦାୟ ନେଇଗଲା ପରେ ସେହି ଧନର ପରିଣାମ ତା'ର ମୃତ୍ୟୁପରେ ଏପରି ବିଷମୟ ଫଳ ପ୍ରସବ କରେ ଯହିଁରେ ତାହାର ଭଗବତ୍ ପ୍ରାପ୍ତି ଘଟେ ନାହିଁ । ଯେ ଭଗବାନଙ୍କର କୃପା ଓ ଅନନ୍ତପଦ ଚାହାନ୍ତି, ସେ କଦାପି ଧନ ଆଶା ରଖିବେ ନାହିଁ ।

ମନୁଷ୍ୟଠାରେ ପରମ ଭଗବାନ୍ ପ୍ରକୃତି ଅବସ୍ଥାନ କରନ୍ତି, ସେହି ମନୁଷ୍ୟମାନଙ୍କ ପ୍ରତି ପରମପୁରୁଷ ଜନାର୍ଦ୍ଦନ ଯଦି ସନ୍ତୁଷ୍ଟ ହୁଅନ୍ତି, ସେମାନଙ୍କୁହିଁ ଅକ୍ଷୟ ପଦ ମିଳେ । ଏହା ମୁଁ ସତ୍ୟ ସତ୍ୟ, କହୁଛି । ଯେଉଁ ଲୋକ ଗୁଣୀଲୋକମାନଙ୍କ ଗୁଣକୁ ପ୍ରଶଂସା କରନ୍ତି ଏବଂ ଅଳ୍ପ ସଦଗୁଣ ଥିବା ମଣିଷଙ୍କୁ ମଧ୍ୟ ପ୍ରଶଂସା କରନ୍ତି,ପରଦୋଷ ଦେଖିବା ପାଇଁ ଯେଉଁମାନଙ୍କର ଇଚ୍ଛା ହୁଏ ନାହିଁ, ଯେଉଁମାନେ ପରଶ୍ରୀକାତର ନୁହନ୍ତି, କାହାପ୍ରତି ଅସୂୟା ବା ହିଂସାଭାବ ପୋଷଣ କରନ୍ତି ନାହିଁ, ସେମାନେ ଅକ୍ଷୟପଦ ପ୍ରାପ୍ତ ହୁଅନ୍ତି ।

ଶତ୍ରୁ ମିତ୍ର ନିର୍ବିଶେଷରେ ଯାହାର ବିପତ୍ତି ପଡ଼େ, ତାହା ଦେଖି ଯେଉଁମାନେ ଲୋକମାନଙ୍କୁ ସାହାଯ୍ୟ କରନ୍ତି, ସେମାନେ ମୃତ୍ୟୁପରେ ଦିବ୍ୟ ଜୀବନ ଲାଭ କରନ୍ତି । ପ୍ରତ୍ୟେକ ଲୋକର ବ୍ରହ୍ମଚର୍ଯ୍ୟ ରକ୍ଷା, ସତ୍ୟ କଥନ, ଦାନ, ଦୟା, ସରଳତା, ଅନ୍ୟର ବିପଦରେ ଅଭୟ ଦାନ ଏହିସବୁ ସଦ୍‌ଗୁଣ ଅର୍ଜନ କଲେ, ଲୋକ ଇହଜନ୍ମରେ ଓ ମୃତ୍ୟୁପରେ ମଧ୍ୟ ଦିବ୍ୟଜୀବନ ଲାଭକରି ସୁଖ ଶାନ୍ତିରେ ରହନ୍ତି ।

———

Digitized by srujan ka@gmail.com



# ମହର୍ଷି ଅଙ୍ଗିରା

ପଣ୍ଡିତ ନୀଳମଣି ମିଶ୍ର, ଓଡ଼ିଶା ମ୍ୟୁଜିୟମ

ପୁଣ୍ୟକର୍ମା ମହର୍ଷିମାନେ ପବିତ୍ର ଭାରତବର୍ଷରେ ଜନ୍ମ ଗ୍ରହଣ କରି ଭାରତୀୟ ସାମାଜିକ ଜୀବନ ଉପରେ ପ୍ରଭାବ ବିସ୍ତାର କରି-ଯାଇଛନ୍ତି । ତାହା କାଳର ଶତ ଘାତ ପ୍ରତିଘାତ ସତ୍ତ୍ୱେ ଦେଦୀପ୍ୟମାନ ହୋଇ ରହିଛି । ସେହି ଆର୍ଯ୍ୟ ମହର୍ଷିମାନଙ୍କ ମଧ୍ୟରେ ଅଙ୍ଗିରା ବା ଅଙ୍ଗିରସ ଅନ୍ୟତମ । ଏହାଙ୍କ ପବିତ୍ର ଚରିତ ମହାଭାରତ ଆଦି ବିଭିନ୍ନ ଗ୍ରନ୍ଥରେ ବିସ୍ତୃତ ଭାବରେ ଲିପିବଦ୍ଧ

Digitized by srujan ka@gmail.com

ହୋଇଛି । ଅଙ୍ଗିରା ଥିଲେ ବ୍ରହ୍ମାଙ୍କ ମାନସ ପୁତ୍ର ଓ କେତେକଙ୍କ ମତରେ ବ୍ରହ୍ମାଙ୍କର ଦ୍ୱିତୀୟ ପୁତ୍ର । ସେ ମହର୍ଷି କର୍ଦ୍ଦମଙ୍କର କନ୍ୟା ଶୁଭା ବା ଶ୍ରଦ୍ଧାଙ୍କର ପାଣିଗ୍ରହଣ କରିଥିଲେ । ମହର୍ଷି ଅଙ୍ଗିରାଙ୍କ ଉତଥ୍ୟ ଓ ବୃହସ୍ପତି ନାମରେ ଦୁଇ ପୁତ୍ର ଥିଲେ ଓ କେତେକ ଶାସ୍ତ୍ରକାରଙ୍କ ମତରେ ବୃହସ୍ପତି ନାମରେ ତାଙ୍କର ଏକମାତ୍ର ପୁତ୍ର ଥିଲେ । ତାଙ୍କର ଆତ୍ମଜା ମଧ୍ୟ ଭାନୁମତୀ, ରାକା ସିନୀବାଲୀ, ଅର୍ଚ୍ଚିଷ୍ମତୀ ହବିଷ୍ମତୀ, ପୁଣ୍ୟଜନକା ନାମରେ ୬ଟି କନ୍ୟା ଥିଲେ । ଶେଷୋକ୍ତ କନ୍ୟା ପୁଣ୍ୟଜନକାଙ୍କର ଅପର ନାମ ଥିଲା କୁହୂ ।

ମହାଭାରତର ବନପର୍ବରୁ ଜଣାଯାଏ ଯେ, ମହର୍ଷି ଅଙ୍ଗିରା ଥରେ ଅନେକ ସାମାନ୍ୟ ତପସ୍ୟା ଆରମ୍ଭ କଲେ । ତାଙ୍କର ତପୋଦୀପ୍ତ ଶରୀରରୁ ପ୍ରଭା ନିର୍ଗତ ହୋଇ ସମଗ୍ର ଜଗତକୁ ଆଚ୍ଛାଦିତ କରିଦେଲା । ଠିକ୍ ସେହି ସମୟରେ ଅଗ୍ନିଦେବ ମଧ୍ୟ କଠୋର ତପସ୍ୟା ଆରମ୍ଭ କରିଥିଲେ । ସେ ତପସ୍ୟାରତ ଥିବା ସମୟରେ ଜଗତରେ ପରିବ୍ୟାପ୍ତ ଅଙ୍ଗିରାଙ୍କର ତେଜପୁଞ୍ଜକୁ ଦେଖି ମନେ ମନେ ଭାବିଲେ—"ମୁଁ ତପସ୍ୟାରତ ଥିବାରୁ ମୋର ତେଜ ନଷ୍ଟ ହୋଇ ଯାଇଛି । ତେଣୁ ବୋଧହୁଏ ବ୍ରହ୍ମା ଅନ୍ୟ ଗୋଟିଏ ଅଗ୍ନି ସୃଷ୍ଟି କରିଛନ୍ତି ।" ତା'ପରେ ଅଗ୍ନିଦେବ ଚିନ୍ତିତ ମନରେ ଅଙ୍ଗିରାଙ୍କର ନିକଟରେ ଉପସ୍ଥିତ ହେଲେ । ସମ୍ମୁଖରେ ଅଗ୍ନିଦେବଙ୍କୁ ଦେଖି ଅଙ୍ଗିରା ବିନୀତ ଭାବରେ କହିଲେ, "ଆପଣ ଶୀଘ୍ର ନିଜର ଅଧିକାର ଗ୍ରହଣ କରନ୍ତୁ । ମୁଁ ଆପଣଙ୍କର ପୁତ୍ର ରୂପେ ଜଗତରେ ପ୍ରଖ୍ୟାତ ହେବି । ତତ୍ପରେ ଅଙ୍ଗିରା 'ବୃହସ୍ପତି' ନାମରେ ନାମିତ ହୋଇ ଅଗ୍ନିଙ୍କର ପୁତ୍ରତ୍ୱ ସ୍ୱୀକାର କଲେ ।

Digitized by srujan ka@gmail.com

ଅଙ୍ଗିରା ଉବାଚ—

"ନଷ୍ଟଂକାଷ୍ଠିରହଂ ଲୋକେ
ଭବାନ୍ ଜାଣେ ହୁତାଶନଃ
ନିକ୍ଷିପାମ୍ୟହମଗ୍ନିତ୍ୱଂ
ତ୍ୱମଗ୍ନିଃ ପ୍ରଥମୋଭବ ॥
ଭବିଷ୍ୟାମି ଦ୍ୱିତୀୟୋଽହଂ ପ୍ରାଜାପତ୍ୟକଏବଚ ।
କୁରୁପୁଣ୍ୟଂ ପ୍ରଜାସର୍ଗଂ ଭବାଗ୍ନିସ୍ତିମିରାପହଃ
ମାଞ୍ଚଦେବ କୁରୁଷ୍ୱାଗ୍ନେ ପ୍ରଥମଂପୁତ୍ର ମଞ୍ଜସୀ

ମାର୍କଣ୍ଡେୟ ଉବାଚ –

ତଚ୍ଛ୍ରୁତ୍ୱାଙ୍ଗିରସୋ ବାକ୍ୟଂ ଜାତବେଦ ସ୍ତଥାକରୋତ୍
ରାଜନ୍ ! ବୃହସ୍ପତିର୍ନାମ ତସ୍ୟା ପ୍ୟଙ୍ଗିରସଃ ସୁତଃ ॥
(ବାଚସ୍ପତ୍ୟମ୍ ପୃ ୮୦)

ଅଙ୍ଗିରା ସପ୍ତର୍ଷିମାନଙ୍କ ମଧ୍ୟରେ ଅନ୍ୟତମ ଏବଂ ଅନ୍ୟାନ୍ୟ ମହର୍ଷିମାନଙ୍କ ପରି ଧର୍ମଶାସ୍ତ୍ରର ପ୍ରଣେତା ରୂପେ ପ୍ରଖ୍ୟାତ । ତାଙ୍କର ପ୍ରଣୀତ ଗ୍ରନ୍ଥ "ଆଙ୍ଗିରସ କଳ୍ପ" ତନ୍ତ୍ରଶାସ୍ତ୍ର ସମ୍ମତ ଧର୍ମଶାସ୍ତ୍ରରୂପେ ପ୍ରସିଦ୍ଧି ଲାଭ କରିଅଛି । ଉକ୍ତ ଗ୍ରନ୍ଥରେ ମହର୍ଷି ଅଙ୍ଗିରା, ଗୋପାଳ, ବକ୍ରତୁଣ୍ଡ, ସିଦ୍ଧବିନାୟକ, ନୃସିଂହଆଦି ଦେବଙ୍କ ପୂଜା ଓ ଶାନ୍ତିକ, ପୌଷ୍ଟିକ, ବଶୀକରଣ, ସ୍ତମ୍ଭନ, ମୋହନ, ବିଦ୍ୱେଷଣ, ଉଚ୍ଚାଟନ, ମାରଣ, ଆକର୍ଷଣ, ଉତ୍କର୍ଷଣ, ଆଦିଦଣ୍ଡକର୍ମ ବିସ୍ତର, ବିଦ୍ୟା, ଧନ, ରାଜ୍ୟ, କନ୍ୟା, ପୁତ୍ର, ଜୟ ଶ୍ରୀ, ଆରୋଗ୍ୟ, ରକ୍ଷା, ଶାନ୍ତି, ସ୍ତ୍ରୀ ବଶ ଆଦି କାମନାରେ ମନ୍ତ୍ର ସିଦ୍ଧିର ଉପାୟାଦି ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ଅଗ୍ନି-ସ୍ଥାପନ, ଅଗ୍ନି ସଂସ୍କାର, ଗ୍ରହଶାନ୍ତି, ସର୍ବରୋଗ ଶାନ୍ତି, ଗଳଗ୍ରହ ରୋଗ ଶାନ୍ତି, ଭୂତଶାନ୍ତି, ପିପ୍ପିଳିକାଶାନ୍ତି, ଅନ୍ତରକ୍ଷାଦି ଉପାୟ

Digitized by srujan ka@gmail.com

ଶାନ୍ତି, ତଥା ବିଭିନ୍ନ ପ୍ରକାର ଜପବିଧାନଆଦି ବିସ୍ତୃତ ଭାବରେ ଆଲୋଚନା କରିଛନ୍ତି ।

ସିଦ୍ଧ ସାଧକ ମହର୍ଷି ଅଙ୍ଗିରା ଆଭିଚାରିକ କାର୍ଯ୍ୟ ବିଶେଷତଃ ବଶୀକରଣଆଦି ଅଷ୍ଟକର୍ମ ସମ୍ବନ୍ଧରେ ମନ୍ତ୍ରାଦି ପ୍ରଣୟନ କରିବା ପରେ କାର୍ଯ୍ୟାକାର୍ଯ୍ୟ ବିଚାର ନାମରେ ଏକ ଅଧ୍ୟାୟ ଲେଖିଛନ୍ତି । ଉକ୍ତ ପ୍ରସଙ୍ଗରେ ସେ ସ୍ପଷ୍ଟ ନିର୍ଦ୍ଦେଶ ଦେଇ କୌଣସି ବୈଦିକ ଦ୍ୱିଜ ଆଭିଚାରିକାଦି ଅଷ୍ଟକର୍ମ କରିବା ଉଚିତ ନୁହେଁ ବୋଲି ଦର୍ଶାଇଛନ୍ତି ।

"ଶାନ୍ତିକଂ ପୌଷ୍ଟିକଂ କୁର୍ଯ୍ୟାଦ୍‌ବାଜନଂ
ଜୀବିକା ସ୍ମୃତଂ
ନ କୁର୍ବିତା ଷଟ୍‌କର୍ମାଣି କଦାଚିଦ୍
ବୈଦିକୋ ଦ୍ୱିଜଃ ।
(ଅଙ୍ଗିରସ କଳ୍ପ)

## ଅଙ୍ଗିରାଙ୍କ ବାଣୀ

### ସଙ୍କଳୟିତ୍ରୀ-ଶ୍ରୀମତୀ ସରଳା ଦେବୀ

ଯେଉଁ ମୂର୍ଖ ଭଗବାନଙ୍କୁ ପୂଜା ଉପାସନା ନ କରି ସକାମ ଭାବରେ ନାନା ଦେବଦେବୀଙ୍କୁ ଉପାସନା କରି ଧର୍ମ କରୁଛୁ ବୋଲି ମନେ କରେ, ସେ ମିଥ୍ୟାତ୍ମା । ସକାମ ଭାବରେ ବିଷୟ କାମନା କରି ଠାକୁର ପୂଜିଲେ ନିଜର କଲ୍ୟାଣ ହୁଏ ନାହିଁ । ଏହା କଲ୍ୟାଣ ପଥ ନୁହେଁ । ଏହି କାରଣରୁ ତାର ଆତ୍ମା ଉଦ୍ଧାର ହୁଏ ନାହିଁ ଓ ସେ ବିଷୟ ବାସନା ରଖି ଧର୍ମାନୁଷ୍ଠାନ କରୁଥିବାରୁ ବାରମ୍ବାର ଜନ୍ମ ମୃତ୍ୟୁ ପଥରେ ନାନା ଯୋନି ଧରି ଯିବା ଆସିବା କରେ । ସେ ଦୁଃଖରେ ସଦାବେଳେ ପଡ଼େ କିନ୍ତୁ ଯେଉଁ ଲୋକ ଶାନ୍ତ, ସଂଯତ, ବିଦ୍ୱାନ, ଭଗବତ୍ ବିଷୟରେ ଶ୍ରଦ୍ଧା କରେ, ସେ ସୂର୍ଯ୍ୟଲୋକରେ

Digitized by srujan ka@gmail.com

ରହେ । ସେ ମୃତ୍ୟୁ କାଳରେ ଦେବଯାନରେ ଯାଏ । ଯମପୁରରେ ନରକରେ ପଡ଼ିବାକୁ ଯାଏନାହିଁ । ସେ ବୈକୁଣ୍ଠରେ ରହେ । ସେହି ସ୍ଥାନରେ ଜନ୍ମ ମୃତ୍ୟୁହୀନ ଅବିନାଶୀ ପରମ ପୁରୁଷ ଭଗବାନଙ୍କ ନିବାସ ।

ଭଗବାନଙ୍କୁ ମନୁଷ୍ୟ ତାର ଇନ୍ଦ୍ରିୟ ଦ୍ୱାରା ଅନୁଭବ କରି ପାରିବ ନାହିଁ । କୌଣସି ପ୍ରକାର ଧର୍ମ କର୍ମ ଦ୍ୱାରା କି ଅନୁଷ୍ଠାନ କରି ମଧ୍ୟ ମନୁଷ୍ୟ ତାଙ୍କୁ ବୁଝି ପାରିବ ନାହିଁ । ଭଗବାନ ଅରୂପ, ଅଗୋଚର, ନିର୍ଗୁଣ । ତେଣୁ ତାଙ୍କୁ କୌଣସି କର୍ମ ଦ୍ୱାରା ମଣିଷ ଜାଣି ପାରିବ ନାହିଁ । ମନୁଷ୍ୟ ସାଧନା ବଳରେ ତାର ଅନ୍ତର ମନ ଶୁଦ୍ଧ କରି ସର୍ବଦା ତାଙ୍କୁ ଚିନ୍ତା କରି ଧ୍ୟାନ କଲେ ତାର ମନରେ ନିର୍ମଳ ଜ୍ଞାନ ଉଦୟ ହୁଏ । ତାର ଆତ୍ମା ବିଶୁଦ୍ଧ ହେଲେ ସେ ଈଶ୍ୱରଙ୍କୁ ଦେଖି ପାରିବ । ପରଂବ୍ରହ୍ମ, ପରମାତ୍ମା କଥାରେ, ବୁଦ୍ଧିରେ କାମରେ ଅନୁଭୂତ ହୁଅନ୍ତି ନାହିଁ । ଏହା ବୁଝିଲେ ତାଙ୍କୁ ସାଧକ ଦିବ୍ୟ ଚକ୍ଷୁ ଦିବ୍ୟ ମନରେ ଦେଖିବ । ମନରେ, ବୁଦ୍ଧିରେ ଟିକିଏ ମାତ୍ର ମଳିନତା ଥିଲେ ସେ ମନୁଷ୍ୟକୁ ବା ସାଧକକୁ ଦେଖା ଦିଅନ୍ତି ନାହିଁ । ଦେହ ମନରେ ଦୁର୍ବଳ ବ୍ୟକ୍ତି ତାଙ୍କୁ ଦେଖି ପାରନ୍ତି ନାହିଁ କି ଅନୁଭବ କରି ପାରନ୍ତି ନାହିଁ; କେବଳ ତାଙ୍କୁ ଆତ୍ମ-ସମର୍ପଣ କରି ତାଙ୍କ ଶରଣ ନେଲେ ସେ ଦେଖା ଦିଅନ୍ତି ।

———

Digitized by srujan ka@gmail.com



# ବ୍ରହ୍ମର୍ଷି ବଶିଷ୍ଠ

କବି କାଳିନ୍ଦୀଚରଣ ପାଣିଗ୍ରାହୀ

ପୃଥିବୀରେ ବୋଧହୁଏ ଗୋଟିଏ ମାତ୍ର ଦେଶ ଭାରତବର୍ଷ, ଯାହାର ନାମାନୁସାରେ ଭାରତ ଗ୍ରନ୍ଥ ଲେଖା ହୋଇଛି, ମହାଭାରତ ନାମରେନ; କିମ୍ବା ଏଇ ମହାଭାରତ ଗ୍ରନ୍ଥର ନାମ ଅନୁସାରେ ଏ ଦେଶର ନାମକରଣ କରାଯାଇଛି ଭାରତବର୍ଷ। ମହାଭାରତରେ ମଣିଷର ଗୁଣ ଓ ଚରିତ୍ରର ଅଶେଷ ବ୍ୟାଖ୍ୟା ଦେଖାଯାଏ।

Digitized by srujan ka@gmail.com

ଅତୀତରେ ଏଇ ଭାରତ ବର୍ଷର ସଂଜ୍ଞା ନିରୂପଣରେ ଯେଉଁ-ସବୁ ଚରିତ୍ର ସାହାଯ୍ୟ କରିଛନ୍ତି, ସେମାନେ ହେଲେ, ଦେବତା, ରାକ୍ଷସ ଅଥବା ସାଧାରଣ ମନୁଷ୍ୟ ପୁଣି ରାଜା ଓ ଋଷି । ରାଜାମାନଙ୍କ ମଧ୍ୟରେ ରାମଚନ୍ଦ୍ର ଓ ଋଷିମାନଙ୍କ ମଧ୍ୟରେ ବଶିଷ୍ଠ ପ୍ରଧାନ । ସୂର୍ଯ୍ୟବଂଶୀୟ ରାଜାମାନଙ୍କ ମଧ୍ୟରେ ଶ୍ରୀ ରାମଚନ୍ଦ୍ର ଆଜ ମଧ୍ୟ ସ୍ମରଣୀୟ ହୋଇ ରହିଛନ୍ତି ଆଦର୍ଶ ରାଜ୍ୟ ପ୍ରତିଷ୍ଠା କ୍ଷେତ୍ରରେ । ଜାତିର ଜନକ ମହାତ୍ମାଗାନ୍ଧୀଙ୍କର ପ୍ରିୟ ଭଜନ ଥିଲା—

ରଘୁପତି ରାଘବ ରାଜାରାମ ।
ପତିତ ପାବନ ସୀତା ରାମ ।।

ଶ୍ରୀରାମଚନ୍ଦ୍ରଙ୍କର ଗୁରୁ ଗୁରୁ ଥିଲେ ବ୍ରହ୍ମର୍ଷି ବଶିଷ୍ଠ, ବଶିଷ୍ଠ ଦଶଜଣ ପ୍ରଜାପତିଙ୍କ ମଧ୍ୟରୁ ଜଣେ ଓ ସପ୍ତର୍ଷିମାନଙ୍କ ମଧ୍ୟରୁ ଜଣେ । ରାମ ରାଜ୍ୟର ଅକ୍ଷୟ କୀର୍ତ୍ତି ହେଲା 'ଯୋଗାବଶିଷ୍ଠ ରାମାୟଣ' ଗ୍ରନ୍ଥ । ମନୁଷ୍ୟ ଚରିତ୍ରର ମହନୀୟ ଆଦର୍ଶ ସୃଷ୍ଟିରେ 'ଯୋଗାବଶିଷ୍ଠ ରାମାୟଣ' ଅଦ୍ୱିତୀୟ । ବ୍ରହ୍ମଦ୍ରଷ୍ଟା ମହର୍ଷି ବଶିଷ୍ଠଙ୍କ ଚରିତ୍ରରେ କ୍ଷମାଗୁଣର ଅତୁଳନୀୟ ଆଦର୍ଶ ଫୁଟି ଉଠିଛି ।

ବଶିଷ୍ଠ ମହର୍ଷିଙ୍କର ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ ଥିଲେ ମୁନି ବିଶ୍ୱାମିତ୍ର । ବିଶ୍ୱାମିତ୍ର କ୍ଷତ୍ରିୟବଂଶଜ ହେଲେ ମଧ୍ୟ ବ୍ରହ୍ମ ଦ୍ରଷ୍ଟାରୂପେ ଖ୍ୟାତ ହେବାଲାଗି କଠୋର ତପସ୍ୟା କରନ୍ତି । ତଥାପି ବଶିଷ୍ଠ ତାଙ୍କୁ ବ୍ରାହ୍ମଣ ରୂପେ ସ୍ୱୀକାର କଲେ ନାହିଁ । ତାହା ଫଳରେ ବିଶ୍ୱାମିତ୍ରଙ୍କର କ୍ରୋଧ ପ୍ରଜ୍ୱଳିତ ହୋଇ ଉଠିଲା । ସେ ଜଣ ଜଣ କରି ବଶିଷ୍ଠଙ୍କର ଶତପୁତ୍ରଙ୍କୁ ହତ୍ୟାକଲେ; ବଶିଷ୍ଠଙ୍କର ସହଧର୍ମିଣୀ ଅରୁନ୍ଧତୀ ଶତପୁତ୍ର ହରାଇ ଶୋକ ବିହ୍ୱଳା ହୋଇ ପଡ଼ନ୍ତି ।

ଅରୁନ୍ଧତୀଙ୍କ ସହିତ ବଶିଷ୍ଠଙ୍କ ବିବାହ ମଧ୍ୟ ଉଲ୍ଲେଖଯୋଗ୍ୟ । କଥିତ ଅଛି ଦେଶବ୍ୟାପୀ ଦୁର୍ଭିକ୍ଷର କୋପରୁ ଜନସମାଜକୁ ରକ୍ଷା

Digitized by srujan ka@gmail.com

କରିବାପାଇଁ ବଶିଷ୍ଠ ମହା-ବିଭବଶାଳୀ କର୍ଦମ ଋଷିଙ୍କ କନ୍ୟା ଅରୁନ୍ଧତୀଙ୍କୁ ବିବାହ କରିଥିଲେ ଏବଂ ଲୋକମାନଙ୍କୁ ଦୁର୍ଭିକ୍ଷ କଷ୍ଟରୁ ଉଦ୍ଧାର କରିଥିଲେ ।

ବିଶ୍ୱାମିତ୍ର ତାଙ୍କର ଶତପୁତ୍ରଙ୍କୁ ବଧ କଲେ ମଧ୍ୟ ତାଙ୍କ ପ୍ରତି ବଶିଷ୍ଠଙ୍କର କ୍ରୋଧଜାତ ହୋଇ ନ ଥିଲା । ଶେଷରେ ସ୍ୱୟଂ ବଶିଷ୍ଠଙ୍କୁ ହତ୍ୟା କରି ନିଜର କ୍ରୋଧ ଶାନ୍ତିଲାଗି ବିଶ୍ୱାମିତ୍ର ସ୍ଥିର କଲେ । ଅନ୍ଧକାର ରାତିରେ ଆସି ଖଡ଼୍‌ଗ ଧରି ବିଶ୍ୱାମିତ୍ର ବଶିଷ୍ଠଙ୍କ ଗୃହରେ ଗୋପନରେ ଅପେକ୍ଷା କରି ରହିଲେ । ସେହି ସମୟରେ ସେ ବଶିଷ୍ଠ ଓ ଅରୁନ୍ଧତୀଙ୍କ ମଧ୍ୟରେ ଗୋଟିଏ କଥୋପକଥନ ନିଭୃତରେ ଶୁଣିପାରିଲେ । ଅରୁନ୍ଧତୀ ବଶିଷ୍ଠଙ୍କୁ କହୁଥାଆନ୍ତି ଯେ ରାତିରେ ରନ୍ଧନ ପାଇଁ ଲବଣ ନଥିଲା; ବଶିଷ୍ଠ ତାହାଶୁଣି ପତ୍ନୀଙ୍କୁ ପରାମର୍ଶ ଦେଲେ ବିଶ୍ୱାମିତ୍ରଙ୍କ ଗୃହରୁ ଲବଣ ଆଣିବାପାଇଁ; କିନ୍ତୁ ବିଶ୍ୱାମିତ୍ର ଅରୁନ୍ଧତୀଙ୍କର ଶତପୁତ୍ରଙ୍କୁ ନିର୍ମମଭାବରେ ହତ୍ୟା କରିଥିବାରୁ ଅରୁନ୍ଧତୀ ସେ ପ୍ରସ୍ତାବରେ ରାଜିହେଲେ ନାହିଁ । ତଥାପି ମହର୍ଷି ବଶିଷ୍ଠ ତାଙ୍କୁ ବିଶ୍ୱାମିତ୍ରଙ୍କ ଗୃହକୁ ଯିବାପାଇଁ ଜିଦ୍ ଧରିଲେ । ଏହି ପରିସ୍ଥିତି ଲକ୍ଷ୍ୟକରି ବିଶ୍ୱାମିତ୍ରଙ୍କର କ୍ରୋଧ ପ୍ରଶମିତ ହେଲା । ଖଡ଼୍‌ଗ ହସ୍ତରେ ସେ ବଶିଷ୍ଠଙ୍କ ସମ୍ମୁଖକୁ ଆସି ତାଙ୍କ ପାଦତଳେ ଖଡ଼୍‌ଗ ନିକ୍ଷେପ କରି ପ୍ରଣିପାତ ହେଲେ ଓ କ୍ଷମାର ଅବତାର ବଶିଷ୍ଠଙ୍କୁ ବ୍ରହ୍ମଜ୍ଞାନ ପ୍ରଦାନ ଲାଗି ଅନୁରୋଧ କରିଥିଲେ । ବ୍ରହ୍ମର୍ଷି ବଶିଷ୍ଠ ତହୁଁ ବିଶ୍ୱାମିତ୍ରଙ୍କୁ କହିଲେ ଯେ, ବ୍ରହ୍ମଜ୍ଞାନ କେବଳ ଦେଇ ପାରନ୍ତି ଅନନ୍ତଦେବ । ତହୁଁ ବିଶ୍ୱାମିତ୍ର ଅନନ୍ତଦେବଙ୍କ ନିକଟକୁ ଯାଇ ଦେଖନ୍ତି ସେ ସମସ୍ତ ଫଣା ମେଲି ପୃଥିବୀକୁ ଧାରଣ କରିଛନ୍ତି ।

ବିଶ୍ୱାମିତ୍ରଙ୍କ ପ୍ରାର୍ଥନା ଶୁଣି ଅନନ୍ତଦେବ କହିଲେ ତାଙ୍କଠାରୁ ବିଶ୍ୱାମିତ୍ର ଯଦି ପୃଥିବୀକୁ ନେଇ ଧାରଣ କରନ୍ତି, ତେବେ ଯିନା ସେ

Digitized by srujan ka@gmail.com

ବ୍ରହ୍ମଜ୍ଞାନ ଦେଇ ପାରିବେ । ତଦ୍ଦୁ ବିଶ୍ୱାମିତ୍ର ପୃଥିବୀକୁ ଧରି ରଖିବା ପାଇଁ ହାତ ବଢ଼ାଇଦେଲେ; କିନ୍ତୁ ଅନନ୍ତଦେବ ତାଙ୍କ ହାତକୁ ପୃଥିବୀକୁ ବଢ଼ାଇ ଦେବା ମାତ୍ରେ ପୃଥିବୀ ବିଶ୍ୱାମିତ୍ରଙ୍କ ହସ୍ତରେ ଧରା ନ ଦେଇ ଶୂନ୍ୟେ ଶୂନ୍ୟେ ଘୂରିବାକୁ ଲାଗିଲା ।

କୋଟି କୋଟି ଜୀବଜନ୍ତୁଙ୍କର 'ରକ୍ଷା କର', 'ରକ୍ଷାକର' ନାଦରେ ଗଗନ ପବନ ମାନାଦିତ ହୋଇ ଉଠିଲା । ସ୍ୱୟଂ ବିଶ୍ୱାମିତ୍ର ସେ ଦୃଶ୍ୟରେ ଭୟ ବିହ୍ୱଳହୋଇ 'ରକ୍ଷାକର','ରକ୍ଷାକର' ଧ୍ୱନିରେ ଅନନ୍ତଦେବଙ୍କୁ ପ୍ରାର୍ଥନା କଲେ । ଅନନ୍ତଦେବ କହିଲେ, ତୁମେ ଯେବେ ଜୀବନରେ କେବେ ସତ୍‌ସଙ୍ଗ ଲାଭ କରିଥାଅ, ତେବେ ତାହା ସ୍ମରଣ କର । ବିଶ୍ୱାମିତ୍ର ବଶିଷ୍ଠଙ୍କ ନାମ ସ୍ମରଣ କଲେ । ପୃଥିବୀ ତଦ୍ଦୁ ଧୃତ ହେଲା ।

ତା'ପରେ ଅନନ୍ତଦେବ କହିଲେ, ଯାହାଙ୍କ ନାମ ସ୍ମରଣମାତ୍ରେ ପୃଥିବୀ ମହାପ୍ରଳୟରୁ ଉଦ୍ଧାର ପାଇଲା, ତାଙ୍କ ଛଡ଼ା ତୁମକୁ ଆଉ କିଏ ବ୍ରହ୍ମଜ୍ଞାନ ଦେଇ ପାରନ୍ତି ? ଯେଉଁ ବଶିଷ୍ଠଙ୍କୁ ହତ୍ୟା କରିବାକୁ ବିଶ୍ୱାମିତ୍ର ଉଦ୍ୟତ ହୋଇଥିଲେ, ଶେଷରେ ଆସି ତାଙ୍କର ପାଦତଳେ ଲୁଣ୍ଠିତ ହୋଇ ପଡ଼ିଲେ । ସେତେବେଳେ ବଶିଷ୍ଠ ବିଶ୍ୱାମିତ୍ରଙ୍କ ହାତ ଧରି କହିଥିଲେ, 'ଉଠ ବ୍ରହ୍ମର୍ଷି; ଉଠ !'

## ମହର୍ଷି ବଶିଷ୍ଠଙ୍କ ବାଣୀ

ଗୋରୁମାନଙ୍କୁ କାୟମନୋବାକ୍ୟରେ ଭକ୍ତିପୂର୍ବକ ଅର୍ଚ୍ଚନା କଲେ ସବୁ ଦେବଦେବୀ ଓ ତୀର୍ଥାଦି ଅର୍ଚ୍ଚନାର ଫଳ ଲାଭ ହୁଏ ।

ସମସ୍ତ ଦେବ ଓ ଦେବୀ ଆରାଧନା, ସମସ୍ତ ଗ୍ରହ ନକ୍ଷତ୍ର ପୂଜା ଓ ସମସ୍ତ ତୀର୍ଥାଦି ପର୍ଯ୍ୟଟନରେ ଯେଉଁ ଫଳ ଲାଭ ହୁଏ, ଏକମାତ୍ର ଗୋସେବାରେ ତତୋଽଧିକ ଫଳ ଲାଭ ହୋଇଥାଏ ।

Digitized by srujan ka@gmail.com

ଯେଉଁ ବ୍ୟକ୍ତି ଶ୍ରଦ୍ଧାପୂର୍ବକ ଗୋସେବା କରନ୍ତି, ସେ ଅଗ୍ନି-ଲୋକରେ ନୂତନ ସ୍ଥାନ ଲାଭକରନ୍ତି । ଯେଉଁ ବ୍ୟକ୍ତି ସଶ୍ରଦ୍ଧ ଚିତ୍ତରେ ଗୋରୁଙ୍କୁ ଖାଦ୍ୟ ପ୍ରଦାନ କରନ୍ତି, ସେ ସ୍ୱର୍ଗଲୋକର ଅଧିକାରୀ ହୁଅନ୍ତି ।

ଯେଉଁ ଗୃହ ଚାର୍ଣ୍ଣୂନ୍ୟ, ଯେଉଁଠାରେ ଗୋସେବା ନାହିଁ, ସେଠାରେ ସମସ୍ତ ଐଶ୍ୱର୍ଯ୍ୟ ନିଷ୍ଫଳ ଏବଂ ସମସ୍ତ ପୁଣ୍ୟ ନିଫଳ ।

"ଗୋମାତା ମୋର ମୁଁ ତାହାର
ନାହିଁ ଉଭୟେ ପରପର"
ଗୋହିତେ ଜଗତ କଲ୍ୟାଣ
ଗୋଜାତି ମାନବର ପ୍ରାଣ

ଏହି ଲୋକରେ ଧନ ସଞ୍ଚୟ କାର୍ଯ୍ୟ ଅପେକ୍ଷା ତପସ୍ୟା ହେଉଛି ମନୁଷ୍ୟର ଶ୍ରେଷ୍ଠ ସମ୍ପଦ । ଯେ ସବୃତ୍ତିକାର ଲୌକିକ ସଂଗ୍ରହକୁ ଅର୍ଥାତ୍ ଧନ, ଭୂମି, ସ୍ତ୍ରୀ, ଐଶ୍ୱର୍ଯ୍ୟ ପ୍ରଭୃତିକୁ ପରିତ୍ୟାଗ କରେ ତାହାର ଜୀବନ ଉପଦ୍ରବହୀନ ଓ ଶାନ୍ତ ହୋଇଯାଏ ।

ଧନ ସଂଗ୍ରହକାରୀ କୌଣସି ଲୋକ କଦାପି ସୁଖୀ ହୋଇ ପାରେ ନାହିଁ ।

ବ୍ରାହ୍ମଣ ଦାନ ଗ୍ରହଣ ଅଭ୍ୟାସରୁ ମୁକ୍ତ ହେଲେ, ସେ ସନ୍ତୋଷଲାଭ କରେ ଏବଂ ତାହା ଜୀବନରେ ବ୍ରହ୍ମତେଜ ବୃଦ୍ଧି ହୁଏ ।

Digitized by srujan ka@gmail.com

# ମହର୍ଷି ପରାଶର

ଅଧ୍ୟାପକ ଡକ୍‌ଟର ସତ୍ୟବ୍ରତାନନ୍ଦ ମହାନ୍ତି ଏମ୍. ଏ. ପି. ଏଇଚ୍. ଡି.

ରେଭେନ୍‌ସା କଲେଜ, କଟକ

ବୈଦିକ ଋଷି ପରାଶର, ମହର୍ଷି ବଶିଷ୍ଠଙ୍କର ନାତି । ସେ ବଶିଷ୍ଠଙ୍କ ପୁତ୍ର ଶକ୍ତି ଓ ତାଙ୍କର ପତ୍ନୀ ଅଦୃଶ୍ୟନ୍ତୀଙ୍କ ଗର୍ଭରେ ଜାତ ହୋଇଥିଲେ । ସେ ବୈଦିକ ସୂକ୍ତ ବ୍ୟତୀତ ପରାଶର ସଂହିତା ରଚନା କରିଛନ୍ତି ।

ମହାଭାରତ ଅନୁସାରେ ଇକ୍ଷ୍ୱାକୁ ବଂଶୀୟ ରାଜା କଲ୍ମାଷପାଦ ଥରେ ମୃଗୟା କାଳରେ କ୍ଷୁଧା ଓ ତୃଷାରେ ଆତୁର ହୋଇ ଏକ ସଂକୀର୍ଣ୍ଣ ପଥରେ ଆସିବାବେଳେ ବାଟରେ ଶକ୍ତିଙ୍କୁ ଆସୁଥିବାର ଦେଖି ତାଙ୍କୁ ବାଟ ଛାଡ଼ ଦେବାକୁ କହିବାରୁ ଶକ୍ତି ମନାକଲେ । କାରଣ ରାଜା ବ୍ରାହ୍ମଣଙ୍କୁ ବାଟ ଛାଡ଼ିଦେବାର କଥା । ଶକ୍ତି ବାଟରୁ ନ ଘୁଞ୍ଚିବା ଦେଖି ରାଜା ତାଙ୍କୁ କଷାଘାତ କରିବାରୁ ସେ ରାଜାଙ୍କୁ 'ନର ମାଂସଭୋଜୀ ରାକ୍ଷସ'ରେ ପରିଣତ ହେବାକୁ ଅଭିଶାପ ଦେଲେ । ଋଷିଙ୍କ ଅଭିଶାପ ତତ୍‌କ୍ଷଣାତ୍ ଫଳିଲା । ରାକ୍ଷସ କଲ୍ମାଷପାଦ ଶକ୍ତିଙ୍କୁ ଭକ୍ଷଣ କଲା । ଏହା ପରେ ବିଶ୍ୱାମିତ୍ରଙ୍କ ପ୍ରରୋଚନାରେ ବଶିଷ୍ଠଙ୍କର ଅବଶିଷ୍ଟ ଶହେ ପୁଅଙ୍କୁ ମଧ୍ୟ ଖାଇଦେଲା । ପୁତ୍ର-ଶୋକରେ ଜର୍ଜରିତ ହୋଇ ବଶିଷ୍ଠ ଆତ୍ମହତ୍ୟା କରିବାକୁ ଚେଷ୍ଟା

Digitized by srujan ka@gmail.com

କଲେହେଁ ତାଙ୍କର ମୃତ୍ୟୁ ହେଲାନାହିଁ । ସେ ଦୁଃଖରେ ଆଶ୍ରମକୁ ଲେଉଟି ଆସିଲାବେଳେ ପଛରୁ ବେଦଧ୍ୱନି ଶୁଣି ଫେରି ଚାହିଁ ଦେଖିଲେ ଯେ ବଧୂ ଅଦୃଶ୍ୟନ୍ତୀ ଆସୁଛନ୍ତି । ତାଙ୍କ ଗର୍ଭରେ ଥିବା ଗୋଟିଏ ବାରବର୍ଷର ପୁଅ ବେଦପାଠ କରୁଅଛି । ବାଟରେ କଲ୍ମାଷପାଦ ବଶିଷ୍ଠଙ୍କୁ ମଧ୍ୟ ଭକ୍ଷଣ କରିବାକୁ ବସିଲା । ତାକୁ ଦେଖି ଅଦୃଶ୍ୟନ୍ତୀ ଭୀତ ହେବାରୁ ବଶିଷ୍ଠ କଲ୍ମାଷ ପାଦ ଦେହରେ ମନ୍ତ୍ରପୂତ ଜଳ ସେଚନ କରିବାରୁ ସେ ପୁଣି ତାର ପୂର୍ବ ରୂପ ଫେରି ପାଇଲା ଓ ରାଜା ହୋଇ ରାଜ୍ୟ ଶାସନ କରିବାକୁ ଗଲା । ବଶିଷ୍ଠ ଅଦୃଶ୍ୟନ୍ତୀଙ୍କୁ ପୁତ୍ରଲାଭ ନିମନ୍ତେ ଆଶୀର୍ବାଦ କଲେ । ଅଦୃଶ୍ୟନ୍ତୀଙ୍କ ଗର୍ଭରୁ ପୁତ୍ର ଜନ୍ମ ହେଲା । ସେ ପୁତ୍ର ମାତୃଗର୍ଭରେ ଥିବାବେଳେ ବଶିଷ୍ଠ 'ପରାଶୁ' (ନିଜ ଜୀବନ ବିସର୍ଜନ କରିବାରେ ସଙ୍କଳ୍ପବଦ୍ଧ) ହୋଇଥିବାରୁ ତାହାର ନାମ ରଖାଗଲା ପରାଶର ।

ଅନ୍ୟ ପୁରାଣ ମତରେ ଶକ୍ତି କ୍ରୁଦ୍ଧ ହୋଇ କଲ୍ମାଷପାଦକୁ 'ରାକ୍ଷସ' ହେବାପାଇଁ ଅଭିଶାପ ଦେବାରୁ ରାଜା ଶକ୍ତି ଋଷିଙ୍କୁ ପ୍ରସନ୍ନ କରିବାକୁ ଚେଷ୍ଟା କରୁଥିଲେ । ଏହା ପୂର୍ବରୁ କଲ୍ମାଷପାଦଙ୍କୁ ଯଜମାନରୂପେ ପାଇବାକୁ ବଶିଷ୍ଠ ଓ ବିଶ୍ୱାମିତ୍ରଙ୍କ ମଧ୍ୟରେ ପ୍ରତି-ଯୋଗିତା ଥିଲା । ଅଭିଶପ୍ତ ରାଜା ଶକ୍ତିଙ୍କୁ ପ୍ରସନ୍ନ କରିବାକୁ ଚେଷ୍ଟା କରୁଥିବାବେଳେ ବିଶ୍ୱାମିତ୍ରଙ୍କ ଆଦେଶରେ 'କିଙ୍କର' ନାମକ ରାକ୍ଷସ କଲ୍ମାଷପାଦ ଦେହରେ ପ୍ରବେଶ କରିବାରୁ କଲ୍ମାଷ-ପାଦ ଏକ ବିକୃତ ରୂପ ରାକ୍ଷସରେ ପରିଣତ ହୋଇ ଶକ୍ତିଙ୍କୁ ଓ ବିଶ୍ୱାମିତ୍ରଙ୍କ ପ୍ରରୋଚନାରେ ବଶିଷ୍ଠଙ୍କର ଅନ୍ୟାନ୍ୟ ଶତପୁତ୍ରଙ୍କୁ ଭକ୍ଷଣ କଲା ।

ପରାଶର ଦିନେ ବଶିଷ୍ଠଙ୍କୁ ପିତା ବୋଲି ସମ୍ବୋଧନ କରି-ବାରୁ ମାତା ଅଦୃଶ୍ୟନ୍ତୀ ତାର ପିତା ଶକ୍ତିଙ୍କୁ ରାକ୍ଷସ ଖାଇଦେବା

Digitized by srujan ka@gmail.com

କଥା ପ୍ରକାଶ କଲେ । ଏଥିରେ ପରାଶର କ୍ରୁଦ୍ଧ ହୋଇ ରାକ୍ଷସନାଶନ ଯଜ୍ଞ ଆରମ୍ଭ କଲେ । ଅତ୍ରି, ପୁଲହ, ପୁଲସ୍ତ୍ୟ ଓ କ୍ରତୁ ଆଦି ଋଷି-ମାନେ ସେଠାରେ ଉପସ୍ଥିତ ହେଲେ । ପୁଲସ୍ତ୍ୟ କହିଲେ ଅଭିଶପ୍ତ ରାଜା କଲ୍ମାଷପାଦ ସିନା ତୋର ପିତାଙ୍କୁ ଭକ୍ଷଣ କଲା । ଅନ୍ୟ ରାକ୍ଷସମାନଙ୍କର ଦୋଷ କ'ଣ ? ସେମାନେ ତ ଏ ବିଷୟ କିଛି ଜାଣନ୍ତି ନାହିଁ । ତୋର ପିତା ନିଜେ ତାଙ୍କୁ ଅଭିଶାପ ଦେଇ ନିଜର ମୃତ୍ୟୁର କାରଣ ହୋଇଛନ୍ତି । ଏହା ଶୁଣି ପରାଶର ନିଜର ରାକ୍ଷସ-ନାଶନ କାର୍ଯ୍ୟରୁ ନିବୃତ୍ତ ହେଲେ । ଶକ୍ତିଙ୍କ ସହିତ ବିବାଦ କରିଥିବା ରାଜାଙ୍କର ନାମ ସୌଦାସ ଥିବା ମଧ୍ୟ କେତେକ ପୁରାଣରୁ ଜଣାଯାଏ ।

ପରାଶରଙ୍କ ବଂଶାବଳୀ ଏହିପରି ଦେଖାଯାଏ । ବ୍ରହ୍ମାଙ୍କ ସପ୍ତମ ମାନସ ସନ୍ତାନ ବଶିଷ୍ଠ ନିମି ଅଭିଶାପରେ ଚେତନା ବିହୀନ ହେବାରୁ ବ୍ରହ୍ମାଙ୍କ ଆଦେଶରେ ଉର୍ବଶୀଙ୍କ ଗର୍ଭରେ ଓ ମିତ୍ରାବରୁଣଙ୍କ ତେଜରେ ଆଉ ଥରେ ଜାତ ହେଲେ ।

ବଶିଷ୍ଠ ଅରୁନ୍ଧତୀଙ୍କ ସନ୍ତାନ ଶକ୍ତି, ଏବଂ ଶକ୍ତି ଓ ଅଦୃଶ୍ୟନ୍ତୀଙ୍କଠାରୁ ଜନ୍ମ ହେଲେ ପରାଶର । ପରାଶର ଦିନେ ଯମୁନା ନଦୀ ପାର ହେଲାବେଳେ ନୌକାରେ ଗୋଟିଏ ସୁନ୍ଦରୀ ଯୁବତୀ ନଦୀପାର କରାଉଥିବା ଦେଖି ତା' ସହିତ ଶୃଙ୍ଗାର କରିବା ଇଚ୍ଛାକଲେ । ଏହି କନ୍ୟାଟି ଥିଲା ଏକ ଅଭିଶାପଗ୍ରସ୍ତା ଅପ୍ସରା । ବ୍ରହ୍ମଶାପ ଫଳରେ ମତ୍ସୀ ହୋଇ ଜଳରେ ବାସ କରୁ-ଥିବାବେଳେ ଧୀବରମାନଙ୍କ ଜାଲରେ ଧୃତ ହୋଇଥିଲା । ଧୀବର ରାଜା ଦାସରାଜ ତାକୁ ପାଳନ କରୁଥିଲେ । ତାହାର ନାମ ଥିଲା ମତ୍ସ୍ୟଗନ୍ଧା ଓ ଅନ୍ୟ ନାମ ସତ୍ୟବତୀ । କାମାତୁର ହୋଇ ଋଷି ପରାଶର ମତ୍ସ୍ୟଗନ୍ଧା ନିକଟରେ ବଂଶରକ୍ଷା ପାଇଁ ପୁତ୍ର ପ୍ରାର୍ଥନା

Digitized by srujan ka@gmail.com

କରିବାରୁ ସେ ଏଥିପାଇଁ ଆପତ୍ତି କରି କହିଲା, ମୋର ମତ୍ସ୍ୟବଂଶରେ ଜାତ ଓ ଦେହରୁ ମତ୍ସ୍ୟଗନ୍ଧ ବାହାରୁଛି । ପୁଣି ଦିନବେଳା ଶୃଙ୍ଗାର ନିଷିଦ୍ଧ । ଏ ଦୃଷ୍ଟିରୁ ମୋତେ କ୍ଷମା କରନ୍ତୁ; କିନ୍ତୁ ମୁନି ପରାଶର ତାହାକୁ ଏକ ସର୍ବାଙ୍ଗସୁନ୍ଦରୀ ଯୁବତୀରେ ପରିଣତ କରି ତା ମଧ୍ୟରେ ସୁବାସ ଭରିଦେଇ ତାକୁ 'ଯୋଜନଗନ୍ଧା' କରିଦେଲେ । ରାତ୍ରି-ପର୍ଯ୍ୟନ୍ତ ଅପେକ୍ଷା କରି ନ ପାରି ଋଷି ଚତୁର୍ଦ୍ଦିଗରେ କୁହୁଡ଼ି ସୃଷ୍ଟି କରି ରାତ୍ରିର ଭ୍ରମ ସୃଷ୍ଟି କଲେ ! ଯୋଜନଗନ୍ଧା ସହିତ ଶୃଙ୍ଗାର କରିସାରି ମୁନି ତାକୁ ବର ଦେଲେ ଯେ, ତା'ର ଗୋଟିଏ ତେଜସ୍ୱୀ ପୁତ୍ର ଜାତ ହେବାସତ୍ତ୍ୱେ ସେ କୁମାରୀ ହୋଇ ରହିବ । ଯମୁନା-ଦ୍ୱୀପରେ ବିଷ୍ଣୁ ଅଂଶରେ ଜାତ ହୋଇଥିବାରୁ ସେ ପୁତ୍ରର ନାମ ହେଲା କୃଷ୍ଣ ଦ୍ୱୈପାୟନ । ଏହି ପୁତ୍ର ପରବର୍ତ୍ତୀକାଳରେ ବେଦକୁ ବିଭାଗ କରି ବେଦବ୍ୟାସ ନାମରେ ପରିଚିତ ହୋଇଥିଲେ ଓ ଭାଗବତର ବକ୍ତା ଶୁକଦେବଙ୍କର ଜନକ ହୋଇଥିଲେ ।

## ମହର୍ଷି ପରାଶରଙ୍କ ବାଣୀ

(ପରାଶର ସଂହିତାରୁ ଅନୁବାଦ)

( ୧ )

ଯେଉଁ ଲୋକ ନିଜପରି ଅନ୍ୟମାନଙ୍କୁ ଦେଖେ ଏବଂ ଅନ୍ୟର ଅନିଷ୍ଟ ଚିନ୍ତା କରେ ନାହିଁ, ତାହାର କେବେହେଲେ ଅନିଷ୍ଟ ହୁଏ ନାହିଁ ।

ସକାଳେ, ସନ୍ଧ୍ୟାରେ, ରାତ୍ରିରେ କିମ୍ବା ଖରାବେଳେ ଯେ କୌଣସି ସମୟରେ ଶ୍ରୀ ନାରାୟଣଙ୍କୁ ସ୍ମରଣ କଲେ ମନୁଷ୍ୟର ସକଳ ପାପ ନାଶ ହୁଏ ଓ ସେ ନରକଗାମୀ ହୁଏ ନାହିଁ ।

Digitized by srujan ka@gmail.com

କୌଣସି ବ୍ୟକ୍ତି ଯଦ୍ୟପି ଦେବତା ପୂଜା କିମ୍ବା ଲୋକସେବା ନିମିତ୍ତ ଅକୁଣ୍ଠିତ ଚିତ୍ତରେ ଯେତେ ଧନ ବ୍ୟୟ କରେ ତାହାର ସେ ସମସ୍ତ ଧନ କଦାପି ଅକାରଣ ହୋଇଯାଏ ନାହିଁ ।

ପ୍ରାଣୀମାନଙ୍କର ପୂର୍ବ ଧର୍ମବଳରୁ ବିଦ୍ୟାଲାଭ ହୁଏ, ଧର୍ମବଳରୁ ଧନ ଲାଭ ହୁଏ, ଧର୍ମବଳରୁ ଉତ୍ତମ ସ୍ୱାସ୍ଥ୍ୟ ଓ ରୂପଲାଭ ହୁଏ; ତେଣୁ କରି ଧର୍ମ ଅର୍ଜନ କରିବା ପ୍ରତ୍ୟେକଙ୍କର କର୍ତ୍ତବ୍ୟ ।

ଯେଉଁ ଲୋକ ନିଜେ ଧନ ଉପାର୍ଜନ ନ କରି ପିତୃପିତାମାନଙ୍କ ଦ୍ୱାରା ସଞ୍ଚିତ ଧନ ବା ଭୂମି ପ୍ରଭୃତିକୁ କେବଳ ବସି ବସି ଭୋଗ ବିଳାସରେ ବ୍ୟୟ କରେ, ତେବେ ସେ ସହସ୍ର ବର୍ଷ ନରକରେ ବାସ କରେ ।

ଶତ ସଂଖ୍ୟକ ଯଜ୍ଞ ଓ ହୋମଦ୍ୱାରା ଯାହା କିଛି ସଞ୍ଚିତ ହୋଇ ଥାଏ, ସେ ଯେବେ ପର ସୀମାରୁ ଅଧଆଙ୍ଗୁଳି ହରଣ କରେ, ତାହାହେଲେ ସେ ସମସ୍ତ ଧର୍ମ ନଷ୍ଟ ହୁଏ ।

ବ୍ରାହ୍ମଣମାନେ ବହୁ ଯଜ୍ଞ କରି, ବହୁ ତପସ୍ୟା କରି, ବହୁ ବିଦ୍ୟା ଅଧ୍ୟୟନ କରି ଯେପରିଭାବରେ ସ୍ୱର୍ଗଲାଭ କରନ୍ତି ବୀରପୁରୁଷ-ମାନେ ଯୁଦ୍ଧ ଭୂମିରେ ଯୁଦ୍ଧ କରି ପ୍ରାଣ ବିସର୍ଜନପୂର୍ବକ ସେହିପରି-ଭାବରେ ସେହି ସ୍ଥାନ ଅକ୍ଳେଶରେ ଲାଭ କରନ୍ତି ।

ଯେପରି ଜଳ ଉପରେ ତୈଳବିନ୍ଦୁ ନିକ୍ଷେପ କଲେ ତାହା ସମୁଦାୟ ଜଳର ଉପରିଭାଗରେ ବିସ୍ତୃତ ହୋଇଯାଏ, ସେହିରୂପେ ଏକତ୍ର ବସିଲେ, ଏକତ୍ର ଶୟନ କଲେ, ଏକତ୍ର ବାସକଲେ, ଏକତ୍ର ଆଳାପ କଲେ, ଏକତ୍ର ଭୋଜନ କଲେ, ଜଣକର ପାପ ଅପରର ଶରୀରରେ ସଂକ୍ରମିତ ହୁଏ ।

ସଭା ମଧ୍ୟରେ ହଠାତ୍ ପ୍ରବେଶ କରିବା ଉଚିତ ନୁହେଁ କିମ୍ବା ଅସୁନ୍ଦର କଥା କହିବା ଉଚିତ ନୁହେଁ । କିଛି ନ କହି ଚୁପ୍‌ହୋଇ

Digitized by srujan ka@gmail.com

ବସି ରହିବା ଉଚିତ ନୁହେଁ, କିମ୍ବା ଅତ୍ୟଧିକ କହିବା ଉଚିତ ନୁହେଁ । ତେଣୁ ଏ ସମସ୍ତ କଲେ ପାପଭାଗୀ ହେବାକୁ ହୁଏ ।

ପୁନଶ୍ଚ ଯେଉଁ ଲୋକ ଦେଖି ଶୁଣି ସଭା ମଧ୍ୟରେ କିଛି କହେ ନାହିଁ, ସେ ଶହେ ଜନ୍ମପର୍ଯ୍ୟନ୍ତ ବଧିର ହୁଏ । ତେଣୁ ଯାହା ଦେଖି-ଥିବ ବା ଶୁଣିଥିବ ତାହା ସଭାରେ ପ୍ରକାଶ କରିବା ଉଚିତ ।

ଯେଉଁ ଲୋକ ନିଜର ଲାଭ ଆଶାରେ ମିଥ୍ୟା କଥା କହନ୍ତି କିମ୍ବା ମିତ୍ର ଓ ବନ୍ଧୁମାନଙ୍କର ଉପକାର କରିବା ଉଦ୍ଦେଶ୍ୟରେ ମିଛ ସାକ୍ଷୀ ଦିଅନ୍ତି, ତାହାର ନରକଗତି ସୁନିଶ୍ଚିତ ।

ସ୍ତ୍ରୀ ବା ପୁରୁଷ ଯେ କୌଣସି କ୍ରୋଧ, ଭୟ ବା ସ୍ନେହ ହେତୁ ଗଳାରେ ଦଉଡ଼ି ଦେଇ ବା ବିଷ ଖାଇ ବା ଶସ୍ତ୍ରାଦିଦ୍ୱାରା ଆତ୍ମହତ୍ୟା କରେ ସେ ପୂଜ ଶୋଣିତପୂର୍ଣ୍ଣ, ଦୁର୍ଗନ୍ଧ ଅନ୍ଧକାରପୂର୍ଣ୍ଣ ସ୍ଥାନରେ ଷାଠିଏ ହଜାର ବର୍ଷ ପର୍ଯ୍ୟନ୍ତ ନରକ ଭୋଗ କରେ ।

ବାଛୁରୀ ଗାଈଠାରୁ ଦୁଧ ପିଇ ଯାଉଛି ଏ କଥା ତାହା ସ୍ୱାମୀକୁ କହିବ ନାହିଁ ବା ଅଡ଼ାଇ ଦେବ ନାହିଁ କିମ୍ବା ନିଜର ବା ଅନ୍ୟର ଜମି ବା ଖଳାରେ ଶସ୍ୟାଦି ଖାଇବା ଦେଖିବ, କାହାରିକୁ କହି ତାଙ୍କ ଖାଇବାରେ ବାଧା ଦେବ ନାହିଁ ।

କ୍ଷୁଧାତୁର, ତୃଷାତୁର, ପରିଶ୍ରାନ୍ତ, ହୀନାଙ୍ଗ, ରୋଗଗ୍ରସ୍ତ, ନପୁଂସକ ବଳଦଦ୍ୱାରା ବୃଷ ବା ହଳ ବୋହିବ ନାହିଁ ।

ଦୁର୍ଭିକ୍ଷ ସମୟରେ ବିଦେଶରେ, ନିର୍ଜନ ସ୍ଥାନରେ ଅତ୍ୟନ୍ତ ପୀଡ଼ିତାବସ୍ଥାରେ ନୀଚଜାତିର କୌଣସି ବ୍ୟକ୍ତିର ଅନ୍ନଗ୍ରହଣ କଲେ ଦୋଷ ହୁଏ ନାହିଁ ।

Digitized by srujan ka@gmail.com

କେତେକ କର୍ମ ଉତ୍ତାରେ ସମସ୍ତଙ୍କର ସ୍ନାନ କରିବା ଉଚିତ ।

କୌଣସି ଶବ ଦହନର ଧୂଆଁ ଦେହରେ ଲାଗିଥିଲେ, କ୍ଷୌର ହେଲା ଉତ୍ତାରେ, ମୈଥୁନ କର୍ମ ପରେ, ତେଲ ଲଗାଇଲା ପରେ, ବାନ୍ତ କରିଲାପରେ, ଦୁଃସ୍ୱପ୍ନ ଦର୍ଶନ ପରେ ସମସ୍ତଙ୍କର ସ୍ନାନ କରିବା କର୍ତ୍ତବ୍ୟ ।

( ୨ )

ଧର୍ମରୁ ଶ୍ରେଷ୍ଠ ହୋଇ ଏ ଜଗତ ଯାକ
କଥା ହେଲା ପରତ ଦେଖିନାହିଁ ମୁଁ ତ ।
ଧର୍ମରୁ ବଡ଼ ହୋଇ ଦେହୀଙ୍କର କଥା ।
ନାହିଁଟି ଜାଣ ଜନକ ମହାରଥୀ ॥

× × ×

ସୁକୃତ କଲେ ଅନ୍ତକାଳେ ସୁଖପାଏ ।
ଦୁଷ୍କୃତ କରି ମଲେ ନରକକୁ ଯାଏ ॥
ମନରେ ବଚନରେ ନୟନରେ ଯାହା ।
କରିଥାଏ ସମ୍ଭୋଗ ହୁଅଇଟି ତାହା ॥
ସୁକୃତ ଦୁଷ୍କୃତ ଯେ କ୍ଷୟା କ୍ଷୟ ହୋଇ ।
ପୁନଃ ପୁନଃ ଭୋଗ ହୁଅଇ ନର ସାଇଁ ॥

× × ×

ପାପ କରିଲେ ଯେବେ ଧନ ବୃଦ୍ଧି ହେବ ।
ଜାଣିବା ଜନ ତାହା କେବେ ନ କରିବ ॥
ପାପ କର୍ମ ସକାଶୁଁ ସବୁ କର୍ମ ଯାଏ ।
ଘୋର କରି ନରକକୁଟି ଅରପାଏ ॥

× × ×

ଆପଣା ସାମର୍ଥ୍ୟକୁ ବୁଝିଁ ଶୁଭକର୍ମ ।
କରୁଥିଲେ ଲୋକର ପ୍ରକାଶଇ ଧର୍ମ ॥

Digitized by srujan ka@gmail.com

ଧର୍ମାନୁରତ ହୋଇ ପ୍ରାଣୀଙ୍କ ଠାରେ ଦୟା ।
କରୁଥିବ ହୃଦୟୁ ଛାଡ଼ିଦେଇ ମାୟା ॥
ବୃଦ୍ଧ ଲୋକମାନଙ୍କୁ ପୂଜା କରୁଥିବ ।
ବଚନରେ ସ୍ୱପନେ ହେଲେ ନ ଲଂଘିବ ॥
କେହି କାହାକୁ ଉପକାର ନ କରଇ ।
କେ କାହାକୁ ଦେବାକୁ ସମର୍ଥ ନୁହଁଇ ॥
ସବୁକଥା ଯାକରେ ଈଶ୍ୱର କାରଣ ।
ମୁଁ କଲି ବୋଲିବାର ବ୍ୟର୍ଥ ଅଟେ ଜାଣ ॥
ସୋଦର ଭାଇ ଯେବେ ଦଗାଦାର ହେବ ।
କଷ୍ଟଥାଇଁ ଅବଶ୍ୟ ତାହାକୁ ଛାଡ଼ିବ ॥
ସମାନ ଲୋକଠାରେ ଦେବ ଢଆଇବ ।
ଏହା ବାହାରେ ମଧ୍ୟ ଆପଣଙ୍କୁ ନେବ ॥
ନ୍ୟାୟରେ ଯେଉଁ ଧନ ହୋଇବ ପ୍ରାପତ ।
ବଢ଼ାଇ ବଟେ ଧନ ଦେଇ କରି ମତ ॥
ଶ୍ରାଦ୍ଧ କଲେ ପିତୃଏ ହୋଇଣ ସନ୍ତୋଷ ।
ବୋଲନ୍ତି ବାବୁ ଅନ୍ତେ ପାଅ ସ୍ୱର୍ଗବାସ ॥

× × ×

ସକଳ ଅବସ୍ଥାରେ ସାଧୁଙ୍କର ସଙ୍ଗ ।
କରିବ ଛାଡ଼ିଦେଇ ମନୁ କ୍ରୀଡ଼ା-ରଙ୍ଗ ॥

× × ×

ସୁଖ ଦୁଃଖ ଜାଣି ଯେ କରଇ ଶୁଭ କଥା ।
ବ୍ୟାଧି ନ ଦେଇ ପାରେ ଅମଙ୍ଗଳ ବ୍ୟଥା ॥

× × ×

ଧନାକାଂକ୍ଷୀ ହୋଇଲେ ନ ଛାଡ଼ିବ ଧର୍ମ ।
ନାଶ କରଇ ଜାତ ହୋଇଲେ ଅଧର୍ମ ॥

Digitized by srujan ka@gmail.com

ନ୍ୟାୟ୍ୟ ଧନ କଢ଼ାକୁ ଅନ୍ୟାୟର ଶଏ !
ଟଙ୍କା ସରି ନୋହେ ଜାଣ ହେ ନରସର୍ବେ ॥

× × ×

ସୁଖ, ଦୁଃଖ ଏ ଦୁଇ କଥାରେ ଲୋଭକୁ ।
କରିବ ତ୍ୟାଗ ଯେବେ ଲୋଡ଼ିବ ଭଲକୁ ॥
ଅସନ୍ତୋଷ ହୋଇଲେ ଲୋକ ଦୁଃଖ ପାଏ ।
ଏହା ଜାଣି ଛାଡ଼ିବ ତା ସବୁ ଉପାୟେ ॥
ଲୋଭ ସକାସରୁ ବୃଦ୍ଧି ହୁଅଇ ଧ୍ୱଂସ ।
ଆୟୁଷ ଥାଉଁ ବେଳେ ଲାଗେ କାଳ ଫାଶ ॥
ଲୋକମାନଙ୍କର ଯେ ପରମ ଦେବତା ।
ଅଟଇଟି ରାଜନ ଜାତ କଲା ପିତା ॥
ପିତାକୁ ପ୍ରତି ମାତା ଅଧିକ ଅଟଇ ।
ଗୌରବତରେ ଜାଣ ଜନକ ନରସାଇଁ ॥

× × ×

ମନୁଷ୍ୟ ଜନ୍ମ ହେଲେ ତୀର୍ଥ-ବ୍ରତ କରି ।
ଅନ୍ତଃକାଳେ ଯାଇ ବସିବ ସ୍ୱର୍ଗପୁରୀ ॥
ଯେତେକ ଦାନ ପୁଣ୍ୟ ଜଗତରେ ଅଛି ।
ମନୁଷ୍ୟ ଜନ୍ମ ପାଇ ଲୋକ ତା କରୁଛି ॥
ପରିଶର ବୋଇଲେ ଅନାଶକ୍ତ ହେଲେ ।
ଲୋକଙ୍କର ଶ୍ରେୟ ପ୍ରକାଶ ହୁଏ ଭଲେ ॥
ଦାନ ଦେବା ପ୍ରତି କ ଅଭୟ ଦେବାର ।
ଅଧିକ ଅଟେ ହେ ରାଜନ ମନେକର ॥
ରାଗ କ୍ରୋଧକୁ ଛାଡ଼ି ଥାଇ ଯେଉଁ ନର ।
ସଂସାରେ ଥିଲେ ବାଧି ନ ପାରେ ସଂସାର ॥

Digitized by srujan ka@gmail.com

କଳତ୍ର, ଧନ ଜନ ଛାଡ଼ଇଛି ନର ।
ସ୍ୱର୍ଗକୁ ଯିବା ବୁଦ୍ଧି ହୃଦେ କର ଘର ॥
ବିଷୟରେ ଆସକ୍ତ ଯେ ହୋଇଥାଏ ।
ହିତକୁ ନ ଜାଣଇ କହିଲେ ସେ ପରେ ॥
ଆବାଲ୍ୟରୁ ବୃଦ୍ଧ ଅବସ୍ଥା ହେବାଯାଏ ।
ମୃତ୍ୟୁଟି ଘୋଟିଥାଏ ପ୍ରାଣୀଙ୍କ ପ୍ରବାହେ ॥
ଏହା ଜାଣି ଜ୍ଞାନ ବଳରେ ଦେଖ ଲୋକ ।
ନାଶ କରୁଥିବ ଦେହରୁ ପାପପାକ ॥
ପନ୍ନଗ (ସାପ) ପବନକୁ ଖାଇଲା ପରାୟେ ।
ମୃତ୍ୟୁ ପ୍ରାଣୀମାନଙ୍କୁ ଖାଉଛନ୍ତି ପରାୟେ ॥
ଯେଉଁ କର୍ମ ଲୋକ ପୂର୍ବରେ ଥାଏ କରି ।
ଜନ୍ମ ହେଲେ ସେ କର୍ମ ଭୁଞ୍ଜେ ଦଣ୍ଡଧାରୀ ॥
ଦୁଃଖ ସୁଖରୁ ପୂର୍ବ କର୍ମକୁ ଜାଣିବ ।
ଜ୍ଞାନର ଅଭ୍ୟାସରେ ବସି ଧନ ନେବ ॥
ଶୁଭ କର୍ମ କରିଲେ ବସନ ସଦନ ।
ଏ ବାହାରେ ମିଳଇ ଉତ୍ତମ ସ୍ତ୍ରୀ ଜନ ॥
ପରାଶର ଋଷିଙ୍କ ଏହି ବାଣୀ ଶୁଣି ।
ମହାତୋଷ ହେଲେ ଜନକ ନରମଣି ॥

ମହାଭାରତ ଶାନ୍ତିପର୍ବ

———

Digitized by srujan ka@gmail.com



# ମହର୍ଷି ବିଶ୍ୱାମିତ୍ର


**ଅଧ୍ୟାପକ ପଣ୍ଡିତ ଶ୍ରୀ ବୀରହନୂମାନ ଶାସ୍ତ୍ରୀ** ଏମ୍.ଏ.

ସାହିତ୍ୟାଚାର୍ଯ୍ୟ ଓ ଜ୍ୟୋତିଷାଚାର୍ଯ୍ୟ, ଅବସରପ୍ରାପ୍ତ ଅଧ୍ୟାପକ,

ସଦାଶିବ ସଂସ୍କୃତ କଲେଜ, ପୁରୀ


ବିଶ୍ୱାମିତ୍ର କ୍ଷତ୍ରିୟ କୁଳରେ ଜନ୍ମଗ୍ରହଣ କରିଥିଲେ । ମାତ୍ର କଠୋର ତପସ୍ୟା ବଳରେ ବ୍ରାହ୍ମଣତ୍ୱ ଲାଭ କରିଥିଲେ । ବିଶ୍ୱାମିତ୍ରଙ୍କ ଜୀବନରେ ସର୍ବପ୍ରଧାନ ଘଟଣା ବ୍ରହ୍ମର୍ଷି ବଶିଷ୍ଠଙ୍କର ସହିତ ବିରୋଧ । ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କ ମଧ୍ୟରେ ଶ୍ରେଷ୍ଠତ୍ୱ

Digitized by srujan ka@gmail.com

ନେଇ ଯେ ଦ୍ୱନ୍ଦ୍ୱ ଚାଲିଥିଲା ତାହା ଏହି ଋଷିଙ୍କ ଜୀବନରୁ ପ୍ରମାଣିତ ହୁଏ । ଏହି ବିରୋଧର କଥା ଋକ୍‌ବେଦରେ ଅନେକବାର ଉଲ୍ଲିଖିତ ହୋଇଅଛି । ଏହି ଦୁଇ ଋଷିଙ୍କ କଳହ ଶେଷରେ ରକ୍ତପାତରେ ପର୍ଯ୍ୟବସିତ ହୁଏ । ବିଶ୍ୱାମିତ୍ରଙ୍କର ଶତପୁତ୍ର ବଶିଷ୍ଠଙ୍କ ଦ୍ୱାରା ନିହତ ହୋଇଥିଲେ । ଥରେ ରାଜା ବିଶ୍ୱାମିତ୍ର ସସୈନ୍ୟ ମୃଗୟାରେ ଯାଇଁ ପିପାସାର୍ତ୍ତ ହୋଇ ମହର୍ଷି ବଶିଷ୍ଠଙ୍କ ଆଶ୍ରମରେ ଉପସ୍ଥିତ ହୋଇଥିଲେ । ବଶିଷ୍ଠ କାମଧେନୁ ନନ୍ଦିନୀର ସାହାଯ୍ୟରେ ବିବିଧପ୍ରକାର ପ୍ରଚୁର ଆହାର ଦେଇ ସସୈନ୍ୟ ବିଶ୍ୱାମିତ୍ରଙ୍କର ପରିତୋଷ ସାଧନ କରିଥିଲେ । ବିଶ୍ୱାମିତ୍ର କାମଧେନୁର ଆଶ୍ଚର୍ଯ୍ୟ ଗୁଣ ଅବଗତ ହୋଇ ବଶିଷ୍ଠଙ୍କ ନିକଟରେ ସହସ୍ର ଧେନୁର ବିନିମୟରେ ଉକ୍ତ କାମଧେନୁକୁ ଦେବାକୁ ପ୍ରାର୍ଥନା କରିବାରୁ ବଶିଷ୍ଠ ତାହା ନାସ୍ତି କରିଥିଲେ । ଏଥିରେ ଦୁଇଜଣଙ୍କର ବିବାଦ ଚରମ ଅବସ୍ଥାରେ ଉପନୀତ ହେଲା ।

ବିଶ୍ୱାମିତ୍ର ତାଙ୍କ ସୈନ୍ୟ ସାହାଯ୍ୟରେ କାମଧେନୁକୁ ଛଡ଼ାଇ ନେବାକୁ ବସିଲାରୁ ବଶିଷ୍ଠ କାମଧେନୁକୁ ନିଜର ଶକ୍ତିଦ୍ୱାରା ବିଶ୍ୱାମିତ୍ରଙ୍କୁ ପରାସ୍ତ କରିବାକୁ ଆଦେଶ ଦେଲେ । ସେତେବେଳେ କାମଧେନୁ ଅସଂଖ୍ୟ ସେନା ସୃଷ୍ଟି କରି ବିଶ୍ୱାମିତ୍ରଙ୍କ ସୈନ୍ୟବାହିନୀକୁ ପରାସ୍ତ କଲେ । ବିଶ୍ୱାମିତ୍ରଙ୍କର ଶହେ ପୁଅ ଏହି ଯୁଦ୍ଧରେ ବିନଷ୍ଟ ହେଲେ ।

## ନନ୍ଦିନୀଙ୍କର ପରିଚୟ

(ସ୍ୱର୍ଗର ଗୋମାତା ସୁରଭୀଙ୍କର କନ୍ୟା ନନ୍ଦିନୀ ମାତାଙ୍କପରି କାମଧେନୁ ଥିଲେ । ମହର୍ଷି ବଶିଷ୍ଠ ନନ୍ଦିନୀଙ୍କୁ ନିଜର ଆଶ୍ରମରେ ରଖିଥିଲେ । ସୁରଭୀ ଶାପଗ୍ରସ୍ତ ସୂର୍ଯ୍ୟବଂଶର ରାଜା ଦିଲ୍ଲୀପ ଅପୁତ୍ରିକ

Digitized by srujan ka@gmail.com

ହେବାରୁ ସ୍ତ୍ରୀ ସହ ଏହି ନନ୍ଦିନୀଙ୍କୁ ସେବା କରି ପୁତ୍ରଲାଭ କରି-ଥିଲେ । )

ପରେ ବିଶ୍ୱାମିତ୍ର ପରାଜିତ ହୋଇ ବଶିଷ୍ଠଙ୍କ ପ୍ରତି ସ୍ୱୟଂ ବିବିଧ ଶର ବର୍ଷଣ କଲେ । ବଶିଷ୍ଠ ତାଙ୍କର ବ୍ରହ୍ମଦଣ୍ଡଦ୍ୱାରା ବିଶ୍ୱାମିତ୍ରଙ୍କର ସମସ୍ତ ଅସ୍ତ୍ରକୁ ବ୍ୟର୍ଥ କଲେ । ଏହା ଦେଖି ବିଶ୍ୱାମିତ୍ର ଆତ୍ମାଭିମାନରେ ମର୍ମାହତ ହୋଇ କହିଲେ, "କ୍ଷତ୍ରିୟ ବଳକୁ ଧିକ । କେବଳ ବ୍ରହ୍ମତେଜ ହିଁ ପ୍ରକୃତ ବଳ ।" ଏହାକହି ବିଶ୍ୱାମିତ୍ର ବ୍ରାହ୍ମଣତ୍ୱ ଲାଭ କରିବାପାଇଁ ଦକ୍ଷିଣାଭିମୁଖରେ ଗମନ କରି କଠୋର ତପସ୍ୟାରେ ରତ ହେଲେ । ବ୍ରହ୍ମା ବିଶ୍ୱାମିତ୍ରଙ୍କ ତପସ୍ୟାରେ ପ୍ରୀତ ହୋଇ ବିଶ୍ୱାମିତ୍ରଙ୍କୁ ରାଜର୍ଷିତ୍ୱ ଦାନ କଲେ; କିନ୍ତୁ ଏଥିରେ ମଧ୍ୟ ବିଶ୍ୱାମିତ୍ର ସନ୍ତୁଷ୍ଟ ନ ହୋଇ ପୁନରପି କଠୋର ତପସ୍ୟାରେ ନିମଗ୍ନ ହେଲେ । ବହୁବର୍ଷ ପରେ ବ୍ରହ୍ମା ବିଶ୍ୱାମିତ୍ରଙ୍କର ତପସ୍ୟାରେ ସନ୍ତୁଷ୍ଟ ହୋଇ ତାଙ୍କୁ ବ୍ରାହ୍ମଣତ୍ୱ ପ୍ରଦାନ କଲେ ।

ବିଶ୍ୱାମିତ୍ରଙ୍କର ଯଜ୍ଞ ନାଶ କରିବାରେ ରାକ୍ଷସମାନେ ସର୍ବଦା ସଚେଷ୍ଟ ଥିଲେ । ରାକ୍ଷସମାନଙ୍କ ନିକଟରୁ ରକ୍ଷା ପାଇବା ପାଇଁ ରାଜା ଦଶରଥଙ୍କ ଅନୁମତି ଗ୍ରହଣ ପୂର୍ବକ ବିଶ୍ୱାମିତ୍ର ରାମ, ଲକ୍ଷ୍ମଣଙ୍କୁ ନିଜ ଆଶ୍ରମକୁ ନେଇଗଲେ । ପଥ ମଧ୍ୟରେ ସେମାନଙ୍କୁ 'ବଳା' ଓ 'ଅତିବଳା' ମନ୍ତ୍ର ଶିକ୍ଷାଦେଲେ ଏବଂ ତାଙ୍କର ବିଦ୍ୟାସ୍ତ୍ର ସକଳ ଦାନ କଲେ । ଏହା ଫଳରେ ରାମ ତାଡ଼କାଦି ରାକ୍ଷସୀ ଓ ସୁବାହୁ ପ୍ରଭୃତି ରାକ୍ଷସମାନଙ୍କୁ ବଧ କରି ଋଷିମାନଙ୍କର ଯଜ୍ଞ ସୁସମ୍ପନ୍ନ କରିବାରେ ସାହାଯ୍ୟ କଲେ । ତା'ପରେ ବିଶ୍ୱାମିତ୍ର ମିଥିଳାର ରାଜା ଜନକଙ୍କ ନିକଟରେ ଉପସ୍ଥିତ ହୋଇ ରାମଙ୍କ ଦ୍ୱାରା ହରଧନୁ ଭଗ୍ନ କରାଇ ତାଙ୍କୁ ଜାନକୀ ଲାଭରେ ସାହାଯ୍ୟ କରିଥିଲେ ।

Digitized by srujan ka@gmail.com

## ବିଶ୍ୱାମିତ୍ରଙ୍କ ବାଣୀ

(କ) କୌଣସି କାମନା ପୂରଣ କରିବାକୁ ଚାହୁଁଥିବା ମନୁଷ୍ୟର ଯଦି ଗୋଟିଏ କାମନା ପୂରଣ ହୋଇଯାଏ, ପୁଣି ନୂଆ କାମନା ଉତ୍ପନ୍ନ ହୋଇ ତାକୁ ବାଣପରି ବିନ୍ଧେ । ଭୋଗ ପ୍ରଭୃତି ଉପଭୋଗ ଦ୍ୱାରା କେବେ ଶାନ୍ତି ଓ ନିବୃତ୍ତି ହୁଏ ନାହିଁ । ଏହା ଅଗ୍ନିରେ ଘିଅ ଢାଳିଲାପରି ଅଧିକ ଅଧିକ ବଢ଼ିଯାଏ । ଭୋଗ ଅଭିଳାଷ ରଖିଥିବା ଲୋକ ମୋହ ବଶରେ କେବେ ସୁଖ ପାଏ ନାହିଁ ।

(ଖ) ମନୁଷ୍ୟ ନିଜର ପ୍ରଗାଢ଼ ଅଧ୍ୟବସାୟ ଓ ଐକାନ୍ତିକ ତପସ୍ୟା ବଳରେ ଈଶ୍ୱରତ୍ୱ ମଧ୍ୟ ଲାଭ କରିପାରେ ।

(ଗ) ସତ୍ୟରୁହିଁ ସୂର୍ଯ୍ୟ ତାପ ବିକୀରଣ କରୁଛି । ସତ୍ୟ ଉପରେହିଁ ପୃଥିବୀର ସ୍ଥିତି ରହିଛି । ସତ୍ୟ ଭାଷଣ ସବୁଠାରୁ ବଡ଼ ଧର୍ମ ଅଟେ । ସତ୍ୟ ଉପରେ ସ୍ୱର୍ଗ ପ୍ରତିଷ୍ଠିତ । ଏକହଜାର ଅଶ୍ୱମେଧ ଯଜ୍ଞ ଏବଂ ଗୋଟିଏ ସତ୍ୟକୁ ତରାଜୁରେ ତଉଲି ଦେଲେ ହଜାର ଅଶ୍ୱମେଧ ଯଜ୍ଞଠାରୁ ସତ୍ୟର ଓଜନ ଅଧିକ ହେବ ।



Digitized by srujan ka@gmail.com

# ଜମଦଗ୍ନି

ଭୃଗୁଋଷିଙ୍କ ବଂଶରେ ଋଚିକ ମୁନିଙ୍କ ଔରସରେ ସତ୍ୟବତୀଙ୍କ ଗର୍ଭରୁ ଏ ଜନ୍ମ ହୋଇଥିଲେ । ରେଣୁକା ଏହାଙ୍କର ପତ୍ନୀ ଓ ପରଶୁରାମ ପୁତ୍ର ମଧ୍ୟରେ କନିଷ୍ଠ । ପତ୍ନୀଙ୍କ ଚରିତ୍ରରେ ସନ୍ଦେହ କରି ଏ ଋଷି ଥରେ ମାଆଙ୍କୁ ହତ୍ୟା କରିବାପାଇଁ ତାଙ୍କ ପୁତ୍ରମାନଙ୍କୁ ଆଦେଶ ଦେଲେ । ଅନ୍ୟ ଚାରିପୁଅ ଏହା କରିବାକୁ କୁଣ୍ଠିତ ହେଲେ, କେବଳ ପରଶୁରାମ ପିତାଦେଶ ପାଳନ କଲେ ଏବଂ ପିତାଙ୍କୁ ବର ମାଗି ପୁଣି ମାଆଙ୍କୁ ବଞ୍ଚାଇଲେ ।

ରାଜା କାର୍ତ୍ତବୀର୍ଯ୍ୟ ଏହାଙ୍କ କାମଧେନୁକୁ ହରଣ କରିବାରୁ ଏ ତାଙ୍କର ସହସ୍ର ହସ୍ତ ଛେଦନ କଲେ । କାର୍ତ୍ତବୀର୍ଯ୍ୟଙ୍କ ପୁତ୍ର ଏ ସମ୍ବାଦ ପାଇ ଜମଦଗ୍ନିଙ୍କୁ ହତ୍ୟା କଲେ ।

## ଜମଦଗ୍ନିଙ୍କ ବାଣୀ

ଜମଦଗ୍ନି କହିଛନ୍ତି ଯାହାର ଦାନ ଗ୍ରହଣ କରିବା ଶକ୍ତି ଥିବାସତ୍ତ୍ୱେ ସେ ଗ୍ରହଣ ନ କରେ, ଦାନୀର ସନାତନ ଲୋକକୁ ସେ ପ୍ରାପ୍ତ ହୁଏ । ଯେ ବାହ୍ମଣ ରାଜାଠାରୁ ଧନ ନିଏ ସେ ଋଷିମାନଙ୍କ-ଦ୍ୱାରା ଶୋକର ଯୋଗ୍ୟ । ସେ ମୂର୍ଖ ନରକ-ଯନ୍ତ୍ରଣାରେ ଭୟ କରେ ନାହିଁ । ଦାନ ନେଇ ତହିଁରେ ଆସକ୍ତ ହୁଏ ନାହିଁ । କାରଣ ବ୍ରାହ୍ମଣ ପ୍ରତିଗ୍ରହ କଲେ ତା'ର ବ୍ରହ୍ମତେଜ ନଷ୍ଟ ହୁଏ । ଯାହା ହୃଦୟରେ ହରିଙ୍କ ବସତି ତାଙ୍କର ନିତ୍ୟ ଉତ୍ସବ, ନିତ୍ୟ ଲକ୍ଷ୍ମୀ ଓ ନିତ୍ୟ ମଙ୍ଗଳ ହୁଏ ।

"ଯେ ଲୋକ ପ୍ରଥମରେ ମାଂସ ଖାଏ ।
ପଶ୍ଚାତେ ସେହି ଯେତେ ଛାଡ଼ି ଦିଏ ।।
ତାହାର ନିଶ୍ଚେ ହୁଏ ସ୍ୱର୍ଗ ଗତି ।
ଏକଥା "ଜମଦଗ୍ନି" କହିଛନ୍ତି ।। (ବୃହତ୍ ଇତିହାସ ପୁରାଣ)

———

Digitized by srujan ka@gmail.com

# କାଶ୍ୟପ ଋଷି

ଡକ୍‌ଟର ଦୁର୍ଗାଚରଣ ଜେନା, ଏମ୍. ଡି.
ଅଧ୍ୟାପକ, ଶ୍ରୀରାମଚନ୍ଦ୍ରଭଞ୍ଜ ମେଡିକାଲ କଲେଜ, କଟକ

କଶ୍ୟପ ବିଖ୍ୟାତ ପ୍ରଜାପତି ଋଷି । ଯଜୁର୍ବେଦ ପ୍ରଭୃତି ବୈଦିକ ସଂହିତା ମତରେ କଶ୍ୟପ ହିରଣ୍ୟବର୍ଣ୍ଣ ବ୍ରହ୍ମାଙ୍କଠାରୁ ଜନ୍ମଲାଭ କରିଥିଲେ ।

ଲିଙ୍ଗ ପୁରାଣ ମତରେ କଶ୍ୟପ ବ୍ରହ୍ମାଙ୍କର ମାନସ ପୁତ୍ର । କଶ୍ୟପ ଋଷି ଦକ୍ଷ ପ୍ରଜାପତିଙ୍କର ଅଦିତି, ଦିତି, ଦନୁ, କାଳା, ଦନାୟୁ, ସିଂହିକା, କ୍ରୋଧା, ପ୍ରାଧା, ବିଶ୍ୱା, ବିନତା, କପିଳା, ମୁନି ଓ କଦ୍ରୁ ଆଦି ତେରଗୋଟି କନ୍ୟାଙ୍କୁ ବିବାହ କରିଥିଲେ । ଏହି କନ୍ୟାମାନେ ସମସ୍ତ ଲୋକର ଜନନୀ—କାରଣ, ଏହିମାନେ ଏହି ଜଗତ ପ୍ରସବ କରିଥିଲେ । ଅଦିତିଙ୍କ ଗର୍ଭରୁ ଆଦିତ୍ୟ (ସୂର୍ଯ୍ୟ) ଓ ଇନ୍ଦ୍ରାଦି ଦେବତା, ଦିତିଙ୍କ ଗର୍ଭରୁ ଦୈତ୍ୟଗଣ, କଦ୍ରୁଙ୍କ ଗର୍ଭରୁ ବାସୁକୀ ଆଦି ସର୍ପ ସକଳ ଓ ବିନତାଙ୍କ ଗର୍ଭରୁ ଗରୁଡଙ୍କର ଉତ୍ପତ୍ତି ହୋଇଥିଲା ।

ରାମାୟଣ ମତରେ କଶ୍ୟପ ବ୍ରହ୍ମପୁତ୍ର ମରୀଚିର ତନୟ । କଶ୍ୟପଙ୍କ ତପସ୍ୟାରେ ତୁଷ୍ଟ ହୋଇ ବିଷ୍ଣୁ ବାମନ ରୂପରେ ଏହାଙ୍କର ପୁତ୍ରତ୍ୱ ସ୍ୱୀକାର କରିଥିଲେ ।

କଶ୍ୟପ ଋଷିଙ୍କ ବଂଶ ପରମ୍ପରାର ଲୋକମାନଙ୍କୁ କଶ୍ୟପ ଗୋତ୍ରୀ କହନ୍ତି ।

( ଶ୍ରୀମଦ୍ ଭାଗବତ, ବିଷ୍ଣୁପୁରାଣ, ମହାଭାରତ )

## କଶ୍ୟପଙ୍କ ବାଣୀ

ଯଦି ବ୍ରାହ୍ମଣ ଧନ ସଂଗ୍ରହ କରି ଧନୀ ହୁଏ, ସେହି ଧନ ତାହାର ଅନର୍ଥର କାରଣ ହୁଏ । ଐଶ୍ୱର୍ଯ୍ୟ ଗର୍ବିତ ବ୍ରାହ୍ମଣ ଧନ

Digitized by srujan ka@gmail.com

ଲୋଭରେ ମୋହିତ ହୋଇ ଭ୍ରଷ୍ଟ ହୁଏ ଏବଂ ନରକଗାମୀ ହୁଏ । ଏଣୁ କଲ୍ୟାଣକାମୀ ବ୍ରାହ୍ମଣ ଧନମୋହ ତ୍ୟାଗକରି ଧର୍ମକାର୍ଯ୍ୟ କରିବାପାଇଁ ମଧ୍ୟ ଧନ ସଂଗ୍ରହ କରିବେ ନାହିଁ । କାରଣ ସେହି ଧନରେ ଧର୍ମ, କର୍ମ ମିଳେ ନାହିଁ ଏବଂ ଧନ ସଂଗ୍ରହକାରୀର ପତନ ହୁଏ । ଧର୍ମ କରିବା ପାଇଁ ଯେଉଁ ଧନ ସଞ୍ଚୟ କରିବ ସେହି ଧନ ଓ ଧର୍ମାନୁଷ୍ଠାନ ମଧ୍ୟ କ୍ଷୟଶୀଳ ।

ଅନ୍ୟର ଉପକାର କରିବା ପାଇଁ ଓ ଦରିଦ୍ରକୁ ବିତରଣ କରିବା ପାଇଁ ଯେଉଁ ଧନ ବ୍ୟୟ ହୁଏ, ତାହାଦ୍ୱାରା ଅକ୍ଷୟ ଧର୍ମ ଲାଭ ହୁଏ ଏବଂ ତାହା ମୋକ୍ଷଗତି ପ୍ରଦାନ କରେ । ମହାନ୍ ପାପକାରୀବ୍ୟକ୍ତି କାତର ହୃଦୟରେ ଭଗବାନଙ୍କର ନାମ କଲେ, ତା ଭିତରେ ପାପର ଭୟ ଦୂର ହୁଏ । ଯେ ପର୍ଯ୍ୟନ୍ତ ସେ ସୁସ୍ଥ ଭାବରେ ରାମନାମ ଉଚାରଣ ନ କରେ ସେ ପର୍ଯ୍ୟନ୍ତ ତା ହୃଦୟରେ ପାପର ଭୟ ଜାଗ୍ରତ ରହିଥାଏ ।

—ଶ୍ରୀମଦ୍ ବିଷ୍ଣୁ ପୁରାଣ—

ପ୍ରାଣୀଙ୍କଠାରେ ହିଂସା ଓ ନ କରିବ କୋପ
ଅକ୍ରୋଧୀ ହୋଇଥିବୁ ନ ଦେବୁ ପରେ ଶାପ
କୁଜନ ଜନଙ୍କ ସଙ୍ଗ ନୋହିବୁ କ୍ଷଣହେଁ
ଧାପରୂପ ସନ୍ତାପ ଯେ ନକରି କେବେହେଁ
ଆପଣେ ଫୁଲ ଗୁନ୍ଥିଣ ନ ଯେନିବୁ ମାଳ
ଡାହ ବାହୁନେ ହସ୍ତରେ ନ ପିଇବୁ ଜଳ
ଚରଣ ନ ପଖାଳ ଯେ ନ ମାଡ଼ିବୁ ଶଯ୍ୟା
ସୂର୍ଯ୍ୟ ଉଦେ ନୋହୁ ଆଳସକୁ କରି ତେଯ୍ୟା
ଆବର ଯେ ଗୁରୁ ବିପ୍ର ପାଦେ ପୂଜା କରି
ଅନୁବ୍ରତେ ମନରେ ତୁ ସ୍ମରୁଥିବୁ ହରି

( ବିଷ୍ଣୁ କେଶରୀ ପୁରାଣ—ପ୍ରଥମ ସର୍ଗ )

—※—

Digitized by srujan ka@gmail.com

# ମହର୍ଷି ଭୃଗୁ

ପଣ୍ଡିତ ରାଧାନାଥ ମିଶ୍ର, କାବ୍ୟ, ବ୍ୟାକରଣତୀର୍ଥ

ପ୍ରାଚୀନକାଳରେ ବ୍ରହ୍ମା ବରୁଣଙ୍କର ଏକ ଯଜ୍ଞ ଅନୁଷ୍ଠାନ କରନ୍ତି । ଏହି ଯଜ୍ଞାଗ୍ନିରୁ ମହର୍ଷି ଭୃଗୁଙ୍କର ଜନ୍ମଲାଭ ହୁଏ । ବରୁଣଙ୍କର ପୁତ୍ର ଭୃଗୁ । ବିଷ୍ଣୁପୁରାଣମତେ ଭୃଗୁ ବ୍ରହ୍ମାଙ୍କର ମାନସ ପୁତ୍ର । ମନୁ ସଂହିତାମତେ ଭୃଗୁ ଦଶଜଣ ପ୍ରଜାପତିଙ୍କ ମଧ୍ୟରୁ ଅନ୍ୟତମ । ଭୃଗୁ ସପ୍ତର୍ଷିମାନଙ୍କ ମଧ୍ୟରେ ଏକଜଣ ।

ଭୃଗୁଙ୍କ ସ୍ତ୍ରୀ ପୁଲୋମାଙ୍କ ଗର୍ଭରେ ଚ୍ୟବନ ଜନ୍ମଲାଭ କରିଥିଲେ । ଋଚୀକ ମୁନି ମଧ୍ୟ ଭୃଗୁଙ୍କର ପୁତ୍ର; ଜମଦଗ୍ନି ପୌତ୍ର ଏବଂ ପରଶୁରାମ ପ୍ରପୌତ୍ର । ଭୃଗୁବଂଶରୁ ଜାତ ବୋଲି ପରଶୁରାମ ଭାର୍ଗବ ନାମରେ ଖ୍ୟାତ।

ପ୍ରତିଦିନ ତର୍ପଣ କରିବା ସମୟରେ ଭୃଗୁଙ୍କ ଉଦ୍ଦେଶ୍ୟରେ ତର୍ପଣ କରିବାକୁ ହୁଏ । ଭୃଗୁ ଧନୁର୍ବେଦ ବିଦ୍ୟାର ପ୍ରବର୍ତ୍ତକ । ବ୍ରହ୍ମା, ଶିବ ଓ ବିଷ୍ଣୁ ଏମାନଙ୍କ ମଧ୍ୟରେ କିଏ ଶ୍ରେଷ୍ଠ—ମୁନିଋଷିମାନେ ଏହାର ମୀମାଂସା ନକରିଶେ ଭୃଗୁଙ୍କୁ ପ୍ରଥମେ ବ୍ରହ୍ମାଙ୍କ ନିକଟକୁ ପ୍ରେରଣ କରିଥିଲେ; କିନ୍ତୁ ବ୍ରହ୍ମଲୋକକୁ ଯାଇ ଭୃଗୁ ଇଚ୍ଛାପୂର୍ବକ ବ୍ରହ୍ମାଙ୍କୁ ସମ୍ମାନ କରି ନଥିଲେ । ଏଥିରେ ବ୍ରହ୍ମା କ୍ରୁଦ୍ଧ ହେବାରୁ ଭୃଗୁ ତାହାଙ୍କୁ ସନ୍ତୁଷ୍ଟ କରି ଶିବଙ୍କ ନିକଟକୁ ଗଲେ । ସେଠାରେ ମଧ୍ୟ ଶିବଙ୍କୁ ସମ୍ମାନ ନ ଦେଖାଇବାରୁ ଶିବ କ୍ରୁଦ୍ଧହୋଇ ହତ୍ୟା କରିବାକୁ ଉଦ୍ୟତ ହେଲେ । ଭୃଗୁ ଶିବଙ୍କୁ ସ୍ତବରେ ତୁଷ୍ଟ

Digitized by srujan ka@gmail.com

କରି ଗୋଲକକୁ ଯାଇ ଦେଖନ୍ତି ଯେ, ବିଷ୍ଣୁ ନିଦ୍ରା ଯାଇଅଛନ୍ତି । ବିଷ୍ଣୁଙ୍କୁ ନିଦ୍ରିତ ଦେଖି ବିଷ୍ଣୁଙ୍କ ବକ୍ଷସ୍ଥଳରେ ପଦାଘାତ କଲେ । ବିଷ୍ଣୁ ନିଦ୍ରାରୁ ଉଠି ଭୃଗୁଙ୍କର ପାଦକୁ ବ୍ୟଥା ହୋଇଥିବ ଭାବି ଭୃଗୁଙ୍କର ପାଦସେବା କଲେ । ଭୃଗୁ ବିଷ୍ଣୁଙ୍କର କ୍ରୋଧର ଚିହ୍ନ ଦେଖିପାରି ନଥିଲେ; ବରଂ ବିଷ୍ଣୁ ବେଶୀ ନମ୍ର ଓ ବିନୟୀ ହୋଇ ଭୃତ୍ୟପରି ବ୍ୟବହାର ଦେଖାଇଲେ ।

ଏଥିରେ ଭୃଗୁ ସ୍ଥିରକଲେ ଯେ, ବିଷ୍ଣୁ ହିଁ କେବଳ ଶ୍ରେଷ୍ଠ ଦେବତା ଓ ତାହାଙ୍କର ପୂଜା କେବଳ ଶ୍ରେଷ୍ଠ । ତଦବଧି ଭୃଗୁ-ପଦ ଚିହ୍ନ ବିଷ୍ଣୁଙ୍କର ବକ୍ଷରେ ଚିହ୍ନିତ ଅଛି ।

## ମହର୍ଷି ଭୃଗୁଙ୍କ ବାଣୀ

•

ସବୁ ଆଶ୍ରମରେ ଗୃହସ୍ଥାଶ୍ରମ ମୂଳ
ଆଉ ତିନି ଆଶ୍ରମ ଗଣ୍ଡି, ଡାଳ, ଫଳ ।
ଅତିଥି ଅପୂଜାରେ ଯେବେ ଘରୁ ଯାଏ
ଗୃହୀକ ସେହି ଦୋଷ ନରକେ ମଜ୍ଜାଏ ।
ଅବଜ୍ଞା, ଅହଙ୍କାର ଦମ୍ଭ ଛାଡ଼ିଦେଇ
କହିବ ଲୋକଙ୍କୁ କୋମଳ ହୃଦବହି ।
ପ୍ରାଣୀମାନଙ୍କଠାରେ ନକରିବ ଦ୍ରୋହ
ଶତ୍ରୁ ମିତ୍ରଙ୍କଠାରେ ରଖିଥିବ ସ୍ନେହ ।
କର୍ମଭୂମି ଜାଣ ଅଟଇ ମର୍ତ୍ତ୍ୟପୁରୀ
ଏଥିରେ କର୍ମକଲେ ହୁଏ ସ୍ୱର୍ଗଶିରୀ ।

—ମହାଭାରତ-ଶାନ୍ତିପର୍ବ—

Digitized by srujan ka@gmail.com

## ସନ୍ନ୍ୟାସୀ ଜୀବନ କିପରି ହେବା ଉଚିତ ?

ସନ୍ନ୍ୟାସ ଗ୍ରହଣ କରିବାକୁ ପୁରୁଷ, ଧନ, ସ୍ତ୍ରୀ, ପରିବାର, ଘର, ଘରର ସବୁ ଜିନିଷ ଛାଡ଼ିଦେଇ ବିଷୟାଶକ୍ତିକୁ ତ୍ୟାଗକରି ଘରୁ ଚାଲିଯିବେ ।

ସେ ଢେଲା, ପଥର ଓ ସୁନାକୁ ସମାନ ମନେ କରିବେ । ଧର୍ମ, ଅର୍ଥ ଓ କାମକୁ ଭୋଗ କରିବାପାଇଁ ନିଜ ନିଜର ବୁଦ୍ଧିକୁ ଖର୍ଚ୍ଚ କରିବେ ନାହିଁ । ଶତ୍ରୁ, ମିତ୍ର ସମସ୍ତଙ୍କ ପ୍ରତି ଉଦାସୀନ ରହି ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖିବେ । ସ୍ଥାବର, ଜଙ୍ଗମ, ପିଣ୍ଡଜ, ସ୍ୱେଦଜ ଉଦ୍ଭିଦ ସବୁ ପ୍ରାଣୀଙ୍କ ପ୍ରତି ମନ, ବଚନ ଅଥବା କର୍ମରେ କଦାପି ଦ୍ରୋହ କରିବେ ନାହିଁ । କୁଟୀର କିମ୍ବା ମଠ ତିଆରି କରି ତହିଁରେ ରହିବେ ନାହିଁ । ସେ ଚାରିଆଡ଼େ ବୁଲିବେ । ରାତିରେ ପର୍ବତ ଗୁହା, ନଦୀକୂଳ, ଦେବମନ୍ଦିର, ଗଛ ମୂଳ, ଗ୍ରାମ ଅଥବା ନଗର ପ୍ରଭୃତି ସ୍ଥାନକୁ ଚାଲିଯିବେ । ନଗରରେ ପାଞ୍ଚରାତି, ଗାଁରେ ଗୋଟିଏ ରାତିରୁ ଅଧିକ ରହିବେ ନାହିଁ । ପ୍ରାଣ ଧାରଣ ପାଇଁ (ବଞ୍ଚିବାପାଇଁ) ଗ୍ରାମ କିମ୍ବା ନଗରକୁ ଯାଇ ସ୍ୱଧ୍ୟାୟ-ନିଷ୍ଠ ସଦାଚାରୀ ବ୍ରାହ୍ମଣ ଘରକୁ ଯାଇ ଛିଡ଼ା ହେବେ । ଭିକ୍ଷା ମାଗିବେ ନାହିଁ । ଭିକ୍ଷାପାତ୍ରରେ ଯାହା କିଛି ମିଳିବ ତାକୁ ସ୍ୱୀକାର କରିବେ । କାମ, କ୍ରୋଧ, ଦର୍ପ, ଲୋଭ, ମୋହ, ଦମ୍ଭ, ନିନ୍ଦା, କୃପଣତା, ଅଭିମାନ ତଥା ହିଂସା ପ୍ରଭୃତିରୁ ନିଜକୁ ଦୂରକରି ରଖିବେ । ଏହା ହେଉଛି ସନ୍ନ୍ୟାସ ଧର୍ମ । — ଭାଗବତ—

———

Digitized by srujan ka@gmail.com

# ମହର୍ଷି ଚ୍ୟବନ

ଶ୍ରୀ ଗୋବର୍ଦ୍ଧନଚନ୍ଦ୍ର ଦାସ, ଏମ. ଏ. (ସମ୍ପାଦକ, ପ୍ରଜାତନ୍ତ୍ର)

ଚ୍ୟବନଙ୍କର ପିତା ଭୃଗୁମୁନି ଓ ମାତାପୁଲୋମା । ନର୍ମଦା ନଦୀର ନିକଟ ବୈଦୁର୍ଯ୍ୟପର୍ବତରେ ଚ୍ୟବନ ଦୀର୍ଘକାଳ ତପସ୍ୟାକରି ଜରାଗ୍ରସ୍ତ ହୋଇଗଲେ ଓ ତାଙ୍କର ଦେହ ବାଲୁକାରେ ଆବୃତ୍ତ ହେଲା । ଥରେ ରାଜା ଶର୍ଯ୍ୟାତି ତାଙ୍କର ସ୍ତ୍ରୀ ଓ ସୁନ୍ଦରୀ କନ୍ୟା ସୁକନ୍ୟାଙ୍କୁ ନେଇ ସେଠାକୁ ବିହାର କରିବା ଉଦ୍ଦେଶ୍ୟରେ ଆସିଥିଲେ । ସୁକନ୍ୟାର ରୂପଦେଖି ଚ୍ୟବନ ତାଙ୍କୁ କ୍ଷୀଣ କଣ୍ଠରେ ଡାକିଲେ; କିନ୍ତୁ ସୁକନ୍ୟା ଶୁଣିପାରିଲେ ନାହିଁ; କିନ୍ତୁ ଉଇହୁଙ୍କା ମଧ୍ୟରେ ଜୁଳୁଜୁଳିଆ ପୋକ ଭଳି ଦୀପ୍ୟମାନ ଦୁଇ ଚକ୍ଷୁକୁ ଦେଖି-ବାକୁ ପାଇ କୌତୁହଳବଶତଃ ଗୋଟିଏ କଣ୍ଟା ତା' ଭିତରକୁ ପ୍ରବେଶ କରାଇଲେ । ଏଥିରେ ଚ୍ୟବନ ଅତ୍ୟନ୍ତ କ୍ରୁଦ୍ଧହୋଇ ରାଜାଙ୍କର ସୈନ୍ୟମାନଙ୍କର ମଳମୂତ୍ର ତ୍ୟାଗ ରୁଦ୍ଧ କଲେ । ଶର୍ଯ୍ୟାତି ଏହାର କାରଣ କ୍ରମେ ଜାଣିପାରି କନ୍ୟାର ଦୋଷ ମାର୍ଜ୍ଜନା କରିବାକୁ କ୍ଷମାଭିକ୍ଷା କଲେ । ଏଥିରେ ଚ୍ୟବନ କହିଲେ ଦର୍ପ ଓ ଅଜ୍ଞତା ହେତୁ ସୁକନ୍ୟା ଏପରି କଲେ । ଏହି କନ୍ୟାସଙ୍ଗେ ତାଙ୍କର ବିବାହ ହେଲେ ସେ ତାଙ୍କୁ କ୍ଷମାକରି ପାରନ୍ତି । ସେତେବେଳେ ଶର୍ଯ୍ୟାତି ତାଙ୍କୁ କନ୍ୟା ସଂପ୍ରଦାନ କରିବାକୁ ବାଧ୍ୟହେଲେ । ଅଶ୍ୱିନୀକୁମାର ଦ୍ୱୟଙ୍କ କୃପାରୁ ଚ୍ୟବନ ଚିରଯୌବନ ଲାଭକଲେ । ବୈଦ୍ୟକ ଶାସ୍ତ୍ରମତେ ଔଷଧ ସେବନରେ ତାଙ୍କର ଚିର ଯୌବନ ଲାଭ ହେଲା । ତାହା 'ଚ୍ୟବନପ୍ରାସ ନାମରେ ବିଦିତ । ମହାଭାରତ ଯୁଦ୍ଧରେ ଚ୍ୟବନ ଇନ୍ଦ୍ରଙ୍କୁ ପରାସ୍ତ କରିଥିଲେ । ଚ୍ୟବନ 'ଜୀବନ ଦାନ' ନାମକ ଗୋଟିଏ ଗ୍ରନ୍ଥ ରଚନା କରିଥିଲେ ।

—ବ୍ରହ୍ମବୈବର୍ତ୍ତ ପୁରାଣ

Digitized by srujan ka@gmail.com

## ଚ୍ୟବନ ମହର୍ଷିଙ୍କ ବାଣୀ

ଦୁଃଖିତ ଜନ୍ତୁମାନଙ୍କୁ ଦେଖିଣ ।
ଯେ ଲୋକ ଦୁଃଖି ନୁହିଁଇ ଆପଣ ॥
ଆପଣାର ସୁଖକୁ ଯେ ବାଞ୍ଛଇ ।
ତାହାଠାରୁ ବଳ ପାପୀ ନାହିଁ ॥
ଅନ୍ଧ ବଧିର ପୁଣି ଅଙ୍ଗହୀନ ।
ଅନାଥ ମହା ବ୍ୟାଧିବନ୍ତ ଜନ ॥
ଏହିମାନଙ୍କୁ ଦେଖିଣ ଯାହାର ।
ଦୟାଭାବ ନ ଉପୁଜେ ମନର ॥
ସେ ପ୍ରାଣୀ ଅଟେ ଅତି ମୂଢ଼ମତି ।
ତାହାର କେବେ ନାହିଁ ସଦଗତି ॥
ଅନାଥ ଯେହୁ ଭୟରେ ଆରତ ।
ଏହି ପ୍ରାଣୀର ସଂଶୟ ପ୍ରାପତ ॥
ଏହିପରି ପ୍ରାଣୀକି ଯେ ଦେଖିଣ ।
ରକ୍ଷା ନକରେ ସମର୍ଥ ହୋଇଣ ॥
ସେହି ଲୋକ ଲଭଇ ପାପଗତି ।
ଜାଣ ସଂସୟ କିଛି ନାହିଁ ଏଥି ॥
ଆର୍ତ୍ତ ହୋଇବା ପ୍ରାଣୀମାନଙ୍କର ।
ଆତଙ୍କକୁ କରଣ ଅପହାର ॥
ଯେ ଲୋକ ଦୟାରେ ଉଦ୍ଧାର କରେ ।
ସ୍ୱର୍ଗ ଲୋକକୁ ଲଭେ ସେ ସତ୍ୱରେ ॥
ଯେ ଲୋକ ମନ୍ଦ ଗୁଣକୁ ବହଇ
ତିନ ଭୁବନେ ତା'ର ଗତି ନାହିଁ ।

— ବୃହତ୍ ଇତିହାସ ପୁରାଣ-ପଞ୍ଚଦଶ ଅଧ୍ୟାୟ—

Digitized by srujan ka@gmail.com



# ମହାମୁନି ଅଗସ୍ତ୍ୟ

ଅଧ୍ୟାପକ ଡକ୍ଟର ଶ୍ରୀନିବାସ ମିଶ୍ର, ଏମ. ଏ. ପି. ଏଇଚ.ଡ଼ି.
ରେଭେନ୍ସା କଲେଜ

ମିତ୍ରାବରୁଣଙ୍କର ପୁତ୍ର ଅଗସ୍ତ୍ୟ ଋଷି ବ୍ରାହ୍ମଣମାନଙ୍କ ମଧ୍ୟରେ ଶ୍ରେଷ୍ଠ ଓ ସର୍ବଜନ ପୂଜ୍ୟ । ବହୁକାଳ ପର୍ଯ୍ୟନ୍ତ ସେ ଗୃହସ୍ଥାଶ୍ରମ କରି ନ ଥିଲେ । ଦୁଃଖଭାଗୀ ପିତୃଗଣଙ୍କ ମୁକ୍ତି ନିମନ୍ତେ ସେ ଗାର୍ହସ୍ଥ୍ୟ ଜୀବନ ଉଦ୍ଦେଶ୍ୟରେ କନ୍ୟା ସନ୍ଧାନରେ ବାହାରିଲେ ।

Digitized by srujan ka@gmail.com

ନିଃସନ୍ତାନ ବିଦର୍ଭ ଦେଶର ରାଜା ତାଙ୍କ ଆଶୀର୍ବାଦରେ ଏକ କନ୍ୟାରତ୍ନ ଲାଭକଲେ । ତାଙ୍କ ନାମ ଲୋପାମୁଦ୍ରା । ଅସାମାନ୍ୟା ରୂପବତୀ ରାଜକନ୍ୟା ଲୋପାମୁଦ୍ରା ହୋଇଥିଲେ ଅଗସ୍ତ୍ୟ ମୁନିଙ୍କ ପତ୍ନୀ । ସେ ସ୍ୱାମୀଙ୍କର ଉପଯୁକ୍ତ ଆଦର୍ଶ ଋଷିପତ୍ନୀ ହୋଇ ପାରିଥିଲେ ।

ଅଗସ୍ତ୍ୟଙ୍କ ବାଣୀ ମନୁଷ୍ୟ ସମାଜରେ ନୀତିମୟ ଜୀବନ-ଯାପନ ନିମନ୍ତେ ଆଦର୍ଶ ଉପଦେଶ । ଲୋଭୀ, କ୍ରୂର, ବିଷୟାସକ୍ତ, ନାସ୍ତିକ ଲୋକର ପାପ ସକଳ ତୀର୍ଥ ଜଳରେ ସ୍ନାନଦ୍ୱାରା ଦୂର ହୋଇପାରେ ନାହିଁ । ଦେହର ମଳିନତା ପରିଷ୍କାର କଲାପରି ମନର ମଳିନତା ଦୂର କରିବା ଉଚିତ । ସାଂସାରିକ ବିଷୟରେ ଅନାସକ୍ତି ଓ ବୈରାଗ୍ୟ ଦ୍ୱାରା ମନ ନିର୍ମଳ ହୋଇପାରେ । ଯେଉଁ ଲୋକର ମନ ଦୂଷିତ ସେ ବିଭିନ୍ନ ତୀର୍ଥସ୍ଥାନକୁ ଗଲେ ସୁଦ୍ଧା ମନ ପବିତ୍ର ହୁଏନାହିଁ । ଅନ୍ତଃକରଣ ଶୁଦ୍ଧ ନ ଥିଲେ ଦାନ, ଯଜ୍ଞ, ତପ, ଶୌଚ ଶାସ୍ତ୍ରଶ୍ରବଣ ସବୁ ନିରର୍ଥକ । ପରଧନ ଅପହରଣ ଲାଳସୀ, କ୍ଷୁଧାର୍ତ୍ତ ପ୍ରତି ନିର୍ମମ, ପରଛିଦ୍ର ଅନ୍ୱେଷଣକାରୀ, ପିତାମାତାଙ୍କ ସେବା ପ୍ରତି ପରାଙ୍ମୁଖ ବ୍ୟକ୍ତି ବ୍ରହ୍ମହତ୍ୟା ଦୋଷଭାଗୀ ହୁଏ । ତେଣୁ ମନୁଷ୍ୟ ଚିନ୍ତା ଓ ଆଚରଣରେ ନୀତି ଶୃଙ୍ଖଳିତ ଜୀବନଯାପନ କରିବା ବିଧେୟ । ମନୁଷ୍ୟକୁ ଆଦର୍ଶାଭିମୁଖୀ କରାଇବା ମହାମୁନି ଅଗସ୍ତ୍ୟଙ୍କ ବାଣୀର ମହତ୍ତ୍ୱ ।

Digitized by srujan ka@gmail.com



# ମହର୍ଷି ଦୁର୍ବାସା

ଐତିହାସିକ ଶ୍ରୀ ବ୍ରଜସୁନ୍ଦର ଦାସ

ମହାତପା ମହର୍ଷି ଦୁର୍ବାସା ହେଉଛନ୍ତି ପିତା ଅତ୍ରି ଓ ମାତା ଅନୁସୂୟାଙ୍କ ସୁଯୋଗ୍ୟ ସନ୍ତାନ । ବାଲ୍ୟ ଜୀବନରୁ ତାଙ୍କ କ୍ରୋଧ ଓ ଅମିତ ଜ୍ଞାନର ପରିଚୟ ମିଳିଥିଲା । ସେ ଶିବଅଂଶୀ ଭାବରେ ଶଙ୍କରଙ୍କ ଶକ୍ତି, ବିଶାଳବପୁ ଓ କ୍ଷଣ କୋପଲାଭ କରି ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଥିଲେ । ବିଷ୍ଣୁଭକ୍ତ ହିସାବରେ ସେ ଯେଭଳି ପ୍ରସିଦ୍ଧ ବଳ ବିକ୍ରମ, ସାହସ ଓ ପାଣ୍ଡିତ୍ୟରେ ସେ ତନ୍ତୁଁ

Digitized by srujan ka@gmail.com

ବଳ ଶ୍ରେଷ୍ଠ । ସାମାନ୍ୟ ତ୍ରୁଟିରେ ସେ ଅଗ୍ନିଶର୍ମା ହୋଇ କାଳପାତ୍ର ଭେଦରେ ଅଭିଶାପ ପ୍ରଦାନ କରିବା ତାଙ୍କ ଚରିତ୍ରର ଏକ ବିଶେଷତ୍ୱ । ଅଗାଧଜ୍ଞାନ, ଅସୀମ ଭକ୍ତି, ଅପରିମିତ ମେଧା ଓ ଅଖଣ୍ଡ ବ୍ରହ୍ମଚର୍ଯ୍ୟ ପାଳନ କରି ସେ ଏପରି ଶ୍ରୀମକାନ୍ତ ମୂର୍ତ୍ତି ଧାରଣ କରୁଥିଲେ ଯେ, ତାଙ୍କୁ ଦେଖିଲା ମାତ୍ରେ ନର ତଥା ଦେବତା-ମାନଙ୍କର ମନ ଓ ଶରୀର ଭୟ ଓ ଭକ୍ତିରେ ପ୍ରକମ୍ପିତ ହୋଇଥିଲା । ଦେବରାଜ ଇନ୍ଦ୍ର ଥରେ ଦୁର୍ବାସା ଋଷିଙ୍କୁ ଅପମାନ ଦେବାରୁ ଦୁର୍ବାସା କଣ କହିଥିଲେ ତାହା ନିମ୍ନରେ ଦିଆଗଲା ।

× × × ×

"ଦେଇଅଛୁ ଅପମାନ ମୋ କଥା ନ ଜାଣି ।
ମୁଁ ଅଟେ ଦୁର୍ବାସା ଋଷି ମଧ୍ୟେ ଯେ ଅଗ୍ରଣୀ ।।
ତ୍ରିଭୁବନେ କେ ଅଛୁରେ ଋଷି ମୋହପରି ।
ମୁହିଁ ସାକ୍ଷାତେ ଶଙ୍କର ସୃଷ୍ଟି ଲୟକାରୀ ।।
ମୋ ଉଜ୍ଜ୍ୱଳ ଜ୍ୱାଳାକୁରେ ନୟନେ ନିରେଖି ।
ଭ୍ରୁକୁଟି କୁଟିଳ ମୁଖ ଛବି ମୋର ଦେଖି ।।
ଭୟରେ ସକଳେ ହୋଇଥାନ୍ତି ଥରହର ।
ସ୍ଥିର ଇନ୍ଦ୍ର ପଣେ ତୋର ନାହିଁ ମୋତେ ଡର ।।
ପ୍ରବଳ ପ୍ରତାପ ମୋର କ୍ରୋଧନାହିଁ ସୀମା ।
ତ୍ରିଜପୁରରେ ବିଖ୍ୟାତ ମୋହର ମହିମା ।।
କ୍ରୋଧରୁ ଜନମ ମୁହିଁ କ୍ରୋଧ ଭୟଙ୍କର ।
ଦହି ପାରଇ କ୍ଷଣକେ ସମସ୍ତ ସଂସାର ।।
ତିଳେମାତ୍ର ଦୟାମାୟା ନାହିଁ ଯେ ମୋଠାରେ ।
ମୁଁ କ୍ରୋଧ ହୋଇଲେ କାହିଁ ପରିତ୍ରାଣ କାରେ ।।

Digitized by srujan ka@gmail.com

ଏ ତିନ ଭୁବନେ ଯେତେ ଋଷି ରହିଛନ୍ତି ।
ନତ ମସ୍ତକରେ ମାନ ମୋତେ ଚଢୁଛନ୍ତି ॥
ଅନ୍ୟାନ୍ୟ ଋଷିଙ୍କ ପରି ମୁହିଁ ଯେ ନୁହଇଁ ।
ସ୍ତବ କଲମାତ୍ରେ ଶାନ୍ତ ହେବ ମୋର ଦେହି ॥
ବଶିଷ୍ଠ ଆଦି ଅଟନ୍ତି ଦୟାଳୁ ଅତ୍ୟନ୍ତ ।
ସ୍ତବ କରି ତୋଷ ହୁଏ ତାହାଙ୍କର ଚିତ୍ତ ॥
ଗର୍ବିତ ହୋଇଛୁ ବୋଲି ସେହି ସାହସରେ ।
ଗୁରୁତର ଅପମାନ ଦେଲୁ ଆଜି ମୋରେ ॥
ଅନୁକ୍ଷଣ ମହାକ୍ରୋଧୀ ଏ ଦୁର୍ବାସା ଅଟେ ।
ତୋ ବିନୟ ଭାଷା ନ ପଶେ ମୋ କର୍ଣ୍ଣ ବାଟେ ॥
କ୍ରୋଧାନଳେ ମୋ ହୃଦୟ ଯାଉଅଛି ଜଳି ।
ଅନ୍ୟ ମୁନିଏ ପାରନ୍ତି କ୍ଷମାକୁ ଆଚରି ॥
ମୋତେ ନ ଭଜଇ କ୍ଷମା ଜାଣ ଦୁରାଚାର ।
ଏପରି ମୋ ରୀତି ନୀତି କରେ ଯା ପ୍ରତିଜ୍ଞା ।
କଦାପି ଭଙ୍ଗ ନୁହଁଇ ଲଙ୍ଘେ ଯେ ମୋ ଆଜ୍ଞା ॥

—ମହାବସ୍ତୁ ପୁରାଣ—

ତାଙ୍କର କ୍ଷଣକୋପ ଯୋଗୁ ନିଜର ପତ୍ନୀ ଧ୍ୱଂସ ପାଇଥିଲେ, ପାଣ୍ଡବମାନେ ବହୁ କଷ୍ଟ ଲାଭ କରିଥିଲେ, ରାମଚନ୍ଦ୍ର ଲକ୍ଷ୍ମଣଙ୍କ ପରି ଭାଇକୁ ବର୍ଜନ କରିଥିଲେ, ସତୀ ଶକୁନ୍ତଳା ଦାମ୍ପତ୍ୟ ଜୀବନର ପ୍ରାରମ୍ଭରେ ପତି ଦୁଷ୍ମନ୍ତଙ୍କ ସ୍ନେହରୁ ବଞ୍ଚିତ ହୋଇଥିଲେ ଏବଂ ପରିଶେଷରେ ଯଦୁବଂଶର ଧ୍ୱଂସ ସାଧନ ହୋଇଥିଲା; କିନ୍ତୁ ସେ ଏପରି ତ୍ରିକାଳଦର୍ଶୀ ଦୂରଦ୍ରଷ୍ଟା ଯୋଗୀଥିଲେ ଯେ, ତାଙ୍କ କ୍ରୋଧର ପରିଣାମ ଏକ ପକ୍ଷରେ ବିଷମୟ ହେଉଥିଲାବେଳେ ଅପର ପକ୍ଷରେ ଅମୃତ-ତୁଲ୍ୟ କୋଟି ଜନର ମଙ୍ଗଳସାଧନ କରୁଥିଲା । ପୁରାଣ ଯୁଗରେ

Digitized by srujan ka@gmail.com

ଦୁର୍ବାସାଙ୍କ ଚରିତ୍ରର ପଟାନ୍ତର ନାହିଁ । ସେ ସତ୍ତ୍ୱ-ରଜ-ତମ ଆଦି ତ୍ରିଗୁଣର ଏକ ଅବତାର ଥିଲେ । ତେଣୁ ବ୍ରହ୍ମା, ବିଷ୍ଣୁ ଓ ଶଙ୍କର ଆଦି ଦେବତାଙ୍କର ସେ ଭୟ ଓ ଭକ୍ତିର କାରଣ ହୋଇ ପାରିଥିଲେ ।

## ମହର୍ଷି ଦୁର୍ବାସାଙ୍କ ବାଣୀ

ଯେ ଭଗବାନ ହରି ଚରଣ ଦୃଢ଼ଭାବେ ଧରିଛନ୍ତି ତାଙ୍କ ନିକଟରେ କୌଣସି କର୍ମ କଠିନ ନୁହେଁ । ଯାହାଙ୍କ ହୃଦୟ ଉଦାର ସେ ମହାତ୍ମା ସବୁ ବସ୍ତୁ ପରିତ୍ୟାଗ କରିପାରନ୍ତି । ଯାହାଙ୍କ ମଙ୍ଗଳ ନାମ ସ୍ମରଣ ମାତ୍ରେ ଜୀବ ନିର୍ମଳ ଯେ ତୀର୍ଥପାଦ ଭଗବାନଙ୍କ ଦାସ ତାଙ୍କର କର୍ତ୍ତବ୍ୟ କିଛି ବାକି ରହେ ନାହିଁ ।

—ବିଷ୍ଣୁ ପୁରାଣ—

---

Digitized by srujan ka@gmail.com

# ଜଡ଼ ଭରତ

ପଣ୍ଡିତ ବୈଷ୍ଣବ ଚରଣ ଦାସ, ସାହିତ୍ୟାଚାର୍ଯ୍ୟ, ପୁରୀ

ଆମ୍ଭମାନଙ୍କ ପ୍ରାଚୀନ ପୁରାଣମାନଙ୍କରେ ଅନେକ 'ଭରତ'ଙ୍କ ନାମ ଶୁଣିବାକୁ ମିଳେ । ଯଥା :—

(୧) ଅଯୋଧ୍ୟାର ରାଜା ଦଶରଥଙ୍କ ଦ୍ୱିତୀୟ ପତ୍ନୀ କୈକେୟୀଙ୍କ ପୁତ୍ର ଭରତ, ଯେ କି ଭ୍ରାତୃଭକ୍ତିର ଚରମ ପରାକାଷ୍ଠା ଦେଖାଇ ଚତୁର୍ଦ୍ଦଶ ବର୍ଷ ସନ୍ୟାସ ଜୀବନ ଯାପନ କରିଥିଲେ ।

(୨) ମହାଭାରତ ବର୍ଣ୍ଣିତ ଦୁଷ୍ମନ୍ତ ଓ ଶକୁନ୍ତଳାଙ୍କ ପୁତ୍ର, ଭରତ ଯାହାଙ୍କ ନାମାନୁସାରେ ଏ ଦେଶ ଭାରତବର୍ଷ ହୋଇଅଛି ।

(୩) ଭାଗବତ ବର୍ଣ୍ଣିତ ମୁନି ଭରତ ଯେ କି 'ଜଡ଼ ଭରତ' ନାମରେ ପରିଚିତ । ଏହି ଜଡ ଭରତ ହେଉଛନ୍ତି ମହାତ୍ମାଗା, ତତ୍ତ୍ୱଦର୍ଶୀ ପଣ୍ଡିତ ଓ ତ୍ରିକାଳଜ୍ଞ । ରାଜକୁଳରେ ଜନ୍ମଲାଭ କରି ଏହି ଭରତ ପ୍ରଥମେ ଈଶ୍ୱରୋପାସନା, ଯଜନ, ଯାଜନ ଓ ସେବା ବ୍ରତରେ କାଳାତିପାତ କରି ପରଜନ୍ମରେ ସେ ଏକ ଉଚ୍ଚ ବ୍ରାହ୍ମଣ କୁଳରେ ଜନ୍ମ ହୋଇଥିଲେ । ସେ ଜାତିସ୍ମର ଥିବାରୁ ପୂର୍ବ ଜନ୍ମର କର୍ମଫଳ ସ୍ମରଣ କରି ସେ ପୁନର୍ବାର ଈଶ୍ୱର ଆରାଧନାରେ ଲିପ୍ତ ରହିଲେ । କ୍ରମେ ସେ ସଂସାର ପ୍ରତି ଅନାସକ୍ତ ହୋଇ ସବୁ କର୍ମରେ ନିର୍ଲିପ୍ତ ରହିଲେ । ସେ ମୌନବ୍ରତ ଅବଲମ୍ବନକରି ଏଭଳି

Digitized by srujan ka@gmail.com

ଧୈର୍ଯ୍ୟ ସହକାରେ ଦୁଃଖ କଷ୍ଟ ସହିବାକୁ ଲାଗିଲେ ଯେ, ସମେ ଲୋକେ ତାଙ୍କୁ 'ଜଡ ଭରତ' ଡାକିବାକୁ ଲାଗିଲେ ଏବଂ ପରବର୍ତ୍ତୀ ସମୟରେ ସେ 'ଜଡ଼ ଭରତ' ନାମରେ ପରିଚିତ ହେଲେ ।

ଜଡ଼ ଭରତ'ଙ୍କ ଉପଦେଶବାଣୀ ଯେଭଳି ସାରଗର୍ଭିକ ସେହିଭଳି ଅତି ଶିକ୍ଷାପ୍ରଦ । ପୃଥିବୀର ସମସ୍ତ ସତ୍ୟକୁ ସେ ନିଜ ଜୀବନରେ ପ୍ରୟୋଗ କରିଥିଲେ । ତାଙ୍କ ସାଧନା ଓ ଈଶ୍ୱରବିଶ୍ୱାସ ତାଙ୍କୁ ଚିର ଅମର କରି ରଖିଛି । ସେ କହନ୍ତି-ଗୃହସ୍ଥ ଧର୍ମର ଶ୍ରେଷ୍ଠ କର୍ମ ହେଲା ସିଦ୍ଧ ମହାତ୍ମାମାନଙ୍କ ଚରଣତଳେ ଆତ୍ମସମର୍ପଣ କରିବା ଏବଂ ଅନ୍ନବସ୍ତ୍ରାଦି ଦାନଦ୍ୱାରା ଦୀନ ଦରିଦ୍ର ଓ ଅତିଥିମାନଙ୍କର ସେବା କରିବା । ଜପ ତପ ବେଦପାଠ ଓ ଆରାଧନା ଦ୍ୱାରା ଈଶ୍ୱର ପ୍ରାପ୍ତି ହୁଏ ନାହିଁ । ତାଙ୍କ ମତରେ ଈଶ୍ୱର ସର୍ବବ୍ୟାପୀ, ସର୍ବଦର୍ଶୀ ଓ ସର୍ବଜ୍ଞାମୀ । ପ୍ରତ୍ୟେକ ହୃଦୟରେ ଈଶ୍ୱରଙ୍କ ମୂର୍ତ୍ତି ପ୍ରତିଫଳିତ, ତେଣୁ ତାଙ୍କୁ ଲାଭ କରିବାକୁ ହେଲେ ପ୍ରାଣୀମାନଙ୍କୁ ସେବା କରିବା ପ୍ରତ୍ୟେକ ମନୁଷ୍ୟର କର୍ତ୍ତବ୍ୟ । ହରିନାମ କୀର୍ତ୍ତନରେ ଯେଉଁ ମୋକ୍ଷତ୍ୱ ଲାଭ ହୁଏ, ତାହା ଅନ୍ୟ କୌଣସି ଉପାୟରେ ହୁଏ ନାହିଁ । ସକଳ ଲୋକଙ୍କ ହୃଦୟରେ ଯେ ଭଗବାନ ବିରାଜିତ ଏବଂ ପରାପର ଭେଦ ଦୂର କରି ପ୍ରତ୍ୟେକକୁ ସେବା ଓ ସହାନୁଭୂତି ଦ୍ୱାରା ଆପଣାର କରି ପାରିଲେ ବାସ୍ତବ ଈଶ୍ୱର ଲାଭ ହୋଇଥାଏ ।



Digitized by srujan ka@gmail.com

# ମହର୍ଷି ଭରଦ୍ୱାଜ

ପଣ୍ଡିତ ସୋମନାଥ ଦାଶ
ଅଧ୍ୟାପକ ସଦାଶିବ ସଂସ୍କୃତ କଲେଜ, ପୁରୀ

ମହର୍ଷି ଭରଦ୍ୱାଜ ଜଣେ ସୁପ୍ରସିଦ୍ଧ ମୁନି ଅଟନ୍ତି । ସେ ବୃହସ୍ପତିଙ୍କ ଔରସରେ ଜନ୍ମଲାଭ କରିଥିଲେ । ପ୍ରୟାଗରେ ଏହାଙ୍କ ଆଶ୍ରମ ଥିଲା । ଏହାଙ୍କ ପୁତ୍ର ଦ୍ରୋଣାଚାର୍ଯ୍ୟ । ବେଦର ଅନେକ ମନ୍ତ୍ରର ଏ ବକ୍ତା ଥିଲେ । ବ୍ୟାଧିଗ୍ରସ୍ତମାନଙ୍କର ରୋଗମୁକ୍ତି ପାଇଁ ଭରଦ୍ୱାଜ ମୁନିମାନଙ୍କ ଅନୁରୋଧରେ ଇନ୍ଦ୍ରାଳୟକୁ ଯାଇ ଇନ୍ଦ୍ରଙ୍କ ନିକଟରେ ଆୟୁର୍ବେଦଶାସ୍ତ୍ର ଅଧ୍ୟୟନ କରିଥିଲେ । ସମସ୍ତ ଆୟୁର୍ବେଦ ଶାସ୍ତ୍ରରେ ପାରଦର୍ଶୀ ହୋଇ ପୁଣି ମର୍ତ୍ତ୍ୟଲୋକକୁ ଫେରିଆସି ଋଷିମାନଙ୍କୁ ଆୟୁର୍ବେଦ ଶିକ୍ଷା ଦେଲେ । ମହାଭାରତରେ ଅଛି—ଭରଦ୍ୱାଜ ହରିଦ୍ୱାରରେ ବାସ କରିଥିଲେ । ରାମଙ୍କର ବନବାସ କାଳରେ ଓ ବଣରୁ ପ୍ରତ୍ୟାବର୍ତ୍ତନ ସମୟରେ ନିଜ ଆଶ୍ରମରେ ସୀତାଙ୍କୁ ଅଭ୍ୟର୍ଥନା କରିଥିଲେ । ଚିତ୍ରକୂଟ ଯାତ୍ରା କାଳରେ ଭରତ ଭରଦ୍ୱାଜଙ୍କର ଆତିଥ୍ୟ ଗ୍ରହଣ କରିଥିଲେ ।

## ଭରଦ୍ୱାଜଙ୍କ ବାଣୀ

ମନୁଷ୍ୟର ଶରୀର ଜୀର୍ଣ୍ଣ ହୋଇଯାଏ, ବାଳ ପାଚିଯାଏ, ଦାନ୍ତ ଝଡ଼ିଯାଏ; କିନ୍ତୁ ଧନ ଓ ଜୀବନର ଆଶା କ୍ଷୀଣ ହୁଏ ନାହିଁ ।

Digitized by srujan ka@gmail.com

ଦରଜୀ ଛୁଞ୍ଚିଦ୍ୱାରା ବସ୍ତ୍ରରେ ସୂତା ପ୍ରେଇଲା ଭଳି ତୃଷ୍ଣାରୂପୀ ଛୁଞ୍ଚିରେ ସଂସାରରୂପୀ ସୂତା ଅନ୍ତଃକରଣରେ ପଶିଯାଏ । ସେ ସଦା କାମାର୍ତ୍ତ ସେ ଦିବାଭାଗରେ ମୈଥୁନ କରେ, ସେ ପରକୁ ଅପବାଦ ଦିଏ, ସେ ପରଦାରାରେ ମନ ବଳାଏ, ସେ ପରଧନ ହରଣ କରେ, ସେ ପିତାମାତାଙ୍କ ଆଦେଶ ଲଙ୍ଘନ କରେ, ସେ ପୁତ୍ରବଧୂସଙ୍ଗେ ପ୍ରୀତି କରେ, ସେ ପାପାର୍ଜିତ ଅନ୍ନ ଭକ୍ଷଣ କରେ, ସେ ଉଲଗ୍ନ ହୋଇ ସ୍ନାନ କରେ, ସେ ବେଶ୍ୟାଗୃହରେ ଦିନକାଟେ, ସେ ଇହ-ଜନ୍ମରେ ଓ ପରଜନ୍ମରେ ଅତ୍ୟନ୍ତ ଦୁଃଖ ଭୋଗ କରେ ।

—ମହାଭାରତ—

ଯେବଣ ଗୃହେ ପତି ପତ୍ନୀ ଦୁଇ
ଅତ୍ୟନ୍ତ ସ୍ନେହ ଭାବରେ ସେ ଥାଇ ।
ସେ ଦୁହେଁ ଏକମନ ହୋଇଥାନ୍ତି
ପରସ୍ପରେ ସେ ବଶ ହୁଅନ୍ତି ।
ସେହି ଗୃହରେ ଧର୍ମାର୍ଥ କାମର
ସଙ୍ଗମ ହୁଏ ଆହେ ନରବର ।

—ବୃହତ୍ ଇତିହାସ ପୁରାଣ—

———

Digitized by srujan ka@gmail.com

# ମହାପୁରୁଷ ନିମ୍ବାର୍କାଚାର୍ଯ୍ୟ

ଶ୍ରୀ ଗଣେଶପ୍ରସାଦ ପରିଜା

ଆଚାର୍ଯ୍ୟ ନିମ୍ବାର୍କଙ୍କ ଅପର ନାମ ନିୟମାନନ୍ଦ । କେହି କେହି ନିମ୍ବାର୍କଙ୍କୁ ନିମ୍ବାଦିତ୍ୟ ନାମରେ ଅଭିହିତ କରିଥିଲେ । ନିମ୍ବାଦିତ୍ୟ ସୂର୍ଯ୍ୟଙ୍କ ଅବତାର । ସେ ମଧ୍ୟ ପାଷାଣ୍ଡ ଦଳନାର୍ଥେ ଭୂମଣ୍ଡଳରେ ଅବତୀର୍ଣ୍ଣ ହୋଇଥିଲେ । ଏକଦା ଜଣେ ଦଣ୍ଡୀ ବା ଅନ୍ୟମତରେ ଜଣେ ଜୈନ ଉଦାସୀନ ତାହାଙ୍କ ଆଶ୍ରମରେ ଉପସ୍ଥିତ ହେଲେ ଏବଂ ଉଭୟେ ଶାସ୍ତ୍ର ବିଷୟରେ ବିଚାର କରୁ କରୁ ସୂର୍ଯ୍ୟ ଅସ୍ତଗାମୀ । ଆଗନ୍ତୁକ ଆଶ୍ରମପତି ଅତିଥିଙ୍କ ସତ୍କାର ନିମିତ୍ତ କିଛି ଖାଦ୍ୟ ଧରି ଉପଗତ ହେଲେ । ମାତ୍ର ସୂର୍ଯ୍ୟାସ୍ତ ପରେ ଦଣ୍ଡୀ ବା ଜୈନ ସଂପ୍ରଦାୟ ଲୋକେ କୌଣସି ଖାଦ୍ୟ ଗ୍ରହଣ କରନ୍ତି ନାହିଁ । ତେଣୁ ଅତିଥି ଖାଦ୍ୟଗ୍ରହଣ କରିବାକୁ ନାସ୍ତିକଲେ । ସ୍ୱୀୟ ଅତିଥିଙ୍କ ନିମିତ୍ତ ଆଚାର୍ଯ୍ୟ ସୂର୍ଯ୍ୟଙ୍କ ଗତିରୋଧକରି ଏକ ନିମ୍ବବୃକ୍ଷରେ ଅବସ୍ଥାନ କରିବାକୁ ଆଦେଶ ଦେଲେ । ନିମ୍ବାର୍କଙ୍କ କାଳ ନିର୍ଣ୍ଣୟ ଦୁଃସାଧ୍ୟ । ପ୍ରାୟ ୮ମ ଶତାବ୍ଦୀ ପରେ ଏକାଦଶ ମଧ୍ୟରେ ତାଙ୍କର ଆବିର୍ଭାବ ହୋଇଥିବା ଅନୁମେୟ । ବେଦାନ୍ତ ପାରିଜାତ ସୌରଭ ନାମକ ଭାଷ୍ୟ ସେ ପ୍ରଣୟନ କରିଛନ୍ତି । ଏହି ଭାଷ୍ୟହିଁ ବ୍ୟାସଙ୍କ ପ୍ରଣୀତ ବ୍ରହ୍ମସୂତ୍ରର ଭାଷ୍ୟ । ବୃନ୍ଦାବନ ନିକଟରେ ଏହାଙ୍କ ଆଶ୍ରମ ଥିଲା । ଆଚାର୍ଯ୍ୟଙ୍କର ଶିଷ୍ୟ ଦୁଇ ସଂପ୍ରଦାୟରେ ବିଭକ୍ତ । ବିରକ୍ତ ଓ

Digitized by srujan ka@gmail.com

ଗୃହସ୍ଥ । କେଶବ ଭଟ୍ଟ ଓ ହରି ବ୍ୟାସଙ୍କଠାରୁ ଏହି ଦୁଇ ଶ୍ରେଣୀ ଉଦ୍ଭବ । ହରି ବ୍ୟାସଙ୍କ ଅନୁବର୍ତ୍ତୀଗଣ ଗୃହସ୍ଥ—କେଶବ ଭଟ୍ଟ 'ବିରକ୍ତ' ।

## ନିମ୍ବାର୍କଙ୍କ ବାଣୀ

ପ୍ରତ୍ୟେକଙ୍କର ଭଗବାନଙ୍କ ପ୍ରସାଦ ଲାଭ ଓ ଦର୍ଶନ ଲାଭ ଆବଶ୍ୟକ । ଏହାଦ୍ୱାରା ସର୍ବ ଦୁଃଖ ନିବୃତ୍ତି ଓ ପରମାନନ୍ଦ ପ୍ରାପ୍ତି ହୁଏ । ବ୍ରହ୍ମ ସର୍ବ ଶକ୍ତିମାନ । ସେ ଜଗତ ରୂପେ ପରିଣତ ହେଲେ ମଧ୍ୟ ନିର୍ବିକାର । ଜୀବ ଏବଂ ଈଶ୍ୱର ଏ ଦୁହେଁ ଅଜ ଓ ନିତ୍ୟ । ଏହାଙ୍କର କେବେ ମୃତ୍ୟୁ ହୁଏନାହିଁ ଏବଂ ଏହାଙ୍କ ସ୍ଥିତି ସର୍ବଦା ବିଦ୍ୟମାନ । ଜୀବ-ବ୍ରହ୍ମର ଅଂଶ, ବ୍ରହ୍ମଅଂଶୀ । ଜୀବ ଓ ବ୍ରହ୍ମ ଦୁହେଁ ଅଭିନ୍ନ । ଯେପରି ସମୁଦ୍ର ଓ ତାର ତରଙ୍ଗ ବା ସୂର୍ଯ୍ୟ ଓ ତାଙ୍କର ପ୍ରଭା; ତରଙ୍ଗ ସମୁଦ୍ରଠାରୁ ପୃଥକଭିନ୍ନ ମନେ ହେଲେ ମଧ୍ୟ ବା ସୂର୍ଯ୍ୟ କିରଣ ସୂର୍ଯ୍ୟଙ୍କଠାରୁ ଭିନ୍ନ ବୋଲି ଜଣାଗଲେ ମଧ୍ୟ ବସ୍ତୁତଃ ଦୁହେଁ ଏକ । ସେହିପରି ଜୀବ ଓ ବ୍ରହ୍ମ ଏକ ଏବଂ ଅଦ୍ୱିତୀୟ ।

ବ୍ରହ୍ମହିଁ ଜଗତର ନିମିତ୍ତ ଓ ଉପାଦାନର କାରଣ । ବ୍ରହ୍ମ ଜଗତରୂପେ ପରିଣତ ହୁଏ ଏବଂ ପ୍ରଳୟରେ ଏହି ଜଗତ ବ୍ରହ୍ମରେ ଲୀନ ହୁଏ । ଭକ୍ତିହିଁ ସାଧନ । ଉପାସନା ଫଳରେ ବ୍ରହ୍ମପ୍ରାପ୍ତି ଘଟେ । ନିଜକୁ ତଥା ସମସ୍ତ ଜଗତକୁ ବହ୍ମ ରୂପେ ଭାବିବା ଭକ୍ତିର ଅଙ୍ଗୀଭୂତ । ଭକ୍ତିହିଁ ମୁକ୍ତିର ଉପାୟ ।

—

Digitized by srujan ka@gmail.com

# ଭଗବାନ କପିଳ

ଅଧ୍ୟାପକ ଶ୍ରୀ ନୀଳାଦ୍ରିଭୂଷଣ ହରିଚନ୍ଦନ
ରେଭେନସା କଲେଜ, କଟକ

ମହର୍ଷି କପିଳ ସାଂଖ୍ୟଦର୍ଶନର ମୌଳିକ ସୂତ୍ରର ଆଗ୍ନର୍ଯ୍ୟ-ଭାବରେ ସମଗ୍ର ଦର୍ଶନଶାସ୍ତ୍ର ଜଗତରେ ଏକ ବିଶିଷ୍ଟ ସ୍ଥାନର ଅଧି-କାରୀ । ଭାଗବତରେ କର୍ଦ୍ଦମ ଋଷି ଓ ମନୁଙ୍କ କନ୍ୟା ଶତରୂପାଙ୍କ କନ୍ୟାରୂପେ ତାଙ୍କୁ ପରିଚିତ କରାଯାଇଛି । ସିଦ୍ଧମାନଙ୍କ ମଧ୍ୟରେ କପିଳମୁନି ଯେ ଅଗ୍ରଗଣ୍ୟ ଥିଲେ, ତାହା ଗୀତାରେ ଶ୍ରୀକୃଷ୍ଣଙ୍କ ମୁଖ ନିଃସୃତ ବାଣୀ "ସିଦ୍ଧାନାଂ କପିଳୋମୁନିଃ"ରୁ ସ୍ପଷ୍ଟ ପ୍ରତିପନ୍ନ ହୁଏ । ପ୍ରଚଣ୍ଡ ତେଜସ୍ୱିତାର ପ୍ରମାଣସ୍ୱରୂପ ତାଙ୍କର କ୍ରୋଧାନଳରେ କପର ସଗରଙ୍କର ଷାଠିଏହଜାର ପୁତ୍ର ଧ୍ୱଂସମୁଖରେ ପତିତ ହୋଇଥିଲେ, ଏହି କିମ୍ବଦନ୍ତୀ ପ୍ରଚଳିତ ରହିଛି । ଭଗବାନଙ୍କ ପଞ୍ଚମ ଅବତାର ଭାବରେ ମଧ୍ୟ ତାଙ୍କୁ ଆଖ୍ୟାୟିତ କରାଯାଇଛି ।

ମହର୍ଷି କପିଳଙ୍କର ମହାନ୍ କୃତି 'ସାଂଖ୍ୟସୂତ୍ର', ଏ ପର୍ଯ୍ୟନ୍ତ ଆଧୁନିକ ଦର୍ଶନଶାସ୍ତ୍ରବିତ୍‌ମାନଙ୍କର ବିନୀତ ପ୍ରଣାମ ଦାବୀ କରି-ଆସିଛି । "ସାଂଖ୍ୟତତ୍ତ୍ୱ ଅନୁଯାୟୀ ପୁରୁଷ ଓ ପ୍ରକୃତିର ସଂଯୋଗରୁ ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି । ଏହି ସଂଯୋଗ ଦ୍ୱାରା ପ୍ରକୃତିରୁ ବୁଦ୍ଧି, ଅହଂକାର, ତନ୍ମାତ୍ରା, ସ୍ଥୂଳ, ଭୂତ, ଇତ୍ୟାଦି କର୍ମରେ ବିବର୍ତ୍ତନ ଘଟେ ଏବଂ ସମଗ୍ର ବିଶ୍ୱ ଉତ୍ପତ୍ତି ଲାଭକରେ ।

Digitized by srujan ka@gmail.com

## ତାଙ୍କର ବାଣୀ

କପିଳ ବୋଇଲେ ହେ ବେଦର ତତ୍ତ୍ୱଟି
ଯେ ଜାଣୁଛୁ ସେ ଯାଇ ପାଉଛୁ ବ୍ରହ୍ମଟି ।
ଯାଗ ଯେ କରୁଅଛୁ ଧର୍ମ ହେବ ଫଳ
ତାହାକୁ ଜାଣ ଦ୍ୱିଜ ମହାତ୍ୟାଗୀ ବୋଲ ।
ପାପ କଥା ଆଶ୍ରା ନ କର ସାଧୁ ମାର୍ଗ
ଆଚର ବ୍ୟସ୍ତ କରୁଥିବ ଧନବର୍ଗ ।

× × ×

କ୍ରୋଧ- ଅହଙ୍କାର-ମତ୍ସର-ବିବର୍ଜିତ
କରିଥିବ ଅହର୍ନିଶିରେ ନିଜ ଚିତ୍ତ ।
କ୍ଷତ୍ରିୟ ନିଜ ଗୃହେ ହୋଇ ଜ୍ଞାନନିଷ୍ଠ
ହୋଇଲେ ସେ ଧରମ ପାଆନ୍ତି ଗରିଷ୍ଠ ।
ସତ୍ୟକୁ ଆଶ୍ରେ କଲେ ଦୁର୍ଦ୍ଧର୍ଷ ହୁଅନ୍ତି
ବିଷୟ ଛଳ ବୁଦ୍ଧି ତେଜ ଧର୍ମେ ଥାନ୍ତି ।
ବେଦ ଶସ୍ତ୍ର ପ୍ରଧାନ ହୋଇ କ୍ରୋଧ କାମ
ଛାଡ଼ିଥିଲେ ଗତି ସେ ହୁଅଇ ଉତ୍ତମ ।
ସର୍ବ ବର୍ଣ୍ଣମାନଙ୍କେ ଧର୍ମ ବ୍ୟତିକ୍ରମ
ନ କରିବ କଲେ ବିନାଶ ଯାଏ ଧର୍ମ ।
ଘରରୁ ବାହାରି କେ ହୁଏ ବ୍ରହ୍ମଚାରୀ
କେ ଜପ କରଇଟି ହୋଇ ବନଚାରୀ ।
ସଂସାରକୁ ଯେବେ ପାଆନ୍ତି ଏମାନେ
ମୁକତି ଲଭନ୍ତି ଜାଣ ଏହି ପୁଣ୍ୟେ ।

Digitized by srujan ka@gmail.com

ସ୍ୟମରଶ୍ମି ବୋଇଲେ ଯାଗ ଦାନ ଭୋଗ
ମାନଙ୍କରେ ବଡ଼ କେ କହ ମହାଭାଗ ।
କପିଳ ବୋଇଲେ ହେ ତ୍ୟାଗ ସୁଖପର
ଏ ସୁଖପାକ କେ ନୁହନ୍ତି ତପସ୍ବୀସ୍ୱ ।

—ଶାନ୍ତିପର୍ବ-ମହାଭାରତ

କପିଳ ବୋଇଲେ ବେଦକୁ ସ୍ମର୍ଣ୍ଣି ଧର୍ମ ।
ନିଷ୍କାମ କରି କଲେ ଲଭେ ଲୋକବ୍ରହ୍ମ ॥
କ୍ରୋଧ ହୋଇ ପ୍ରହାର ନ କରେ ଯେ ନର ।
ପାଣିପାଦ ଗୁପତ ଅଟଇ ତାହାର ॥
ମିଥ୍ୟା ଗାଳି ଖରରୁ ବିବର୍ଜିତ ହେଲେ ।
ଲୋକର ତୁଣ୍ଡ ଗୁପ୍ତ ହୁଏ ଜାଣ ଭଲେ ॥
ଅଳପ ଆହାର କରଇଟି ଯେ ନର ।
ଜଠର ଦ୍ୱାର ଗୁପ୍ତ ଅଟଇ ତାହାର ॥
ଅନ୍ୟତ୍ରରେ ଭାର୍ଯ୍ୟା ଗମନ ପରିତ୍ୟାଗି ।
ଗୁଡ଼ିଛୁ ସେ ଜାଣ ଉପସ୍ଥ ରକ୍ଷାକାରୀ ॥
ହସ୍ତ, ବାକ୍, ଉପସ୍ଥ, ଉଦର ଗୁପତ ।
ହେବା ଲୋକକୁଟି ଜାଣିବ ଦ୍ୱିଜସୁତ ॥
ଏମାନ ଗୁପତଟି ଯାହାର ଅଟଇ ।
ତପ ଦାନ ଯାଗରେ କାର୍ଯ୍ୟ ତା'ର ନାହିଁ ॥
ପାପକଥା ଆଶ୍ରା ନ କରି ସାଧୁ ମାର୍ଗ ।
ଆଚରି ବ୍ୟୟ କରୁଥିବ ଧନ ବର୍ଗ ॥

—ମହାଭାରତ-ଶାନ୍ତିପର୍ବ

Digitized by srujan ka@gmail.com

# ମହର୍ଷି ଶାଣ୍ଡିଲ୍ୟ

ଅଧ୍ୟାପକ ଡ: ଶ୍ରୀନିବାସ ମିଶ୍ର, ରେଭେନ୍ସା କଲେଜ, କଟକ

ମହର୍ଷି ଶାଣ୍ଡିଲ୍ୟ ଋଗ୍‌ବେଦ ଅଧ୍ୟୟନ କରିଥିଲେ; କିନ୍ତୁ କେବଳ ବେଦାଧ୍ୟୟନଦ୍ୱାରା ପରମାର୍ଥ ଲାଭ ସମ୍ଭବ ନ ହେବାରୁ ସେ ପ୍ରସିଦ୍ଧ ଭକ୍ତିସୂତ୍ର ପ୍ରଣୟନ ଓ ପ୍ରଚାର କରିଥିଲେ । ତାଙ୍କ ଦୃଷ୍ଟିରେ ଜ୍ଞାନ ଅପେକ୍ଷା ଭକ୍ତିର ମହତ୍ତ୍ୱ ଅଧିକ ।

ଭକ୍ତିର ଉଦାରତା ଓ ସାର୍ବଜନୀନତା ଶାଣ୍ଡିଲ୍ୟଙ୍କ ଦ୍ୱାରା ସ୍ୱୀକୃତ । ଜାତିବର୍ଣ୍ଣ ବିଚାର ଭକ୍ତି ରାଜ୍ୟରେ ନାହିଁ । ପବିତ୍ର ଚିତ୍ତରେ ଚଣ୍ଡାଳ ତା' ହୃଦୟ ଭଗବାନଙ୍କୁ ଅର୍ପଣ କଲେ ଭଗବାନ ତା'ପ୍ରତି ମଧ୍ୟ ଆକୃଷ୍ଟ ହୁଅନ୍ତି । ସମଦର୍ଶୀ ଭାବଗ୍ରାହୀ ଭଗବାନଙ୍କ ନିକଟରେ ଜାତି କୁଳର ବିଚାର ତୁଚ୍ଛ । ଶବରୀ ଗୁହକର ସ୍ନେହ ଓ ଭକ୍ତିରେ ରାମଚନ୍ଦ୍ର କିଣି ହୋଇ ଯାଇଥିଲେ । ଅମୃତ ତୁଲ୍ୟ ଭକ୍ତିର ମହନୀୟତା ଶାଣ୍ଡିଲ୍ୟଙ୍କ ଦ୍ୱାରା ପ୍ରଶଂସିତ ।



Digitized by srujan ka@gmail.com



# ବ୍ୟାସଦେବ ଓ ଭାରତୀୟ ସଂସ୍କୃତି

ଡକ୍‌ଟର ମାୟାଧର ମାନସିଂହ

ଲକ୍ଷ ଲକ୍ଷ ହିନ୍ଦୁ, ଯେଉଁମାନେ ପ୍ରତ୍ୟେହ ନିଷ୍ଠାର ସହିତ ଶ୍ରୀମଦ୍‌ଭଗବତଗୀତା ପାରାୟଣ କରନ୍ତି, ସେମାନେ ପ୍ରଥମେ ଗୀତାଧ୍ୟାନ କରି ସାରିଲା ପରେ ଯାଇ ଗୀତା ଗ୍ରନ୍ଥଟି ଫିଟାଇଥାନ୍ତି । ସେହି ଗୀତାଧ୍ୟାନରେ ପ୍ରଥମ ନମସ୍କାର ହେଉଛି ବ୍ୟାସଙ୍କ ପ୍ରତି, ଶ୍ରୀକୃଷ୍ଣଙ୍କ ପ୍ରତି ନୁହେଁ ।

Digitized by srujan ka@gmail.com

"ନମୋଽସ୍ତୁତେ ବ୍ୟାସ, ବିଶାଳବୁଦ୍ଧେ" (ହେ ବିଶାଳବୁଦ୍ଧି ବ୍ୟାସଦେବ, ତୁମ୍ଭଙ୍କୁ ଗଭୀର ନମସ୍କାର )

କାରଣ ?

"ଯେନ ତ୍ୱୟା ଭାରତତୈଳପୂର୍ଣ୍ଣଃ
ପ୍ରଜ୍ୱାଳିତୋ ଜ୍ଞାନମୟଃ ପ୍ରଦୀପଃ ।

(ଯେହେତୁ ତୁମେ ଭାରତ ଯୁଦ୍ଧ ରୂପକ କାହାଣୀର ତୈଳ ଦେଇ, ଗୀତା ରୂପକ ଏକ ଜ୍ଞାନମୟ ପ୍ରଦୀପ ଜାଳିଦେଇ ଯାଇଛ ସମଗ୍ର ବିଶ୍ୱପାଇଁ ।)

ଏହି ଧ୍ୟାନର ଆଦ୍ୟ ଶ୍ଳୋକରେହିଁ ଭଗବଦ୍‌ଗୀତାର ସଂକଳନ ନେଇ ଏହିପରି କୁହାଯାଇଛି ।

"ବ୍ୟାସେନ ଗ୍ରଥିତାଂ ପୁରାଣମୁନିନା ମଧ୍ୟେ ମହାଭାରତଂ" (ମହାଭାରତରୂପକ ରତ୍ନମାଳା ଭିତରେ ବ୍ୟାସଙ୍କଦ୍ୱାରା କୌଶଳରେ ଗୁନ୍ଥା ହୋଇଥିବା ଗୀତାକୁ) ।

କିଏ ଏହି ବ୍ୟାସ ?

ଭାରତୀୟ ଚେତନାରେ ବ୍ୟାସଦେବ ଏକ ସର୍ବମୟ ବିରାଟ ପୁରୁଷ । ସେ କ'ଣ କରିଛନ୍ତି ପଚାରିବା ଅପେକ୍ଷା ବରଂ ପଚାରିବା ଉଚିତ, ସେ କ'ଣ କରିଯାଇ ନାହାନ୍ତି, ଭାରତର ଧର୍ମ ଓ ସଂସ୍କୃତି ପାଇଁ ।

ବସ୍ତୁତଃ, ଆଜି ହିନ୍ଦୁ ସଂସ୍କୃତି ବୋଇଲେ ଯାହା ବୁଝାଏ, ତାହା ଶ୍ରୀରାମ ବା ଶ୍ରୀକୃଷ୍ଣଙ୍କର କୃତିତ୍ୱ ଯେତେ ନୁହେଁ, ଯେତେ ବ୍ୟାସଙ୍କର ।

ତ୍ରୁଏତ ସହସ୍ରାଧିକ ବର୍ଷ ଧରି ଆର୍ଯ୍ୟମାନେ ଦଳ ଦଳ ହୋଇ ଏ ଦେଶକୁ ଆସିଥିଲେ । ନୂତନ ଦଳ ଓ ପୁରାତନ ଦଳ ଭିତରେ ସଂଘର୍ଷ ଲାଗି ରହିଥିଲା । ଋଗ୍‌ବେଦର ଦଶରାଜାର ଯୁଦ୍ଧ, ସୂଚନା

Digitized by srujan ka@gmail.com

କରେ ଏହି ଗୋଷ୍ଠୀ-ସଂଗ୍ରାମ । ଏହାର ପରବର୍ତ୍ତୀ ପୁସ୍ତକ ରୂପହିଁ କୁରୁପାଣ୍ଡବ ଯୁଦ୍ଧ ବା ମହାଭାରତ ମହାକାବ୍ୟ ।

କ୍ରମାଗତ ଦଳ ଦଳ ହୋଇ ଆସିବା, ଉପନିବେଶ ପାଇଁ ସଂଘର୍ଷ ଏବଂ ଉପନିବେଶମାନଙ୍କର କ୍ରମବିସ୍ତାର ଫଳରେ ଆର୍ଯ୍ୟମାନେ କ୍ରମେ ପରସ୍ପରଠାରୁ ଛିନ୍ନ ବିଚ୍ଛିନ୍ନ ହୋଇଗଲେ । ଅନାର୍ଯ୍ୟ ଜନତା ସହିତ ବସବାସ ଓ ବିବାହ ଫଳରେ, ସେହି ଭିନ୍ନ ଭିନ୍ନ ଆର୍ଯ୍ୟ-କେନ୍ଦ୍ରମାନଙ୍କରେ ବିଶୁଦ୍ଧ ଆର୍ଯ୍ୟ ସଂସ୍କୃତି ଲୋପ ପାଇବାକୁ ବସିଲା । ଫଳରେ ଆର୍ଯ୍ୟମାନେ ପ୍ରାୟ ସମଗ୍ର ଉତ୍ତର-ଭାରତ ଅଧିକାର କରି ବସିଲେ ହେଁ ଏବର ଦିଲ୍ଲୀ ଆଖପାଖ ଏକ ଏକ ସଂକୀର୍ଣ୍ଣ ଅଞ୍ଚଳକୁ ହିଁ ବ୍ରହ୍ମାବର୍ତ୍ତ ବା ଆର୍ଯ୍ୟାବର୍ତ୍ତ କୁହାଗଲା । ଏମାନଙ୍କର ବାହାରେ ଥିବା ଆର୍ଯ୍ୟ-ମାନେ ବ୍ରାତ୍ୟ ବା ଭ୍ରଷ୍ଟାଚାର ବିବେଚିତ ହେଲେ । କାରଣ, ସେ ଅଞ୍ଚଳମାନଙ୍କରେ ବିଶୁଦ୍ଧ ବୈଦିକ ସଂସ୍କୃତିକୁ ଠିଆ ରଖେଇବା ପାଇଁ ବିଶେଷଜ୍ଞ ବ୍ରାହ୍ମଣ ଯଥୋଚିତ ସଂଖ୍ୟାରେ ନ ଥିଲେ । ଏହା ଫଳରେ ଶତ ଶତ ସୂକ୍ତ ସମ୍ବଳିତ ବେଦ, ଲୋକଙ୍କ ଆଖିରେ ଏକ ଆବୁରୁ ଜାବୁରୁ ସ୍ତୋତ୍ର—ସଂକଳନ ମାତ୍ର ହୋଇ ପଡ଼ିଲା । କେଉଁ ଅବସ୍ଥାରେ, କେଉଁ ସୂକ୍ତକୁ କିପରି ବିଶୁଦ୍ଧ ଉଚ୍ଚାରଣ ବା ଧ୍ୱନି ଦେଇ ବୋଲିବ, ଅଧିକାଂଶଙ୍କୁ ତାହା କ୍ରମେ ଅଜଣା ହୋଇ ଆସିଲା । ସମଗ୍ର ଭାରତରେ ଏକ ସାଂସ୍କୃତିକ ଅନ୍ଧକାର ରଜନୀ ମାଡ଼ି ଆସିଲା କହିଲେ ଚଳେ । ଭାରତୀୟ ସଂସ୍କୃତିର ଏହି ପ୍ରଥମ ବିଷମ ସଙ୍କଟବେଳେ ଏ ମାଟି ଏକ ପୁଅ ଜନ୍ମ କଲା, ଯେ ସେହି ଅଜ୍ଞାନତମକୁ ସମ୍ପୂର୍ଣ୍ଣ ବିତାଡ଼ିତ କରି ଏପରି ପ୍ରଜ୍ଞାର ପ୍ରଦୀପ ସବୁ ଜାଳିଦେଲେ ଯାହାକି ଏହି ସହସ୍ର ସହସ୍ର ବର୍ଷ ଧରି, ଏହି ବିରାଟ ଉପମହାଦେଶକୁ ପ୍ରକୃତରେ ଏପର୍ଯ୍ୟନ୍ତ ଆଲୋକିତ କରି ରଖିଛନ୍ତି ।

Digitized by srujan ka@gmail.com

ଭାରତମାତାର ଏହି ଶ୍ରେଷ୍ଠ ସନ୍ତାନ ହେଉଛନ୍ତି ସେହି ବିଶାଳବୁଦ୍ଧି ବ୍ୟାସ, ଯାହାଙ୍କୁ କି ଗୀତା ପାରାୟଣ ପୂର୍ବରୁ ଏବଂ ଭଗବାନ ଶ୍ରୀକୃଷ୍ଣଙ୍କୁ ନମସ୍କାର କରିବା ପୂର୍ବରୁ, ଲକ୍ଷ ଲକ୍ଷ ହିନ୍ଦୁ ଅତି ବି ସଭକ୍ତିରେ ପ୍ରଥମ ନମସ୍କାର ଜଣାଇଥାନ୍ତି । କାରଣ, ସେମାନେ ଯେଉଁ ହିନ୍ଦୁ ସଂସ୍କୃତିର ଉତ୍ତରାଧିକାରୀ ରୂପେ ଗୌରବ ଅନୁଭବ କରୁଛନ୍ତି, ତାହା ସେହି **ବ୍ୟାସଙ୍କର** ହିଁ ଦାନ ।

ସେତେବେଳକୁ ଏ ଦେଶରେ ଏବର ଜାତି ପ୍ରଥା ନ ଥିଲା କହିଲେ ଚଳେ । ଆର୍ଯ୍ୟ ଓ ଅନାର୍ଯ୍ୟମାନେ ଅବାଧରେ ମିଶୁଥିଲେ । ସେମାନଙ୍କ ମଧ୍ୟରେ ବୈବାହିକ ସମ୍ବନ୍ଧ ମଧ୍ୟ ହେଉଥିଲା । ଯମୁନା କୂଳସ୍ଥ ଏକ କୈବର୍ତ୍ତ ରାଜାଙ୍କର, ଅନାର୍ଯ୍ୟ ହେଲେହେଁ, ସତ୍ୟବତୀ ନାମରେ ଏକ ପରମ ରୂପବତୀ କନ୍ୟା ଥିଲା । ଯମୁନାର ଏକ ଦ୍ୱୀପରେ ତରୁଣ ବ୍ରାହ୍ମଣ ପରାଶର ଅଧ୍ୟୟନ ଓ ତପୋରତ ଥିଲେ । ସେହି ଦ୍ୱୀପରେ ପରାଶର ଓ ସତ୍ୟବତୀ ପରସ୍ପର ପ୍ରତି ଆକୃଷ୍ଟ ହୁଅନ୍ତି । ସେ ଦୁହିଁଙ୍କର ସନ୍ତାନ ହେଲେ ବ୍ୟାସ । ଦ୍ୱୀପରେ ଜାତ ହେବାରୁ ତାଙ୍କୁ ଥଟ୍ଟାରେ କୁହାଗଲା ଦ୍ୱୈପାୟନ । ପୁଣି ଚମତ୍କାର ହୃଏତ ଅଜାଗର ଓଳ ଅ.ଣି—କୃଷ୍ଣାଭ ଦେଖା ଯିବାରୁ ତାଙ୍କୁ ଅଧିକା କୁହାଗଲା କୃଷ୍ଣ ଦ୍ୱୈପାୟନ । ଏଇ ହେଉଛି ତାଙ୍କର ପ୍ରକୃତ ନାମ ।

ପ୍ରାଜ୍ଞ ପିତା ପରାଶର, ବାଲ୍ୟ ବୟସରୁ ହିଁ ସନ୍ତାନର ବ୍ରହ୍ମୋଜ୍ଜଳ ବୁଦ୍ଧିମତ୍ତା ଦେଖିପାରି ସତ୍ୟବତୀଙ୍କୁ ଗୃହିଣୀର ବନ୍ଧନରୁ ମୁକ୍ତ କରିଦେଲେ ଏବଂ କିଶୋର କୃଷ୍ଣ ଦ୍ୱୈପାୟନଙ୍କୁ ନେଇ ଚାଲି-ଗଲେ ନିମ୍ନ ହିମାଳୟର ଶାନ୍ତିମୟ ବଦରିକାଶ୍ରମକୁ । ସେହିଠାରେ ଦ୍ୱୈପାୟନ ଜ୍ଞାନୀ ପିତାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ, କେବଳ ବେଦ-ବିଦ୍ ନୁହେଁ, ସର୍ବଶାସ୍ତ୍ରବିଦ୍ ହୋଇ ଉଠିଲେ । ସେସବୁ

Digitized by srujan ka@gmail.com

ଅଧ୍ୟୟନ କଲା ପରେ ଦ୍ୱୈପାୟନଙ୍କର ମନେ ହେଲା ଯେ, ସେପର୍ଯ୍ୟନ୍ତ ଜଣାଥିବା ଭାରତୀୟ ଜ୍ଞାନ ଯେପରି କି ସବୁ ଆବୁରୁଜାବୁରୁ ହୋଇ ରହିଛି । ସେ ସବୁର ଶ୍ରେଣୀ ଶୃଙ୍ଖଳା ନାହିଁ । ସେ ମନେକଲେ ଯେ ଲୋକଙ୍କର ବେଦ ପ୍ରତି ବା ବୈଦିକ ସଂସ୍କୃତି ପ୍ରତି ଆଗ୍ରହ କମି ଯାଉଥିବାର ମୁଖ୍ୟ କାରଣ ଏହି ଯେ, ବେଦ ବୋଲି ଯାହା କୁହା ଯାଉଥିଲା ସେ ସମସ୍ତ ଭିତରେ କ୍ରମ-ବିଭାଗ ବା ଶ୍ରେଣୀ-ବିଭାଗ ବୋଲି କିଛି ନ ଥିଲା । ଗ୍ରାହକ କେଉଁଠୁ ଆରମ୍ଭ କରିବ, କେଉଁଠି ଶେଷ କରିବ, କିଏ ମୁଖ୍ୟ, କିଏ ଗୌଣ, କିଏ ପଠନୀୟ, କିଏ ଗେୟ, କିଛି ଜାଣି ପାରୁ ନ ଥିଲେ । ଭୁଲ-ଭଲ ନ ଜାଣି, ଯିଏ ଯେଉଁଠୁ ପୂଜାଏ ମୁଖସ୍ଥ କରି ବାନ୍ତିକରି ପକାଉଥିଲା, ସେ ବୋଲାଉଥିଲା ବେଦବିତ୍ ।

ତରୁଣ ହେଲେହେଁ ପ୍ରାଜ୍ଞ ଓ ଦୂରଦ୍ରଷ୍ଟା ଦ୍ୱୈପାୟନଙ୍କୁ ଭାରତୀୟ ଜ୍ଞାନର ଏହି ବିପର୍ଯ୍ୟୟ ବଡ଼ ବାଧିଲା । ସେ ଜ୍ଞାନୀ ପିତାଙ୍କର ପ୍ରେରଣା ଓ ପରାମର୍ଶ ନେଇ ପ୍ରଥମେ, ଭାରତୀୟ ଜ୍ଞାନ, ଜୀବନ ଦର୍ଶନ ଓ ସଂସ୍କୃତିର ମୂଳଭିତ୍ତି ବେଦକୁ ପ୍ରଥମ କରି କୌଳିକତା ଓ ଶ୍ରେଣୀବଦ୍ଧତା ଦେଇ ପାରିଲେ । ଯାହା ଗୋଟାଏ ଆବୁରୁ-ଜାବୁରୁ ଗଣ୍ଠି ରି ଥିଲା, ତରୁଣ ଦ୍ୱୈପାୟନ ହିଁ ତାକୁ ଋକ୍, ସାମ, ଯଜୁଃ, ଅଥର୍ବ ଏହିପରି ଚାରି ବିଭାଗରେ, ପୁଣି ପ୍ରତି ବିଭାଗର ସଂପୃକ୍ତ ଉପବିଭାଗ ରୂପେ, ଆରଣ୍ୟକ ଓ ବ୍ରାହ୍ମଣଗୁଡ଼ିକୁ ସଜାଇ ରଖିଲେ । ବେଦର ମୂଳ ସଂହିତା, ଆରଣ୍ୟକ ଓ ବ୍ରାହ୍ମଣ ମିଶିଲେ ସେ ସବୁ ନଜେଇ ଏକ ବିରାଟ ସାହିତ୍ୟ । ଏ ସବୁକୁ ଏକା ଏକା ଶ୍ରେଣୀବଦ୍ଧ କରି ସଜାଡ଼ି ରଖିବା କମ୍ ବିଦ୍‌ବତ୍ତ୍ୱର କାମ ନୁହେଁ । ମନେ ରଖିବାକୁ ହେବ ଯେ, ଦ୍ୱୈପାୟନଙ୍କ ପର୍ଯ୍ୟନ୍ତ ସମଗ୍ର ଏହି ସାହିତ୍ୟ ଅ-ଲିଖିତ ଥିଲା । ଅର୍ଥାତ୍, ତରୁଣ ଦ୍ୱୈପାୟନଙ୍କର ଏହି

Digitized by srujan ka@gmail.com

ସମଗ୍ର ସାହିତ୍ୟ ମୂଳରୁ ଶେଷଯାଏ ବନ୍ଦନାବସର୍ଗ ଧରି ସମ୍ପୂର୍ଣ୍ଣ ମୁଖସ୍ଥ ଥିଲା । ତାଙ୍କୁ କ'ଣ ତେଣୁ ମିଛରେ ବିଶାଳବୁଦ୍ଧି ବୋଲି କୋଟି କୋଟି ହିନ୍ଦୁ ଏ ପର୍ଯ୍ୟନ୍ତ ନମସ୍କାର କରୁଛନ୍ତି ?

ବେଦକୁ ଭାଗ ଭାଗ କରି ଶ୍ରେଣୀବଦ୍ଧ ଓ ପରିବାର ଭୁକ୍ତ କରିବାରୁହିଁ, ସେହି ବପୁସଂରହିଁ, ସମଗ୍ର ଭାରତରେ ଦ୍ୱୈପାୟନଙ୍କୁ 'ବେଦବ୍ୟାସ' ବୋଲି ସମ୍ମାନିତ କରାଗଲା । ଲୋକମୁଖରେ ସେ କଥିତ ହେଲେ—ବ୍ୟାସଦେବ ।

ବ୍ୟାସଦେବଙ୍କର ଏକମାତ୍ର ପୁତ୍ର ଏବଂ ପିତାଙ୍କ ପରି ମହାପ୍ରାଜ୍ଞ ହେଲେ ଶୁକଦେବ ।

ଶୁକ ବିବାହ କଲେ ନାହିଁ । ତେଣୁ ପ୍ରତ୍ୟକ୍ଷ ଭାବରେ ବ୍ୟାସ ଶାଖା ଲୋପ ପାଇଲା ।

କିନ୍ତୁ ବ୍ୟାସ ଜନନୀ ସତ୍ୟବତୀ ପରେ କୌରବ ରାଜ ଶାନ୍ତନୁଙ୍କୁ ବିବାହ କଲେ । ତାଙ୍କ ଔରସରୁ ତାଙ୍କର ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ନାମକ ଦୁଇପୁଅ ଜନ୍ମ ହେଲେ । ଏମାନେ ବଡ଼ ହୀନସ୍ୱାସ୍ଥ୍ୟ ଥିଲେ । ଚିତ୍ରବୀର୍ଯ୍ୟ ରାଜା ନ ହେଉଣୁ ଯକ୍ଷ୍ମାରୋଗରେ ମଲେ । ରାଜା ବିବାହ ହେଲାପରେ, ବିଚିତ୍ରବୀର୍ଯ୍ୟ ମଧ୍ୟ ଅମ୍ବିକା ଓ ଅମ୍ବାଳିକା ନାମକ ଦୁଇଟି ତରୁଣୀ ବିଧବା ରାଜକନ୍ୟା ଛାଡ଼ିଦେଇ ପରଲୋକକୁ ଗଲେ । ସତ୍ୟବତୀ ଦେଖିଲେ ଯେ, ବିଖ୍ୟାତ କୁରୁବଂଶ ବର୍ତ୍ତମାନ ନିର୍ବଂଶ ହେବାକୁ ଯାଉଛି । ସେ ବର୍ତ୍ତମାନ ତାଙ୍କର ପ୍ରଥମ ପୁତ୍ର ଦ୍ୱୈପାୟନଙ୍କୁ ପରାମର୍ଶ ପାଇଁ ଡକାଇଲେ । ସେତେବେଳକୁ ତରୁଣ ହେଲେହେଁ, ଜ୍ଞାନବନ୍ତଜନଭାବରେ, ସତ୍ୟବତୀଙ୍କ ପୁତ୍ର ଦ୍ୱୈପାୟନଙ୍କ ଯଶ ସର୍ବବ୍ୟାପୀ । ଦ୍ୱୈପାୟନ ଜନନୀଙ୍କ ଆଦେଶରେ ବଦରିକାଶ୍ରମର ଶାନ୍ତିମୟ ଜ୍ଞାନଚର୍ଚ୍ଚା ଛାଡ଼ି ହସ୍ତିନାପୁରର ଜନଗହଳ ଓ ରାଷ୍ଟ୍ରୀୟ ବ୍ୟାପାର ଭିତରକୁ ଆସିଲେ । ଜନନୀ ସତ୍ୟବତୀ ବରେଣ୍ୟ

Digitized by srujan ka@gmail.com

ପୁତ୍ରଙ୍କୁ ଅନୁରୋଧ କଲେ ଯେ, ସେ ବିଖ୍ୟାତ କୁରୁବଂଶକୁ ରକ୍ଷା କରନ୍ତୁ । ବେଦୋକ୍ତ୍ୟୁକ୍ତବୃଦ୍ଧି ଦ୍ୱୈପାୟନ ଜନନୀଙ୍କ ବାକ୍ୟକୁ ବିନମ୍ର ଭାବରେ ମାନିଯାଇ, ସେ କାଳର 'ନିୟୋଗ' ପ୍ରଥା ଅନୁସାରେ ଗୌରବାବହ କୁରୁବଂଶ ରକ୍ଷାପାଇଁ ରାଜିହେଲେ । ଅମ୍ବିକା ଓ ଅମ୍ବାଳିକାଙ୍କ ଆତ୍ମଜ ପାଣ୍ଡୁ ଓ ଧୃତରାଷ୍ଟ୍ର ଜାତ ହେଲେ । ସେ ଦୁହେଁ ପୁଣି ଜନ୍ମ ଦେଲେ ବିଖ୍ୟାତ କୌରବ ଓ ପାଣ୍ଡବ ଭାଇମାନଙ୍କୁ, ଯେଉଁମାନଙ୍କ ସଂଘର୍ଷ ନେଇ ହିଁ ବିରାଟ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଛି, ମହାଭାରତ ମହାକାବ୍ୟରେ ।

ତେଣୁ, ଲେଖାହେଁ ଦୁର୍ଯ୍ୟୋଧନାଦି କୌରବ ଓ ଯୁଧିଷ୍ଠିରାଦି ପାଣ୍ଡବମାନେ ହେଲେ, ବ୍ୟାସଦେବଙ୍କ ନାତି ।

କିନ୍ତୁ, ବ୍ୟାସଦେବ ମାହାଦେଶରେ କିଛିକାଳ ମାତ୍ର ହସ୍ତିନାପୁରରେ କଟାଇ, ପୁଣି ଚାଲିଯାଇଥିଲେ ତାଙ୍କର ଶାନ୍ତିମୟ ବଦରିକାଶ୍ରମକୁ । ଜୀବନରେ ତପସ୍ୟା, ଧ୍ୟାନ ଓ ଅଧ୍ୟୟନ ଛଡ଼ା ସେ ଅନ୍ୟକିଛି ଜାଣି ନ ଥିଲେ । କୌଣସି ପ୍ରକାର ସାମାଜିକ ପଦପଦବୀ ପୁରସ୍କାର ପାଇଁ ସେ ସାମାନ୍ୟତମ ଅଭିଳାଷ ଦେଖାଇ ନ ଥିଲେ । ତାଙ୍କ ଜୀବନ କାଳରେ ହିଁ ସାମ୍ରାଜ୍ୟର ଉତ୍ଥାନ ପତନ ଘଟିଲା । ମହାଭାରତୀୟ ଯୁଦ୍ଧରେ ଏହି ଉପ-ମହାଦେଶର ସମଗ୍ର କ୍ଷତ୍ରିୟ ସମାଜ ଧ୍ୱଂସ ହେବାର ସେ ଦେଖିଲେ । କିନ୍ତୁ, କିଛିହିଁ ତାଙ୍କୁ ବିଚଳିତ କରି ନଥିଲା, ଯେପରି କି କୁହାଯାଏ ଯେ, ବିଶ୍ୱର ଶ୍ରେଷ୍ଠ ବିଜ୍ଞାନୀ ଆଇନଷ୍ଟାଇନ, ନିଜର ଲାବରେଟୋରୀ ଛଡ଼ା ଆଉକିଛି ଜାଣି ନ ଥିବାରୁ, ପ୍ରଥମ ବିଶ୍ୱଯୁଦ୍ଧର ଗତି ସଂପର୍କରେ ସେ ପ୍ରାୟ ସଂପୂର୍ଣ୍ଣ ଅଜ୍ଞ ରହିଥିଲେ ।

କିନ୍ତୁ ଇତିମଧ୍ୟରେ ଭାରତ ବର୍ଷରେ ଆଉ ଏକ ମହାମାନବ, ବ୍ୟାସଦେବଙ୍କ ସମସାମୟିକ କାଳରେ ଆବିର୍ଭୂତ ହୋଇଥିଲେ ।

Digitized by srujan ka@gmail.com

ସେ ହେଲେ ଅଭିଜାତବଂଶ ଓ ଅଭିଜାତକର୍ମୀ ଶ୍ରୀକୃଷ୍ଣ । ଦୁଇକୃଷ୍ଣ ପରସ୍ପରଙ୍କୁ ଗଭୀର ସମ୍ମାନ କରିବାକୁ ଲାଗିଲେ । ମହାଭାରତ ଯୁଦ୍ଧ, ତା'ର ପରିଣତି, ଯଦୁବଂଶ ବିନାଶ ଏବଂ ଏସବୁ ଭିତରେ ଶ୍ରୀକୃଷ୍ଣଙ୍କର ଭୂମିକା,—ଏ ସବୁ ମିଶି ଯେଉଁ ଗଭୀର ଆଭିମୁଖ୍ୟପୂର୍ଣ୍ଣ ଘଟଣାପ୍ରବାହ ବ୍ୟାସଦେବଙ୍କ ଆଖି ଆଗରେ ଘଟି ଗ୍ଲଲା, ତାହାକୁ ସେ କାବ୍ୟାୟିତ ନ କରି ରହି ପାରିଲେ ନାହିଁ । ତାହାହିଁ ମହାକାବ୍ୟ ମହାଭାରତ—ସର୍ବସମ୍ମତ ଭାବରେ ପୃଥିବୀର ଶ୍ରେଷ୍ଠ କାବ୍ୟ ଗ୍ରନ୍ଥ । ବେଦକୁ ସଜାଡ଼ି ଓ ସୁସଂପାଦିତ କରି ବ୍ୟାସଦେବ, ଭାରତୀୟ ସଂସ୍କୃତିର ଯେଉଁ ଉପକାର କରିଥିଲେ, ତାହା ସେ ବହୁଗୁଣିତ କରି ପକେଇଲେ ମହାଭାରତ ଲେଖି । ଏହି ମହାଭାରତ ସ୍ୱୟଂ ବିଶ୍ୱର ଶ୍ରେଷ୍ଠ ମହାକାବ୍ୟ । ଦ୍ୱିତୀୟରେ ଏହାକୁ ଭାରତର ବିଶାଳ ପୌରାଣିକ ସାହିତ୍ୟର ଜନନୀ ବୋଲି ଧରିବାକୁ ହେବ ।

ପ୍ରକୃତରେ 'ପୁରାଣ' ସବୁ, ବ୍ୟାସଦେବଙ୍କ ବହୁ ପରେ ଗୁପ୍ତ ରାଜତ୍ୱବେଳେ ଲେଖା ହୋଇଛନ୍ତି । କିନ୍ତୁ ଲେଖିଦେଲେ କ'ଣ ଜାତି ସ୍ୱୀକାର କରିନେବ, ଯା' ତାହାର ଗ୍ରନ୍ଥକୁ ? ଜାତି କେବଳ ବ୍ୟାସ-ଦେବଙ୍କ ରଚନାକୁ ବିନା ପ୍ରଶ୍ନରେ ସତ୍ୟ ବୋଲି ଗ୍ରହଣ କରି-ପାରେ । ଫଳରେ, ପରବର୍ତ୍ତୀ ପୁରାଣ-ଲେଖକମାନେ, ନିଜ ନିଜର ଗୋଷ୍ଠୀଗତ, ଦେବ କେନ୍ଦ୍ରୀକ ଧର୍ମ ପ୍ରଚାରପାଇଁ, ସେହି ପରସ୍ପର-ବିବଦମାନ ପୁରାଣଗୁଡ଼ିକୁ ବ୍ୟାସଦେବକୃତ ବୋଲି ଶଠ ପ୍ରଚାର-କରି ଯାଇଛନ୍ତି ।

ମହାଭାରତ ଅନୁକରଣରେ 'ପୁରାଣ' ସବୁ ପରେ ରଚିତ ହେଲେହେଁ, ମହାଭାରତ ପ୍ରକୃତରେ 'ଇତିହାସ' ପୁରାଣ ନୁହେଁ ଏବଂ ବ୍ୟାସଦେବଙ୍କ ମହାକାବ୍ୟ ମହାଭାରତ ଯେ ଏବର ଐତିହାସିକ-ମାନଙ୍କର ସନ ତାରିଖ-ମୟ ଇତିହାସଠାରୁ, ମହାଭାରତୀୟ ଜାତିର

Digitized by srujan ka@gmail.com

ଚିନ୍ତା, ସ୍ୱପ୍ନ ଓ ଆତ୍ମାର ଶ୍ରେଷ୍ଠତର 'ଇତିହାସ' ଏହା ମଧ୍ୟ ବିନା ଦ୍ୱିଧାରେ କୁହାଯାଇପାରେ । ମହାଭାରତ ନିଜେ ମହାକାବ୍ୟ, ପୁଣି ସମଗ୍ର ଭାରତୀୟ କାବ୍ୟ-ମାଳାର ଉତ୍ସ । ୱଇଣ୍ଟରନୀଜ୍ ଯେ ମହାଭାରତ, ସ୍ୱୟଂ ଏକ ସ୍ୱତନ୍ତ୍ର ଗୌରବାବହ ସାହିତ୍ୟ ବୋଲି ବର୍ଣ୍ଣନା କରି ଯାଇଛନ୍ତି, ତାହା ସମ୍ପୂର୍ଣ୍ଣ ସତ୍ୟ । ନଳ ଦମୟନ୍ତୀ, ସାବିତ୍ରୀ-ସତ୍ୟବାନ ଓ ଶକୁନ୍ତଳା ପ୍ରଭୃତି ଯେଉଁ ଉପାଖ୍ୟାନ ସବୁ ଦ୍ୱାରା ସମଗ୍ର ଭାରତୀୟ ଚେତନାକୁ ଏହି ସହସ୍ର ସହସ୍ର ବର୍ଷ ଧରି ଗଭୀର ଭାବରେ ପ୍ରଭାବିତ କରି ଆସିଛନ୍ତି, ସେ ସବୁର ଉତ୍ସ ଏହି ମହାଭାରତ; କିନ୍ତୁ ଶ୍ରୀକୃଷ୍ଣ ଓ ପାଣ୍ଡବମାନଙ୍କର ଦୁଃଖ-ଦୁର୍ଦ୍ଦଶା ଓ ପରାଭବ ଭିତରେ ମଧ୍ୟ ଧର୍ମ, ନ୍ୟାୟ ଓ ସତ୍ୟର ପ୍ରତିଷ୍ଠା ହିଁ ବିଶେଷଭାବରେ ପ୍ରଣିଧେୟ ।

ଏବର ପଣ୍ଡିତମାନଙ୍କର ମତରେ ଅଷ୍ଟାଦଶ ପୁରାଣମାନଙ୍କ ପରି ଶ୍ରୀମଦ୍‌ଭଗବଦ୍‌ଗୀତା ମଧ୍ୟ ବ୍ୟାସଦେବ-ରଚନା ନୁହେଁ । ଏହା ପରେ, ଖୁବ୍ ସମ୍ଭବତଃ ବୌଦ୍ଧଧର୍ମ ବିରୁଦ୍ଧରେ ବ୍ରାହ୍ମଣ୍ୟ ଧର୍ମର ରକ୍ଷାର୍ଥେ, ମହାଭାରତ ଭିତରେ ଗୁଞ୍ଜି ଦିଆଯାଇଛି । କିନ୍ତୁ ସେସବୁ ପଣ୍ଡିତମାନଙ୍କ ଆଲୋଚନାର ବସ୍ତୁ । ଆମକୁ ଏତିକି ମନେରଖିବାକୁ ହେବ ଯେ, ଗୀତା ନ ଥାଇ ମଧ୍ୟ ମହାଭାରତ ଏକ ମହାମୂଲ୍ୟବାନ ସୃଷ୍ଟି ଏବଂ ତା'ର ସ୍ରଷ୍ଟା ଦ୍ୱୈପାୟନଙ୍କୁ ବିନା ଦ୍ୱିଧାରେ ବିଶ୍ୱର ଶ୍ରେଷ୍ଠ ସାହିତ୍ୟିକ-ସ୍ରଷ୍ଟା ବୋଲି ଆମେ ଧରି ନେଇପାରୁ ।

ବଦରିକାଶ୍ରମରେ ହିଁ ପ୍ରାୟ ସମଗ୍ର ଜୀବନ ବିତେଇ ଦେଇଥିବାରୁ ବ୍ୟାସଦେବଙ୍କର ଅନ୍ୟ ଏକ ନାମ ମଧ୍ୟ ବାଦରାୟଣ । ଶ୍ରୀମଦ୍‌ଭଗବତ ଗୀତା, ଉପନିଷଦ ଓ ବାଦରାୟଣ-ବା-ବ୍ୟାସକୃତ-ବ୍ରହ୍ମସୂତ୍ର, ଏହି ତିନି ଗ୍ରନ୍ଥକୁ ଭାରତୀୟ ଦର୍ଶନ ବା ଚିନ୍ତାର ପ୍ରସ୍ଥାନ ତ୍ରୟୀ ବା ତିନୋଟି ମୁଖ୍ୟ ପ୍ରତିପାଦକ ଗ୍ରନ୍ଥ ବୋଲି ଧରାଯାଏ । ଏ

Digitized by srujan ka@gmail.com

ଉପନିଷଦାବଳୀର ମୁଖ୍ୟ ଉପପାଦ୍ୟ ହେଲା ଅଦ୍ୱୈତବାଦ । ଶଙ୍କର ଓ ପରେ ବିବେକାନନ୍ଦ ଏହି ଅଦ୍ୱୈତ ଦର୍ଶନକୁ ହିଁ ଭାରତୀୟ ଚିନ୍ତାର ଶ୍ରେଷ୍ଠ ରତ୍ନରୂପେ ବିଶ୍ୱ ଆଗରେ ପରିବେଷିତ କରି ଯାଇଛନ୍ତି ଏବଂ ଏହି ଅଦ୍ୱୈତଦର୍ଶନର ମୂଳ ଭିତ୍ତି ହେଲା ବାଦ-ରାୟଣ ବା ବ୍ୟାସକୃତ 'ବ୍ରହ୍ମସୂତ୍ର' ।

ତେଣୁ ବେଦର ବରେଣ୍ୟ ସମ୍ପାଦକ ଓ ଉଦ୍ଧାରକ ଭାବରେ ମହାଭାରତ ମହାକାବ୍ୟର ମହନୀୟ ସ୍ରଷ୍ଟାଭାବେ ଏବଂ ଅଦ୍ୱୈତ ଦର୍ଶନର ପ୍ରତିଷ୍ଠାତା ଭାବରେ, କୃଷ୍ଣ ଦ୍ୱୈପାୟନ ବ୍ୟାସ ଯେ ହିନ୍ଦୁ ସଂସ୍କୃତିର ଯୁଗ ଯୁଗ ଧରି ଏକାଧାରରେ ସ୍ରଷ୍ଟା ଓ ରକ୍ଷା-କର୍ତ୍ତା ହୋଇ ଆସିଛନ୍ତି, ଏଥିରେ ସନ୍ଦେହନାହିଁ । ଏହି ବିଶାଳବୁଦ୍ଧି ମହାପୁରୁଷଙ୍କୁ କୋଟି କୋଟି ହିନ୍ଦୁ ଯେ ପ୍ରତ୍ୟହ ନମସ୍କାର ଜଣାଉ-ଛନ୍ତି, ଏଥିରେ ମଧ୍ୟ ବିସ୍ମୟ କିଛି ନାହିଁ । ସମଗ୍ର ବିଶ୍ୱର ସାଂସ୍କୃତିକ ଇତିହାସରେ ବ୍ୟାସଙ୍କ ପରି ମହାନ୍ ପ୍ରତିଭାର ଅଧିକାଂଶ ପ୍ରକୃତରେ ବିରଳ ।

## ବ୍ୟାସ ବଚନ

ସଂଗ୍ରାହକ—ନିମାଇଁଚରଣ ଦାସ

ସତ୍ୟଯୁଗରେ ଦଶବର୍ଷ ତପସ୍ୟା, ବ୍ରହ୍ମଚର୍ଯ୍ୟ ଜପ ପ୍ରଭୃତି କଲେ ଯେଉଁ ଫଳ ମିଳେ, ତ୍ରେତା ଯୁଗରେ ଏକବର୍ଷ, ଦ୍ୱାପର ଯୁଗରେ ଏକମାସ ଏବଂ କଳିଯୁଗରେ କେବଳ ମାତ୍ର ଗୋଟିଏ ଦିନ ଓ ରାତ୍ରିରେ ସେହି ଫଳ ମିଳେ । ସେହି କାରଣରୁ ମୁଁ କଳିଯୁଗକୁ ଶ୍ରେଷ୍ଠ ଯୁଗ ବୋଲି କହେ ।

ସତ୍ୟଯୁଗରେ ଧ୍ୟାନ, ତ୍ରେତାରେ ଯଜ୍ଞ, ଦ୍ୱାପରରେ ଦେବା-ର୍ଚ୍ଚନ କଲେ ଯେଉଁ ଫଳ ମିଳେ ଏହି କଳିଯୁଗରେ ଶ୍ରୀକୃଷ୍ଣ ଚନ୍ଦ୍ରଙ୍କ

Digitized by srujan ka@gmail.com

ନାମକୀର୍ତ୍ତନ କଲେ ତାହା ମିଳିଥାଏ । ଦାନ ସବୁ କାର୍ଯ୍ୟ ମଧ୍ୟରେ ଶ୍ରେଷ୍ଠ । କିନ୍ତୁ ଦାନର ବିଶେଷତ୍ୱ ହେଉଛି ଯେଉଁ ଅର୍ଥ ଦାନ କରାଯାଏ, ତାହା ନ୍ୟାୟୋପାର୍ଜ୍ଜିତ, ଯେଉଁ ବ୍ୟକ୍ତିକୁ ଦାନ କରାଯାଏ ସେ ସାଧୁ ଓ ସଚ୍ଚରିତ୍ର ଓ ଯେଉଁସ୍ଥାନ ଓ ସମୟରେ ଦାନ କରାଯାଏ, ତାହା ଉପଯୁକ୍ତ ସ୍ଥାନ ଓ ସମୟ ହୋଇଥିବା ଆବଶ୍ୟକ ।

—ବ୍ୟାସ ମହାଭାରତ—

ମନୁଷ୍ୟର ସୁଖପରେ ଦୁଃଖ, ଦୁଃଖପରେ ସୁଖ ଲାଗିରହିଥାଏ । ଯେପରି ରଥଚକ ବୁଲେ । ଯାହାର ଜନ୍ମହୁଏ ତା'ର ମୃତ୍ୟୁ ନିଶ୍ଚିତ । ଯେ ଉପରକୁ ଉଠିଛି ସେ ମଧ୍ୟ ତଳେ ପଡ଼ିବା ଅବଶ୍ୟମ୍ଭାବୀ । ସଂଯୋଗର ଅବସାନ ବିଯୋଗରେ ହୁଏ ଏବଂ ସଂଗ୍ରହ ହେଲାପରେ ତା'ର କ୍ଷୟ ନିଶ୍ଚିତ । ସମ୍ପଦ ପଛରେ ବିପଦ ଥାଏ । ଏହି କଥାକୁ ବୁଝି ଜ୍ଞାନୀ ଲୋକମାନେ ହର୍ଷ ଓ ଶୋକରେ ଅଧିର ହୁଅନ୍ତି ନାହିଁ ।

ପିତା ମାତାଙ୍କୁ ପ୍ରଣାମ କଲା ସମୟରେ ଯେଉଁମାନଙ୍କର ହାତ ଏବଂ ମସ୍ତକ ପୃଥିବୀ ସ୍ପର୍ଶ କରେ ସେହି ପୁତ୍ର ଅକ୍ଷୟ ସ୍ୱର୍ଗ ପ୍ରାପ୍ତ ହୁଏ । ଯେଉଁ ପୁତ୍ର ପିତାମାତାଙ୍କର ବିରୁଦ୍ଧାଚରଣ କରେ ଓ ସେମାନଙ୍କ ପ୍ରାଣରେ କଷ୍ଟଦିଏ, ସେ ମହାପ୍ରଳୟପର୍ଯ୍ୟନ୍ତ ନରକରେ ବାସକରେ ।

ଯେଉଁ ପୁତ୍ର ରୋଗୀ, ବୃଦ୍ଧ, ଅନ୍ଧ, ବଧିର ଓ ଜୀବିକାର୍ଜ୍ଜନରେ ଅକ୍ଷମ ପିତାଙ୍କୁ ତ୍ୟାଗକରି ଚାଲିଯାଏ, ସେ ପୁତ୍ର ରୌରବ ନର୍କରେ ପଡ଼େ ।

ଯେ ଗାଈ ଚରିବା ନିମନ୍ତେ ଭୂମି ଛାଡ଼ିଦିଏ, ତା'ର ସ୍ୱର୍ଗ ଲାଭ ହୁଏ ଓ ଗୋ-ଦାନର ପୁଣ୍ୟ ଫଳ ପାଏ । ଯେ ଗୋଚର ଜମି ଛାଡ଼େ ସେ ପ୍ରତିଦିନ ଶତାଧିକ ବ୍ରାହ୍ମଣ ଭୋଜନ ଦେବାର ପୁଣ୍ୟ ଫଳ ପାଏ ।

Digitized by srujan ka@gmail.com

ଯେ ପବିତ୍ର ବୃକ୍ଷ ଓ ଗୋଚରଭୂମି ଉଚ୍ଛେଦ କରେ, ତାହାର ଏକୋଇଶଟି ବଂଶ ରୌରବ ନରକରେ ପଡ଼ନ୍ତି ।

ଅସତ୍ୟ ଭାଷଣ, ଅଭକ୍ଷ ଭକ୍ଷଣ, ପରସ୍ତ୍ରୀ ଗମନ ଏବଂ କୁଳଧର୍ମ ବିରୁଦ୍ଧାଚରଣ କଲେ ବଂଶନାଶ ହୁଏ ।

## ବ୍ୟାସଙ୍କର ଯୁଧିଷ୍ଠିରଙ୍କୁ ଉପଦେଶ

ଚାରି ଆଶ୍ରମରେ ଗୃହସ୍ଥାଶ୍ରମ ବର (ଶ୍ରେଷ୍ଠ)
ଏହା ଭଲକରି ସୁଜନ ମନେ କର ।।

× × ×

ବହୁ ଗୁଣଯୁକ୍ତ ହେଲେହେଁ କେହି ଜନ ।
ପୂର୍ଣ୍ଣ ବିଶ୍ୱାସ ତାକୁ ନ କରିବ ଜାଣ ।।

× × ×

ବ୍ୟାସ ବୋଇଲେ ହେ ବିଧି ଯା ଲେଖିଥାଏ ।
ତାହା ଭୋଗ କରନ୍ତି ମନୁଷ୍ୟ ସର୍ବଏ ।।
ବିଦ୍ୟା ବୁଦ୍ଧି ପ୍ରଭାବ ହୁଏ ନାହିଁ ଭଲ ।
ସବୁଠାରୁ ମୂଳ ଏକା ଅଟେ କପାଳ ।

× × ×

ମରିଯିବା ଉପରୁ ଯା'ର ସ୍ତୁତି ବାଣୀ
ପ୍ରକଟ ହୁଏ ସେହି ନର କୁଳ ମଣି ।।

× × ×

ସନ୍ତୋଷ ମଧ୍ୟରେ ଖୋଜିଲେ ସୁଖନାହିଁ ।
ସନ୍ତୋଷ ଯା'ର ଅଛି ସ୍ୱର୍ଗ ଲଭେ ସେହି ।।
ନକରି ଯାଗ ଲୋକ ଧନ କଲେ ଭୋଗ ।
ନରକଟି ପ୍ରାନ୍ତେ ହୁଅଇ ତା'ର ଭୋଗ ।।

× × ×

Digitized by srujan ka@gmail.com

ଲୁବ୍‌ଧ ଲୋକ ଧନକୁ ଜାକି ରଖିଥାନ୍ତି ।
ଅନାୟାସରେ ଅପାତ୍ରେ ଲୋକଙ୍କୁ ଦିଅନ୍ତି ।
ଅପାତ୍ରରେ ଦାନ ଦିଅଇ ଯେଉଁ ନର ।
ଶତବର୍ଷ ପୁରୀଷ ଭକ୍ଷେ ସେହି ନର ।।

× × ×

ଜନ୍ମ ହେଲେ ଲୋକର ହୁଅଇ ମରଣ ।
ଏଥିକି କେତେ ତୁମ୍ଭେ କରୁଛ ଶୋଚନ ।।
ଜଡରେ ଥିଲେ ଲୋକ ମାଡକୁ ଆସଇ ।
ସମ୍ପତ୍ତି ହୋଇଥିଲେ ବିପତ୍ତି ଲଭଇ ।।
ଜୀବନ ଶେଷେ ମୃତ୍ୟୁ ସୁଖପଛେ ଦୁଃଖ ।
ଘଟୁଛି ସଂସାରେ ନିୟମ କର ଶିଖ ।।

× × ×

ସତକୁଳେ ଜନ୍ମ ସାମର୍ଥ୍ୟ ଆରୋଗ୍ୟ ସୌନ୍ଦର୍ଯ୍ୟ ।
ସୌଭାଗ୍ୟ ଦେବସେବନ ପାଆନ୍ତି ମନୁଜ ।।

× × ×

ଦରିଦ୍ର ଲୋକ ପୁତ୍ର ଇଚ୍ଛା ନ କରଇ ।
ପୁତ୍ର ତାହାକୁ କିନ୍ତୁ ବହୁତ ମିଳଇ ।।
ସମ୍ପନ୍ନ ଲୋକ କରୁଥାଏ ପୁତ୍ର ଇଚ୍ଛା ।
ସ୍ୱପ୍ନରେ ଦେଖି ସୁଦ୍ଧା ନପାରେ ସେ ବତ୍ସା ।।
ଧନବନ୍ତ ଲୋକର ଅଳ୍ପହୁଏ ଆୟୁ ।
ଅଧନବନ୍ତ ଯାକ ହୁଅନ୍ତି ଦୀର୍ଘାୟୁ ।।

× × ×

ହିଂସା, ଜୁଆ, ମଦ୍ୟପେ, ମୃଗୟାରେ ଲୋକ ।
ହେଉଛନ୍ତି ଧର୍ମ ଗୁଡ଼ଣ ଅବିବେକ ।।

× × ×

Digitized by srujan ka@gmail.com

ଭାରଜା, ପୁତ୍ର, ମିତ୍ର, ବାନ୍ଧବ, ସମ୍ପତ୍ତି ।
ମୋର ଯେ ନବୋଲେ ସେ ପାଏ ଭଲଗତି ॥
ମାତା, ପିତା, ପୁତ୍ର ଭାରଯା କେ କାହାର ।
ନୁହଁଇଟି ବସ୍ତୁର କର ଦଣ୍ଡଧାରୀ ॥
ଜରା, ମୃତ୍ୟୁ, କୁମ୍ଭୀର ସନ୍ଧିତରେ କାଳ ।
ସିନ୍ଧୁ ବୁଡ଼ାଉଛୁ ସଭିଙ୍କି ମହୀପାଳ ॥
ବଇଦେ ନାନାଜାତି ଔଷଧ ଜାଣନ୍ତି ।
ତେବେ ହେଲେ କି ଜରା ମୃତ୍ୟୁ ନ ପାଆନ୍ତି ॥
ଜପ ଦାନ ଯଜ୍ଞ ଯେ କରୁଥାନ୍ତି ନିତି ।
ସେ ସୁଦ୍ଧା ଜରା-ମୃତ୍ୟୁ ବଳ ନ ପାରନ୍ତି ॥
ଯାହାକୁ ଯେଉଁଦିନ ମୃତ୍ୟୁ ଲେଖିଥାଏ ।
ସେହି ଦିନଟି ତା'ର ନିଶ୍ଚେ ମୃତ୍ୟୁ ହୁଏ ॥
ଏ ଦେହଟି ଫେନ (ଫେଣା) ପରାଯେ ଅଟଇ ।
ଏହାକୁ ସ୍ଥିର ବୋଲି ଭାବ କାହିଁପାଇଁ ॥
ଦିନକୁ ଦିନ ଦେଖ ଆୟୁ ହୁଏ କ୍ଷୀଣ ।
ନ ବୋଲ ଚିର ବୋଲି ଏ ମୋର ଜୀବନ ॥
ବାଘ ମେଣ୍ଢା ନେଲା ପରାଏ—ମୃତ୍ୟୁ ଦେବ ।
ବେଳ ମୋଡ଼ି ଗ୍ରାସ କରଇ ଆଗ ଜୀବ ॥
ଚଉରାଶି ଯୋନିକି ଭ୍ରମିଲା ଉତ୍ତାରେ ।
ମନୁଷ୍ୟ ଜନ୍ମ ପାଏ ଜୀବ ଏ ସଂସାରେ ॥
ଏ ଜୀବନ ନିତ୍ୟ ନୁହଁଇ କାହାର ।
ପରଲୋକ ଉଚିତ କଥାକୁ ବିଚାର ॥
ଦିନକୁ ଦିନ ଗତ ହେଉଅଛୁ ପ୍ରାଣ ।
ଆହେ ବାବୁ କର ଧରମ ଆଚରଣ ॥

Digitized by srujan ka@gmail.com

ଅଷ୍ଟାବକ୍ର ମଣ୍ଡିତ ପୁର କରିଥିଲେ ।
ନ ଯାଏଟି ସେ ଜାଣ ସଙ୍ଗତରେ ମଲେ ।।
ଦିନକୁ ଦିନ ଗତ ହେଉଅଛି ପ୍ରାଣ ।
ଆହେ ବାବୁ କର ଧରମ ଆଚରଣ ।।
କାଲି ଯାହା କରିବା ସେ କଥାଟି ଆଜ ।
କରୁଥିବ ମନରୁ ଦୁଃଖକୁ ବରଜ ।।
ମୃତ୍ୟୁ କେଉଁ ଦିନ ନେବ ଏ ଜୀବନ ।
ଏହା ଜାଣିବାପାଇଁ ନାହିଁ କେହୁ ଜନ ।।
ତୁମ୍ଭେ ମୋ ବୋଲରେ ଜୀଇବା ଆଶା ଛାଡ଼ ।
ଧର୍ମକୁ ଆଚର ସେ ଅଟେ ସବୁ ବଡ଼ ।।
ସ୍ୱର୍ଗର ସୋପାନଟି ମନୁଷ୍ୟ ଜନମ ।
ପୁଣ୍ୟ କଲେ ବାବୁ ହୋଇବ ପୂର୍ଣ୍ଣକାମ ।।
କେହୁ କାହାର ଭବେ ନୁହଁଇ କୁମର ।
ସୁକୃତ ଏକା ମୋର ବୋଲି ମନେକର ।।
ଧନ ଥିବାଯାକେ ଅମିତ୍ର ମିତ୍ର ହୋଏ ।
ଧନହୀନ ହୋଇଲେ ମିତ୍ର ଛାଡ଼ିଯାଏ ।।
କୁଟୁମ୍ବ ପୋଷିବାକୁ ପାପ କର୍ମ ଲୋକ ।
ଆଚରି ପ୍ରାନ୍ତେ ଭୁଞ୍ଜୁ ଅଛନ୍ତି ନରକ ।।
କରମ ଭୂମି ବୋଲି ଏ ମହୀକୁ ଜାଣି ।
ଆଚରଣ କରିବ ସଦା ପୁଣ୍ୟ-ଶ୍ରେଣୀ ।।
ଏ ରୂପେ ଶୁକଦେବ ବ୍ୟାସ ମୁଖୁ ଶୁଣି ।
ବ୍ୟାସଙ୍କୁ ଛାଡ଼ି ଶୁକ ଗଲେ ସେହିକ୍ଷଣି ।

—ମହାଭାରତ-ଶାନ୍ତିପର୍ବ—

———

Digitized by srujan ka@gmail.com

# ମହାମୁନି ଶୁକ

**ଅଧ୍ୟାପକ ଡକ୍ଟର ଗୌରାଙ୍ଗ ଚରଣ ନାୟକ**
**ଏମ୍. ଏ. (ଆଲ୍ଲାହାବାଦ) ପି. ଏଚ୍. ଡି. (ବ୍ରିଷ୍ଟଲ)**
**ଇତର-ଦର୍ଶନ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ**

ବ୍ୟାସନନ୍ଦନ ଶୁକ । ଯେଉଁ ବ୍ୟାସଦେବଙ୍କୁ ଭାରତୀୟ ଧାର୍ମିକ ପରମ୍ପରାରେ ବ୍ରହ୍ମା, ବିଷ୍ଣୁ ତଥା ମହେଶ୍ୱରଙ୍କ ସଙ୍ଗେ ତୁଳନା କରାଯାଏ (ଅଚତୁର୍ବଦନୋ ବ୍ରହ୍ମା ଦ୍ୱିବାହୁରପରୋହରିଃ, ଅଭାଲ-ଲୋଚନଃ ଶମ୍ଭୁର୍ଭଗବାନ୍ ବାଦରାୟଣଃ), ଯାହାଙ୍କୁ ବିଶାଳ ବୁଦ୍ଧି ସମ୍ପନ୍ନ ବୋଲି ଶ୍ରୀମଦ୍ଭଗବତ୍ ଗୀତା ପ୍ରାରମ୍ଭରେ ସ୍ତୁତି କରାଯାଇଅଛି, ଏଭଳି ଅଦ୍ଭୁତ ପ୍ରତିଭାଶାଳୀ ବ୍ୟକ୍ତିର ସନ୍ତାନ ହୋଇ ଶୁକ ବହୁ ସ୍ଥଳରେ ଜ୍ଞାନଗରିମାରେ ପିତାଙ୍କୁ ମଧ ବଳିଯାଇ ଥିବାର ପ୍ରମାଣ ମିଳେ । ଆଉ ଏହାଠାରୁ ବଳି ପିତା ବାଦରାୟଣଙ୍କ ପକ୍ଷରେ ଅଧିକ ଗୌରବର ବିଷୟ କ'ଣ ବା ହୋଇପାରେ ? କାରଣ "ସର୍ବତ୍ର ଜୟମନ୍ୱିଚ୍ଛେତ୍ ଶିଷ୍ୟାଦିଚ୍ଛେତ୍ ପରାଜୟମ୍" ଅର୍ଥାତ୍ ସର୍ବତ୍ର ବିଜୟୀ ହେବାର ଇଚ୍ଛା ଥିଲେହେଁ ଜ୍ଞାନଗରିମାରେ ଶିଷ୍ୟ ନିକଟରେ ପରାଜିତ ହେବାହିଁ କାମ୍ୟ, ଏଇତ ହେଲା ଆମର ପାରମ୍ପରିକ ଆଦର୍ଶ । ବ୍ୟାସ ଓ ଶୁକ ପରସ୍ପର ମଧ୍ୟରେ ମହିମାନ୍ୱିତ, ମହାକବି କାଳିଦାସଙ୍କ ଭାଷାରେ କହିଲେ— "ଅନ୍ୟୋନ୍ୟ ପାବନ ମଭୂଦୁଭୟଂ ସମେତ୍ୟ" ଅର୍ଥାତ୍ ଉଭୟେ ଉଭୟଙ୍କୁ ପାଇ ପବିତ୍ର ହୋଇଛନ୍ତି । ପୁଣି ଆମର ପରମ ସୌଭାଗ୍ୟ ଯେ ଭାରତୀୟ ସଂସ୍କୃତି ଏ ଦୁହିଁଙ୍କୁ ପାଇ ଧନ୍ୟ ହୋଇପାରିଛି ।

Digitized by srujan ka@gmail.com

ବହୁଦିନ ତଳର କଥା । ହେଲେ ମନେ ହେଉଛି ସତେ ଯେପରି କାଲିର ଘଟଣା । ଶୁକ ଆଗେ ଆଗେ, ତାଙ୍କ ପଛେ ପଛେ ଗୋଡ଼ାଇଛନ୍ତି ପିତା ବ୍ୟାସ । ପଥ ପାର୍ଶ୍ୱସ୍ଥ ସରୋବରରେ ସ୍ନାନରତା ଦେବସ୍ତ୍ରୀଗଣ ଶୁକଦେବଙ୍କୁ ଆସୁଥିବାର ଦେଖି ନିଃସଙ୍କୋଚରେ ସେହି ଅବସ୍ଥାରେ ସରୋବରରୁ ଉଠିଆସି ପ୍ରଣାମ କଲେ ସେମାନେ । ମାତ୍ର ପୁତ୍ରର ଅନୁସରଣରେ ପିତା ବ୍ୟାସଦେବ ଆସି ପହଞ୍ଚିବାମାତ୍ରେ, ଲଜ୍ଜାକରି ସରୋବରରେ ପୁନଃପ୍ରବେଶ କରନ୍ତି ।

ଦେବକନ୍ୟାଙ୍କର ଏତାଦୃଶ ବ୍ୟବହାରରେ ବ୍ୟାସଦେବଙ୍କର ମନରେ ଶଙ୍କା ଜାତ ହୁଏ । ବ୍ୟାସଦେବ ପରମ ଜ୍ଞାନୀ ସତ୍ୟ, କିନ୍ତୁ ଜ୍ଞାନର ଅନ୍ତିମ ତ୍ୟାଗରୂପୀ ଚରମ ସ୍ଥିତି ହୁଏତ ଆସିନାହିଁ । ଭକ୍ତଶ୍ରେଷ୍ଠ ନାରଦଙ୍କୁ ତ ପୁଣି ଦିନେ ଭକ୍ତିରେ ଅନ୍ତିମ ଧାରଥିଲ (ତୁଳସୀରାମାୟଣ, ବାଲକାଣ୍ଡ ଦ୍ରଷ୍ଟବ୍ୟ) । ବ୍ୟାସ ଭାବିବାକୁ ଲାଗିଲେ—କି ଆଶ୍ଚର୍ଯ୍ୟ ! ମୋର ଅର୍ବାଚୀନ ଯୁବକ ପୁତ୍ରକୁ ଦେଖି ଏହି ଦେବକନ୍ୟାଙ୍କ ମନରେ କୌଣସି ବିକାର ଜାତ ହେଲନାହିଁ । ସେମାନେ ଉଲ୍ଲଗ୍ନ ତଥା ଅର୍ଦ୍ଧ ଉଲ୍ଲଗ୍ନ ବେଶରେ ଆସି ମୋର ପୁତ୍ରକୁ ପ୍ରଣାମ କରିଗଲେ । ଅଥଚ ସର୍ବଜନମାନ୍ୟ ଆତ୍ମଜ୍ଞାନସମ୍ପନ୍ନ ମୋ ନିକଟରେ ସଙ୍କୋଚଭାବ ଦେଖାଇ ପୁଣି ସରୋବରରେ ପଶିଗଲେ ! ଏହାର କାରଣ କ'ଣ ହୋଇପାରେ ? ଏମାନେ କ'ଣ ମୋର ଚରିତ୍ର ବିଷୟରେ ସନ୍ଦିହାନ ? ଏମାନଙ୍କର ସ୍ପର୍ଦ୍ଧା ତ କିଛି କମ୍ ନୁହେଁ । ଅଥବା ଏହା ଭିତରେ ଅନ୍ୟକିଛି ରହସ୍ୟ ଅଛି । ବ୍ୟାସଦେବ ସମ୍ଭାଳି ନପାରି ସ୍ପଷ୍ଟଭାବରେ ଦେବସ୍ତ୍ରୀମାନଙ୍କୁ ଏ ସମ୍ପର୍କରେ ପ୍ରଶ୍ନ କରନ୍ତେ, ସେମାନେ କହିଲେ—କ୍ଷମା କରିବେ । ଆପଣ ଜଣେ ବିରାଟ ପଣ୍ଡିତ ହୋଇ ପାରନ୍ତି । ମାତ୍ର

Digitized by srujan ka@gmail.com

ଆପଣଙ୍କର ସ୍ତ୍ରୀ ପୁରୁଷଭେଦ ଜ୍ଞାନ ଅଛି, ଏହା ଆପଣ ଅସ୍ୱୀକାର କରିପାରିବେ କି ? ଅଥଚ ଆପଣଙ୍କର ପୁତ୍ର ଶୁକଙ୍କର କୌଣସି ଭେଦ ବୁଦ୍ଧି ନାହିଁ । ଏଣୁ ନିଃସଙ୍କୋଚରେ ତାଙ୍କ ନିକଟକୁ ଯାଇ ଅଭିବାଦନ ଜଣାଇଲେହେଁ ଆପଣ ପଛେ ପଛେ ଆସୁଥିବାର ଦେଖି ଆମ୍ଭେମାନେ ପଳାଇଗଲୁଁ । ଉତ୍କଳର ବରେଣ୍ୟ ମହାପୁରୁଷ ଜଗନ୍ନାଥ ଦାସଙ୍କ ଭାଷାରେ:—

‘ବ୍ୟାସ ବଚନେ ନାରୀଗଣେ । ତକ୍ଷଣେ ନମିଲେ ଚରଣେ ॥
ବୋଲନ୍ତି ବ୍ୟାସ ମୁଖ ଚାହିଁ । ସଂସାର ତାଙ୍କ ଦେହେ ନାହିଁ ॥
ସ୍ତ୍ରୀ ପୁରୁଷ ନଜାଣନ୍ତି । ସମସ୍ତ ଏକ ଭାବେ ଚିନ୍ତି ॥
ତୁମ୍ଭେ ଯେ ବୋଲ ଆମ୍ଭେ ବୃଦ୍ଧ । ବୟସ ରସେ ଅଛି ସଧ ॥
ଏ ଯେଣୁ ହୋଇଲୁଁ ଅନ୍ତର । ଆମ୍ଭର ଦୋଷ କ୍ଷମା କର ॥’

ଅଦ୍ୱୈତ ଜ୍ଞାନ ଗରିମାରେ ପୁତ୍ର ପିତାଙ୍କୁ ବଳିଗଲେ, ଶିଷ୍ୟ ଗୁରୁଙ୍କୁ ପରାସ୍ତ କରିଦେଲେ । ଜଗଦ୍‌ଗୁରୁ ବ୍ୟାସଙ୍କ ପକ୍ଷେ ଏହାଠାରୁ ଅଧିକ ଗୌରବର ବିଷୟ କ'ଣ ଥାଇପାରେ ?

କାମିନୀ ଓ କାଞ୍ଚନକୁ ନେଇ ସଂସାର । ଏସବୁ ଛାଡ଼ିବା କିମ୍ବା ଛାଡ଼ିବାଲାଗି ଉପଦେଶ କେବଳ କଥାରେହିଁ ସମ୍ଭବ, ଏ ସମସ୍ତ କାର୍ଯ୍ୟରେ ପରିଣତ କରିବା ଏକାନ୍ତ ଅସମ୍ଭବ । ଯେପରି କି ଜଣେ କବି କହିଛନ୍ତି—“ ବଚସି ଭବତି ଧଙ୍ଗ ତ୍ୟାଗ ମୁଦ୍ଦିଶ୍ୟ ବାର୍ତ୍ତା, ଶ୍ରୁତ ମୁଖର ମୁଖାନାଂ କେବଳଂ ପଣ୍ଡିତାନାମ୍ । ଜଘନ-ମରୁଣ-ରତ୍ନଗ୍ରନ୍ଥି—କାଞ୍ଚୀକଳାପଂ, କୁବଳୟନୟନାଂକୋ ବିହାତୁଂ ସମର୍ଥଃ ।” ଏହାର ଭାବାର୍ଥ ଏହି ଯେ, ତ୍ୟାଗ ସମ୍ବନ୍ଧୀୟ ଉପଦେଶ କେବଳ ପଣ୍ଡିତମାନଙ୍କର କଥାରେହିଁ ଦେଖିବାକୁ ମିଳେ । ଦୁର୍ଲ୍ଲଭଭୋଗ୍ୟ ବସ୍ତୁ ମିଳିଲେ କାର୍ଯ୍ୟକ୍ଷେତ୍ରରେ କିଏ ଛାଡ଼ିପାରେ ?

Digitized by srujan ka@gmail.com

ଅଥଚ ମହାତ୍ୟାଗୀ ଶୁକ କାର୍ଯ୍ୟକ୍ଷେତ୍ରରେ ମଧ୍ୟ ଦୁର୍ଲ୍ଲଭ ଦେବ କନ୍ୟାମାନଙ୍କ ପ୍ରତି ଭ୍ରୂକ୍ଷେପ କରି ନାହାନ୍ତି । ସ୍ୱରଶାସ୍ତ୍ର ପରମ୍ପରା ଅନୁସାରେ ଯେଉଁ ତ୍ୟାଗ ବା ବୈରାଗ୍ୟ ସର୍ବଶ୍ରେଷ୍ଠ ଆଦର୍ଶ ବୋଲି ଧରାଯାଏ, ଶୁକଦେବଙ୍କ ଜୀବନରେ ତାହାର ପରାକାଷ୍ଠା ଦେଖିବାକୁ ମିଳୁନାହିଁ କି ? ସେ କେଉଁ ଯୁଗର କଥା । ଉପନିଷଦ୍‌ର ଋଷିକୁମାର ନଚିକେତା ଏହିଭଳି ଯାବତୀୟ ପ୍ରଲୋଭନକୁ ଏଡ଼ାଇ ଯମଦ୍ୱାରରେ ଯଶସ୍ୱୀ ହୋଇଥିବାର ଶୁଣିବାକୁ ମିଳେ (କଠୋପନିଷଦ୍ ଦ୍ରଷ୍ଟବ୍ୟ) । କିନ୍ତୁ ବର୍ତ୍ତମାନ ଗୋଟିଏ ପ୍ରଶ୍ନ ସ୍ୱତଃମନକୁ ଆସେ—ଶୁକତ ହେଲେ ଆଜନ୍ମ ସନ୍ନ୍ୟାସୀ, ସଂସାରର ସୁଖ ବା ଦୁଃଖ ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ । ଏପରି ସ୍ଥଳେ ସାଂସାରିକ ଭୋଗ୍ୟବସ୍ତୁ ପ୍ରତି ତାଙ୍କର ଅନାସକ୍ତି ସଂସାର ସମ୍ବନ୍ଧୀୟ ଜ୍ଞାନର ଅଭାବ ଯୋଗୁଁ ହେବା ଅସମ୍ଭବ ନୁହେଁ । ଯେଉଁ ଲୋକ ମିଠା କ'ଣ ଆଦୌ ଚାଖିନାହିଁ ତାହାର ମିଠାପ୍ରତି ଆସକ୍ତି ଆସିବ କୁଆଡ଼ୁ ? ପୁଣି ତା କ୍ଷେତ୍ରରେ ମିଠାପ୍ରତି ଅନାସକ୍ତି, ତ୍ୟାଗ, ବା ବୈରାଗ୍ୟ ଏଭଳି ଭାଷା ପ୍ରୟୋଗ ନିରର୍ଥକ ନୁହେଁ କି ? ଠିକ୍ ସେହିଭଳି ଆଜନ୍ମ ବ୍ରହ୍ମଚାରୀ ଶୁକଙ୍କର ବୈରାଗ୍ୟ ଜ୍ଞାନର ବୈରାଗ୍ୟ ନୁହେଁ ବୋଲି ଶଙ୍କା ଜାତହୋଇପାରେ । ଏହାର ସମାଧାନ କେବଳ ଶାସ୍ତ୍ରକୁହିଁ ଅବଲମ୍ବନ କରି କରାଯାଇ ପାରେ । ମହୋପନିଷଦରୁ ପ୍ରମାଣ ମିଳେ ଯେ ଶୁକଦେବ ଆଜନ୍ମ ସନ୍ନ୍ୟାସୀ ହେଲେହେଁ ସଂସାର ବିଷୟରେ ଅଜ୍ଞ ନଥିଲେ । ବରଂ ସଂସାରର ଉତ୍ପତ୍ତି, ବିଲୟ ପ୍ରଭୃତି ବିଷୟରେ ପିତା ବ୍ୟାସଦେବଙ୍କୁ ସେ ଯେଉଁ ପ୍ରଶ୍ନ ପଚାରିଥିଲେ ତା'ର ସନ୍ତୋଷଜନକ ଉତ୍ତର ଦେଇ ନ ପାରି ଭଗ୍ନ ବ୍ୟାସଦେବଙ୍କୁ ଶେଷରେ ନିଜର ଅଜ୍ଞତା ସ୍ୱୀକାର କରିବାକୁ ପଡ଼ିଥିଲା । ଶୁକମୁନିଙ୍କର ପ୍ରଶ୍ନ ଥିଲା—'ସଂସାରାଡ଼ମ୍ବର ମିଦମ୍ କଥଂ ଅଭ୍ୟୁତ୍ଥିତଂ ମୁନେ, କଥଂଚ ପ୍ରଶମମ୍ ଯାତି କିଂ

ସନ୍ତ କସ୍ୟ କଦାବଦ ।' ଏହାର ଅର୍ଥ ହେଲା—ହେ ମୁନେ, ସଂସାରର ଏହି ଯେ ଆଡ଼ମ୍ବର ଏହା କପରି ଆବର୍ଭୂତ ହେଲା ? ପୁଣି କାହାର କେଉଁ ସମ୍ବନ୍ଧରେ କଭଳି ବା ଏହାର ନବୃତ୍ତି ହୁଏ ? ପିତା ବ୍ୟାସ ଏହାର ଉତ୍ତରରେ ଶୁକଦେବଙ୍କୁ ଯାହା ଯାହା କହିଲେ ପୂର୍ବରୁ ଶୁକ ସେ ସମସ୍ତ ଜାଣିଥିବାରୁ ପିତାଙ୍କ ବାକ୍ୟରେ ବଶେଷ ଆଗ୍ରହ ପ୍ରକାଶ କଲେନାହିଁ (ସ ଶୁକଃ ସ୍ୱକୟା ବୁଦ୍ଧ୍ୟା ନ ବାକ୍ୟଂ ବହୁମନ୍ୟତେ) ବ୍ୟାସ ମଧ୍ୟ ପୁତ୍ରର ଏଭଳି ଅଭିପ୍ରାୟ ଜାଣିପାର ଶେଷରେ କହିଲେ—ମୁଁ ତୁମ ପ୍ରଶ୍ନର ଉତ୍ତର ଠିକ୍ ଠିକ୍ ଜାଣେ ନାହିଁ । ଜନକନାମକ ରାଜା ମିଥିଳା ପୁରୀରେ ରହନ୍ତି । ତୁମେ ତାଙ୍କଠାରୁ ସବୁକଥା ଜାଣି ପାରବ । ଶୁକଦେବ ପିତାଙ୍କ ଦ୍ୱାର ଆଦିଷ୍ଟ ହୋଇ ଜନକଙ୍କ ନକଟକୁ ଯାଇଥିଲେ । ସେଠାରେ ମଧ୍ୟ ନାନାବଧ ଭୋଗସାମଗ୍ରୀ ଦ୍ୱାର ଜନକ ଶୁକଙ୍କୁ ପରୀକ୍ଷା କରବା ଏବଂ ତହିଁରେ ମହାମୁନି ଶୁକ ବଚଳତ ନହେବାର ପ୍ରମାଣ ମିଳେ । ଏଠାରେ ବଶେଷ ଲକ୍ଷ୍ୟ କରବାର କଥା ଏହି ଯେ, ରାଜର୍ଷି ଜନକ ସଂସାରର ଉତ୍ପତ୍ତି ଓ ବିଲୟ ବଷୟରେ ଯାହାକଛି ଉପଦେଶ ଦେଲେ ସେ ସମସ୍ତ ବହୁପୂର୍ବରୁ ଶୁକଦେବ କହିଥିବାର ଏବଂ ଶାସ୍ତ୍ରରେ କଥିତ ହୋଇଥିବାର ଜନକ ସ୍ୱୀକାର କରଥିଲେ । (ଭବତାପ୍ୟେଷ ଏବାର୍ଥଃ କଥିତୋ ବାଗ୍‌ବଦାଂବର । ଏଷ ଏବ ହି ବାକ୍ୟାର୍ଥଃ ଶାସ୍ତ୍ରେଷୁ ପରଦୃଶ୍ୟତେ॥) ଏ ସମସ୍ତ ପ୍ରମାଣ ଦେବାର ଅଭିପ୍ରାୟ ଏହି ଯେ ସ୍ୱୟଂ ସିଦ୍ଧ ଶୁକଦେବଙ୍କର ବୈରାଗ୍ୟ ବା ତ୍ୟାଗ ମୂର୍ଖର ଅନାସକ୍ତି ବା ଉଦାସୀନତା ନୁହେଁ, ଏହା ପରମ ଜ୍ଞାନଜନତ ବୈରାଗ୍ୟ ।

ମୃତ୍ୟୁଆସନ୍ନ ଜାଣି ଗଙ୍ଗାତୀରରେ ପ୍ରାୟୋପବେଶନ କରଥିବା ପରମ ଭଗବତ ମହାରାଜା ପରୀକ୍ଷିତ ଯେ ଏହିଭଳି ଜ୍ଞାନକୃତତ୍ୟାଗର

Digitized by srujan ka@gmail.com

ମୂର୍ତ୍ତି ମହାମୁନି ଶୁକଙ୍କୁ ହିଁ ନିଜର ଶେଷଜୀବନରେ ଆଧ୍ୟାତ୍ମିକ ଉପଦେଷ୍ଟା ରୂପେ ବରଣ କରିଥିଲେ ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଆଜି ପର୍ଯ୍ୟନ୍ତ ଭାରତୀୟ ଆଧ୍ୟାତ୍ମିକ ସଂସ୍କୃତି ମହାମୁନି ଶୁକ ଏବଂ ପରମ ଭକ୍ତ ପରୀକ୍ଷିତଙ୍କୁ ହିଁ ଆଦର୍ଶ ଉପଦେଷ୍ଟା ଏବଂ ଶ୍ରୋତାର ସ୍ଥାନ ଦେଇ ଆସିଛି । ଯେପରି କି ଶୁଣିବାକୁ ମିଳେ "ଶ୍ରୀ ବିଷ୍ଣୋଃଶ୍ରବଣେ ପରୀକ୍ଷିଦଭବତ୍ ବୈୟାସକିଃ କୀର୍ତ୍ତନେ ।" ପରୀକ୍ଷିତ ମହାରାଜ ବ୍ରହ୍ମଶାପାନଳରେ ଦଗ୍ଧହୋଇ ଗଙ୍ଗାତୀରରେ ଅତ୍ରି, ବଶିଷ୍ଠ, ଚ୍ୟବନ, ଭରଦ୍ୱାଜ, ଗୌତମାଦି ମୁନିଙ୍କ ଗହଣରେ ନିଜର କର୍ତ୍ତବ୍ୟ ଚିନ୍ତା କରୁଛନ୍ତି, ଏହି ସମୟରେ ସ୍ୱ-ଇଚ୍ଛାରେ ପୃଥିବୀ ଭ୍ରମଣ କରୁ କରୁ ଦୈବାତ୍ ପହଞ୍ଚିଗଲେ ବ୍ୟାସନନ୍ଦନ ଶୁକ । ତାଙ୍କର ବର୍ଣ୍ଣନା କରିବାକୁ ଯାଇ ଶ୍ରୀମଦ୍ଭାଗବତ କହେ— "ଅଲକ୍ଷ୍ୟ ଲିଙ୍ଗୋ ନିଜ ଲାଭ ତୁଷ୍ଟୋ ବୃତଶ୍ଚ ବାଳୈର ବଧୂତବେଶଃ ।" ସେ ଥିଲେ ଅଲକ୍ଷ୍ୟଲିଙ୍ଗ ଅର୍ଥାତ୍ ତାଙ୍କଠାରେ କୌଣସି ବାହ୍ୟ ଚିହ୍ନ ଲକ୍ଷିତ ହେଉ ନଥିଲା ଯାହା ସାହାଯ୍ୟରେ ଜାଣିହେବ ଯେ, ଜଣେ ଅମୁକ ଆଶ୍ରମ ବା ସମ୍ପ୍ରଦାୟର ଲୋକ, ପଣ୍ଡିତ ବା ମୂର୍ଖ, ଜ୍ଞାନୀ ବା ଅଜ୍ଞାନୀ । କାରଣ ସେ ବ୍ରହ୍ମନିଷ୍ଠ ହୋଇଥିବାରୁ ସଦା ସନ୍ତୁଷ୍ଟ ଏବଂ ବାଳକ ପରିବେଷ୍ଟିତ ହୋଇ ଅବଧୂତ ବେଶରେ ବୁଲୁଥିଲେ । ଠିକ୍ ଏହିଭଳି ବେଶ ଧାରଣ କରିଥିବାରୁ ଜଡ଼ ଭରତଙ୍କୁ ଚିହ୍ନିବା ମଧ୍ୟ କଷ୍ଟକର ହୋଇଥିଲା । (ଶ୍ରୀମଦ୍ଭାଗବତ, ଜଡ଼ ଭରତ ଉପାଖ୍ୟାନ ଦ୍ରଷ୍ଟବ୍ୟ) । ସଂସାରୀ ଜୀବ ସର୍ବଦା ମୋହାଚ୍ଛନ୍ନ ହୋଇ ରହୁଥିବାରୁ ତା ପକ୍ଷରେ ଏଭଳି ବିଧିନିଷେଧ ବହିର୍ଭୂତ ବ୍ରହ୍ମଜ୍ଞାନ ସମ୍ପନ୍ନ ଗୁଣାତୀତ ମହାତ୍ମାଙ୍କୁ ଚିହ୍ନିବା ଏକପ୍ରକାର ଅସମ୍ଭବ ହୋଇପଡ଼େ; କିନ୍ତୁ ପରୀକ୍ଷିତ୍ ମହାରାଜାଙ୍କ ସମକ୍ଷରେ ବସିଥିବା ମୁନିଗଣ ଶୁକଦେବଙ୍କଠାରେ

Digitized by srujan ka@gmail.com

ମହାପୁରୁଷ ଲକ୍ଷଣ ଦେଖି ତାଙ୍କୁ ଚିହ୍ନି ପାରିଥିଲେ ଏବଂ ନିଜ ନିଜ ଆସନରୁ ଉଠି ତାଙ୍କୁ ମାନ୍ୟ କଲେ । ଶୁକଦେବଙ୍କୁ ସମସ୍ତେ ବେଢ଼ି ବସିଲାପରେ ପରୀକ୍ଷିତ ପ୍ରଶ୍ନକଲେ ।

"ଯୋଗୀଙ୍କ ମଧ୍ୟେ ତୁମ୍ଭେ ଗୁରୁ । ଯେହ୍ନେ ଅଚଳ ମହାମେରୁ ॥
ଦେଖ ମୋ ଜୀବ ଯିବାକାଳେ । କିବା ସାଧିବି ମହୀତଳେ ॥
କିବା ଶୁଣିବି କର୍ଣ୍ଣପଥେ । ସ୍ମରଣ କି କରିବି ଚିତ୍ତେ ॥
କିବା ବଦନେ ଉଚ୍ଚାରଣ । ଭଜିବି କାହାର ଚରଣ ॥

ମହାମୁନି ଉତ୍ତର ଦେଲେ—

"ଯେ ହରି ସର୍ବଘଟେ ପୂରେ । ନିର୍ଲେପ ବାହ୍ୟ ଅଭ୍ୟନ୍ତରେ ॥
ତା'ର ମହିମା ଶୁଣି କର୍ଣ୍ଣେ । ନାମକୁ ଉଚ୍ଚାରି ବଦନେ ॥
ସ୍ମରଣ କରେ ହୃଦଗତେ । ଯେବେ ଅଭୟ ଇଚ୍ଛା ଚିତ୍ତେ ॥
ଏକଥା ସାଂଖ୍ୟ ଯୋଗେ ଜାଣି । ସ୍ୱ-ଧର୍ମ ନିଷ୍ଠା ପରିମାଣି ॥
ଜନ୍ମର ଲଭ ଏ ପ୍ରମାଣ । ଅନ୍ତେ ସ୍ମରଣ ନାରାୟଣ ॥

କିନ୍ତୁ ସେ ନାରାୟଣ କିଏ ? ପୁଣି ତାଙ୍କୁ ଚିହ୍ନିବା ବା କିଏ ? ସ୍ୱୟଂ ପରମ ଜ୍ଞାନୀ ଶୁକ ସୃଷ୍ଟି ବର୍ଣ୍ଣନା ଆରମ୍ଭରେ ମଙ୍ଗଳାଚରଣ ପ୍ରସଙ୍ଗରେ ତାଙ୍କୁ "ଅନୁପଲକ୍ଷ୍ୟ ବର୍ତ୍ମନେ" ଅର୍ଥାତ୍ ଯାହାଙ୍କ ମାର୍ଗ ଅଗୋଚର ଏଭଳି ଭାବରେ ପ୍ରାର୍ଥନା କରି ଅଛନ୍ତି । ପୁଣି ସେ ହେଉଛନ୍ତି "ଅଜଶଙ୍କରାଦିଭିର୍ବିତର୍କ୍ୟ ଲିଙ୍ଗୋ" ଅର୍ଥାତ୍ ତାଙ୍କ ସ୍ୱରୂପ ବିଷୟରେ ବ୍ରହ୍ମା, ଶିବ ପ୍ରଭୃତି ମଧ୍ୟ ନାନାଭାବେ ତର୍କଣା କରିଥାନ୍ତି । ଅଥଚ ଅପର ପକ୍ଷରୁ ଦେଖିଲେ କି ତପସ୍ୱୀ, କି ଦାତା, କି ଯଶସ୍ୱୀ, କି ମନସ୍ୱୀ, ମନ୍ତ୍ରବିତ୍ ଅବା ସଦାଚାରୀ ଏ ସମସ୍ତ

Digitized by srujan ka@gmail.com

ଯାହାଙ୍କଠାରେ ସର୍ବସ୍ୱ ସମର୍ପଣ ନକରି ମଙ୍ଗଳଫଳ ଭାଗୀ ହୋଇ ପାରନ୍ତି ନାହିଁ ସେହି ପୁଣ୍ୟଶ୍ଳୋକ ପୁରୁଷୋତ୍ତମ ନାରାୟଣହିଁ ସମସ୍ତଙ୍କର ସବୁ ଅବସ୍ଥାରେ ଉପାସ୍ୟ—

"ଅକାମେ ଅବା ସର୍ବକାମେ । ଯେ ଅବା ଭଜେ ମୋକ୍ଷକାମେ ॥
ପରମ ପୁରୁଷ ଚରଣେ । ଯେ ବା ଭଜନ୍ତି ଦାସ ପଣେ ॥
ଏଣୁ ସେ ତାହାଙ୍କ ଜୀବନ । ଜନ୍ମ ମରଣେ ଧନ୍ୟ ଧନ୍ୟ ॥

କାରଣ ସେ,ହିଁ ଏକମାତ୍ର ନିଃଶ୍ରେୟସ୍ (Highest good) ଏକମାତ୍ର ପରମାର୍ଥ, ଆଉ ସମସ୍ତ ତଦାଶ୍ରିତ ବ୍ୟବହାର ମାତ୍ର । ଶୁକ ପରୀକ୍ଷିତ ସମ୍ବାଦଛଳରେ ସମଗ୍ର ସଂସାରକୁ ଏହି ପାରମାର୍ଥିକ ଜ୍ଞାନ ଦାନକରି, ଏହି ନିଃଶ୍ରେୟସର ପନ୍ଥା ଦେଖାଇ, ମହାମୁନି ଶୁକ ହୋଇ ପାରିଛନ୍ତି ଯଶ ଦେହରେ ଅକ୍ଷୟ ଏବଂ ଅମର ।

## ମୁନି ଶୁକଦେବଙ୍କର କଳିକାଳର ମହିମା କୀର୍ତ୍ତନ

ସଂଗ୍ରାହକ--ଶ୍ରୀଯୁକ୍ତ ନିମାଇଁ ଚରଣ ଦାସ

ଏ ଅନ୍ତରେ କଳିଯୁଗେ ଏଣିକ ଯେ ରୀତି ।
ହୋଇବ ତା କହୁଅଛି ଶୁଣ ଦେଇ ମତି ॥
ତୁଳସୀ ସେବନ ଏକାଦଶୀ ଉପବାସ ।
ନ କରିବେ ପୁଣି ବିଷ୍ଣୁ ମନ୍ତ୍ର ଉପଦେଶ ॥
ବ୍ରତ ଦାନ ଯଜ୍ଞ ଅଗ୍ନି ପୂଜା ଆଦି କର୍ମ ।
ନ କରି ବ୍ରାହ୍ମଣମାନେ ଛାଡ଼ିବେ ସ୍ୱଧର୍ମ ॥
ଦେବତା ବାହ୍ମଣ ଦ୍ରବ୍ୟେ ବଳାଇବେ ଆଶା ।
ସର୍ବଦା ରଖିବେ ପର ଧନରେ ଲାଳସା ॥
ଅଧର୍ମ କାର୍ଯ୍ୟରେ ସର୍ବେ ବଳାଇବେ ମନ ।
ନଥିବେ ଲକ୍ଷେକ ମଧ୍ୟେ ଏକ ପୁଣ୍ୟବାନ ॥

Digitized by srujan ka@gmail.com

ପୁତ୍ରମାନେ ପିତାଙ୍କର ଦ୍ୱେଷକୁ କରିବେ ।
ଶିଷ୍ୟମାନେ ଗୁରୁଙ୍କର କଥା ନ ମାନିବେ ॥
ବଡ଼ଠାରେ ସାନଙ୍କର ନ ରହିବ ଭକ୍ତି ।
ନଥିବ କୁଟୁମ୍ବ ମଧ୍ୟେ ପରସ୍ପର ପ୍ରୀତି ॥
ମାତାଙ୍କ ବୋଲ ଦୁହିତା ନ ମାନିବେ ।
ପିତାଙ୍କୁ ପୁତ୍ରମାନେ ଘରୁ ତଡ଼ିଦେବେ ।
ବୃଦ୍ଧ ଶାଶୁ ଶଶୁରଙ୍କୁ ଅମାନନା କରି ।
ରଖିଥିବେ ବୋହୂମାନେ ଦାସଦାସୀ ପରି ॥
ବଞ୍ଚକ, ଅଜ୍ଞାନ, ଦୁଷ୍ଟ ପରଘର ବୁଡ଼ା ।
ପୂଜା ପାଇବେ ଏମାନେ ଆଗ ହୋଇ ଛିଡ଼ା ॥
କୁଳସ୍ତ୍ରୀମାନେ ନିଜ ପତିଙ୍କ ନ ଭଜି ।
ପାପେ ରତ ହେବେ ଜାର ପୁରୁଷରେ ମଜ୍ଜି ॥
ତର୍ଜନା, ଭର୍ତ୍ସନା କରି ଆପଣା ପତିକି ।
ଡରାଇବେ କାମିନୀଏ ଗୁଡ଼ ଦିକକିକି ॥
ସକଳ ମାନବେ ହେବେ ପରସ୍ତ୍ରୀ ନିରତ ।
ପରଧନ ହରଣରେ ବଳାଇବେ ଚିତ୍ତ ॥
ଗୃହେ ହେବ ଗୃହିଣୀଙ୍କ ସବୁ ଅଧିକାର ।
ପୁରୁଷେ ହୋଇବେ ରହି ଭୃତ୍ୟ ତାହାଙ୍କର ॥
ଘରଜା ଯେବେ ରୁଷି ବସିବେ ମଥାପୋତି ।
ତାହାଙ୍କୁ ସେ କରିବେ ବହୁତ ମିନତି ॥
ସକଳ କର୍ମକୁଶଳ ହେବ ଯେଉଁ ନର ।
ସ୍ତ୍ରୀଙ୍କର ଆଜ୍ଞାରୁ କେବେ ନୋହିବେ ବାହାର ।
କୁଳସ୍ତ୍ରୀମାନେ ବେଶ୍ୟା ରମଣୀଙ୍କ ପ୍ରାୟେ ।
ହାଣ୍ଡରେ ବୁଲିବେ ବେଶ ହୋଇଣ ନିର୍ଭୟେ ॥

Digitized by srujan ka@gmail.com

ବେଶ୍ୟାଙ୍କ ପରାୟେ କୃଷ ଆଚରଣ କରିବେ ।
ଜାର ପୁରୁଷରେ ଅନୁରାଗବନ୍ତ ହେବେ ॥
ପତିପତ୍ନୀ ଦୁହିଙ୍କର ପରସ୍ପରେ ସ୍ନେହ ।
ନ ରହିବ ଶିଳେ ଆହେ ବନ୍ଧୁଙ୍କ କୁମର ।
ପତି ପତ୍ନୀଙ୍କ ନାର୍ଣ୍ଣୟେ କିଛି ନ ରହିବ ।
ଯାହାର ଯହିଁକି ମନ ତହିଁକି ସେ ଯିବ ॥
ଶଶୁର ଶଳାମାନଙ୍କୁ ବୋଲିବେ ମୋହର ।
ପିତାମାତାଙ୍କଠାରୁ ପୁତ୍ର ହେବେ ଦୂର ॥
କେଉଁମାନେ ଆପଣାର କନ୍ୟାକୁ ସମ୍ଭୋଗ ।
କରିବେ କେ ନିଜ ଶାଶୁଠାରେ ଅନୁରାଗ ॥
କାହାର ଚଳିବ ମନ ପୁତ୍ରବଧୂଠାରେ ।
କେତେ ଲୋକ ଭଗିନୀଙ୍କ ପ୍ରେମକୁ ଲୋଡ଼ିବେ ॥
ଏହିପରି କଳିଯୁଗେ 'ଅଗମ୍ୟଗମନ ।
ପ୍ରବର୍ତ୍ତିବ ଘରେ ଘରେ ଆହେ ତପୋଧନ ॥
ଉପବାସ ବ୍ରତ ଆଦି ପୁଣ୍ୟ କର୍ମ ଯେତେ ।
ତୁଚ୍ଛ ଜ୍ଞାନ କରି ତାହା ଛାଡ଼ିବେ ସମସ୍ତେ ।
ସଂସାର ବିଷୟଭୋଗେ ସବୁରି ମାନସ ।
ଆସକ୍ତ ହୋଇଣ ଥିବ ରଜନୀ ଦିବସ ॥
କ୍ଷୁଧାତୁର ହୋଇଣ ସେ ଅନାବୃଷ୍ଟି ଭୟେ ।
ସର୍ବଦା ରହିବେ ଆକାଶକୁ ଏକ ଲୟେ ॥
ତାପସଙ୍କ ପରି ଫଳମୂଳ ପତ୍ର ଖାଇ ।
ପ୍ରାଣ ବଞ୍ଚିବେ କଷ୍ଟେ ଆହାର ନ ପାଇ ॥
ସନ୍ତାନ ବହୁତ ହେବେ ଅଳ୍ପ ଭାଗ୍ୟ ହେବ
ସର୍ବଦା ସକଳ କାର୍ଯ୍ୟେ ଅଭାବ ଘଟିବ ॥

Digitized by srujan ka@gmail.com

ଦୁର୍ଭିକ୍ଷ, ମଡ଼କ, ବ୍ୟାଧି, ତସ୍କର ପ୍ରଭୃତି ।
ନାନାବିଧ ଦୁଃଖରେ ପ୍ରପୀଡ଼ିତ ହେବେ ନିତି ॥
ଦୁର୍ଭିକ୍ଷ ରାଜସ୍ୱ ଯୋଗେ ହୋଇଣ ପୀଡ଼ିନ ।
ଦେଶ ଛାଡ଼ି ବିଦେଶକୁ କରିବେ ଗମନ ॥
ଦୂର ଗ୍ରାମ ପଲ୍ଲୀ ଆଦିକରି ସବୁ ସ୍ଥଳେ ।
ଅନ୍ନ ବିକି ହେବ କିଣି ଖାଇବେ ସକଳେ ॥
ନ ଥିବ ତହିଁରେ ଜାତିଭେଦର ବିଚାର ।
କ୍ଷୁଧା ହେଲମାତ୍ରେ କିଣି ଖାଇବେ ଆହାର ॥
ଏଥିଅନ୍ତେ କିଛିଦିନ ଗଲାପରେ ପୁଣି ।
ଦ୍ୱାଦଶ ଆଦିତ୍ୟ ଉଦେ ହେବେ କାଳ ଜାଣି ॥
ତାହାଙ୍କ ତେଜରେ ମହୀ ଶୁଷ୍କ ହୋଇଯିବ ।
ସର୍ବାଙ୍କ ରହିବେ ତହିଁ ଶୂନ୍ୟ ହିଁ ଥିବ ।
ଏତିକରେ କଳିଯୁଗ ଭୋଗ ହେବ ଶେଷ ।
ସେ ଅନ୍ତରେ ସତ୍ୟଯୁଗ ହୋଇବ ପ୍ରବେଶ ॥

—ବ୍ରହ୍ମବୈବର୍ତ୍ତପୁରାଣ—

Digitized by srujan ka@gmail.com

# ଭକ୍ତ ବିଦୁର

ଐତିହାସିକ ଶ୍ରୀ ବ୍ରଜସୁନ୍ଦର ଦାସ

ମହାଭାରତ ଗ୍ରନ୍ଥରେ ବିଦୁରଙ୍କ ଚରିତ୍ର ଏକ ବିଶେଷ ସ୍ଥାନ ଅଧିକାର କରିଅଛି । ହିତୋପଦେଶ ଦେଇ ସେ ପାଣ୍ଡବମାନଙ୍କୁ ଯେପରି ସତ୍ପଥଗାମୀ କରାଇଥିଲେ, ସେହିପରି ଜନସମାଜକୁ ନିଜ ନୀତିମୟ ବାଣୀ ଦ୍ୱାରା ଉଦ୍‌ବୁଦ୍ଧ କରିଥିଲେ ।

ଧୃତରାଷ୍ଟ୍ର, ପାଣ୍ଡୁ ଓ ବିଦୁର ବିଚିତ୍ରବୀର୍ଯ୍ୟଙ୍କ ପୁତ୍ରରୂପେ ଗଣ୍ୟ ହୋଇଥିଲେ ମଧ୍ୟ ସେ ସମସ୍ତେ ମହର୍ଷି ବେଦବ୍ୟାସଙ୍କ ଔରସରୁ ଜନ୍ମଲାଭ କରିଥିଲେ । କାରଣ ବିଚିତ୍ରବୀର୍ଯ୍ୟଙ୍କର ଦୁଇପତ୍ନୀ ଯଥା, ଅମ୍ବିକା ଓ ଅମ୍ବାଳିକାଙ୍କ ଗର୍ଭରୁ କୌଣସି ପୁତ୍ର ସନ୍ତାନ ଜନ୍ମ ନ ହେବାରୁ ମାତା ସତ୍ୟବତୀ ଜ୍ୟେଷ୍ଠପୁତ୍ର ବେଦବ୍ୟାସଙ୍କୁ ବଂଶରକ୍ଷା କରିବାକୁ ଅନୁରୋଧ କରିଥିଲେ । ତେଣୁ ବେଦବ୍ୟାସ ଭ୍ରାତୃବଧୂ ଅମ୍ବିକା ଓ ଅମ୍ବାଳିକାଙ୍କ ସହ ପ୍ରୀତି କରି ଯଥାକ୍ରମେ ଧୃତରାଷ୍ଟ୍ର ଓ ପାଣ୍ଡୁଙ୍କୁ ସୃଷ୍ଟି କରିଥିଲେ । କିନ୍ତୁ ଧୃତରାଷ୍ଟ୍ର ଜନ୍ମାନ୍ଧ ଓ ପାଣ୍ଡୁ ଶୀର୍ଣ୍ଣ ଥିବାରୁ ମାତା ସତ୍ୟବତୀ ଅମ୍ବିକାଙ୍କ ଗର୍ଭରେ ଅନ୍ୟ ପୁତ୍ର ସୃଷ୍ଟି କରିବାକୁ ବ୍ୟାସଙ୍କୁ ଅନୁରୋଧ କରିଥିଲେ । କିନ୍ତୁ ଅମ୍ବିକା ବେଦବ୍ୟାସଙ୍କ ସହ ଦ୍ୱିତୀୟ ବାର ମିଳିତ ହେବାକୁ ଅନିଚ୍ଛା ପ୍ରକାଶ କରି ଏକ ଦାସୀକୁ ନିଜ ବେଶଭୂଷାରେ ସଜ୍ଜିତ କରି ବେଦବ୍ୟାସଙ୍କ ନିକଟକୁ ପଠାଇ ଦେଇଥିଲେ । ଫଳରେ ବେଦବ୍ୟାସଙ୍କ ଔରସରେ ଶୂଦ୍ରା ଦାସୀଙ୍କ

Digitized by srujan ka@gmail.com

ଗର୍ଭରୁ ବିଦୁରଙ୍କ ଜନ୍ମ ହୋଇଥିଲା । ମହାଭାରତରେ ବର୍ଣ୍ଣିତ ଅଛି ଯେ ନିଜେ ଧର୍ମଦେବ ଯମରାଜ ମାଣ୍ଡବ୍ୟ ଋଷିଙ୍କ ଅଭିଶାପରେ ଶୂଦ୍ରାଯୋନୀରେ ଜନ୍ମଲାଭ କରି ବିଦୁର ନାମରେ ପରିଚିତ ହୋଇଥିଲେ । ବିଦୁର କାର୍ଯ୍ୟତଃ କୌରବମାନଙ୍କ ପକ୍ଷରେ ଥିଲେ ମଧ୍ୟ ଧର୍ମତଃ ପାଣ୍ଡବମାନଙ୍କୁ ଅତି ସ୍ନେହ କରୁଥିଲେ । କୁରୁପାଣ୍ଡବ ଯୁଦ୍ଧ ନ ହେବାପାଇଁ ଏବଂ ପାଣ୍ଡବମାନଙ୍କୁ ସେମାନଙ୍କ ରାଜ୍ୟ ଫେରାଇ ଦେବାପାଇଁ ସେ କୁରୁପତି ଦୁର୍ଯ୍ୟୋଧନଙ୍କୁ ସର୍ବଦା ଉପଦେଶ ଦେଉଥିଲେ । କିନ୍ତୁ ଦୁଷ୍ଟବୁଦ୍ଧି ଦୁର୍ଯ୍ୟୋଧନ ତାଙ୍କ ଉପଦେଶକୁ ଉପେକ୍ଷା କରି ପାଣ୍ଡବମାନଙ୍କୁ ଜତୁଗୃହରେ ଦଗ୍ଧ କରିବାକୁ ଯେଉଁ ଉପାୟ ପାଞ୍ଚିଥିଲେ, ସେଥିରେ ବିଦୁର ପାଣ୍ଡବ-ମାନଙ୍କୁ ସହାୟ ହୋଇ ସେମାନଙ୍କୁ ଉକ୍ତ ବିପଦରୁ ରକ୍ଷା ପାଇବାର ଉପାୟ ବତାଇ ଦେଇଥିଲେ । ପାଣ୍ଡବମାନେ ଅଜ୍ଞାତ ବନବାସ କରିବାକୁ ଯିବାବେଳେ ସେମାନେ ବିଦୁରଙ୍କୁ ଅତି ଆପଣାର ମଣି ମାତା କୁନ୍ତୀଙ୍କୁ ତାଙ୍କ ଦାୟିତ୍ୱରେ ଛାଡ଼ିଦେଇ ଯାଇଥିଲେ । ଶ୍ରୀକୃଷ୍ଣ ଯେତେବେଳେ ମଥୁରାରୁ ଦ୍ୱାରକା ଯାତ୍ରା କରୁଥିଲେ ସେତେବେଳେ ସେ ଭକ୍ତପ୍ରବର ବିଦୁରଙ୍କ ଘରେ ଶାଗ-ପଖାଳ ଖାଇ ପରମ ସୁଖଲାଭ କରିଥିଲେ । ସେଥିପାଇଁ ଆମ ସମାଜରେ କୌଣସି ବିଶିଷ୍ଟ ବ୍ୟକ୍ତିଙ୍କୁ ନିମନ୍ତ୍ରଣ କରି "ବିଦୁର ଘରେ ଶାଗ-ପଖାଳ" ଭୋଜନ କରିବା କଥା କହି ତାଙ୍କୁ ଅନୁରୋଧ କରୁଁ । ଏହିପରି ବିଦୁରଙ୍କ ମହତ୍ତ୍ୱ ତାଙ୍କ ଧର୍ମପ୍ରାଣତା ଓ ଶାନ୍ତ ସ୍ୱଭାବ ବହୁଭାବରେ ମହାଭାରତରେ ପ୍ରତିପାଦିତ ହୋଇଅଛି ।

ମହାଭାରତର ରାଜନୀତି ତଥା ସମର ନୀତିରେ ବିଦୁର ପ୍ରତ୍ୟକ୍ଷଭାବେ ସଂପୃକ୍ତ ନ ଥିଲେ ସତ୍ୟ, କିନ୍ତୁ ସମାଜ ନୀତି ଓ

Digitized by srujan ka@gmail.com

ଧର୍ମ ଶାସ୍ତ୍ର କ୍ଷେତ୍ରରେ ବିଦୁରଙ୍କ ସ୍ଥାନ ବହୁ ଉଚ୍ଚରେ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ବିଭିନ୍ନ କ୍ଷେତ୍ରରେ ବିଦୁର ଯେଉଁସବୁ ଉପଦେଶମାନ ବିଭିନ୍ନ ବ୍ୟକ୍ତିମାନଙ୍କୁ ଦେଇଯାଇଛନ୍ତି, ତାହା ବିଦୁର ଶାସ୍ତ୍ର ରୂପେ ଆଦୃତ ହୋଇଛି । ଉକ୍ତ ବାଣୀମାନଙ୍କ ମଧ୍ୟରୁ କେତେକ ସାର ସଂଗ୍ରହ କରାଯାଇ ନିମ୍ନରେ ପ୍ରଦତ୍ତ ହେଲା ।

## ଭକ୍ତ ବିଦୁର-ନୀତି ବା ବାଣୀ

( ମହାଭାରତ-ବନପର୍ବରୁ ସଂଗୃହୀତ )

ବିଦ୍ୟା ସୁଖ ଏ ଦୁଇ ନୁହେଁ ଏକା କଥା ।
ପରସ୍ପରେ ବଇର ଜାଣ ମହାରଥୀ ॥
ଆରୋଗ୍ୟ, ଅଋଣୀତ୍ୱ ନିର୍ଭୟେ ନିବାସ ।
ସାଧୁସଙ୍ଗ ସ୍ୱାଧୀନ ବୃତ୍ତି ଅପ୍ରବାସ ॥
ନରମାନଙ୍କର ଅଟଇ ଏହା ସୁଖ ।
ଜାଣ ଆହେ ହସ୍ତିନା ନରଙ୍କର ଶିଖ ॥
ନିତ୍ୟଆୟ ଅଧୀନ ପୁତ୍ର ଆରୋଗୀତା ।
ଅର୍ଥକାରୀ ବିଦ୍ୟା ପ୍ରିୟ ବାଦିନୀ କାନ୍ତା ॥
ସେ ପ୍ରିୟକାରିଣୀ ଏ ଛଅ ପ୍ରାଣୀଙ୍କର ।
ଅଟଇଟି ସ୍ୱଜନ ମହାସୁଖକର ॥
ଯାହା ମୁଖ ଦେଖିଲେ ମାନସ ପ୍ରସନ୍ନ ।
ହୁଏ ସେ ମିତ୍ର ବୋଲି ଜାଣ ନରସ୍ୱାମୀ ॥
ସମ୍ବନ୍ଧ ନ ଥାଇ ଯେ ଅନୁକୂଳ ହୁଏ ।
ତାଠାରୁ ମିତ୍ର ତ ଖୋଜିଲେ ନାହିଁ ସ୍ୱୟେ ॥

Digitized by srujan ka@gmail.com

କେଉଁମାନେ କାହାଯୋଗୁଁ ସୁଖୀ ହୁଅନ୍ତି ?

ଅସାବଧାନ ଲୋକ ହେତୁରୁ—ଚୋର
ରୋଗୀ ହେତୁରୁ—ବୈଦ୍ୟ
ଶଠ ପୁରୁଷ ହେତୁରୁ—ବ୍ୟଭିଚାରିଣୀ
ଯଜମାନ ହେତୁରୁ—ଯାଜକ
ଦୁର୍ବଳ ଶାସନକର୍ତ୍ତା ହେତୁରୁ—ଶତ୍ରୁ
ବଦାନ୍ୟ ଧର୍ମୀମାନଙ୍କ ସଙ୍ଗହେତୁ—ପଣ୍ଡିତମାନେ ସୁଖୀ ହୋଇଥାନ୍ତି

× × ×

ବାହୁବଳ, ମିତ୍ରବଳ ଯେ ଧନବଳ ।
ଆପଣା ଅଭିଜାତବଳ ପ୍ରଜ୍ଞାବଳ ॥
ଏ ପାଞ୍ଚେ ଯାହାଦେହେ ପୂର୍ଣ୍ଣ ହୋଇଥାନ୍ତି ।
ତାହାକୁ ଟି କେହି ହେ ବଧି ନ ପାରନ୍ତି ।

× × ×

କୀର୍ତ୍ତି ଟି ଯେତେକାଳ ମର୍ତ୍ତ୍ୟରେ ଟି ଥାଏ ।
ତେତେକାଳ ଲୋକ ସ୍ୱର୍ଗରେ ଭୋଗପାଏ ॥
ଅଧର୍ମ ଧନରେ ଯେ ଧରମ କରଇ ।
ଭଲକରି ଭାବିଲେ ଫଳ ତହିଁ ନାହିଁ ॥

× × ×

ପରଧନ ପରନାରୀ ଯେ ହରେ ରାୟେ ।
ଜାଣ ତା'ର ହୃଦୟେ ଭୟ ରହିଥାଏ ॥
ଯେଉଁ ଲୋକମାନେ ଅଟନ୍ତି ଟି ଦୁର୍ବୃତ୍ତ ।
ଜୀଇଁଥିଲେ ଜାଣ ସେ ହେଲେ ପରମୃତ ॥
ଅସାଧୁ ଲୋକଭୁଲେ ସାଧୁ ଲୋକ ଯାଇ ।
ବସିଲେ ରାଜନ ହେ ବିନାଶ ଲଭଇ ॥

Digitized by srujan ka@gmail.com

ଓଦା କାଷ୍ଠ ଶୁଖିଲା କାଷ୍ଠେ ମିଶାଇଲେ ।
ଜଳିତ ଯାଉଅଛି ଦେଖୁଥାଇଁ ଭଲେ ॥
ଏ ପ୍ରକାଶରୁ ସାଧୁ ଲୋକ ଯେ ହୋଇବ ।
ଅସାଧୁ ଲୋକ ସଙ୍ଗ ସ୍ୱପ୍ନେ ନ କରିବ ॥

× × ×

ଏକା ହୋଇ ସ୍ୱାଦୁ ପଦାର୍ଥ ନ ଖାଇବ ।
ଖାଇବ ଯେବେ ମହାପାତକ ଅର୍ଜିବ ॥
ମୁହଁଇତ ଜଣକୁ ସମସ୍ତ ଗୋଚର ।
ଏକା ହୋଇ ଭ୍ରମିଲେ ହୁଏ ମରିବାର ॥
ଏକା ହୋଇ ବାଟ ଚାଲଇ ଯେ ନିଃଶଙ୍କେ ।
ତା ଭଲମନ୍ଦ ବାର୍ତ୍ତା ନ ପାଆନ୍ତି ଲୋକେ ॥
ଏକାକୀ ବହୁତ ଶୋଇବାଠାରେ ବସି ।
ଥିଲେ ହୁଅଇଟି ସେ ନରକ୍ଷେର ଦୋଷୀ ॥

× × ×

ଶିକ୍ଷା ସମାପ୍ତ ହେଲେ ଶିଷ୍ୟ ଗୁରୁଙ୍କୁ ।
ପୁତ୍ର ବଡ଼ ହୋଇ ସାରିଲେ ମାତାଙ୍କୁ ॥
ସ୍ୱାମୀ ସମ୍ଭୋଗ କରିସାରିଲେ ସ୍ତ୍ରୀକୁ ।
ଯାତ୍ରୀ ନଦୀ ପାରହୋଇ ସାରିଲେ ନାଉରୀକୁ ॥
ରୋଗୀ ଆରୋଗ୍ୟ ପରେ ବୈଦ୍ୟଙ୍କୁ ଭୁଲିଯାଆନ୍ତି ॥
ଗର୍ବିତ, ମୂର୍ଖ, ଅଧର୍ମୀ ଭୁଲେ ମଇନ୍ଦ ।
କେବେ ନ କରିବ ସେ ହେଲେ ରାଜପୁତ୍ର ॥

## କେଉଁମାନଙ୍କୁ ଆପଣାର ବୋଲି ଭାବିବ ନାହିଁ

ସ୍ତ୍ରୀ, ଦୁର୍ଜନ, ଶତ୍ରୁ, ସର୍ପ, ବେଦସେବୀ
ଜନଙ୍କୁ ଆପଣାର ବୋଲିଟି ନ ଭାବ ।

Digitized by srujan ka@gmail.com

ଏହା ବାହାରେ ଶ୍ରେଗ ଆୟୁଷ ଦୁର୍ବଳଙ୍କ
ନିଜର ବିଶ୍ୱାସରି ଜଗିବ ଧନ୍ଦିକ ।

## କେଉଁମାନଙ୍କ ସହିତ ବିଚାର କରିବ ନାହିଁ

ଅଳ୍ପ ବୁଦ୍ଧି, ମଠୁଆ, ଅଳସ, ସ୍ତୁତିକାର
ଏ ଚ୍ଛରଙ୍କ ଭୁଲେ ନ କରିବ ବିଚାର ।

## କେଉଁମାନଙ୍କୁ ସାକ୍ଷୀ କରିବ ନାହିଁ

ବୋଇତ, ବଣିଜାର, ଜୁଆରି ଯେ ଚୋର ।
ବୈଦ୍ୟ, ଶତ୍ରୁ, ମିତ୍ର, ନାଟୁଆ ଆଦି ନର-
ମାନଙ୍କୁ ଗୋଳ ହେଲେ ନ କରିବ ସାକ୍ଷୀ,
ଅବଶ୍ୟ ସେକଥା କହନ୍ତି ପଟ ରଖି ।

## କେଉଁମାନଙ୍କୁ ଘରେ(ପାଖରେ) ପୂରାଇ ଦେବ ନାହିଁ

ମିଛୁଆ, ଖଚୁଆ, ଲାଞ୍ଚୁଆ, ବିଟପୀ ନାରୀ, ମୁଖରା ସ୍ତ୍ରୀ, ମୁହଁଖୋର ଭୃତ୍ୟ, ଶଠ ମିତ୍ର, ଦୁର୍ଜନ, ପେଟୁ, ଉସ୍ତାଦ୍ମ, ନିଷ୍ଠୁର୍ମ, ଅର୍ଥଲୋଭୀ, ଚିର ରୁଗ୍ଣ—ଏମାନଙ୍କୁ ପାଖରେ ରଖିଲେ ବିପଦ ।

## କେଉଁମାନଙ୍କୁ ଅବଜ୍ଞା ବା ହେୟଜ୍ଞାନ କରିବ ନାହିଁ

ସନ୍ନ୍ୟାସୀ, ସର୍ପ, କ୍ଷତ୍ରିୟ, ଜ୍ଞାତି ଓ ଅଗ୍ନି—ଏମାନଙ୍କୁ ଅବଜ୍ଞା କରିବ ନାହିଁ । କାରଣ, ଏମାନଙ୍କର ଦାହିକା ଶକ୍ତି ପ୍ରଚ୍ଛନ୍ନ ଭାବରେ ଥାଏ । ଜ୍ଞାତିମାନଙ୍କୁ ସମସ୍ତେ ବିବେଚନା କରି ଚଳିବ ।

Digitized by srujan ka@gmail.com

ବନ୍ଦୀଘରର ଲୋକର ଧରେ ଯେ ଚରଣ ।
ଇନ୍ଦ୍ରଙ୍କୁ ନମସ୍କାର କଲାପରି ଜାଣ ॥
+ + +
ସ୍ତ୍ରୀଚରିତ ଅଳସ ଭୃତ୍ୟଙ୍କୁ ଶୋଧନ ।
ନାସ୍ତିକ ଲୋକର ବୃଷ୍ଟିକାଳୀ କୃତଘନ ॥
ଏମାନଙ୍କ ଠାବରେ ବିଶ୍ୱାସ କଥାଟି ।
କଦାଚିତେ ହେ ନ କରିବ ମେଳ ପାଟି ॥
ନିୟମ-ଭ୍ରଷ୍ଟ, ବୈଦ୍ୟ, ଚୋର, ବଳଧାଣ୍ଡି ।
ମଦ୍ୟପ, କ୍ରୂର, ବେଦ ବିକ୍ରେତା, ସେନାପତି ॥
ଏମାନେ ଦୁଆରକୁ ଅତିଥି ରୂପରେ ।
ଆସିଲେ ଖେଦିବ ନାହିଁ ବିରାଗରେ ॥
ଗାଳିଦେବା ଲୋକକୁ ଗାଳିକି ନ ଦେଲେ ।
ଗାଳିଦେବା ଲୋକ ନାଶକୁ ଲଭେ ଭଲେ ॥
ପରଯେବେ ବୋଲିବ ନିଷ୍ଠୁର ବଚନ ।
ତେବେ କିଛି ନ ବୋଲି ହୋଇବ ମଉନ ॥
ବାଜିଲେ କାଣ୍ଡ କ୍ଷତ ଯାଉଅଛି ଶୁଖି ।
କଅଁଳକୁ ଅଛି ହାଣି ପକାଇଲେ ଶାଖୀ ॥
ବଚନ କାଣ୍ଡଘାତ ହୃଦୁଁ କଦାଚିତେ ।
ଶୁଖି ନଯାଏ ହେ ସୁଜନ ମହାମତେ ॥
ଯାହାକୁ ବେଶ୍ୟା ସ୍ତ୍ରୀ ନାଚୁଆ, ଯୁଆରି ।
ପ୍ରଶଂସନ୍ତି ଜାଣ ହେ ବ୍ୟର୍ଥ ତା ଶରୀର ॥
× × ×
ନୀଚ ସଙ୍ଗେ ପୀରତି ଅଳପକେ ନାଶଯାଏ ।
ଉଚ୍ଚଲୋକ ପ୍ରୀତିଟି ବହୁକାଳ ଥାଏ ॥

Digitized by srujan ka@gmail.com

ଦରିଦ୍ର ଜ୍ଞାତିଙ୍କ ଯେ କରେ ଅନୁଗ୍ରହ ।
ତାହାର ସୁକୃତଟି ଅଟଇ ଅକଳ୍ପ ॥
ଯେଉଁମାନେ ଆପଣା ସୁଖକୁ ଇଚ୍ଛନ୍ତି ।
ସେହିଟି ଜାଣ ଜ୍ଞାତିମାନଙ୍କୁ ପୋଷନ୍ତି ॥
ନିର୍ଗୁଣ ହେଲେ ଜ୍ଞାତି ଗୁଣ୍ଡ଼ି ନ ଯୋଗାଏ ।
ପାଣ୍ଡୁବାଳେ ସୁଗୁଣ ଅଟନ୍ତି ତ ସ୍ୱୟେ ॥

## କିପରି କଅଣ ରକ୍ଷା ହୁଏ

ନିତ ଘୋଡ଼ାକୁ ଚଢ଼ାଇଲେ ଘୋଡ଼ା ରକ୍ଷା ହୁଏ ।
ନିତ ଗାଈକୁ ବାନ୍ଧି ରଖିଲେ ଗାଈ ରକ୍ଷା ହୁଏ ।
ବସ୍ତ୍ରର ଅବଗୁଣ୍ଠନରେ ନାରୀମାନଙ୍କର ମର୍ଯ୍ୟାଦା ରକ୍ଷା ହୁଏ ।

ଅଭ୍ୟାସରେ ବିଦ୍ୟା ରହେ ।
ତୈଳ ମର୍ଦ୍ଦନରେ ରୂପ ରହେ ।
ସତ୍ୟରେ ଧର୍ମ ରହେ ।
ଧର୍ମ ଆଚରଣରେ କୁଳ ରହେ ।
ଭାର୍ଯ୍ୟା ଭୁଲରେ ରତିକର ପୁତ୍ର କଲେ ।
ସଫଳ ବୋଲାଏ ସେ ନପ ଜାଣ ଭଲେ ॥
ଭାର୍ଯ୍ୟା ସମ୍ଭୋଗରୁ ନୁହଇ ଯେ ପୁତ୍ର ।
ଜାଣ ସେ ବୋଲାଏ ବାଳରେ ସେହ୍ନେ ମୂତ୍ର ॥

× × ×

ସାଧୁମାର୍ଗ କରିଣ ଅସାଧୁ ଲୋକଙ୍କୁ ।
ଜିଣିବ ଏପରି ଦାନରେ କୃପଣକୁ ॥
କ୍ରୋଧ ହେବା ଲୋକକୁ ନୁହଇ ଯେ କ୍ରୋଧ ।
ତାହାକୁହିଁ ସମସ୍ତେ ବୋଲୁଥାନ୍ତି ବୁଦ୍ଧ ॥

Digitized by srujan ka@gmail.com



# ପିତାମହ ଭୀଷ୍ମ

ଅଧ୍ୟାପକ ଜୟକୃଷ୍ଣ ମିଶ୍ର, ଏମ. ଏ.

( ମହାଭାରତ ବର୍ଣ୍ଣିତ )

ଭୀଷ୍ମ ଜଣେ ଅବିସ୍ମରଣୀୟ ମହା ଶକ୍ତିଶାଳୀ ପରମଜ୍ଞାନୀ ମହାପୁରୁଷ । ଜୀବନର ସର୍ବାଧିକ ମହନୀୟ ଆଦର୍ଶର ଚରମ ବିକାଶ ହୋଇଥିଲା ତାଙ୍କଠାରେ ଏବଂ ସତ୍ୟ, ନ୍ୟାୟ ଓ ନିଷ୍ଠାର ଦେଦୀପ୍ୟମାନ ପ୍ରତୀକରୂପେ ତାଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ବିଶେଷତ୍ୱ କେବଳ ଭାରତରେ ନୁହେଁ, ସମଗ୍ର ଜଗତରେ ପ୍ରଶଂସିତ ହୋଇଛି ସର୍ବାଧିକ ପରିମାଣରେ ।

Digitized by srujan ka@gmail.com

କୁରୁବଂଶୀୟ ମହାରାଜ ଶାନ୍ତନୁଙ୍କ ପୁତ୍ର ସେ। ତାଙ୍କର ପିତୃଦତ୍ତ ନାମ ଦେବବ୍ରତ। ମାତାଙ୍କ ନାମ ଗଙ୍ଗାଦେବୀ। ତେଣୁ ସେ ଗାଙ୍ଗେୟ ନାମରେ ସୁପରିଚିତ। ମାତ୍ର ତାଙ୍କର (ଭୀଷ୍ମ) ନାମର ତାତ୍ପର୍ଯ୍ୟ ସବୁଠାରୁ ବେଶୀ। ତାହାର କାରଣ ହେଉଛି, ସେ ଯୁବରାଜ ଥିଲାବେଳେ ପିତା ଶାନ୍ତନୁ ମତ୍ସ୍ୟଦେଶୀୟ ଧୀବର କନ୍ୟା ସତ୍ୟବତୀଙ୍କର ପ୍ରଣୟବଦ୍ଧ ହୋଇ ତାଙ୍କୁ ବିବାହ କରିବାକୁ ଇଚ୍ଛା କରିବାରୁ ଧୀବରରାଜ ବାରଣକରି କହିଲେ, "ତୋର ପୁତ୍ର ଥାଉ ଥାଉ ମୋ କନ୍ୟାଗର୍ଭରୁ ପୁତ୍ରଜାତ ହେଲେ ସେ ରାଜାହୋଇ ପାରିବ ନାହିଁ। ତେଣୁ ଏଥିରୁ ନିବୃତ୍ତ ହୁଅ।" ଶାନ୍ତନୁ ଏହି ଘଟଣାରେ ସବିଶେଷ ବିବ୍ରତ ଓ ଚିନ୍ତାକୁଳ ହୋଇପଡ଼ିବାରୁ ଯୁବରାଜ ନିଜ ପିତାଙ୍କ ବଳବତୀ କାମନା ଫଳବତୀ ହେବାଲାଗି କଠୋର ପ୍ରତିଜ୍ଞାବଦ୍ଧ ହୋଇ କହିଲେ, "ମୋର ରାଜାସନ ଅଧିକାର ଲାଗି ଲାଳସା ନାହିଁ। ମୁଁ ଆଜୀବନ ବ୍ରହ୍ମଚାରୀ ହୋଇ କାଳଯାପନ କରିବି। ମୋର ପିତା ନିର୍ବିଘ୍ନରେ ଧୀବରରାଜକନ୍ୟାଙ୍କ ପାଣି ଗ୍ରହଣ କରନ୍ତୁ।"

ତାଙ୍କର ଏହି ପ୍ରତିଜ୍ଞା ସାର୍ଥକ ହେଲା। ପିତୃମର୍ଯ୍ୟାଦା ଓ ନିଜର ବାକ୍ୟରେ ଅଟଳ ରହି ଭୀଷଣ ପ୍ରତିଜ୍ଞାବଦ୍ଧ ହୋଇଥିଲେ ବୋଲି ସେହିଦିନଠାରୁ ସେ ଭୀଷ୍ମ ବୋଲି ସର୍ବତ୍ର ପରିଚିତ ହେଲେ।

ଭୀଷ୍ମ ବାଲ୍ୟକାଳରୁ ଯୌବନ ପର୍ଯ୍ୟନ୍ତ ବ୍ରହ୍ମଚର୍ଯ୍ୟ ଆଚରଣରେ ସମଧିକ ଆକୃଷ୍ଟ ହୋଇ ଗଭୀର ଜ୍ଞାନାର୍ଜନ କରିବାକୁ ଲାଗିଲେ। ଜ୍ଞାନଭକ୍ତି ସମ୍ବଳିତ ତତ୍ତ୍ୱଗୁଡ଼ିକ ପୁଙ୍ଖାନୁପୁଙ୍ଖରୂପେ ଅନୁଶୀଳନ କରିବା ସଙ୍ଗେ ସଙ୍ଗେ ବେଦବେଦାଙ୍ଗ ତଥା ଧର୍ମଶାସ୍ତ୍ର-ଗୁଡ଼ିକ ଅଧ୍ୟୟନ କରି କର୍ମ ଜୀବନରେ ତାହାର ଉତ୍କୃଷ୍ଟ ଓ

Digitized by srujan ka@gmail.com

ଅନବଦ୍ୟଭାବେ ପ୍ରତ୍ୟେକରେ ମହତ୍ତ୍ୱ ଉପଲବ୍ଧି କରିପାରିଥିଲେ । ଏତଦ୍‌ଭିନ୍ନ ସେ ନ୍ୟାୟ, ଦର୍ଶନଶାସ୍ତ୍ରରେ ନୈପୁଣ୍ୟ ଲାଭକରି ଜୀବନର ଆଦର୍ଶ ନିୟନ୍ତ୍ରିତ ପଦ୍ଧତିର ଯଥାଯଥ ସନ୍ଧାନ କରିବାରେ ପ୍ରବୀଣତା ଲାଭ କରିଥିଲେ ।

ଏହିପରି ଅଳ୍ପ ବୟସରୁ ତାଙ୍କ ଦିବ୍ୟଦର୍ଶିତାର ମହନୀୟତା ସର୍ବତ୍ର ବହୁକୋଟି କଣ୍ଠରେ ପ୍ରଶଂସିତ ହେବାକୁ ଲାଗିଲା । କ୍ଷତ୍ରିୟ ଧର୍ମର ପତାକାସ୍ୱରୂପ ହୃଦୟଙ୍ଗମ କରି ଧନୁର୍ବିଦ୍ୟାରେ ଅସାଧାରଣ କୃତିତ୍ୱ ଲାଭ ବଳରେ ସେ ସର୍ବଶ୍ରେଷ୍ଠ ବୀରରୂପେ ପ୍ରତିଷ୍ଠିତ ହୋଇ ପାରିଥିଲେ । ଯୌବନାରମ୍ଭରେ ଜୀବନର ଆଦର୍ଶ, ନୀତିନିୟନ୍ତ୍ରିତ ପଦ୍ଧତିର ଉପାଦେୟତା, କର୍ତ୍ତବ୍ୟନିଷ୍ଠ, କର୍ମଧାରାର ଲକ୍ଷ୍ୟ ଓ କମନୀୟତା ତଥା ମାନବୋଚିତ ଚିନ୍ତାର ଅନୁରୂପ କର୍ମପନ୍ଥା, ସର୍ବାଧିକ ପରିମାଣରେ ବୁଝି ପାରିଥିଲେ । ଦିବ୍ୟଦର୍ଶୀ ବୀରଶ୍ରେଷ୍ଠ ଅଟଳବ୍ରତ ଭୀଷ୍ମ ଏବଂ ମହାଭାରତରେ ତାଙ୍କ ଜୀବନର ମହତ୍ତ୍ୱ ସ୍ୱର୍ଣ୍ଣାକ୍ଷରରେ ବର୍ଣ୍ଣିତ ହୋଇଅଛି । ଯୁଧିଷ୍ଠିର, ଅର୍ଜୁନ, ଦ୍ରୋଣ, କର୍ଣ୍ଣ, କୃପାଚାର୍ଯ୍ୟ ପ୍ରଭୃତି ପୁରାଣ ବର୍ଣ୍ଣନାକ୍ରମେ ସୁବିଦିତ ହୋଇ-ଥିଲେହେଁ ଭୀଷ୍ମଙ୍କ ଅପ୍ରତିଦ୍ୱନ୍ଦ୍ୱିତା ଧର୍ମ, କର୍ମ, ଶ୍ରଦ୍ଧା, ବିଶ୍ୱାସ, ଅଟଳତା, ବୀରତ୍ୱ ଓ ଜୀବନର ସର୍ବାଙ୍ଗୀନ ବିକାଶ କ୍ଷେତ୍ରରେ ପ୍ରତିପାଦିତ ହୋଇଅଛି । ଅନବଦ୍ୟ ଭାବରେ କହିବା ବାହୁଲ୍ୟ ମାତ୍ର । ତାଙ୍କର ତୁଳନା ସେ ନିଜେ ଏବଂ ଏକନିଷ୍ଠ କର୍ମପୂତ ସମୁଜ୍ଜ୍ୱଳ, ଯଶୋରାଶିର ସେ ହିଁ ପୂର୍ଣ୍ଣାଧିକାରୀ ।

ନୈତିକ ଜୀବନଯାତ୍ରା ପଥର ପଥପ୍ରଦର୍ଶକ ଭାବରେ ତଥା ଆର୍ଯ୍ୟୋଚିତ କର୍ମଧାରାର ଶ୍ରେଷ୍ଠ ଉପାସକ ଭାବରେ ଭୀଷ୍ମଙ୍କ ପ୍ରତିଷ୍ଠା ଓ କୃତିତ୍ୱ ସମଗ୍ର ପୃଥିବୀ ସନ୍ଦର୍ଶନ କରିଅଛି । ତାଙ୍କର ଅତୁଳନୀୟ ଚରିତ୍ରପ୍ରଭା, ମନୋବଳ, ସର୍ବପାବନୀ ପ୍ରେରଣା ଏବଂ ବୀରଧର୍ମର

Digitized by srujan ka@gmail.com

ମର୍ଯ୍ୟାଦା ବିଶୃଙ୍ଖଳ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଖଳାଗ୍ରଣୀ ଦୁର୍ଯ୍ୟୋଧନ, ଦୁଃଶାସନ ପ୍ରଭୃତି ସତ୍ପଥକୁ ଆକର୍ଷଣ କରିବା ହାଗରେ ସେ ସର୍ବଶେଷ ଭାଗ ନେଇ ବିଫଳ ମନୋରଥ ହୋଇଥିଲେ ମଧ୍ୟ ତାଙ୍କ ଆଦର୍ଶୋଚିତ ପ୍ରେରଣା ସମଗ୍ର ଜଗତ ଅନୁଧ୍ୟାନ କରୁ, ଏଥିଲାଗି ସେ ଧର୍ମ ଓ ନ୍ୟାୟର ଚିରନ୍ତନ ବିଜୟ ଡିଣ୍ଡିମ ବଜାଇବାରେ ମୁହୂର୍ତ୍ତିକ ଲାଗି ବିଚ୍ୟୁତ ହୋଇ ନାହାନ୍ତି । ମହାଭାରତ ଯୁଦ୍ଧରେ ଖାଉ ଧର୍ମର ମହତ୍ତ୍ୱ ସର୍ବାଧିକ ପରିଲକ୍ଷିତ ହୋଇଛି । ମହାରଥୀ ଭୀଷ୍ମଙ୍କଠାରେ କୌରବ ବାହିନୀର ସେନାଧି-ନାୟକ ରୂପେ ରଣକ୍ଷେତ୍ରରେ ଉପନୀତ ହୋଇ ଅର୍ଜୁନ ରଥରେ ସାରଥୀ ରୂପେ ବିରାଜମାନ ଭଗବାନ ଶ୍ରୀକୃଷ୍ଣଙ୍କୁ ଦେଖି ଭକ୍ତି, ଶ୍ରଦ୍ଧା, ପ୍ରେମବିହ୍ୱଳ ହୋଇ ଅନ୍ତରର ଭାବ ନୈବେଦ୍ୟ ଅର୍ପଣ କରିଅଛନ୍ତି । ନପୁଂସକ ଶିଖଣ୍ଡିକୁ ରଥରେ ସମାସୀନ ହେବାର ଲକ୍ଷ୍ୟକରି ସେ ଅସ୍ତ୍ରତ୍ୟାଗ କରିଅଛନ୍ତି । କାରଣ ନପୁଂସକକୁ ଆକ୍ରମଣ କରିବା ଏକାନ୍ତ ଅବଧେୟ ବୋଲି ନ୍ୟାୟନିଷ୍ଠ ଭାବରେ ଯଥାର୍ଥତଃ ଉପଲବ୍ଧି କରିଅଛନ୍ତି । ଅସ୍ତ୍ରତ୍ୟାଗ ଅବକାଶରେ ଅର୍ଜୁନଙ୍କ ତୀକ୍ଷ୍ଣ ଶରଗୁଡ଼ିକରେ ତାଙ୍କର ସମଗ୍ର ଶରୀର ବିଦ୍ଧ ହୋଇଛି । ତଥାପି ସେ ନ୍ୟାୟମାର୍ଗରେ ଅଟଳ ଏବଂ ଅସ୍ତ୍ର ଉତ୍ତୋଳନ କରିବାକୁ କ୍ଷୀଣ ପ୍ରୟାସ ମଧ୍ୟ କରି ନାହାନ୍ତି । ଅଟଳ ବ୍ରତର ପରାକାଷ୍ଠା ଆର୍ଯ୍ୟ ଭାରତରେ ଯେଉଁ ସ୍ତରରେ ଥିଲା ଏବଂ ମହାରଥୀ ଭୀଷ୍ମ ଏହାର କିପରି ଦେଦୀପ୍ୟମାନ ପ୍ରତୀକ ଥିଲେ, ଏଇସବୁ ଘଟଣାରୁ ସହଜେ ଅନୁମେୟ ।

ଶରଶଯ୍ୟାରେ ଭୀଷ୍ମ ପଣ୍ଡୁରାଜ୍ଞ ମହାରାଜ ଯୁଧିଷ୍ଠିରଙ୍କୁ ଯେଉଁ ଅମୃତବାଣୀ, ସତ୍ୟ, ସୁବିଚାର, ସଂଯତ ଜୀବନଯାପନ ଲାଗି ଯେଉଁ ମୂଲ୍ୟବାନ ଉପଦେଶଗୁଡ଼ିକ ଶୁଣାଇ ଅଛନ୍ତି, ତାହା କେବଳ

Digitized by srujan ka@gmail.com

ଯୁଧିଷ୍ଠିରଙ୍କ ଜୀବନ ଲାଗି ଅଭିପ୍ରେତ ନୁହେଁ; ତାହା ଯଥାର୍ଥ ଭାବରେ ଆର୍ଯ୍ୟ ସଂସ୍କାର ସଂରକ୍ଷଣ ଦିଗରେ ପ୍ରତ୍ୟେକ ଧର୍ମନିଷ୍ଠ, ମାତ୍ର ନିଷ୍ପୃହ ସଦାଚରଣଶୀଳ ବ୍ୟକ୍ତିଙ୍କ ଲାଗି ପ୍ରଯୁଜ୍ୟ ଏବଂ ତାହାର ପ୍ରଭାବରେ ପ୍ରଭାବିତ ହେଲେ ସମଗ୍ର ମନୁଷ୍ୟ ଜାତିର ସର୍ବାଙ୍ଗିନ ବିକାଶର ପନ୍ଥା ଯୁଗଏଁ ଯୁଗଏଁ ଉନ୍ମୁକ୍ତ ହୋଇଯିବ। ଏହି ବାଣୀ ଯଥାର୍ଥତଃ ଏକ ଚେତାବନୀ ଏବଂ ଜୀବନକୁ ନିଷ୍କଳୁଷ, ନିଷ୍କଳଙ୍କ ଓ ଶୁଦ୍ଧ ସଂସ୍କାରମୁଖୀ କରିବାଲାଗି ଏକ ଅନବଦ୍ୟ ପ୍ରେରଣା। ଏଥିରେ ରାଜନୀତି, ଧର୍ମନୀତି, କର୍ମନୀତି, ସମାଜନୀତି ଓ ଦୈନନ୍ଦିନ ବ୍ୟାବହାରିକ ପଦ୍ଧତିର ମୂଳମନ୍ତ୍ରଗୁଡ଼ିକ ନିହିତ ହୋଇଅଛି। ଏହି ପର୍ଯ୍ୟାୟରେ ସେହି ମହାପୁରୁଷ ଅଟଳ ପ୍ରତିଜ୍ଞ ସତ୍ୟନିଷ୍ଠ ମହାରଥୀ ଭୀଷ୍ମଙ୍କ ଅଭୟପ୍ରଦ ବାଣୀରୁ କିୟଦଂଶ ନିମ୍ନରେ ଉଦ୍ଧୃତ ହେଉଅଛି। ସେହି ମହନୀୟ ହିତୋପଦେଶ ଶୁଦ୍ଧ ସଂସ୍କାର ସଂଯତ ଜୀବନ ଗଠନଲାଗି ସର୍ବଦା ଓ ସର୍ବଥା ଆଦରଣୀୟ ଓ ଆଚରଣୀୟ ହେବା ବିଧେୟ। ଶରଶଯ୍ୟାଶାୟୀ ସେହି ମହାପୁରୁଷଙ୍କ କଣ୍ଠରୁ ନିଃସୃତ ହୋଇଛି—

## ପିତାମହ ଭୀଷ୍ମଙ୍କ ବାଣୀ

(ସଂଗ୍ରାହକ— ନିମାଇଁ ଚରଣ ଦାସ)

କୁଳବୃଦ୍ଧ ଆସିଲେ ଉଠି ନମସ୍କାର
କରୁଥିଲେ ଆଶିଷ ପାଉଥାଏ ନର।
ବୃଦ୍ଧଜନଙ୍କୁ ଟି ନ ଦେବ ପରାଭବ
ବସି କରି ତାହାଙ୍କ ଆଜ୍ଞା ନ କାଟିବ।
ପୂଜ୍ୟ ଲୋକଙ୍କୁ ଯେହୁ ପୂଜା ନ କରଇ
ନର୍କଗାମୀ ହୋଏ, ସନ୍ଦେହ ଏଥି ନାହିଁ।

Digitized by srujan ka@gmail.com

ବଡ଼ ଲୋକଙ୍କ ସଙ୍ଗେ ସଙ୍ଗୀ ହୋଇ
ତାହାଙ୍କ ଗୁପ୍ତ ଦାନ୍ତେ ନ କହିବ ଯାଇ ।
କହିଲେ ନକଟରେ ବାଟେ ବେଳେ ଖଣ୍ଡା
ଡାକଇ ଯମ ତାକୁ ଆସ ବୋଲି ଭେଣ୍ଡା ।
ତୁଲ୍ୟ ପରସ୍ତ୍ରୀ ଅପକାରୀଠାରେ
ସହସା ଶତ୍ରୁତା କଦାପି ନ ଆଚରେ ।
ବ୍ରାହ୍ମଣ, କ୍ଷତ୍ରିୟ, ସର୍ପକୁ ଦେଖି ସାନ
ନ କରିବ ମନରେ କେବେ ଅବମାନ ।
ନ କର ସ୍ୱଜନ ସଙ୍ଗେ ଦୁରୁଷ୍ଟାଚରଣ
ବର୍ଜନ କରିବ ନକୃଷ୍ଟର ଉପାସନ ।
ଦେଖାଇବ ନାହିଁ କାରେ ନିରର୍ଥକ ଭୟ
କପଟୀ ସହିତ ନ କରିବଟି ପ୍ରଣୟ ।
ଅନ୍ୟର ଦୋଷ ଅଥବା ଗୋପନ ରହସ୍ୟ
କରିବ ନାହିଁଟି କେବେ ଲୋକରେ ପ୍ରକାଶ ।
ମର୍ମପୀଡ଼ା କଥା କାହାକୁ ନ ବୋଲିବ
ହୀନ ଲୋକଙ୍କଠାରୁ ପଦାର୍ଥ ନ ଆଣିବ ।
ଲୋକର ମରମକୁ ବାଧିବ ଯେ କଥା
ତାହା କହି କା ପ୍ରାଣରେ ଦେବନାହିଁ ବ୍ୟଥା ।
ବଚନ-ସାୟକକୁ ଜଗିଥିବ ନିତ
କ୍ରୋଧ ହେଲେ ନ କଳାଇବ ତହିଁ ମତ ।
ବାଚନ ମନ ଜିହ୍ୱା ଉଦର ଉପସ୍ଥ
ଉଦ୍‌ବେଗ ଯେ ସହେ ସେ ଯାଏ ବ୍ରହ୍ମପଥ ।
କ୍ରୋଧ କରାଇଲେ ଯେ ହସି ତୁନି ହୋଏ
ତାର ସୁକୃତକୁ ସେ ବଳେ ଘେନିଯାଏ ।

Digitized by srujan ka@gmail.com

କ୍ରୋଧ ହେବାପ୍ରତି କି ଅକ୍ରୋଧନ ଲୋକ
ସକଳ ପ୍ରକାରେ ସେ ଅଟଇ ଅଧିକ ।
ଅକ୍ଷମାବନ୍ତ ଲୋକପ୍ରତି କ୍ଷମାବନ୍ତ
ଲୋକର ଧରମଟା ଅଟଇ ପବିତ୍ର ।
ନ ଜାଣିବା ଲୋକେ ନ ଦେବ ମୂର୍ଖେ ଗାଳି
ଯେବେ ଗାଳି ଦେବ ବସିବ ଯଣେ ଭାଳି ।
ଗାଳି ଦେଲେ ତାହାକୁ ପକାଇ ଦେହରେ
ନେଇଥିବ ରାଗ ନ କରି ହୃଦୟରେ ।
ଅପମାନ ପାଇଲେ ସୁଧାପାନ ପରି
ପଣ୍ଡିତ ସେ ହୋଇବ ରହିବ ବସୁରି ।
ପ୍ରତ୍ୟକ୍ଷେ ଅପ୍ରତ୍ୟକ୍ଷେ ବଚନ-ମନରେ
ପରନିନ୍ଦା ନ ବାଢ଼ିବ ହୃଦୟରେ ।
ସବୁ ପ୍ରାଣୀଙ୍କଠାରେ କରିବ ମୈତ୍ର ବୁଦ୍ଧି
ହେବାକୁ ମନ ଥିଲେ ଜଗତେ ପ୍ରସିଦ୍ଧି ।
ମର୍ଯ୍ୟାଦା ରଖିଥିଲେ ସବୁକଥା ଅଛି
ମର୍ଯ୍ୟାଦା ଗଲେ ଲୋକେ ବୋଲନ୍ତି ଛି,ଛି, ।
ଏକ କାର୍ଯ୍ୟେ ଦୁଇ ତିନି ମାଲିକ ହେଲେ
ସେ କାର୍ଯ୍ୟ ନାଶଯାଏ ବିରୋଧ ଘଟିଲେ ।
ଲୋଭୀ ଲୋକ, ରାଜନ ନ ରଖିବ ପାଶେ
ରଖିଲେ ସେହି ଯେମନ୍ତ ପଡ଼େ କାଳଫାଶେ ।
ଆସ୍ଥିରବନ୍ତ ଲୋକ ଆୟୁ, ଶ୍ରୀ, କୀର୍ତ୍ତି,
ତିନିଟିକୁ ବିଖ୍ୟାତ କରଇ ଏ କ୍ଷିତି ।
ଦୁରସ୍ଥିର ହେଲେ ଏ ତିନି କଥା ନାଶ
କରି ନିକଟରେ ଲଭଇ ଯମ ବାସ ।

Digitized by srujan ka@gmail.com

ସୂର୍ଯ୍ୟଙ୍କର ଉଦୟ ଅସ୍ତକୁ ଚାହିଁଲେ
ଆୟୁଷହୀନ ହୋଇଯାଏ ଜାଣ ଭଲେ ।
ବୃହସ୍ପତି ବୋଇଲେ ସୂର୍ଯ୍ୟଙ୍କୁ ଅନାଇଁ
ଛାଡ଼େ ଯେ ମଳମୂତ୍ର ମହାପାପୀ ସେହି ।
ସୂର୍ଯ୍ୟ, ଗାଈ, ଅଗ୍ନିକି ଚାହିଁ ଯେ ମୂତଇ
ଅଳପକେ ଯାଇ ଯମକୁ ସେ ଭେଟଇ ।
ଦିବସରେ ଉତ୍ତର, ରାତିରେ ଦକ୍ଷିଣ
ଆଡ଼କୁ ଚାହିଁ କର ମୂତବଟି ଜାଣ ।
ମୂତ୍ର ପୁରୀଷକୁ ପାଣିରେ ଯେ ଛାଡ଼ଇ
ଆୟୁଷ ଶ୍ରୀର ଦୁଇକଥା ସେ ନାଶଇ ।
ପୂର୍ବ ଦକ୍ଷିଣ ଦିଗେ କରଣ ମସ୍ତକ
ଶୋଇଥିବ ମିତ ହେ ଅବମା ନାୟକ ।
ଭଜନ୍ତ ଖଟରେ ଶୋଇଲେ ଧନଯାଏ
ଯାହା ଘରେ ଥାଏ ତାହା ବନ୍ଧନଏ ଘୟେ ।
ସ୍ନାନ କଲ୍ ଲୁଗା ଚପୁଡ଼ ଝାଡ଼ ଦେଇ
ଘୋଡ଼ ନୋହିବ ହେ ପାଣ୍ଡବ ନରସାଇଁ ।
ନଚ୍ୟରେ ଓଦା ଲୁଗା ପିନ୍ଧେ ଯେଉଁ ନର
ଦୋଷ ଘେନ ଆୟୁଷ ହୀନ ହୁଏ ତାର ।
ଓଦା ଗୋଡ଼େ ଭୁଞ୍ଜିବ ଓଦା ଗୋଡ଼ଟିରେ
ଶୋଇଲବେଳେ ଦୋଷଥାଏ ଏ ମହୀରେ ।
ଆର୍ଦ୍ର ପାଦ ହୋଇଣ ଭୁଞ୍ଜଇ ଯେଉଁନର
ଶହେ ବରଷଟି ଆୟୁ ବଢ଼ଇ ତାହାର ।
ଭଙ୍ଗିଯିବା ପାତ୍ରେ ଖାଇଲେ ନିତ ଦ୍ୱନ୍ଦ୍ୱ
ଜାତ ହୋଇ ଉପୁଜେ ତହୁଁ ମହା ମନ୍ଦ ।

Digitized by srujan ka@gmail.com

ଅନ୍ତଥି ଯାହାଘରୁ ଆଣାହୀନ ହୋଇ
ଯାଏ ତାହାର ପୁଣ୍ୟ କେବେହେଁ ନୁହଁଇ ।
ଭୋଜନ କଲାବେଳେ ଶିର ନ ଛୁଇଁବ
ଛୁଇବ ଯେବେ ଆୟୁ ଉଣା ହୋଇଯିବ ।
ହାତରେ ଲୁଣ ଧରି ଭୋଜନ ଯେ କରେ
ତାକୁ ଜାଣିବ ସେ ମରିବ ନରକରେ ।
ଛତୁଆ ଦହି ରାତ୍ରେ କେଭେ ନ ଖାଇବ
ପାତ୍ରଟିରେ ପୂରାଇ କାଲକୁ ରଖିବ ।
କାମନା କରି ପଶୁ ମାରଇ ଯେ ନର
ଅଳପ ସୁଖ ପାଇଁ ନର୍କେ ଜରେ ଘର ।
ସୁରା, ମାଛ, ମଦୁ, ଖେଚଡ଼ି, ମାଂସ
ଦୁଷ୍ଟ ଲୋକଙ୍କ ସକାଶୁ ହୋଇଛୁ ପ୍ରକାଶ ।
ମଦିରା ପାନ ଜୁଆ ମୈଥୁନ ବେଶ୍ଯା
ଯେ ଜଣି ଅଛୁ ତାର ଧରମଟି ଆଣ୍ଡ ।
ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର ଶୁମାନଙ୍କି ଉଚ୍ଛିଷ୍ଟ
ଭ୍ରଷ୍ଟ ହୋଇ ରହିଁଲେ ହୁଅଇ ଆୟୁ ନଷ୍ଟ ।
ଚୌର ହୋଇ ଯେ ଜନ ନ କରଇ ସ୍ନାନ
ଆୟୁଷ ହୀନ ତାର ନଶ୍ଚେ ହୁଏ ଜାଣ ।
ଏକା ହୋଇଣ ରାତ୍ର ଦ୍ୱବସରେ ବାଟ
ଯେ ଚାଲଇ ତାହାକୁ ପଡ଼ଇ ସଙ୍କଟ ।
ଲଙ୍ଗଳା ହୋଇକରି ଜଳ ମଧ୍ୟେ ପଶି
ସ୍ନାନ ନ କରିବ ଏକାନ୍ତରେ ବସି ।
ସତ୍କୁଳର ଜାତ ଲକ୍ଷଣ ଯୁକ୍ତା କନ୍ୟା
ବିବାହ ହେବ ସଜନ ମହାମନା ।

Digitized by srujan ka@gmail.com

କାଣୀ, ଛୋଟି, କୁଜୀ ଯେ କନ୍ୟାକୁ ଛାଡ଼ିବ
ସୁନ୍ଦର ଦେହବା କନ୍ୟା ଲୋଡ଼ା ବଭା ହେବ ।
ଅପସ୍ମାର ରୋଗୀର ଘରର କନ୍ୟାକୁ
ଆଣି ବଭା ହେଲେ ଲଭଇ ସେ ରୋଗକୁ ।
ଋତୁରେ ଯେ ଭାର୍ଯ୍ୟା ସମ୍ଭୋଗକୁ କରେ
ଦୁର୍ଗତି ବାଧି ନ ପାରଇ ତାକୁ ଥରେ ।
ପତ୍ନୀ ରଜସ୍ୱଳା ହୋଇଲେ ଦିନ ସାତ
ତ୍ୟାଗ ତାକୁ କରିବ ଧର୍ମକୁ ବିଚାରି ।
ଚତୁର୍ଥ ଦିବସରେ ରାତ୍ରିରେ ସଂଗମ
କଲେ ଦୋଷ ନାହିଁ ହେ ନୃପତି ଉତ୍ତମ ।
ଅମାବାସ୍ୟା, ପୂର୍ଣ୍ଣିମା, ଅଷ୍ଟମୀ, ଚତୁର୍ଦ୍ଦଶୀ
ଏଥେ ନ ବସିବ ନାରୀ ରତେ ବସି ।
ଶ୍ରାଦ୍ଧ ଦ୍ୱିଦଶ୍ରାଦ୍ଧ-କରତା ରତି କଲେ,
ଏ ରେତ ପିତୃ ମୁଖେ ପ୍ରାପତ ହୁଏ ଭଲେ ।
ଉଲଗ୍ନ ହୋଇ ରାତ୍ରି ଧରଣ ନାରୀ
ନ ଶୋଇବ କେବେହେଁ ହୋଇ କାମ ମନା ।
ପରସ୍ତ୍ରୀ-ହରତ ବ୍ରହ୍ମସ୍ୱ ହରଣ
ବନ୍ଧ୍ୟା ସ୍ତ୍ରୀ ମୈଥୁନ ସମାନ ଦୋଷ ଜାଣ ।
ପରନାରୀ ସଙ୍ଗେ ଯେ କରଇ ସୁରତି
ବହୁ କଷ୍ଟ ତାହାକୁ ଦିଅଇ ଜଗୁପତି ।
ପରସ୍ତ୍ରୀଠାକୁ ଗମନ ଯେହୁ କରେ
ବରଷ ଶତ ଆୟୁ ଦିନେକ ସେ ସାରେ ।
ଶାସ୍ତ୍ର ଲେଖିଅଛୁ ଗୃହସ୍ଥ ଭାର୍ଯ୍ୟାର
ସବୁବେଳେ ଅଟଇ କୃତାର୍ଥ ଦୁଆର ।

Digitized by srujan ka@gmail.com

ଗୃହୀ ଲୋକ ଘର-ଭରସା-ହୀନ ହେଲେ
ଶୂନ୍ୟ ତାହାକୁ କହିଥାନ୍ତି ଲୋକେ ଭଲେ ।
ଗୃହିଣୀ ବିନା ଗୃହମାନଙ୍କର ଘର
ବନ ଅଟଇଟି ଗୃହିଣୀ ବିନା ଘର ।
ଧର୍ମ ଅର୍ଥ କାମରେ ଭରସା ସହାୟ
ନୋହିଲେ ପୁରୁଷର ନୋହେ ସେ ଉଦୟ ।
ଅସହା ହୋଇଥିଲେ ନାଶ ହୋଏ ସାହା
ତାରଇ କହିଛନ୍ତି ସବୁ ଋଷି ନାହା ।
ରୋଗ ହେଲେ ଭରସା ଅଟଇ ଔଷଧ
ବୋଲି କହି ଅଛନ୍ତି ବସିଣ ବିବୁଧ ।
ଭରସା ସମବନ୍ଧୁ ଭରସା ସମଗତି
ଭରସା ସମ ଧନ ନାହିଁ ହେ ଜଗତି ।
ଗୃହ ସ୍ନେହ-ରଜ୍ଜୁରେ ବନ୍ଧ ହେଲେ ନର
ଜାଣ ତାକୁ ଭରସା କରେଟି ଆହାର ।
ଯେଉଁରୂପେ କଙ୍କଡ଼ା ପ୍ରସବି ପିଲାକୁ
ମରଇ ସେହିରୂପେ ଲଭେ ମରଣକୁ ।
କୁଭରସାଠାରେ ଯେ ପ୍ରୀତି ନ ରହଇ
କୁପୁତ୍ରକୁ ସ୍ନେହ କରିଲେ କାର୍ଯ୍ୟ ନାହିଁ ।
ଯେଉଁ ସ୍ତ୍ରୀଠାରେ ଗୃହସ୍ଥ ନୋହେ ତୋଷୀ
ଘରେ ଥିଲେ ଜାଣ ସେ ନରକରେ ବାସୀ ।
ଉଦୟ ସୂର୍ଯ୍ୟ ବସ୍ତ୍ର ନ ଥିବା ନଗ୍ନା
ଅଙ୍ଗେ ନ ଲାଗିବ ଯେ ହେବ ମହାମନା ।
ସ୍ତ୍ରୀମାନଙ୍କର ବଚନକୁ କାନରେ
ନ ଶୁଣିବ ନ ଲାଗିବଟି ନୟନରେ ।

Digitized by srujan ka@gmail.com

ମୁନିଙ୍କି ବୁଝିଲେ ତ କାମ ହୋଏ ଗୋଟି
ଏଥିକ ସବୁବେଳେ ଦେଇଥିବ ଦୃଷ୍ଟି ।
ଦୁଧରୁ ଯେଉଁ ରୂପେ ଘିଅ ଜନ୍ମଇ ।
ସେ ରୂପେ କାମ ହେବ ଶୁଦ୍ଧ ଜନମଇ ॥
ଶାସ୍ତ୍ର ତ ଲେଖିଅଛି ପାପୀର ଚରଣ ।
କରିଲେ ସାତଜନ୍ମ ପୁଣ୍ୟଯାଏ ନାଶ ॥
ପାପକାରୀ ଲୋକ ସଙ୍ଗତେ ନ ଭୁଞ୍ଜିବ ।
ଏ ବାହାରେ ତାହାକୁ ବନ୍ଧୁ ନ କରିବ ॥
ପାପୀ ଲୋକ ସଙ୍ଗେ ବର୍ଷେ କଲେ ସଙ୍ଗ ।
କରାଏ ଦେହଟିକୁ ନରକକୁ ଭୋଗ ॥
ପାପୀ ଲୋକମାନଙ୍କ ଇହ ପର ଦୁଇ ।
ସ୍ଥାନରେ ସୁଖ ଅଛି ଶାସ୍ତ୍ର କହୁ ନାହିଁ ॥
ପାରି ନୋହିଁ ଯିବା ଜଳରେ ନ ପଶିବ ॥
ନଦୀ ପହଁରିବା କଥାଟି ଛାଡ଼ିବ ॥
ଶ୍ରେଷ୍ଠ ବଇରକୁ କେବେହେଁ ନ କରିବା
ଗାଈ ପାଣିକି ପିଉଥିବା ଅଡ଼ାଇଲେ ।
ସହସ୍ରେ ବ୍ରାହ୍ମଣ ହତ୍ୟା ଫଳ ହୋଏ ଭଲେ ॥
ଅନ୍ନ, ଗ୍ଲେଟା ଜଡ଼ ପଦାର୍ଥ ଯେତୁ ଖାଏ ।
ବସିଲାଠାରେ ବସ୍ତ୍ରେ ବ୍ରହ୍ମହତ୍ୟା ପାଏ ॥
ଘର ଅରଣ୍ୟ ଗ୍ରାମ ପୁରରେ ଯେ ନିଆଁ ।
ଲଗାଏ, ତା ଦେହେ ବ୍ରହ୍ମହତ୍ୟା ଥୁଆ ॥
ଭୀଷ୍ମ ବୋଇଲେ ଅହେ କଣ୍ଡା, ଅଗ୍ନି, ବିଷ ।
କରାଏ ନୃଶଂସକୁ ଛାଡ଼ନ୍ତି ନରେଶ ॥

Digitized by srujan ka@gmail.com

ଖ୍ରୀଷ୍ଟ କହିଲେ ହେ ଆପଦକାଳେ ଯାହା — ।
କର୍ତ୍ତବ୍ୟ କରୁଅଛୁ ଶୁଣ ଏବେ ତାହା ॥
କାର୍ଯ୍ୟେ ବଳ ଜାଣି ଅମିତ୍ର ହୁଏ ମିତ୍ର ।
ମିତ୍ର ଯେ ସେହି ରୂପେ ଅଟଇ ଅମିତ୍ର ॥
ବିପତ୍ତି ଯେଉଁ କାଳେ ପଡ଼ିବ ଲୋକଙ୍କୁ ।
ନ ବିଚାରି ଶ୍ରଦ୍ଧା କରିବ ଅମିତ୍ରକୁ ॥
ଅମିତ୍ରରେ ପ୍ରୀତି ନ କଲେ ବିପତ୍ତିରେ ।
ରହି ନ ପାରେ ସେହୁ ଜାଣ ସମ୍ପତ୍ତିରେ ॥
ଅବିଶ୍ୱସ୍ତ ଲୋକେ ବିଶ୍ୱାସ ନ କରିବ ।
ବିଶ୍ୱସ୍ତଠେ ଅତି ବିଶ୍ୱାସ ନ କରିବ ॥
ବିଶ୍ୱାସୀକୁ ଅତି ବିଶ୍ୱାସ ଯେବେ କରି ।
କାଳର ଭୟ ପ୍ରାୟେ, ଥିବ ତାକୁ ଡରି ।
ଋଣ-ଶେଷ, ବଇରି-ଶେଷ, ଅଗ୍ନି-ଶେଷ,
ଥିଲେ ବଢ଼ି କରନ୍ତି କରଇ ବିନାଶ ॥
ଯେଉଁ ଦେଶରେ ବ୍ୟାଧି, ଦୁର୍ଭିକ୍ଷ ପଡ଼ିବ ।
ସେ ଦେଶରେ ଜାଣିବା ଲୋକ ନ ରହିବ ॥
କୁପୁତ୍ର, କୁଭାରଜା, କୁରାଜା, କୁମିତ୍ର
ଛାଡ଼ିବ ଲେଖିଛି ଯେ ହେବ ପ୍ରାଜ୍ଞଲୋକ ।
କର୍ମଭୂମି ଜାଣ ଅଟଇ ମର୍ତ୍ତ୍ୟପୁରୀ ।
ଏଥିରେ କର୍ମ କଲେ ହୋଏ ସ୍ୱର୍ଗଗାମୀ ॥
ବାଳକଠାରୁ ବୃଦ୍ଧ ଅବସ୍ଥା ପର୍ଯ୍ୟନ୍ତେ ।
ଧରମ କରୁଥିବ ବସିଣ ନିରତେ ।
ଧର୍ମ ବିହୀନେ ଯେଉଁ ନରଟି ହୁଅଇ ।
ଅଗାଡ଼ି ଧାନପରି ଅଟେ ଜାଣ ସେହି ।

Digitized by srujan ka@gmail.com

ଧରମ ଥିଲା ଲୋକ ଇହ ପର ଦୁଇ
ଜାଣ ଆହେ ରାଜନ ଅଲଭ୍ୟେ ଜଣଇ ॥
ଧର୍ମରେ କୁଶଳଟି ଅଟେ ଯେଉଁ ନର ।
ପୂଜନ୍ତି ତାହାଙ୍କୁ ଦେଖିଲେ ପୁରନ୍ଦର ॥
ଧର୍ମବନ୍ତ ଲୋକଙ୍କୁ ମିତ୍ର ଧନ ଦୁଇ ।
କେବେ ନ ଛାଡ଼ନ୍ତି ପାଣ୍ଡବ ନରସାଇଁ ।
ସ୍ୱର୍ଗ ନରକକୁ କେ ନୟନେ ଦେଖିନାହିଁ ॥
କରୁଥିବ ଧରମ ଶାସ୍ତ୍ରକୁ ଅନାଇ ।
ଧର୍ମ, ଅର୍ଥ ଦୁହେଁ ଅମୃତ, ମଧୁପର
ଏହା କହି ଅଛନ୍ତି ପଣ୍ଡିତେ ବରବର ।
ଧର୍ମ, ଅର୍ଥ, କାମକୁ ସମାନ ଆଦର
କରିଥିବା ଲୋକ ଲୋକେ ହୁଏ ବର ।
ଏ ଜୀବନ ତ ନିତ୍ୟ ନୁହଇ କାହାର
ପରଲୋକ ଉଚିତ କରନ୍ତି ଆଚର ।
ଆରଜନ୍ମ କର୍ମ ଏ ଜନ୍ମେ ଭୋଗ କରେ
ତୃଷ୍ଣା ସେ ନିନ୍ଦା ଦେଉଥାଇ ଦଇବରେ ।
ଭୋଗ କରିବାକୁ ସବୁରି ଇଛା ଥାଏ
ବିଧାତା ଯା କରୁଥାଏ ତାହା ହେଉଥାଏ ।
ଭାର୍ଯ୍ୟା ପୁଅ ବାନ୍ଧବ ବାଟ-ସାଥୀ ପରି
ଥାଆନ୍ତି ଆଶ୍ରେ କରି ଜାଣ ହେ ଦଣ୍ଡଧାରୀ ।
ଅନ୍ତଃକାଳରେ କେହି ନୁହଁନ୍ତି କାହାର ।
ସେ କାଳେ ସାଥି ଏକା ସୁକୃତ ମନେକର ।
ନଦୀ ପ୍ରବାହରେ ଏକଠା କାଠି କୁଟା
ହୋଇ କ୍ଷଣକରେ ହୁଅଇ ପୁଣି ଫିଟା ।

Digitized by srujan ka@gmail.com

ସେହିପରି ରୂପରେ ପୁତ୍ର ଭାର୍ଯ୍ୟା ସଙ୍ଗମ
କ୍ଷଣକେ ବ୍ୟର୍ଥ ହୋଇଯାଏ ନରୋତ୍ତମ ।
ସ୍ନେହ-ପାଶବନ୍ଧନ ବାଲି ବନ୍ଧ ପ୍ରାୟେ
କାଳସ୍ରୋତ ମୁଖରେ କ୍ଷଣେ ଭାସିଯାଏ ।
ସ୍ତିର ପୁତ୍ର କୁଟୁମ୍ବ ଆସକ୍ତିରୁ ନରେ
ନିମଜ୍ଜିତ ଦୁରନ୍ତ ଶୋକ ସାଗରରେ ।
ମୋହାବିଷ୍ଟ ହୋଇ ସନ୍ତାନ, ଭାର୍ଯ୍ୟା, ଧନ
ଆପଣାର କରୁଥାନ୍ତି ଯେ ଯେତେଜନ ।
ମୃତ୍ୟୁ ତାହା ଦେଖିଣ ହସିଦେଇ ପାଛି
ମେଳ ଆଗ ତାଙ୍କ ପ୍ରାଣକୁ କରେ ଲୁଟି ।
ଜନମ ମରଣକୁ ନ କରିବ ଚିନ୍ତା
ଭୂମିରେ ଜନ୍ମ ହେଲେ ମରନ୍ତି ଦେବତା ।
ଏଥି ସକାଶୁଁ ଜାଣ ଛାଡ଼ ସବୁ କଥା
ଚିନ୍ତାକର ବ୍ରହ୍ମ ଫେଡ଼ିବେ ମନ ବ୍ୟଥା ।

—ଶାନ୍ତିପର୍ବ-ମହାଭାରତ—

———

Digitized by srujan ka@gmail.com

# ଭଗବାନ ଦତ୍ତାତ୍ରେୟ

ଶ୍ରୀ ହୃଦାନନ୍ଦ ରାୟ
ଦର୍ଶନ ଅଧ୍ୟାପକ (ଅବସର) ବି. ଜେ. ବି. ମହାବିଦ୍ୟାଳୟ,
ଭୁବନେଶ୍ୱର

ତପୋନିଧି ଅତ୍ରିଙ୍କ ତପସ୍ୟାରେ ତୁଷ୍ଟ ହୋଇ ମହେଶ୍ୱର ନିଜକୁ ଅତ୍ରିଙ୍କ ପୁତ୍ରରୂପେ ଦତ୍ତ କରି ଦେଇଥିଲେ । ସେହି ଅବତାରରେ ତାଙ୍କ ନାମ ହେଲା ଦତ୍ତାତ୍ରେୟ । ମହର୍ଷି ଅତ୍ରିଙ୍କ ଧର୍ମପତ୍ନୀ ହେଉଛନ୍ତି ପୁରାଣ ପ୍ରସିଦ୍ଧା ମହାସତୀ ଅନସୂୟା । ଦେବ-କାର୍ଯ୍ୟରେ ବିଶେଷ ସହାୟତା କରିଥିବାରୁ ମହାସତୀ ଅନସୂୟାଙ୍କୁ ଦେବତାମାନେ ବର ପ୍ରାର୍ଥନା କରିବାକୁ କହିଲେ । ପରମେଶ୍ୱରଙ୍କୁ ପୁତ୍ରରୂପେ ପାଇବାଲାଗି ଲୋକମାତା ଅନସୂୟା ଏକାନ୍ତ ଅନୁରାଗିଣୀ ହେଲେ । ତ୍ରୈଲୋକ୍ୟ ହିତ ନିମିତ୍ତ ମହର୍ଷି ଅତ୍ରି ଓ ମହାସତୀ ଅନସୂୟାଙ୍କ କୋଳରେ ଦେବଦୁର୍ଲ୍ଲଭ ବିଭୂତି ଯେପରି ଆବିର୍ଭୂତ ହେଲେ ଭଗବାନ ଦତ୍ତାତ୍ରେୟ ।

ପୁରାଣରେ କଥିତ ଅଛି, ସାବିତ୍ରୀ, ଲକ୍ଷ୍ମୀ ଓ ଉମାଙ୍କ ନିର୍ଦ୍ଦେଶରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଏକଦା ଅତ୍ରି ମୁନିଙ୍କ ତପୋବନରେ ଉପସ୍ଥିତ ହୋଇ ମହାସତୀ ଅନସୂୟାଙ୍କ ସତୀତ୍ୱର

Digitized by srujan ka@gmail.com

ଶକ୍ତି ପରୀକ୍ଷା କରୁଥିଲେ । ଫଳରେ ଏହି ତିନି ଦେବତା ଅନସୂୟାଙ୍କ ଶିଶୁପୁତ୍ର ରୂପେ ଜାତ ହୋଇ ଭୁବନ ଜନନୀ ଅନସୂୟାଙ୍କୁ ମାତାରୂପେ ସ୍ୱୀକାର କରି କୃତାର୍ଥ ହୋଇଥିଲେ । ବ୍ରହ୍ମା ସୋମ ରୂପେ; ଶିବ ଦୁର୍ବାସା ରୂପେ ଓ ବିଷ୍ଣୁ ଦତ୍ତାତ୍ରେୟ ରୂପେ ମାତା ଅନସୂୟାଙ୍କ କୋଳମଣ୍ଡନ କଲେ । ଦତ୍ତାତ୍ରେୟଙ୍କ ବିଗ୍ରହରେ ବ୍ରହ୍ମା, ବିଷ୍ଣୁ, ଶିବଙ୍କ ମିଳିତ ବିଭୂ-ବିଭୂତି ବିକଶିତ ହେଲା । ତେଣୁ ଦତ୍ତାତ୍ରେୟ ହେଉଛନ୍ତି ତ୍ରିମୂର୍ତ୍ତିଙ୍କ ସମନ୍ୱୟାତ୍ମକ ଅଦ୍ୱୈତ ବିଗ୍ରହ । "ଈଶ୍ୱରାନୁଗ୍ରହ" ରୂପୀ "ମହାକରୁଣା"ର ସ୍ୱୟଂ ସ୍ଫୁର୍ତ୍ତି ଦିବ୍ୟ ମୂର୍ତ୍ତି । ସେ 'ଅର୍ଜ୍ଜିତ' ନୁହନ୍ତି; ସେ 'ଦତ୍ତ' । ଅପାର କରୁଣାରେ ଭଗବାନ ନିଜେ ବିଗଳିତ ହୋଇ ନିଶ୍ଚିର ଅର୍ଜ୍ଜନ ସାମର୍ଥ୍ୟର ବହୁ ଊର୍ଦ୍ଧ୍ୱରୁ ଅବତରଣ କରିଆସିଛନ୍ତି ବିଶ୍ୱ କୋଳକୁ । ଅଭାଗ୍ୟକୁ ଭାଗ୍ୟ ଦେଇ, କରୁଣାର ଅମଳ ମହାକାଶ ନିଜ ଶ୍ରଦ୍ଧା ସୃଷ୍ଟି କରି ଅବତୀର୍ଣ୍ଣ ହୋଇଛନ୍ତି ପୃଥିବୀରେ; ମହର୍ଷି ଅତ୍ରି ଓ ମହାସତୀ ଅନସୂୟା ହେଲେ ସେ ଅବତରଣର ପରିପୂର୍ଣ୍ଣ ପରିଶୁଦ୍ଧ ଆଧାର ।

ସୃଷ୍ଟି, ସ୍ଥିତି, ପ୍ରଳୟ ତଥା ସର୍ଜ୍ଜନ, ପାଳନ ଓ ସଂହାରର ଅଧିଷ୍ଠାତ୍ରୀ ଦେବତା ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କ ଅଦ୍ୱୈତ, ଅଭିନ୍ନ ମୂର୍ତ୍ତି ଦତ୍ତାତ୍ରେୟ ହେଉଛନ୍ତି : ତ୍ରିବଦନ, ଷଡ଼ଭୁଜ, ଜଟାଜୁଟ ମନୋହର, ଇନ୍ଦ୍ରନୀଳ ସମପ୍ରଭ, ଶାନ୍ତ ଶ୍ୟାମଳ ସୁନ୍ଦର, ଭସ୍ମ ଧୂଳିତ ସର୍ବାଙ୍ଗମ୍ ଉଦାରଙ୍କ ଅବଧୂତ ବେଶ । ଷଡ଼ଭୁଜ ଦତ୍ତାତ୍ରେୟ ଭଗବାନଙ୍କ ଦକ୍ଷ ତ୍ରିଭୁଜରେ ତ୍ରିଶୂଳ, ଅକ୍ଷମାଳା ଓ ଗଦା; ବାମ ତ୍ରିଭୁଜରେ ଚକ୍ର, ଶଙ୍ଖ ଓ କମଣ୍ଡଳୁ । ଗଦା ଓ ଅକ୍ଷମାଳା, ବ୍ରହ୍ମାଙ୍କର ସନ୍ତକ । ଚକ୍ର ଓ ଶଙ୍ଖ ବିଷ୍ଣୁଙ୍କର ଏବଂ ତ୍ରିଶୂଳ ଓ କମଣ୍ଡଳୁ ଶିବଙ୍କର ସନ୍ତକ । ପରମ ଭଗବାନ ଦତ୍ତାତ୍ରେୟ ଏକାଧାରରେ ତ୍ରୟୀ ରୂପ । ସେ ଏକ ହୋଇ ତିନି ଓ ତିନି ହୋଇ ଏକ ।

Digitized by srujan ka@gmail.com

"ଏକ ଏବ ତ୍ରିଧା ମୂର୍ତ୍ତ।" ତାଙ୍କ ପାର୍ଶ୍ୱଦେଶରେ ଚାରିଗୋଟି ଶ୍ୱାନ (ମୂର୍ତ୍ତିବନ୍ତ ବେଦଶକ୍ତି) ଆଲମ୍ବିତ ହୋଇ ରହିଅଛନ୍ତି। ସେ ବରଦ, କୃପାଳୁ, ନିତ୍ୟ, ସତ୍ୟ ଓ ପରମ ଗୁରୁ।

ଦତ୍ତାତ୍ରେୟଙ୍କୁ ବର ପ୍ରାର୍ଥନା କରି କାର୍ତ୍ତବୀର୍ଯ୍ୟାର୍ଜ୍ଜୁନର ଦୁଇ ବାହୁ ମହାବଳବାହୀ ସହସ୍ର ବାହୁରେ ପରିଣତ ହେଲା। ସେତେବେଳେ ସେହି ବାହୁମାନେ କ୍ଷମତା-ମତ୍ତ ହୋଇ ବିଶ୍ୱର ଅହିତର କାରଣ ହେଲେ, ଭୃଗୁ ନନ୍ଦନ ପର୍ଶୁରାମ ଘୋର ତପଃବଳରେ ପରମ ଗୁରୁ ଦତ୍ତାତ୍ରେୟଙ୍କୁ ସନ୍ତୁଷ୍ଟ କରି ସେହି ଭୁଜବଳର କରାଳ କୁଠାର ରୂପେ ହୃଦୟ ହେଲେ।

ମାର୍ଗଶୀର ମାସ ଶୁକ୍ଳ ଚତୁର୍ଦ୍ଦଶୀ ବୁଧବାର ହେଉଛି ଦତ୍ତାତ୍ରେୟଙ୍କ ଆବିର୍ଭାବ ତିଥି। ଭଗବତ୍ ଗୀତା ମୁଖରେ ଭଗବାନ ଯଥାର୍ଥରେ କହିଛନ୍ତି 'ମାସମାନଙ୍କ ମଧ୍ୟରେ ମୁଁ ହେଉଛି ମାର୍ଗଶୀର", ଦତ୍ତାତ୍ରେୟଙ୍କ ଜନ୍ମମାସ।

'ଅବଧୂତ ଗୀତା' ଓ 'ଜୀବନ୍ମୁକ୍ତ ଗୀତା' ଦ୍ୱୟରେ ଭଗବାନ ଦତ୍ତାତ୍ରେୟଙ୍କ ଅଦ୍ୱୈତାମୃତ ବର୍ଷିଣୀ, ସମନ୍ୱୟ ସାଧନା ସର୍ବ ସହଣୀକ ଦୃଷ୍ଟିର ଦାର୍ଶନିକ ସନ୍ଦେଶ ସଞ୍ଚିତ ହୋଇ ରହିଅଛି। ତ୍ରିପୁର ରହସ୍ୟ, ଶିବ ରହସ୍ୟ, ଦେବୀ ଭାଗବତ ଦତ୍ତାତ୍ରେୟଙ୍କର କୃତି ବୋଲି ଲୋକ ପ୍ରସିଦ୍ଧି ଅଛି। ଏବେ ମଧ୍ୟ ପରମ ଗୁରୁ, ପରମ ତତ୍ତ୍ୱ ଦତ୍ତାତ୍ରେୟଙ୍କୁ ଆରାଧନା କରି ବହୁ ସାଧକଙ୍କ ଆଧ୍ୟାତ୍ମିକ ଜୀବନ ଫଳବନ୍ତ ହେଉଅଛି। ଅବଧୂତ ପରମ୍ପରାର ଆଦ୍ୟ ଆଚାର୍ଯ୍ୟ ଓ ଅବତାର ହେଉଛନ୍ତି ଦତ୍ତାତ୍ରେୟ।

Digitized by srujan ka@gmail.com

## ଭଗବାନ ଦତ୍ତାତ୍ରେୟଙ୍କ ବାଣୀ

ବୈରାଗ୍ୟ ଓ ତିତିକ୍ଷା ମନୁଷ୍ୟକୁ ମହାବଳ କରେ । ସର୍ବଭୂତରେ ସମଭାବରେ ସର୍ବଦା ବିରାଜମାନ ଅଦ୍ୱୈତ ପରଂବ୍ରହ୍ମ ହିଁ ଏକମାତ୍ର ସତ୍ୟ । ଏହି ତତ୍ତ୍ୱକୁ ପ୍ରତ୍ୟକ୍ଷୀଭୂତ କରୁଥିବା ବ୍ୟକ୍ତି ଯୋଗୀ ନୁହେଁ କି ଭୋଗୀ ନୁହେଁ । ସେ ସର୍ବ ବନ୍ଧନରୁ ନିତ୍ୟମୁକ୍ତ । ସେ ସହଜ ଶାନ୍ତ ଶୀତଳ ଜୀବନର ସ୍ୱାଦୁ ପାଇଛି । ସମସ୍ତେ ଏ ଜୀବନର ସ୍ୱାଦୁ ପାଇବାକୁ ଅଧିକାରୀ । ଏହା ହିଁ ଜୀବନର ସ୍ୱରୂପ । ଯେ ଉପାୟ ଓ ମାର୍ଗ, ସେ ହିଁ ଉପେୟ ଓ ଲକ୍ଷ୍ୟ ସ୍ଥଳ । ଯେ ସାଧନା, ସେ ହିଁ ସିଦ୍ଧି । ସର୍ବତ୍ର ବ୍ରହ୍ମମୟ; ସର୍ବତ୍ର ସଚ୍ଚିଦାନନ୍ଦଙ୍କ ଅବାରିତ ସ୍ଫୂର୍ତ୍ତି । ସେ ହିଁ ଧ୍ୟେୟ, ସେ ହିଁ ଜ୍ଞେୟ, ସେ ହିଁ ସାଧ୍ୟ, ସାଧନା ଓ ସିଦ୍ଧି ।

ଆଧାରିତ ଗ୍ରନ୍ଥ :—


୧ । ମାର୍କଣ୍ଡେୟ ପୁରାଣ,

୨ । ଦତ୍ତାତ୍ରେୟ, ମହୀଶୂର ମହାରାଜା କେ. ସି: ଓ୍ୱାଡ଼ିୟର ବାହାଦୁର

୩ । ସମ୍ପର୍କିତ ଅଭିଧାନ ଇତ୍ୟାଦି ।


———

Digitized by srujan ka@gmail.com

# ଯାଜ୍ଞବଲ୍‌କ୍ୟ

ଅଧ୍ୟାପକ ଡକ୍‌ଟର ଗୋପାଳଚନ୍ଦ୍ର ମିଶ୍ର

ଯାଜ୍ଞବଲ୍‌କ୍ୟ ସଂହିତାକାର ଋଷି ଓ ବ୍ୟାସଙ୍କର ଶିଷ୍ୟ । ଏହାଙ୍କ ପ୍ରଣୀତ ସ୍ମୃତି ଗ୍ରନ୍ଥର ନାମ "ଯାଜ୍ଞବଲ୍‌କ୍ୟ ସଂହିତା" ଶତପଥ ବ୍ରାହ୍ମଣ ଓ ବୃହଦାରଣ୍ୟକର ମଧ୍ୟ ସେ ସଂଗ୍ରହିତା ।

ମହାଭାରତରେ ଦେଖାଯାଏ ଯାଜ୍ଞବଲ୍‌କ୍ୟ ମହାରାଜ ଯୁଧିଷ୍ଠିରଙ୍କର ରାଜସୂୟ ଯଜ୍ଞରେ ଉପସ୍ଥିତ ଥିଲେ । ଶତପଥ ବ୍ରାହ୍ମଣଙ୍କ ମତରେ ଯାଜ୍ଞବଲ୍‌କ୍ୟ ରାଜା ଜନକଙ୍କର ରାଜସଭାରେ ଉପସ୍ଥିତ ଥିଲେ । ରାଜା ଜନକଙ୍କର ଅଶ୍ୱମେଧ ଯଜ୍ଞରେ ସମାଗତ ବ୍ରାହ୍ମଣମାନଙ୍କ ମଧ୍ୟରେ କିଏ ସର୍ବଶ୍ରେଷ୍ଠ ସ୍ଥିର କରି ନ ପାରି ନାନାରତ୍ନରାଜି, ହଜାରେ ସ୍ୱର୍ଣ୍ଣମଣ୍ଡିତ ଶୃଙ୍ଗ ଗୋଧନ ନେଇ, ବ୍ରାହ୍ମଣମାନଙ୍କ ପାଖକୁ ଆଣି ଜନକ କହିଲେ, ଏହି ରତ୍ନରାଜି ଆପଣମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ବ୍ରାହ୍ମଣଙ୍କୁ ଉତ୍ସର୍ଗ କଲି । ଆପଣମାନଙ୍କ ମଧ୍ୟରେ ଯେ ସର୍ବଶ୍ରେଷ୍ଠ ଓ ବିଦ୍ୱାନ ସେହି କେବଳ ରତ୍ନସମ୍ଭାର ଗ୍ରହଣ କରନ୍ତୁ । ଏହିକଥା ଶୁଣି ଉପସ୍ଥିତ ସକଳ ବ୍ରାହ୍ମଣମାନେ ମହାମୂଲ୍ୟ ରତ୍ନ ପାଇବା ଆଶାରେ ନିଜ ନିଜକୁ ସର୍ବଶ୍ରେଷ୍ଠ ବୋଲି ପ୍ରଚାର କରିବାକୁ ଲାଗିଲେ । ଯାଜ୍ଞବଲ୍‌କ୍ୟ ଏହି ସଭାରେ ଉପସ୍ଥିତ ଥିଲେ । ସେ ପ୍ରଶ୍ନର କଲେ "ସେ କେବଳ

Digitized by srujan ka@gmail.com

ସର୍ବଶ୍ରେଷ୍ଠ, କାରଣ ସେ ସମସ୍ତ ବେଦ ଅଧ୍ୟୟନ କରିଥିବାରୁ ତାଙ୍କପରି ବେଦଜ୍ଞ ଆଉ କେହି ନାହିଁ—ଏ ବିଷୟରେ କୌଣସି ସନ୍ଦେହ ହେଲେ ସେ ତର୍କ ଯୁଦ୍ଧରେ ପ୍ରବୃତ୍ତ ହେବାକୁ ସମ୍ମତ ଅଛନ୍ତି ।" ବ୍ରାହ୍ମଣମାନେ ଏତାଦୃଶ ଘୋଷଣାରେ କ୍ରୁଦ୍ଧ ହୋଇ ତାଙ୍କ ସଙ୍ଗରେ ତର୍କ କରି ପରାସ୍ତ ହେଲେ । ସେ ମହର୍ଷି ଶାକଲ୍ୟଙ୍କ ମନ୍ତ୍ରିତ ତଣ୍ଡୁଳରେ ନିଯୁକ୍ତ ହୋଇ ଜୟଲାଭ କଲେ । ସେତେବେଳେ ରାଜା ଜନକଙ୍କର ଉତ୍ସର୍ଗିତ ସମସ୍ତ ଧନ ସମ୍ପତ୍ତି ସେହି କେବଳ ଲାଭ କରିଥିଲେ ।

ଯାଜ୍ଞବଲ୍କ୍ୟ ତତ୍କାଳୀନ ପ୍ରଚଳିତ ଧର୍ମ ଓ ମତର ପକ୍ଷପାତୀ ନ ଥିଲେ । ବ୍ରାହ୍ମଣମାନଙ୍କ ବିରୁଦ୍ଧରେ ସେ ଅନେକବାର ମତପ୍ରକାଶ କରିଥିଲେ । ଯାଜ୍ଞବଲକ୍ୟଙ୍କର ଶିକ୍ଷାର ମୂଳମନ୍ତ୍ର ହେଉଛି ବାନପ୍ରସ୍ଥ ଅବଲମ୍ବନ ଓ ଯୋଗାଭ୍ୟାସ । ଏହି ସକାଶେ ତାଙ୍କୁ ଯୋଗଶାସ୍ତ୍ରର ସୃଷ୍ଟିକର୍ତ୍ତା ବୋଲିଯାଏ । ମୈତ୍ରେୟୀ ଓ କାତ୍ୟାୟନୀ ନାମରେ ତାଙ୍କର ଦୁଇଟି ସ୍ତ୍ରୀ ଥିଲେ । ମୈତ୍ରେୟୀଙ୍କୁ ସେ ତାଙ୍କର ଦାର୍ଶନିକତତ୍ତ୍ୱ ଶିକ୍ଷା ଦିଅନ୍ତି । ଯାଜ୍ଞବଲ୍କ୍ୟଙ୍କ ଗୁରୁ ବୈଶମ୍ପାୟନ ଥରେ ତାଙ୍କ ନିଜପାଇଁ ତାଙ୍କ ଶିଷ୍ୟମାନଙ୍କର ଏକ ବ୍ରତର ଅନୁଷ୍ଠାନ କରିବାକୁ କହିଲେ । ସେତେବେଳେ ଯାଜ୍ଞବଲକ୍ୟ କହିଲେ, ସେ ଏକାକୀ ଏ ବ୍ରତର ଅନୁଷ୍ଠାନ କରି ତପସ୍ୟାର ଫଳ ଦେଖାଇବେ ।

ଯାଜ୍ଞବଲ୍କ୍ୟଙ୍କର ଏହି ଗର୍ବପୂର୍ଣ୍ଣ କଥା ଶୁଣି ବୈଶମ୍ପାୟନ କ୍ରୁଦ୍ଧହୋଇ କହିଲେ, "ତୁମ୍ଭେ ମୋ ନିକଟରେ ଯାହା ଅଧ୍ୟୟନ କରିଛ (ଅର୍ଥାତ୍ ବେଦ) ତାହାସବୁ ଫେରାଇଦିଅ ।" ଯାଜ୍ଞବଲ୍କ୍ୟ ଏହି କଥାରେ ତାଙ୍କର ସମସ୍ତ ଅଧୀତ ଯଜୁଃ ବମନକରି ଗୁରୁଙ୍କୁ ଫେରାଇ ଦେଲେ ।

Digitized by srujan ka@gmail.com

ଅନ୍ୟାନ୍ୟ ମୁନିମାନେ ତିତ୍ତିରିପକ୍ଷୀର ରୂପ ଧାରଣକରି ଯଜୁଃ ସକଳ ଗ୍ରହଣ କଲେ; ଏହି ଘଟଣା ପରେ ତୈତ୍ତିରୀୟ ଶାଖା ଉତ୍ପନ୍ନ ହେଲା । ତା'ପରେ ସେ ସୂର୍ଯ୍ୟର ଅନଧିଗତ ସମସ୍ତ ଯଜୁଃ ଲାଭକରିବା ସକାଶେ ସୂର୍ଯ୍ୟଦେବଙ୍କର ଆରାଧନା କରିବାକୁ ଲାଗିଲେ । ସୂର୍ଯ୍ୟଦେବ ଯାଜ୍ଞବଲ୍କ୍ୟଙ୍କର ଆରାଧନାରେ ସନ୍ତୁଷ୍ଟ ହୋଇ ନିଜର ଅବଜ୍ଞାତ ସମସ୍ତ ମନ୍ତ୍ର ସମୂହ ଯାଜ୍ଞବଲ୍‌କ୍ୟଙ୍କୁ ଦାନକଲେ । ଏହି ଯଜୁଃ ଶୁକ୍ଳ ଯଜୁର୍ବେଦ ନାମରେ ଖ୍ୟାତ ।

କଣ୍ଠ, ମଧ୍ୟନ୍ଦିନ ପ୍ରଭୃତି ପନ୍ଦରଜଣ ଶିଷ୍ୟଙ୍କୁ ବେଦଶିକ୍ଷା ଦେଲେ । ତଦନୁସାରେ ଏହି ବେଦ ପଞ୍ଚଦଶ ଶାଖାରେ ବିଭକ୍ତ ।

## ଯାଜ୍ଞବଲକ୍ୟଙ୍କ କତିପୟ ବାଣୀ

ସଂଗ୍ରାହକ— ନିମାଇଁଚରଣ ଦାସ

(କ) ଗୋରୁ, ବ୍ରାହ୍ମଣ, ଅଗ୍ନି ଏବଂ ଅନ୍ନ ଏମାନଙ୍କୁ ଉଚ୍ଛିଷ୍ଟ ଅବସ୍ଥାରେ ଛୁଇଁବ ନାହିଁ ।

(ଖ) ଆସନ, ଶଯ୍ୟା, ରଥ, ଉଦ୍ୟାନ, ଗୃହ ଏସବୁ ମାଲିକର ଅନୁମତି ନନେଇ ଉପଭୋଗ କରିବ ନାହିଁ ।

(ଗ) ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି ଓ ଗାଈ ଏମାନଙ୍କ ଆଡ଼କୁ ମୁଖ କରି ମଳମୂତ୍ର ତ୍ୟାଗ କରିବ ନାହିଁ ।

(ଘ) ଯେଉଁ ଗୃହରେ ସ୍ୱାମୀ ଓ ସ୍ତ୍ରୀର ପରସ୍ପର ଆନୁକୂଲ୍ୟ ଥାଏ, ସେ ସ୍ଥାନରେ ଧର୍ମ, ଅର୍ଥ କାମ ଏହି ତିନି ପ୍ରକାର ବୃଦ୍ଧି ହୁଏ । କୁଳାଚାର ବିରୁଦ୍ଧ କର୍ମ, ଗ୍ରାମବିରୁଦ୍ଧ କର୍ମ, ଶତାଧିକମସ୍ପର୍ଶ ଓ ବାହୁଦ୍ୱାରା ନଦୀ ସନ୍ତରଣ କରିବ ନାହିଁ ।

ପ୍ରାଣ ବିପତ୍ତି ସଂଶୟାବହ କର୍ମ କରିବ ନାହିଁ ।

ହଠାତ୍ କାହାପ୍ରତି ଅପ୍ରିୟ ବାକ୍ୟ ପ୍ରୟୋଗ କରିବ ନାହିଁ ।

Digitized by srujan ka@gmail.com

ଚୌର୍ଯ୍ୟବୃତ୍ତି ଅବଲମ୍ବନ କରିବ ନାହିଁ ।

ଉଦୟାସ୍ତ ସମୟରେ ସୂର୍ଯ୍ୟଦର୍ଶନ କରିବ ନାହିଁ ।

ନଗ୍ନ ବା ମୈଥୁନାଶକ୍ତ ସ୍ତ୍ରୀକୁ ଦର୍ଶନ କରିବ ନାହିଁ ।

ଅଶୁଚି ଅବସ୍ଥାରେ ଗ୍ରହଣ ବା ନକ୍ଷତ୍ରାଦି ଦର୍ଶନ କରିବ ନାହିଁ ।

ଗର୍ଭାବସ୍ଥାରେ ଯେଉଁ ଦ୍ରବ୍ୟରେ ଇଚ୍ଛା ହେବ ଗର୍ଭିଣୀକୁ ତାହା ନ ଦେଲେ ଗର୍ଭବୈରୂପ ଘଟିଥାଏ । ଏଣୁ ଗର୍ଭିଣୀର ବାସନା ପୂର୍ଣ୍ଣ କରିବ ।

ମନ ନିବର୍ତ୍ତିଲେ ଇନ୍ଦ୍ରିୟେ ନିବର୍ତ୍ତନ୍ତି ।
ମନଦ୍ୱାରେ ଇନ୍ଦ୍ରିୟେ ବିଷୟ ଦେଖନ୍ତି ॥
ସବୁ ଇନ୍ଦ୍ରିୟମାନଙ୍କରେ ମନଟି ଈଶ୍ୱର ।
ମୋ କହିବାରୁ ହେ ଜନକ ମନେକର ॥

× × ×

ଅଧର୍ମ କଲେ ଲୋକ ନରକକୁ ଯାଏ ।
ନରର ସନ୍ଦେହ ମିଥିଳା-ମହୀରାୟେ ॥
ସତ୍ତ୍ୱଯୁକ୍ତ ହେଲେ ଲଭଇ ଦେବଲୋକ ।
ରଜ ସତ୍ତ୍ୱଯୁକ୍ତ ମନୁଷ୍ୟ ଜନ୍ମପାକ ॥
ରଜତମ ଦୁଇରେ ଯେବେ ଯୁକ୍ତ ହୁଏ ।
ପଶୁ ଯୋନିରେଟି ତେବେ ସେ ଜନ୍ମପାଏ ॥

× × ×

ଗୀତ ବାଦ୍ୟ ନୃତ୍ୟ କରିଲେ ଯୋଗୀ ଆଗେ ।
ନ ଭୁଲଇ ଯେବେ ସେ ନୟନେ ମନେ ସରାଗେ ॥
ତେବେ ଜାଣ ଯୋଗସିଦ୍ଧ ହୋଇଲା ଆସି ।
ଅଳପ ଦିନେ ଯିବ ବ୍ରହ୍ମରେ ଏ ମିଶି ॥

Digitized by srujan ka@gmail.com

ନରକୁଳ ଚନ୍ଦ୍ର ଜନକ—ମହାରଥୀ ।
ଏବେ ଶୁଣ ଅରିଷ୍ଟମାନଙ୍କର କଥା ॥
ଅରୁନ୍ଧତୀ, ଧ୍ରୁବ, ପୂର୍ଣ୍ଣଚନ୍ଦ୍ରମା, ଦୀପ ।
ନ ଦିଶିଲେ ଜାଣିବ ଆୟୁ ହେଲା ଲୋପ ॥

× × ×

ଅତୀବ ପ୍ରଜ୍ଞାବନ୍ତ ଅତ୍ୟନ୍ତ ଅଜ୍ଞାନ ।
ଅତ୍ୟନ୍ତ ତେଜ ଅତି ନିସ୍ତେଜ ରାଜନ ॥
ହୋଇଲେ ଛ ମାସରେ ହୁଅଇଟି ମୃତ୍ୟୁ ।
ମୋ କହିବାରୁ ଏହା ମନେକର ହେତୁ ॥

× × ×

ଦେବତା ବ୍ରାହ୍ମଣଙ୍କୁ ଅବଜ୍ଞା ଯେ କରେ ।
ଆୟୁଷ ଥିଲେ ନାଶ ଯାଏ ସେ ଅଳ୍ପରେ ॥
ଚନ୍ଦ୍ର, ସୂର୍ଯ୍ୟ ଦୁହିଁଙ୍କ ମଧ୍ୟେ ନେଦକଣା ।
ଦେଖିଲେ ସାତରାବେ ମରେ ମହାମନା ॥

× × ×

କାନ୍ତି ଯାହା ନାକକୁ ସୁଗନ୍ଧ ବାସଇ ।
ଜାଣ ହେ ନୃପ ସାତଦିନ ସେ ଖାଅଇ ॥
କାନ, ନାକ କୋମଳ ହୋଇଲେ ନ୍ଲେଜର ।
ଜାଣିବ ଏବେକ୍ଷଣି ଗଲା ଯମପୁର ॥

× × ×

ଅକସ୍ମାତ୍ ବାମ ଆଖିରୁ ଲୁହ ବହି ।
ମୁଣ୍ଡ୍ରୁ ଧୂଆଁ ଗଲେ ମରଇ ନରସାଇଁ ।
ଏ ରୂପେ ଅରିଷ୍ଟ କାଳକୁ ଯେ ଜାଣିବ ।
ସବୁ ଛାଡ଼ି ବ୍ରହ୍ମଦେବଙ୍କୁ ସେ ଭଜିବ ।

—ମହାଭାରତ-ଶାନ୍ତିପର୍ବ—

— — —

Digitized by srujan ka@gmail.com



# ମହର୍ଷି ବାଲ୍ମୀକୀ ଓ ରାମାୟଣ

ଐତିହାସିକ ବ୍ରଜସୁନ୍ଦର ଦାସ

ମହର୍ଷି ବାଲ୍ମୀକୀ ତପୋନିଷ୍ଠ ତପୋଧନ ଭାବରେ ଯେତେ ପ୍ରସିଦ୍ଧ ହୋଇନାହାନ୍ତି, ତଦ୍ଧ ବଳ ପ୍ରସିଦ୍ଧି ଅର୍ଜନ କରିଛନ୍ତି, କାବ୍ୟ ପ୍ରଣେତା, ମହାକବି ନାମରେ । ତାଙ୍କ ରଚିତ ପବିତ୍ର ରାମାୟଣ କେବଳ ଭାରତରେ କାହିଁକି ସମଗ୍ର ପୃଥିବୀରେ ଏକ ମହାନ ଉପାଦେୟ ଗ୍ରନ୍ଥ । ଏହି ବିଶ୍ୱ ବିଶ୍ରୁତ ବିରାଟ ଗ୍ରନ୍ଥ ରଚନା କରି ଯେଉଁ

Digitized by srujan ka@gmail.com

ମହାନୁଭବ ପୁରୁଷ ଆବହକାଳ ଆଖ୍ୟାରେ ଲୋକପ୍ରିୟ ହୋଇ ପାରିଛନ୍ତି ତାଙ୍କ ଜୀବନୀ ଯେଉଁଳି କୌତୂହଳପ୍ରଦ ସେହିପରି ଶିକ୍ଷଣୀୟ ମଧ୍ୟ ।

ଆର୍ଯ୍ୟ ସଭ୍ୟତାର ପ୍ରାରମ୍ଭରେ ଏହି କ୍ଷଣଜନ୍ମା ମନୀଷୀ ରତ୍ନାକର ନାମରେ ଏକ ବ୍ରାହ୍ମଣ ପରିବାରରେ ଜନ୍ମଲାଭ କରିଥିଲେ । ଯୌବନାବସ୍ଥାରେ ସେ ଦସ୍ୟୁବୃତ୍ତି କରି ପଥିକମାନଙ୍କର ଧନ ଜୀବନ ଅପହରଣପୂର୍ବକ କୁଟୁମ୍ବ ପ୍ରତିପୋଷଣ କରୁଥିଲେ । ତାଙ୍କ ଅତ୍ୟାଚାର ଉତ୍ପୀଡ଼ନରେ ଉତ୍ପୀଡ଼ିତ ହୋଇ ପଥିକମାନେ ଦେଶାନ୍ତର ଗମନ କରିପାରିଲେ ନାହିଁ । ଥରେ ଦେବର୍ଷି ନାରଦ ପଥ ମଧ୍ୟରେ ଯାଉଥିଲାବେଳେ ରତ୍ନାକର ତାଙ୍କୁ ଆକ୍ରମଣ କରି ହତ୍ୟା କରିବାକୁ ଉଦ୍ୟତ ହେଲେ; କିନ୍ତୁ ଜ୍ଞାନୀଶ୍ରେଷ୍ଠ ନାରଦ ରତ୍ନାକରଙ୍କୁ ଦସ୍ୟୁବୃତ୍ତିରୁ କ୍ଷାନ୍ତ ହେବାପାଇଁ ବୁଝାଇ କହିଲେ, "ହେ ରତ୍ନାକର ! ତୁମେ ପ୍ରାଣୀମାନଙ୍କୁ ହତ୍ୟାକରି କୁଟୁମ୍ବ ପୋଷିବାଦ୍ୱାରା ଯେଉଁ ମହାପାପ ଅର୍ଜନ କରୁଛ, ସେଥିରେ ତୁମ୍ଭ ପିତା, ଭ୍ରାତା, ଭଗିନୀ, ଜାୟା ଓ ଜନନୀ ଅଂଶୀଦାର କି ନା, ସେ କଥା ବୁଝିବାକୁ ଚେଷ୍ଟା କରିଛ କି ?" ନାରଦଙ୍କ ପ୍ରଶ୍ନରେ ରତ୍ନାକର ବିଚଳିତ ହୋଇ ତାଙ୍କୁ ସେଠାରେ ଅପେକ୍ଷା କରିବାକୁ ଅନୁରୋଧ କରି ଉକ୍ତ ପ୍ରଶ୍ନର ଯଥାର୍ଥ ଉତ୍ତର ଆଶାରେ ଗୃହକୁ ଫେରିଆସିଲେ । ନରହତ୍ୟାରୁ ଅର୍ଜିତ ଧନରେ ପରିପୁଷ୍ଟ ପରିବାରର ପ୍ରତ୍ୟେକବ୍ୟକ୍ତିଙ୍କୁ ଦେବର୍ଷିଙ୍କ କଥା କହିବାରୁ ସମସ୍ତେ ପ୍ରାଣୀବଧଜନିତ ମହାପାପରେ ସେ ସଂପୃକ୍ତ ନୁହନ୍ତି ବୋଲି ଯୁକ୍ତି ଦର୍ଶାଇଲେ । ବିଶେଷ କରି ତାଙ୍କର ସ୍ନେହଶୀଳା ପତ୍ନୀ ମଧ୍ୟ ଉକ୍ତ ପାପରେ ଭାଗୀ ହେବାକୁ ପ୍ରସ୍ତୁତ ହେଲେ ନାହିଁ । ସ୍ୱଜନମାନଙ୍କର ଏତାଦୃଶ ଆଚରଣରେ ମ୍ରିୟମାଣ ହୋଇ ରତ୍ନାକରଙ୍କର ମନ ଘୋର ଦୁଃଖରେ ପୂରିଗଲା ।

Digitized by srujan ka@gmail.com

ତାଙ୍କର ଚୈତନ୍ୟୋଦୟ ହେଲା । ସେ ଅନୁଭବ କଲେ ଯେ, ସଂସାରରେ ସମସ୍ତେ ସ୍ୱାର୍ଥପର । ପିତା, ଭ୍ରାତା, ଜାୟା ଓ ଜନନୀ କେବଳ ସୁଖ ସମ୍ଭୋଗର ସାଥୀ । ଅନ୍ୟର ଦୁଃଖ କମ୍ବା ପାପରେ ଭାଗୀ ହେବାକୁ କେହି ପ୍ରସ୍ତୁତ ନୁହଁନ୍ତି । ଏଭଳି ଏକ ଆତ୍ମସୁଖ ଭୋଗୀ ପରିବାରକୁ ତ୍ୟାଗ କରି ସ୍ୱକୃତ ପାପର ପ୍ରାୟଶ୍ଚିତପାଇଁ ସେ ନାରଦଙ୍କ ପାଖରେ ଆକୁଳ ପ୍ରାର୍ଥନା କଲେ । ଦେବର୍ଷି ତାଙ୍କୁ "ରାମ ନାମ" ମହାମନ୍ତ୍ର ଜପ କରି ଧ୍ୟାନରତ ରହିବାକୁ ଉପଦେଶ ଦେଇ ଅନ୍ତର୍ଦ୍ଧାନ ହେଲେ । ସେହି ଦିନଠାରୁ ରତ୍ନାକର ଏକ ସ୍ଥାନରେ, ଏକାଗ୍ରରେ ଓ ଏକଲୟରେ ବସି ମହାମନ୍ତ୍ର ଜପ କରିବାକୁ ଲାଗିଲେ । କ୍ରମେ ତାଙ୍କ ଶରୀରକୁ ଉଇ ଚରିଯିବାରୁ ସେ ଏକ ହୁଙ୍କାରେ ପରିଣତ ହେଲେ । ଅନେକ ବର୍ଷ ବିତିଗଲା ପରେ ଥରେ ନାରଦ ପୁନର୍ବାର ସେହି ପଥ ଦେଇ ଯାଉ ଯାଉ ଉକ୍ତ ହୁଙ୍କାରୁ "ରାମନାମ" ଉଚ୍ଚାରଣ ହେଉଥିବା ଶୁଣିପାରି ପୂର୍ବକଥା ସ୍ମରଣ କଲେ । ସେ ଦୟା ଓ ଅନୁକମ୍ପା ସହକାରେ ପରମ ସାଧକ ରତ୍ନାକରଙ୍କୁ ମନ୍ତ୍ରବଳରେ ବଲ୍ମୀକ ହୁଙ୍କାରୁ ଉଦ୍ଧାର କଲେ । ସେହି ଦିନଠାରୁ ଦସ୍ୟୁ ରତ୍ନାକର ବଲ୍ମୀକ ହୁଙ୍କାରୁ ପୁନର୍ଜନ୍ମ ଲାଭକରି ବାଲ୍ମୀକୀ ମହର୍ଷି ନାମରେ ପରିଚିତ ହେଲେ ।

ଦିନେ ମହର୍ଷି ବାଲ୍ମୀକୀ ସ୍ନାନ ସମାପନ କରି ଆର୍ଦ୍ର ବସ୍ତ୍ର ପରିଧାନ ପୂର୍ବକ ବେଦ ଉଚ୍ଚାରଣ କରି ସ୍ୱକୁଟୀରକୁ ଫେରୁଥିବା ସମୟରେ ଏକ ହୃଦୟବିଦାରକ ଦୃଶ୍ୟରେ ଅତି ମର୍ମାହତ ହୋଇ-ପଡ଼ିଲେ । କୌଣସି ଏକ ନିଷାଦ ଶର ସନ୍ଧାନ କରି ଏକ ମିଥୁନ-ରତ କ୍ରୌଞ୍ଚ ଦମ୍ପତିଙ୍କ ମଧ୍ୟରୁ ନିରୀହ କ୍ରୌଞ୍ଚ (ବଗ)ଟିକୁ ଆଘାତ କରିବାଦ୍ୱାରା ପକ୍ଷୀଟି ପ୍ରାଣ ବିକଳରେ ଛଟପଟ ହୋଇ ସଦ୍ୟସ୍ନାତ ମହର୍ଷିଙ୍କ ସମ୍ମୁଖରେ ପତିତ ହେଲା । ଶରବିଦ୍ଧ କ୍ରୌଞ୍ଚର ଦୁରବସ୍ଥା

Digitized by srujan ka@gmail.com

ଓ ତା'ର କରୁଣକାତରସ୍ୱର ଅବଲୋକନ କରି ବାଲ୍ମୀକିଙ୍କର ହୃଦୟ ଦୟାରେ ବିଗଳିତ ହୋଇଗଲା । ସେ ଆହତ ପକ୍ଷୀଟିକୁ କୋଳକୁ ଉଠାଇନେଇ ସାଶ୍ରୁଲୋଚନରେ ଯେଉଁ ଶୋକଭାବ ପ୍ରକାଶ କରି କହି ଉଠିଲେ,

"ମା ନିଷାଦ ପ୍ରତିଷ୍ଠାଂ ତ୍ୱମାଗମଃଶାଶ୍ୱତୀ ସମାଃ,
ଯତ୍ କ୍ରୌଞ୍ଚ ମିଥୁନାଦେକମ୍ ବଧି କାମ ମୋହିତମ୍"

ତାହାହିଁ ହେଲା ମହାକାବ୍ୟ ରାମାୟଣର ଆଦ୍ୟଶ୍ଳୋକ । ଶର-ଜର୍ଜରିତ କ୍ରୌଞ୍ଚ ପକ୍ଷୀର କରୁଣ ଦୃଶ୍ୟ ଓ ତା'ର ଆକୁଳ ବିକଳ ଚିତ୍କାର ହିଁ ମହର୍ଷିଙ୍କ ମନରେ ସୃଷ୍ଟି କରିଥିଲା ତରଳ କୋମଳ ସୁଲଳିତ କବିତ୍ୱର ଉତ୍ସ ।

## ମହର୍ଷି ବାଲ୍ମୀକିଙ୍କ-ବାଣୀ
### ସଙ୍କଳୟିତା ନୀଳାଇଁଚରଣ ଦାସ

ନାସ୍ତିକତା, ଅସତ୍ୟବାଦିତା, କ୍ରୋଧ, ଅନବଧାନତା, ଜ୍ଞାନୀ ଲୋକଙ୍କୁ ଦେଖା ନ ଦେବା, ଆଳସ୍ୟ, ଇନ୍ଦ୍ରିୟପରାୟଣତା, ଏକାକୀ ଚିନ୍ତା କରିବା, ଅନଭିଜ୍ଞଙ୍କ ସହ ମନ୍ତ୍ରଣା କରିବା, ସ୍ଥିର କରିଥିବା କାର୍ଯ୍ୟରେ ପରିଣତ ନ କରିବା, ଗୁପ୍ତମନ୍ତ୍ରଣା ପ୍ରକାଶ କରିଦେବା, ମଙ୍ଗଳ କାର୍ଯ୍ୟାଦି ଅନୁଷ୍ଠାନ ନ କରିବା ଏବଂ ଏକାବେଳକେ ସବୁ ଦିଗରେ ଶତ୍ରୁମାନଙ୍କ ବିରୁଦ୍ଧରେ ଉଠିବା — ଏହି ଚଉଦଟି ହେଉଛି ରାଜା ବା ଶାସକଙ୍କର ଦୋଷ ।

ନାରୀମାନଙ୍କର ବଶୀକରଣ କାଳରେ ।
ବିବାହ ସମୟେ ବର ଗୁଣକୀର୍ତ୍ତନରେ ॥

Digitized by srujan ka@gmail.com

ହାସ୍ୟ ପରିହାସେ ଆଉ ବୃତ୍ତି ରକ୍ଷାବେଳେ ।
ପ୍ରାଣ ସଙ୍କଟରେ ଗୋରୁ ବିପ୍ର ହିତକାଳେ ॥
କାହାର ହୋଇଲେ ପ୍ରାଣ ହିଂସା ଉପସ୍ଥିତ ।
ଏଥିରେ ମିଥ୍ୟା କହିଲେ ନାହିଁ ଦୋଷ ଜାତ ॥

—ରାମାୟଣ-ଆଦ୍ୟକାଣ୍ଡ—

ପତି ଅଟେ ପତିବ୍ରତା ନାରୀର ଦେବତା ।
ପତି ଗତି, ପତିବନ୍ଧୁ, ପତି ଗୁରୁଦାତା ॥
ନିଜ ପ୍ରାଣ ଦାନ କରି ପତିବ୍ରତା ସତୀ ।
ପତି ପ୍ରିୟ ଆଚରଣ କରୁଥିବ ନିତି ॥
ମୂଖରା ହିଂସା ଯାହାର ପୁଣି ସେ ସ୍ତ୍ରୀ ବଶ ।
ଜନମ ନିଷ୍ଫଳ ତାର ପାଏ ଅପଯଶ ॥
ଅଳସୀ କଳହା ଦୁଷ୍ଟା ହୁଏ ଯାର ନାରୀ ।
ପଦେ ପଦେ ଦୁଃଖ, ନୁହେଁ ସୁଖେ ଅଧିକାରୀ ॥
କପଟୀ ନାରୀର ସଙ୍ଗ ନୁହଁଇ ଉଚିତ
ଜୀବନ ଥିବାଯାଏ ଦୁଃଖ ମଲେ ନର୍କେ ବାସ ।
ଧନ ଥିବାଯାଏ ପୁଅ ଦାରା ଖଟୁଥିବେ
ଧନ ସରିଗଲେ କେହି ତାକୁ ନ ପୁଚ୍ଛିବେ ।

× × ×

ଶରଣାର୍ଥୀ ଜନକୁ ଯେ ଶତ୍ରୁକୁ ଦିଅଇ ।
ସକଳ ସୁକୃତ ତା'ର ବିନଷ୍ଟ ହୁଅଇ ॥
ମିତ୍ରଲାଭ ଅନାୟାସେ ହୁଏ ଏ ସଂସାରେ ।
କିନ୍ତୁ ତାହା ଅତି କଷ୍ଟେ ରକ୍ଷା ହୋଇ ପାରେ ॥
ଏ ଚିତ୍ତ ବିଜୁଳିଠାରୁ ଅଧିକ ଚଞ୍ଚଳ ।
ଅଳପ କଥାରେ ଭୂଲି କରେ ଅମଙ୍ଗଳ ॥

Digitized by srujan ka@gmail.com

ଉପକାରୀ ମିତ୍ରକୁ ଯେ ପ୍ରତାରଣା କରେ ।
ତା ସମାନ ଅଧାର୍ମିକ ନାହିଁ ଏ ସଂସାରେ ॥
ମିତ୍ରଠାରୁ ଉପକାର ପାଇ ଯେଉଁ ଜନ ।
ମିତ୍ର କାର୍ଯ୍ୟ ନ କରଇ ସେହିଟି କୃତଘ୍ନ ॥
—ବାଲ୍ମୀକି ରାମାୟଣ, ଲଙ୍କାକାଣ୍ଡ—

## ଦୁର୍ଜନ ସଂସର୍ଗ

ପଦ୍ମପତ୍ରେ ଜଳବିନ୍ଦୁ ନ ଲାଗେ ଯେପରି ।
ଖଳଲୋକ ସଙ୍ଗେ ପ୍ରୀତି ଜାଣ ସେହିପରି ॥
ଶରତ୍କାଳେ ମେଘ ବର୍ଷି ବରଷିଲେ ଜଳ ।
ଭୂଇଁ ନ ଭିଜଇ କିନ୍ତୁ ହୁଅଇ ବିଫଳ ॥
ତେସନ ଦୁର୍ଜନ ଲୋକ ସହିତ ପୀରତି ।
ବିଫଳ ହୁଅଇ ଜାଣ ଆଉରି ଦୁଷ୍ଟମତି ॥
ଯେଉଁପରି ମଧୁ ପିଇ ଉଡ଼ିଯାଏ ଭୃଙ୍ଗ ।
ସେହି ପରକାରେ ଜାଣ ଦୁର୍ଜ୍ଜନଙ୍କ ସଙ୍ଗ ॥
ଦୁଷ୍ଟଲୋକ ସଙ୍ଗତରେ ଦୁଷ୍ଟ ବ୍ୟବହାର ।
ଯେ ନ କରେ ଅକ୍ଳେଶରେ ମୃତ୍ୟୁ ହୁଏ ତା'ର ॥
ସାଧୁଜନ ସଙ୍ଗେ ଯେହୁ ସାଧୁ ନ ଆଚରେ ।
ତାହାକୁ ଦୁର୍ଜ୍ଜନ ବୋଲି କହନ୍ତି ସଂସାରେ ॥
—ବାଲ୍ମୀକି ରାମାୟଣ, ଲଙ୍କାକାଣ୍ଡ—

ମୂର୍ଖଲୋକେ କହୁ ମାତ୍ର ବିଚାର ନ କରି ।
ଶୋକଜଳେ ବୁଡ଼ନ୍ତି ଯେ ଭଙ୍ଗାନାବ ପରି ॥
ଶୋକହେତୁ ତେଜ ବୀର୍ଯ୍ୟ ବଳ ହୁଏ କ୍ଷୀଣ ।
ଏକମାତ୍ର ଶୋକ ଅଟେ ମୃତ୍ୟୁର କାରଣ ॥

Digitized by srujan ka@gmail.com

ଏଣୁ ବିଜ୍ଞଜନେ ଶୋକେ ମଗ୍ନ ନ ହୁଅନ୍ତି ।
ନିଜ ଭୁଜ ସାମର୍ଥ୍ୟବଳେ ସକଳ ସାଧନ୍ତି ॥
—ବାଲ୍ମୀକି ରାମାୟଣ, କିଷ୍କିନ୍ଧ୍ୟାକାଣ୍ଡ—

## କ୍ରୋଧର ବିଷମୟ ଫଳ

ଯେହୁ କ୍ରୋଧ ଅନଳକୁ ଶାନ୍ତ କରିପାରେ ।
ଧନ୍ୟ ସେ ମହାତ୍ମା ଏହି ସଂସାର ମଧ୍ୟରେ ॥
କି ନ କରିପାରେ ଲୋକ କ୍ରୋଧେ ଅନ୍ଧ ହୋଇ ।
ଭଲ ମନ୍ଦ କିଛି ସେହି ଜାଣି ନ ପାରଇ ॥

କ୍ଷଣକେ ସେ ମାତୃପାତକର ଗର୍ଭବତୀ ନାରୀ
କ୍ରୋଧ ରୂପ କାଳସର୍ପ ବିଷେ ହୋଇ ଘାରି ।
କ୍ରୋଧ ପ୍ରାଣୀଗଣଙ୍କର ପ୍ରାଣ ବିନାଶକ ।
କ୍ରୋଧ ହିଁ ପରମ ଶତ୍ରୁ ହେ ଦ୍ଵିଜତିଳକ ॥

କ୍ରୋଧ ଅଟେ ତୀକ୍ଷ୍ଣ ଖଡ଼୍‌ଗସ୍ୱରୂପ ହେ ଜାଣ ।
କ୍ରୋଧ ହେତୁ ନାଶଯାନ୍ତି ସର୍ବ ସଦଗୁଣ ॥
କ୍ରୋଧ କରେ ତପ ଯଜ୍ଞ ଦାନକୁ ବିନାଶ ।
ଏ କାରଣୁ କ୍ରୋଧ ତ୍ୟାଗ କରିବ ଅବଶ୍ୟ ॥
— ବାଲ୍ମୀକି ରାମାୟଣ କିଷ୍କିନ୍ଧ୍ୟାକାଣ୍ଡ—

କାଳସର୍ପ ତୁଲ୍ୟ ଜାଣି ମିଥ୍ୟା ବାଦୀ ନର ।
ମିଥ୍ୟାଠାରୁ ପାପ ନାହିଁ ଆଉ ମୁନିବର ॥
ସର୍ପକୁ ଦେଖିଲେ ଭୟ ଉପୁଜେ ଯେସନେ ।
ତେସ୍ନେ ଭୟ ଜନ୍ମେ ମିଥ୍ୟାବାଦୀ ଦରଶନେ ॥

Digitized by srujan ka@gmail.com

ବୃକ୍ଷ ଯେଉଁପରି ନିୟମିତ ବେଳେ ଧରେ ଫୁଲ ।
ସମୟରେ ପାପୀ ସେପରି ପାଏ ପାପ ଫଳ ॥

—ବାଲ୍ମୀକି ରାମାୟଣ, କିଷ୍କିନ୍ଧ୍ୟାକାଣ୍ଡ—

## ବିପଦରୁ କେହି ତ୍ରାଣ ପାଆନ୍ତି ନାହିଁ

ଆହେ ନରବର ଭୂମିରେ ଦୁଃଖ ଯେ ଆଶ୍ରିତ
ଅଗ୍ନି ସମାନ ଅନନ୍ତ ବିପଦ ସମସ୍ତ ।
ସକଳ ପ୍ରାଣୀଙ୍କୁ ଏହା ବେଳେ ଛୁଇଁଥାନ୍ତି ।
ଦଣ୍ଡାଘାତକେ ସେହି ପୁଣି ଦୂର ହୋଇଯାନ୍ତି ॥
ପୃଥ୍ବୀରେ ଜନମିଛନ୍ତି ଯେତେ ଜୀବଗଣ ।
କାହାକୁ ଆପଦ ଛାଡ଼େ ନାହିଁ ହେ ରାଜନ ॥
ନହୁଷ ପୁତ୍ର ଯଯାତି ହୋଇଲେ ହେଁ ଇନ୍ଦ୍ର ।
ଆପଦ ତାହାଙ୍କୁ ଛୁଇଁ ଅଛି ହେ ନରେନ୍ଦ୍ର ॥
ଯେବଣ ବଶିଷ୍ଠ ଋଷି ଆମ୍ଭ ପୁରୋହିତ ।
ଏକ ଦିନକରେ ହେଲା ତାଙ୍କ ଶତପୁତ୍ର ।
ପୁଣି ଏକ ଦିନେ ସେହି ପୁତ୍ରମାନେ ମଲେ ।
ତେଣୁ ଋଷି ବିପଦରୁ ତ୍ରାଣ ନ ପାଇଲେ ॥
ଜଗନ୍ମାତା ବସୁନ୍ଧରା ସକଳ ପୂଜ୍ୟତା ।
ଦେଖାଯାଏ ସେହି ପୁଣି ଦୁଃଅନ୍ତି କମ୍ପିତା ॥
ଧର୍ମାଧର୍ମ ସାକ୍ଷୀ ବିଶ୍ୱ ପ୍ରବର୍ତ୍ତକ ଯେହୁ ।
ସେ ସୂର୍ଯ୍ୟ ଚନ୍ଦ୍ରଙ୍କୁ ଗ୍ରାସେ କାଳବଶେ ରାହୁ ।

—ବାଲ୍ମୀକି ରାମାୟଣ-ଅରଣ୍ୟକାଣ୍ଡ—

Digitized by srujan ka@gmail.com

## ଧୈର୍ଯ୍ୟର ମହିମା

ନିଜ ତେଜ ବଳେ ଶତ୍ରୁଗଣଙ୍କୁ ସଂହାର ।
ଧୈର୍ଯ୍ୟର ଆଶ୍ରୟ ନିଅ ଆହେ ରଘୁବୀର ॥
ଧୈର୍ଯ୍ୟ ଏକା ବିପଦରୁ ପ୍ରାଣୀଙ୍କୁ ଉଦ୍ଧାରେ ।
ବିପଦ ସମୟେ ଯେଉଁ ଜନ ଧୈର୍ଯ୍ୟ ଧରେ ॥
ନିଶ୍ଚୟ ହେ ଜନନ୍ତୁଏ ଜଗତ ବିଜୟୀ ।
ଧୈର୍ଯ୍ୟସମ ହିତକାରୀ ସଂସାରରେ ନାହିଁ ।
ବଳବୀର୍ଯ୍ୟ ସାହସର ମୂଳଅଟେ ଧୈର୍ଯ୍ୟ ।
ଧୈର୍ଯ୍ୟବନ୍ତ ପ୍ରାଣୀଙ୍କର କ୍ରମେ ବଢ଼େ ତେଜ ॥

—ବାଲ୍ମୀକୀ ରାମାୟଣ-ଲଙ୍କାକାଣ୍ଡ—

## ଧନ୍ୟ ବାଲ୍ମୀକୀ ତୁମର ବର୍ଣ୍ଣନା

ରେ ହତଭାଗ୍ୟ ରାକ୍ଷସ ତୁହି ରାମଙ୍କର ।
ପ୍ରିୟ ଭାରିଜାକୁ ଆଶା କରୁଛୁ ପାମର ॥
କ୍ଷୁଧାତୁର ସିଂହମୁଖେ ହାତ ମେଲୁଅଛୁ ।
ବିଷାକ୍ତ ସର୍ପର ଦନ୍ତ ଭାଙ୍ଗିବାକୁ ଇଚ୍ଛୁ ॥
କାଳକୂଟ ଗରଳକୁ ସୁଖେକରୁ ପାନ ।
ମନ୍ଦର ଉପାଡ଼ିବାକୁ ବଳାଇଛୁ ମନ ॥
ଛୁଞ୍ଚ ଘଷି ନୟନକୁ କରୁ ପରିଷ୍କାର ।
ଜିଭରେ ଖୁରକୁ ଚାଟି ଅଛୁରେ ପାମର ॥
ରାମ ପତ୍ନୀଙ୍କ ହରିବା ପାଇଁ ମନେ କରୁ ।
ହସ୍ତରେ ସୂର୍ଯ୍ୟ ଚନ୍ଦ୍ରଙ୍କୁ ଧରିବା ବିଚାରୁ ॥

Digitized by srujan ka@gmail.com

ଗଲେଣିକା ବାନ୍ଧହେବୁ ସମୁଦ୍ରକୁ ପାର ।
ଏପରି ଆଶା କରୁଛୁ ମୂରୁଖ ଅସୁର ॥
ରାମପ୍ରିୟା ହରଣରେ ଅଭିଳାଷୀ ହୋଇ ।
ଲୁଗାରେ ନିଆଁ ବାନ୍ଧଣ ନେବୁ କେଉଁ ଠାଇଁ ॥
ଲହାକଣ୍ଠା ମୂନରେ ତୁ ଖେଳ ମନେ କରୁ ।
ସିଂହ ଶୃଗାଳ ତୋ ମତେ ସମାନ ବସ୍ତୁରୁ ॥
ନଦୀ, ସିନ୍ଧୁ, ସୁଧା, ମଦ୍ୟ, ଚନ୍ଦନ, କର୍ଦ୍ଦମ ।
ହାଣ୍ଡିରେ ଧୃସୁର ସ୍ୱର୍ଣ୍ଣେ ଲହାକରୁ ସମ ॥
ଗରୁଡ଼ ସଙ୍ଗରେ କାଉ କୁକୁଟ ମୟୂରେ ।
ହଂସ ସଙ୍ଗେ ଶାଗୁଣାକୁ ସମ କରୁ ତୁରେ ।
ଏମାନଙ୍କର ପ୍ରଭେଦ ଯେତେକ ଅଛଇ ।
ରାମ ସଙ୍ଗେ ସେହିରୂପ ତୋର ଜାଣ ଭୁଇ ॥

—ରାମାୟଣ, ଅରଣ୍ୟକାଣ୍ଡ—



# ଭଗବାନ ବୁଦ୍ଧ

ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ, ଏମ୍. ଏ.

(ସମ୍ପାଦକ-ପୌରୁଷ)

## ଜନ୍ମ

୨୫୮୨ ବର୍ଷ ତଳର ବୈଶାଖ ପୂର୍ଣ୍ଣିମା । ଭାରତ ଓ ନେପାଳ ସୀମାନ୍ତର କପିଳବାସ୍ତୁ ନାମକ ତତ୍କାଳୀନ ଏକ ରାଜ୍ୟରେ ଲୁମ୍ବିନୀ ନାମକ ଏକ ବନ ଥିଲା । ରାଜରାଣୀ ମହାମାୟା ସନ୍ତାନ ଜନ୍ମ ଅପେକ୍ଷାରେ ପିତୃଗୃହକୁ ଯିବା ବାଟରେ ଏହି ବନରେ

Digitized by srujan ka@gmail.com

ବିଶ୍ରାମ ନେଉଥିଲେ। ଶାଳଗଛମାନଙ୍କରେ ଏତେ ଫୁଲ ଫୁଟିଛି ଯେ, ଗଛର ପତ୍ରସବୁ ଲୁଚି ଯାଇଛି । ଡାଳେ ଡାଳେ ବିଭିନ୍ନ ରଙ୍ଗର ଭ୍ରମର ଓ ପକ୍ଷୀମାନଙ୍କର ଗୁଞ୍ଜନ। ହିମାଳୟର ଦେହରୁ ଏକ ସୁଶୀତଳ ପବନ ପ୍ରବାହିତ ହେଉଛି। ଛୋଟ ଛୋଟ ଗିରି ଝରଣା କୁଳୁ କୁଳୁ ସ୍ୱରରେ ବହିଯାଉଛି।

ରାଣୀ ମହାମାୟା ଶାଳବନର ସୁଶୀତଳ ଛାୟାତଳେ ବିଚରଣ କରୁଥିଲେ। ହଠାତ୍ ତାଙ୍କର ପ୍ରସବ ବେଦନା ଆରମ୍ଭ ହୋଇଗଲା। ପରିଚାରିକାମାନେ ବସ୍ତ୍ରର ଆବରଣ କଲେ ଓ ଶାଳଗଛର ଡାଳକୁ ଧରି ଠିଆ ହୋଇଥିବା ଅବସ୍ଥାରେ ରାଣୀଙ୍କର ଏକ ପୁତ୍ର ସନ୍ତାନ ଜାତ ହେଲା। ଏହାପରି କିଛି ବର୍ଣ୍ଣନା ଅଛି ଯେ, ରାଣୀଙ୍କ ଗର୍ଭରୁ ଖସି ପଡ଼ିବାବେଳେ ଏହି ଶିଶୁକୁ ଗୋଟିଏ ସୁନାର ଜାଲରେ ଚାରିଜଣ ମହାବ୍ରହ୍ମ ଆସି ଧରିନେଲେ ଏବଂ କହିଲେ, "ମହାରାଣୀ, ସନ୍ତୁଷ୍ଟ ହୁଅ। ତୁମ ଗର୍ଭରୁ ଏକ ମହା ଶକ୍ତିଶାଳୀ ପୁତ୍ର ଜନ୍ମଲାଭ କରିଛି।" ମହାବ୍ରହ୍ମଙ୍କଠାରୁ ଚାରି ଦିଗପାଳ ଆସି କୋମଳ ମୃଗ ଚର୍ମରେ ଗ୍ରହଣ କଲେ ଏବଂ ସେମାନଙ୍କଠାରୁ ମନୁଷ୍ୟମାନେ ନବଜାତ ଶିଶୁକୁ ପଟ୍ଟବସ୍ତ୍ରରେ ଗ୍ରହଣ କଲେ।

ମନୁଷ୍ୟଙ୍କ ହାତରୁ ଖସିଯାଇ ଏହି ନବଜାତ ଶିଶୁ ଭୂଇଁ ଉପରେ ଠିଆହୋଇ ପୂର୍ବଦିଗକୁ ନିରୀକ୍ଷଣ କଲେ ଏବଂ କ୍ଷଣକ ମଧ୍ୟରେ ତାଙ୍କର ଆଖି ଆଗରେ ସମସ୍ତ ଜଗତ ଚିତ୍ରପରି ଭାସିଗଲା। ସେ ଦଶଦିଗ ଆଡ଼କୁ ଦୃଷ୍ଟିପାତ କରି ଉତ୍ତରଦିଗ ଅଭିମୁଖରେ ସାତପାଦ ଚାଲିଗଲେ ଏବଂ ମୁଁ ଏ ଜଗତରେ ସର୍ବଶ୍ରେଷ୍ଠ ହେବି ବୋଲି କହି ସିଂହନାଦ କଲେ। ତାଙ୍କର ଏହି ସାତପାଦ ବାଟରେ ସାତଟି ପଦ୍ମଫୁଲ ଫୁଟିଗଲା।

Digitized by srujan ka@gmail.com

ଲୁମ୍ବିନୀବନରେ ଯେଉଁ ସମୟରେ ବୋଧିସତ୍ତ୍ୱଙ୍କର ଜନ୍ମ ହେଲା, ଠିକ୍ ସେହି ସମୟରେ ତାଙ୍କର ଭବିଷ୍ୟତର ସ୍ତ୍ରୀ ଯଶୋଧାରା ବିଶ୍ୱସ୍ତ ଅନୁଚର ଛନ୍ଦକ, ତାଙ୍କର ଅଶ୍ୱ କଣ୍ଟକ ଏବଂ ବୋଧି-ଦ୍ରୁମର ଜନ୍ମହେଲା । ସାଗର ଓ ଧରଣୀ ପୃଷ୍ଠରେ ଏକ ନୂତନ ମଳୟ ପ୍ରବାହିତ ହେଲା ।

ପୃଥିବୀର ଶ୍ରେଷ୍ଠ ମାନବମାନଙ୍କ ମଧ୍ୟରେ ବୁଦ୍ଧ ଅନ୍ୟତମ । ଭାରତର ସୌଭାଗ୍ୟ, ସେ ଏହି ଭୂମିରେ ଜନ୍ମଗ୍ରହଣ କରିଥିଲେ ଓ ଏହାକୁ ତାଙ୍କର କର୍ମଭୂମି ରୂପେ ବାଛି ନେଇଥିଲେ ।

୮୦ ବର୍ଷ ବୟସରେ ସେ ବୈଶାଳୀ ନଗରରୁ ବିଦାୟ ନେଇ କୁଶୀନାର୍ ଅଭିମୁଖରେ ଯାତ୍ରା କରୁଥିବାବେଳେ ତାଙ୍କର ପ୍ରିୟ ଶିଷ୍ୟ ଆନନ୍ଦଙ୍କୁ କହିଥିଲେ, 'ଚିତ୍ରଂ ଜମ୍ବୁଦ୍ୱୀପଂ, ମନୋରମଂ ଜୀବିତଂ ମନୁଷ୍ୟାଣାମ୍'' (କେଡ଼େ ସୁନ୍ଦର, ଚିତ୍ରିତ ଏ ଭାରତବର୍ଷ, ମନୁଷ୍ୟମାନଙ୍କର ଜୀବନ ଏଠାରେ କେତେ ମନୋରମ) ।

କୌଣସି ଉଗ୍ର ଜାତୀୟତାର ପୂଜାରୀ ନହୋଇ ସେ ଭାରତ-ବର୍ଷକୁ ଅତିଶୟ ଶ୍ରଦ୍ଧା କରୁଥିଲେ । ତାଙ୍କର ଧର୍ମ ଥିଲା, ସମଗ୍ର ମାନବଜାତି ପ୍ରତି ପ୍ରେମର ଧର୍ମ । ଏଥିରେ ଜାତି, ବର୍ଣ୍ଣ, ଦେଶ, ଦେଶ ମଧ୍ୟରେ କୌଣସି ଭେଦ ନଥିଲା । ସେ ବାରମ୍ବାର କହୁଥିଲେ ଯେପରି ଗଙ୍ଗା, ଯମୁନା, ଅଚିରବତୀ ଆଦି ନଦୀଗଣ ସମୁଦ୍ରରେ ମିଶି ନିଜର ଭେଦ ବାଦକୁ ହରାଇ ଦିଅନ୍ତି, ସେହିପରି ସେମାନେ ଯେଉଁ ଦେଶ, ଯେଉଁ ଜାତିର ହୁଅନ୍ତୁ ନା କାହିଁକି, ବୁଦ୍ଧଙ୍କର ଶିଷ୍ୟମାନଙ୍କ ମଧ୍ୟରେ କୌଣସି ଭେଦ, କୌଣସି ସଂକୀର୍ଣ୍ଣତା ରହିବା ଉଚିତ ନୁହେଁ । ଏହି ବିଶ୍ୱମାନବିକତାର

Digitized by srujan ka@gmail.com

ଆଦର୍ଶରେ ସେ ତତ୍‌କାଳୀନ ଭାରତବର୍ଷର ସମାଜ ଓ ଜୀବନର ଚରିତ୍ରକୁ ବଦଳାଇବା ପାଇଁ ଚେଷ୍ଟା କରିଥିଲେ ।

ବୁଦ୍ଧତ୍ୱ ଲାଭ ପରେ ସାରନାଥଠାରେ ସେ ତାଙ୍କର ପ୍ରଥମ ଧର୍ମ ଉପଦେଶ, ଯାହାକି 'ଧର୍ମଚକ୍ର ପ୍ରବର୍ତ୍ତନ ସୂତ୍ର' ନାମରେ ଖ୍ୟାତ, ଦେଇ ଶିଷ୍ୟମାନଙ୍କୁ କହିଥିଲେ, ସେମାନେ ଯେଉଁ ଜ୍ଞାନ ଲାଭ କଲେ, ତାହା କେବଳ ସେମାନଙ୍କ ପାଇଁ ନୁହେଁ—ସମଗ୍ର ବିଶ୍ୱପାଇଁ, 'ବହୁଜନ ହିତାୟ, ବହୁଜନ ସୁଖାୟ ଚ' । ବର୍ତ୍ତମାନ ବିଭିନ୍ନ ଧର୍ମ ପକ୍ଷରୁ ଯେଉଁ ମିଶନ ବା ପ୍ରଚାରକ ଗୋଷ୍ଠୀ ଦେଖା-ଯାନ୍ତି, ତାହାର ଆରମ୍ଭ ବୁଦ୍ଧଙ୍କ ସମୟରୁ ହୋଇଥିଲା ଓ ବୁଦ୍ଧଙ୍କ ପରେ ବିଖ୍ୟାତ ବୌଦ୍ଧ ଭିକ୍ଷୁମାନେ ଏହି ଦେଶରୁ ଯାଇ ମଧ୍ୟଏସିଆ, ତିବ୍ବତ, ଚୀନ, ମଙ୍ଗୋଲିଆ, କୋରିଆ, ଜାପାନ ଓ ଦକ୍ଷିଣ ପୂର୍ବ ଏସିଆରେ ବୌଦ୍ଧ ଧର୍ମର ପ୍ରଚାର କରିଥିଲେ । ଏହି ବୌଦ୍ଧ ଧର୍ମ ଜରିଆରେ ଭାରତୀୟ ଜୀବନର ଆଦର୍ଶ ବା ସଂସ୍କୃତି ସେହି ସବୁ ଦେଶରେ ପ୍ରଚଳିତ ହୋଇଥିଲା । ଏବେ ମଧ୍ୟ ଏହି ସବୁ ଦେଶରେ ବୌଦ୍ଧଧର୍ମ ଭାରତବର୍ଷ ପରି ଏକ ଅଜଣାତର ଧର୍ମ ନୁହେଁ, ତାହା ଏକ ପ୍ରଚଳିତ ବିଶ୍ୱାସ ଓ ଜୀବନଧାରଣ ପଦ୍ଧତି । ବୌଦ୍ଧଧର୍ମ ଜରିଆରେ ଭାରତୀୟ ସଭ୍ୟତା ସେ ସେବୁ ଦେଶ ଉପରେ ଯେଉଁ ଗଭୀର ପ୍ରଭାବ ପକାଇଛି, ତାହା ଏବେ ମଧ୍ୟ ଦେଖି ଆଶ୍ଚର୍ଯ୍ୟ ହେବାକୁ ପଡ଼େ ।

ବୁଦ୍ଧ ଭାରତୀୟ ସଭ୍ୟତାର ଯେଉଁସବୁ ଶ୍ରେଷ୍ଠଗୁଣକୁ ପ୍ରତିପାଦିତ କରିଥିଲେ, ତାହାର ଆବାହନ ଓ ସଂସ୍ଥାନ ଯଦି ପୁନର୍ବାର ଏ ଦେଶରେ କରା ନ ଯାଏ, ତାହାହେଲେ ଏତେବଡ଼ ବିରାଟ ଦେଶ ହୋଇ ମଧ୍ୟ ଭାରତର କୌଣସି ପ୍ରଭାବ ଓ ପ୍ରତିପତ୍ତି ରହିବ ନାହିଁ ।

Digitized by srujan ka@gmail.com

ଭୌତିକ ବିଭବକୁ ସେ କେବେ ହେଲେ ବ୍ୟକ୍ତି ବା ସମାଜ ଜୀବନର ଆଦର୍ଶ ହେବା ଉଚିତ ବୋଲି ଗ୍ରହଣ କରୁ ନ ଥିଲେ । ଏ କଥା ସତ୍ୟ ଯେ, ବୁଦ୍ଧ ଈଶ୍ୱରଙ୍କ ନାମ ନେଉ ନ ଥିଲେ । ଈଶ୍ୱର ଅଛନ୍ତି ନା ନାହାନ୍ତି ତାହା ପଚାରିଗଲେ ସେ କିଛି ଉତ୍ତର ଦେଉ ନ ଥିଲେ ଓ କହୁଥିଲେ ଯେ, ଏ ଜୀବନର ସମସ୍ୟା ଏତେ ଅଧିକ ଓ ଜଟିଳ ଯେ ସେ ପ୍ରଶ୍ନରେ ମୁଣ୍ଡ ଖେଳାଇବା ଉଚିତ ନୁହେଁ । କିନ୍ତୁ ଈଶ୍ୱରଙ୍କ ନାମ ନ ନେଇ ମଧ୍ୟ ସେ ଯେଉଁ ଉଚ୍ଚ ଆଧ୍ୟାତ୍ମିକବାଦର ପ୍ରଚାର କରିଛନ୍ତି, ତାହା ଯେ କୌଣସି ଈଶ୍ୱର ବିଶ୍ୱାସ ଉପରେ ପ୍ରତିଷ୍ଠିତ ଧର୍ମର ଅତିଶୟ ଉପାଦେୟ, ମୂଲ୍ୟବାନ ବସ୍ତୁ ।

'ଧର୍ମଚକ୍ର ପ୍ରବର୍ତ୍ତନ ସୂତ୍ର'ରେ ସେ କହିଥିଲେ, "ଭିକ୍ଷୁମାନେ, ସନ୍ନ୍ୟାସୀର ପକ୍ଷରେ ଦୁଇଟି ଅତିଶୟ କଥା ସବୁବେଳେ ପରିତ୍ୟାଗ କରିବା ଉଚିତ । ଗୋଟିଏ ହେଉଛି ଭୋଗ ବିଳାସମୟ ଜୀବନ । ଅନ୍ୟଟି ହେଉଛି ଶରୀରକୁ ସବୁବେଳେ କଷ୍ଟ ଦେଇ ସାଧନା କରିବା । ହୀନ ଅନାର୍ଯ୍ୟ ଶ୍ରେଣୀର ଲୋକେ ଏପରି ଜୀବନ-ଯାପନ କରନ୍ତି ।" ତାଙ୍କର ନିଜର ଜୀବନ ଯାପନ ପ୍ରଣାଳୀ ଓ ଶିଷ୍ୟମାନଙ୍କର ଜୀବନଯାପନ ପ୍ରଣାଳୀ ତତ୍କାଳୀନ ଭାରତର ନବ ଯୁବକ ଗୋଷ୍ଠୀକୁ ଉଚ୍ଚ ଆଦର୍ଶବାଦରେ ଉଦ୍‌ବୁଦ୍ଧ କରିଥିଲା ଓ ପ୍ରାୟ ଏକହଜାର ବର୍ଷ ଧରି ତାହା ଏ ଦେଶରେ ଏକ ଅସରନ୍ତି ପ୍ରେରଣାର ଉତ୍ସ ଭାବରେ କାର୍ଯ୍ୟ କରିଥିଲା ।

ବୁଦ୍ଧ ଭଣ୍ଡାମି ବା ଆତ୍ମପ୍ରବଞ୍ଚନାକୁ ଆଦୌ ପ୍ରଶ୍ରୟ ଦେଉ ନ ଥିଲେ । କବି ମାତୃଚେତା ବୁଦ୍ଧଙ୍କର ଭାବକୁ ପ୍ରକାଶ କରି କହିଛନ୍ତି :—

Digitized by srujan ka@gmail.com

କେଶାଃ କିଂ ଅପରାଧ୍ୟନ୍ତି
କ୍ଳେଶାନାଂ ମୁଣ୍ଡନଂ କୁରୁ
ସକାଷାୟସ୍ୟ ଚିତ୍ତସ୍ୟ
କାଷାୟୈଃ କିଂ ପ୍ରୟୋଜନମ୍ ।

ଅର୍ଥାତ୍ ମୁଣ୍ଡର ବାଳ କ'ଣ ଦୋଷ କରିଛି, ତାକୁ କାଟିଦେଉଛ, ତୁମର ଦୁଃଖ ବା ଦୁଃଖର ହେତୁ କାମନାକୁ କାଟିଦିଅ । ଯେଉଁ ଚିତ୍ତ କାଷାୟ, ମଳିନ ବା ପାପଯୁକ୍ତ, ତା' ପକ୍ଷରେ କାଷାୟ ବସ୍ତ୍ର ପରିଧାନ କରି କୌଣସି ଲାଭ ନାହିଁ ।

ବ୍ୟକ୍ତି, ସମାଜ ବା ରାଷ୍ଟ୍ରୀୟ ଜୀବନରେ କୌଣସି କଥାକୁ ଭଲରୂପେ ପରୀକ୍ଷା ନ କରି ଦୁଆ ବା ଧ୍ୱନିରେ ପରିଚାଳିତ ହୋଇ ଯିବା ଉଚିତ ନୁହେଁ ବୋଲି ସେ କହୁଥିଲେ ।

"ପରସ୍ୟ ବାକ୍ୟୈଃ ନ ମମାତ୍ର ନିଶ୍ଚୟଃ ।" ଏପରିକି ତାଙ୍କ ବାକ୍ୟକୁ ମଧ୍ୟ ବିନା ବିଚାରରେ ଗ୍ରହଣ କରିଯିବା ପାଇଁ ସେ କାହାରିକୁ ଉପଦେଶ ଦେଉ ନ ଥିଲେ । ସେ କହୁଥିଲେ :—

ପରୀକ୍ଷ୍ୟ ଭିକ୍ଷବୋ ଗ୍ରାହ୍ୟଂ
ମଦ୍‌ବଚୋ ନତୁ ଗୌରବାତ୍

"କେବଳ ମୋ' ପ୍ରତି ତୁମର ଶ୍ରଦ୍ଧା ଅଛି ବୋଲି ନୁହେଁ, ଭଲରୂପେ ପରୀକ୍ଷା କରି ସାରିବା ପରେ ତୁମେମାନେ ମୋର ବାକ୍ୟକୁ ଗ୍ରହଣ କରିପାର ।"

ବୁଦ୍ଧଙ୍କ ସମୟରେ ଭାରତବର୍ଷରେ ଶାସନ ରାଜତନ୍ତ୍ରମୂଳକ ଥିଲା । କିନ୍ତୁ କେତୋଟି ପ୍ରଜାତାନ୍ତ୍ରିକ ରାଷ୍ଟ୍ର ମଧ୍ୟ ଥିଲା, ଯାହା ମଧ୍ୟରେ ବୈଶାଳୀ ଥିଲା ଅନ୍ୟତମ । ଏହି ବୈଶାଳୀ ରାଜ୍ୟ ବୁଦ୍ଧଙ୍କର ଅତି ପ୍ରିୟ ଥିଲା ।

Digitized by srujan ka@gmail.com

ବୈଶାଳୀର ଅଧିବାସୀ ଲିଚ୍ଛବିମାନଙ୍କ ସମ୍ପର୍କରେ ଥରେ ବୁଦ୍ଧ ଆନନ୍ଦଙ୍କୁ କହିଥିଲେ, "ଆନନ୍ଦ ଯେତେଦିନ ପର୍ଯ୍ୟନ୍ତ ଲିଚ୍ଛବିମାନେ ତାଙ୍କର ଗଣସଭାରେ ବସି ସମସ୍ତ ବିଷୟ ବାରମ୍ବାର ଆଲୋଚନା କରୁଥିବେ, ସେମାନଙ୍କ ମଧ୍ୟରେ ଏକତା ଓ ମିତ୍ରତାର ବାତାବରଣ ଥିବ, ଜ୍ୟେଷ୍ଠମାନଙ୍କର ଉପଦେଶ ସେମାନେ ମାନୁଥିବେ, ସେତେଦିନ ପର୍ଯ୍ୟନ୍ତ ସେମାନଙ୍କର ଅଗ୍ରଗତି, ସେମାନଙ୍କର ଅଧୋଗତି ନାହିଁ ।"

ଅର୍ଥାତ୍ ମିତ୍ରତାର ବାତାବରଣ ଓ ଏକତା । ଅନ୍ୟକଥାରେ କହିଲେ ସମସ୍ତଙ୍କୁ ବା ପ୍ରାୟ ସମସ୍ତଙ୍କୁ (near unanimity) ବୁଝାଇ ସୁଝାଇ ନେବାର ଉଦ୍ୟମ ନ ରହିଲେ କୌଣସି ଗଣତାନ୍ତ୍ରିକ ଶାସନ ସଫଳ ହୋଇପାରିବ ନାହିଁ ।

ବର୍ତ୍ତମାନ ବୁଦ୍ଧଙ୍କର ଉପଦେଶ ବା ଭାରତୀୟ ସଭ୍ୟତାର ଏହିସବୁ ମହନୀୟ ଗୁଣ କେତେଦୂର ଆମର ରାଷ୍ଟ୍ରୀୟ, ସାମାଜିକ ବା ବ୍ୟକ୍ତିଗତ ଜୀବନରେ ପ୍ରତିଫଳିତ ହେଉଛି, ତାହାହିଁ ବିଚାର କରିବାର ବିଷୟ । ରାଷ୍ଟ୍ରୀୟ ଆଦର୍ଶ ହେଲା ଦାରିଦ୍ର୍ୟ ଦୂର କରିବା ନାମରେ ଏକ ଆଡ଼ମ୍ବରପୂର୍ଣ୍ଣ ଶାସନ ସଂସ୍ଥା ଓ ଅପବ୍ୟୟ ବହୁଳ ଯୋଜନାର ପ୍ରଚଳନ—ଯାହାର ପ୍ରମାଣ ହେଉଛି ରାଜାନୁଗତ ଧର୍ମ ଓ ଯେ କୌଣସି ପନ୍ଥାରେ ଧନୀ ହୋଇଯିବାର ପ୍ରତ୍ୟେକଙ୍କର ଉଦ୍ୟମ ।

ପୁଣି ଏହି ରାଷ୍ଟ୍ରୀୟ ଆଦର୍ଶ ହେଲା ସମାଜବାଦ, ଯେଉଁ ଆଦର୍ଶ କି ଦରିଦ୍ର ଜନତାପ୍ରତି କରୁଣାର ମଧ୍ୟରୁ ଜନ୍ମଲାଭ କରିଛି । କିନ୍ତୁ ଭାରତବର୍ଷରେ ପୁଞ୍ଜିବାଦର ଯେଉଁ ଉତ୍କଟ ରୂପ ଦେଖିବାକୁ ମିଳେ, ଧନୀ ଦରିଦ୍ରଙ୍କ ମଧ୍ୟରେ ଯେଉଁ ବ୍ୟବଧାନ ପରିଦୃଷ୍ଟ ହୁଏ, ତାହା ପୃଥିବୀର କୌଣସି ଦେଶରେ ଦେଖିବାକୁ ମିଳେ ନାହିଁ ।

Digitized by srujan ka@gmail.com

ଧନ, ଭୋଗବିଳାସର ଉଚ୍ଛୃଙ୍ଖଳତା, କ୍ଷମତାର ଉଚ୍ଛୃଙ୍ଖଳତା, ଗଣତନ୍ତ୍ର ନାମରେ ଘୋର ରାଜନୈତିକ ବିଭେଦ ଓ ବିବାଦ— ଏହି ଜୀବନକୁ ଯେନ ଭାରତ କାହାକୁ ପ୍ରତ୍ୟାବିତ କରିବ ?

# ଭଗବାନ ବୁଦ୍ଧଙ୍କ ବାଣୀ

## ପ୍ରେମ, ଜ୍ଞାନ, ସଂଯମ

ଆମେ ଯାହା ଚିନ୍ତା କରୁ, ସେହି ଅନୁସାରେ ଆମେ ଗଢ଼ା ହେଉ । ଯଦି କୌଣସି ବ୍ୟକ୍ତି ମନ୍ଦଚିନ୍ତା ଯେନ କୌଣସି କଥା କହେ ବା କୌଣସି କାର୍ଯ୍ୟ କରେ, ତା'ହେଲେ ଦୁଃଖ ତା' ପଛରେ ଛାୟାପରି ଲାଗିରହିଥାଏ । ଯଦି କୌଣସି ବ୍ୟକ୍ତି ପବିତ୍ର ଚିନ୍ତା ଯେନ କୌଣସି କଥା କହେ ବା କୌଣସି କାର୍ଯ୍ୟ କରେ, ତା'ହେଲେ ସୁଖ ତା' ପଛରେ ଛାୟା ପରି ଲାଗି ରହିଥାଏ ।

କେହି ଗାଳି ମାଡ଼ ବା ଅପମାନ କଲେ ତାହା ଭୁଲି ନ ଯାଇ ଯଦି ସେହିକଥା ସବୁବେଳେ ଚିନ୍ତା କରାଯାଏ, ତା'ହେଲେ ମନରେ ଘୃଣା ଜାତ ହୁଏ ଓ ଘୃଣାଦ୍ୱାରା ଘୃଣାର ଶେଷ ହୁଏ ନାହିଁ—ପ୍ରେମଦ୍ୱାରା ହିଁ ଘୃଣାର ଶେଷ ହୁଏ—ଏହା ହେଉଛି ଅବିନଶ୍ୱର ଧର୍ମ ।

ନିଜର ମନକୁ ପାପମୁକ୍ତ ନ କରି କାଷାୟ ବସ୍ତ୍ର ପରିଧାନ କରିବାର କୌଣସି ମୂଲ୍ୟ ନାହିଁ । ଯଦି କୌଣସି ବ୍ୟକ୍ତି ଲୋଭୀ, କ୍ଷୁଦ୍ରମନା, ଭ୍ରଷ୍ଟାଚାରୀ ଓ ମିଥ୍ୟାବାଦୀ ହୋଇଥାଏ, ତା'ହେଲେ ସେ ସନ୍ନ୍ୟାସୀର ଗୈରିକ ବସ୍ତ୍ର ପିନ୍ଧି ବୁଦ୍ଧଙ୍କର ଯେତେ ନିକଟରେ ଥାଏ ବୋଲି ମନେକରେ, ତାହା ନୁହେଁ । ପ୍ରକୃତରେ ସେ ତାଙ୍କଠାରୁ ବହୁ ଦୂରରେ ଥାଏ ।

Digitized by srujan ka@gmail.com

ମନ ଏପରି ଚଞ୍ଚଳ ଯେ ତାକୁ ନିଜର ଆୟତ୍ତରେ ରଖିବା କଷ୍ଟକର । ମନକୁ ଯେ ପୋଷା ମନାଇପାରେ, ସେ ହିଁ ବାସ୍ତବିକ ଧନ୍ୟ ।

ଯେ ଜାଗ୍ରତ ଅବସ୍ଥାରେ ଥାଏ, ରାତି ତାକୁ ଦୀର୍ଘ ଜଣାଯାଏ; ଯେ କ୍ଳାନ୍ତ ହୋଇପଡ଼େ କୋଶେ ରାସ୍ତା ତାକୁ ଦୀର୍ଘ ଜଣାପଡ଼େ, ଯେ ପ୍ରକୃତ ଧର୍ମର ପଥ ଜାଣେ ନାହିଁ, ଜୀବନ ତା' ପକ୍ଷରେ ଦୀର୍ଘ ବା ଦୁର୍ବିସହ ।

ଜିହ୍ୱା ଯେପରି ଝୋଳର ସ୍ୱାଦ ଶୀଘ୍ର ସଂଗ୍ରହ କରିପାରେ, ଜ୍ଞାନୀ ଲୋକଙ୍କ ସମ୍ପର୍କରେ ଆସିଲେ ବୁଦ୍ଧିମାନ ବ୍ୟକ୍ତି ସେହିପରି ମୁହୂର୍ତ୍ତକ ମଧ୍ୟରେ ଜ୍ଞାନଲାଭ କରିପାରେ ।

ଯେଉଁ କାର୍ଯ୍ୟ କରିବାଦ୍ୱାରା ମନୁଷ୍ୟ ଅନୁତାପ କରେ ଓ ଯେଉଁ କାର୍ଯ୍ୟର ଫଳ ତାକୁ କାନ୍ଦି କାନ୍ଦି ଗ୍ରହଣ କରିବାକୁ ହୁଏ, ସେ କାର୍ଯ୍ୟ କେବେ ଉଚିତ କାର୍ଯ୍ୟ ହୋଇ ନ ପାରେ । ଯେଉଁ କାର୍ଯ୍ୟ କଲେ ମନୁଷ୍ୟ ଅନୁତାପ କରେ ନାହିଁ ଓ ତା'ର ଫଳସ୍ୱରୂପ ସେ ସୁଖୀ ହୁଏ, ସେହି କାର୍ଯ୍ୟ ହେଉଛି ଉଚିତ କାର୍ଯ୍ୟ ।

ପାଣି ପାଖରେ କିପରି ପହଞ୍ଚିବାକୁ ହେବ, ତାହା କୂଅ ଖୋଳାଳିମାନେ ଜାଣନ୍ତି । କାଠକୁ କିପରି ବଙ୍କା କରିବାକୁ ହେବ ତାହା ବଢ଼େଇମାନେ ଜାଣନ୍ତି । ନିଜକୁ କିପରି ଗଢ଼ିବାକୁ ହେବ, ତାହା ବିଜ୍ଞ ବ୍ୟକ୍ତିମାନେ ଜାଣନ୍ତି !

ଯେତେ ପବନ ହେଲେ ମଧ୍ୟ ପାହାଡ଼କୁ ଯେପରି ତାହା ଦୋହଲାଇ ପାରେ ନାହିଁ, ନିନ୍ଦା ବା ପ୍ରଶଂସାରେ ସତ୍ ଲୋକମାନେ ସେହିପରି ବିଚଳିତ ହୁଅନ୍ତି ନାହିଁ ।

ଯଦି କୌଣସି ବ୍ୟକ୍ତି ସହସ୍ର ସହସ୍ର ଯୋଦ୍ଧାଙ୍କୁ ଜୟ କରି ସହସ୍ର ଯୁଦ୍ଧରେ ବିଜୟୀ ହୁଏ, ଏବଂ ଅନ୍ୟ ଜଣେ ବ୍ୟକ୍ତି କେବଳ

Digitized by srujan ka@gmail.com

ନିଜକୁ ଜୟ କରେ, ତା'ହେଲେ ଏହି ଶେଷୋକ୍ତ ବ୍ୟକ୍ତି ହେଉଛି ସର୍ବଶ୍ରେଷ୍ଠ ବିଜୟୀ ।

ଆମୋଦ ହିଁ ଦୁଃଖର କାରଣ, ଭୟର କାରଣ । ଆମୋଦ-ଠାରୁ ନିଜକୁ ଯେ ଦୂରରେ ରଖିପାରିଛି, ସେ ହିଁ ଦୁଃଖ ଓ ଭୟକୁ ଜୟ କରିଛି । ଲୋଭ ଏବଂ କାମନା ହେଉଛି ଦୁଃଖର କାରଣ, ଭୟର କାରଣ । ତାକୁ ଯେ ଜୟ କରିପାରିଛି, ସେ ଦୁଃଖ ଓ ଭୟକୁ ଜୟ କରିପାରିଛି ।

ଦର୍ଶନରେ ସଂଯମ, ଶ୍ରବଣରେ ସଂଯମ, ଆଘ୍ରାଣରେ ସଂଯମ, ଜିହ୍ୱାରେ ସଂଯମ, ଶରୀରରେ ସଂଯମ, ବାକ୍ୟରେ ସଂଯମ, ଚିନ୍ତାରେ ସଂଯମ—ସବୁଥିରେ ସଂଯମ ହିଁ ହେଉଛି ସର୍ବୋତ୍କୃଷ୍ଟ । ସଂଯତ ବ୍ୟକ୍ତି କେବେ ଦୁଃଖଭାଗୀ ହୋଇ ନ ପାରେ ।

ଅନ୍ଧକାରମୟ ଗୃହରେ ପ୍ରଦୀପ ପରି ବିବେକ ହିଁ ମନୁଷ୍ୟର ପଥ ପ୍ରଦର୍ଶକ ହୁଏ ।

ମନୁଷ୍ୟ ଗେରୁଆ ଲୁଗା ପିନ୍ଧିଲେ, ଲଙ୍ଗଳା ହେଲେ, ଅଖା ପିନ୍ଧିଲେ, ମୁଣ୍ଡ ଲଣ୍ଡା କଲେ, ଦାଢ଼ି କାଟିଲେ, ଜଟା ଧରିଲେ, ପାଉଁଶ ବୋଳି ହେଲେ, ଅଗ୍ନିରେ ଝାସ ଦେଲେ ମଧ୍ୟ ସେ ପବିତ୍ର ହୋଇ ପାରିବନାହିଁ, ଯେତେଦିନ ଯାଏ ନିଜକୁ ବାସନାମୟ ଚିତ୍ତରୁ ନିଜକୁ ମୋହମାୟାରୁ ମୁକ୍ତକରି ନ ପାରିଛି । ବେଦ ପଢ଼ିଲେ, ପୁରୋହିତକୁ ଦେଲେ, ହୋମ ଯଜ୍ଞଦାନ କଲେ, ଭଗବାନଙ୍କୁ ଉପାସନା କଲେ, ନିଜର ସର୍ବବେଗ ସୁଖ ତ୍ୟାଗ କଲେ ଓ ଶୀତ ଉଷ୍ଣକୁ ସମାନ ବୋଲି ଅନୁଭବ କଲେ ମଧ୍ୟ ତହିଁରେ ନୈତିକ ବୁଦ୍ଧିର ଉନ୍ନତି ଘଟିପାରେ; କିନ୍ତୁ ମନକୁ ସମ୍ପୂର୍ଣ୍ଣ ମୋହମାୟାମୁକ୍ତ କରିପାରିବ ନାହିଁ । ମନକୁ ନିର୍ମଳ ଓ କାମନାଶୂନ୍ୟ ନ କଲେ ମନୁଷ୍ୟ ଦୁଃଖର ଦାସ ହେବ ହିଁ ହେବ ।



Digitized by srujan ka@gmail.com

ରାଗ, ନିଶାପାନ, ବ୍ୟଭିଚାର, ଅବାଧ୍ୟତା, ହିଂସା, ପରଶ୍ରୀ-କାତରତା, ଆତ୍ମପ୍ରଶଂସା ନିଜକୁ ଅନ୍ୟମାନଙ୍କଠାରୁ ବଡ଼ ଯୋଗ୍ୟ ବୋଲି ଭାବ ଅନ୍ୟକୁ ଶ୍ରେଷ୍ଠ ଭାବିବା କୁସଂସ୍କାର ସମୂହର ଦାସ ପ୍ରଭୃତିଦ୍ୱାରା ମନୁଷ୍ୟ ମୋହର ଭିତ୍ତି ପକାଏ । ମାୟାର ଭିତ୍ତି ମୋହର ଭିତ୍ତିରେ ମନୁଷ୍ୟ ପଡ଼ିଲେ ମୋହ ମାଂସ ଖାଇଯାଏ । ଭୋଗୀର ଇନ୍ଦ୍ରିୟ ସାଧନା ଭକ୍ତଙ୍କ ପଥ ନୁହେଁ, ଉପାସ ରହି ଦେହକୁ କଷ୍ଟ ଦେଲେ ମନୁଷ୍ୟର ମନର ଚିନ୍ତା ଉନ୍ନତ ହୁଏ ଓ ସେ ରୋଗୀ ହୋଇଯାଏ । ସଂସାର ଜ୍ଞାନ ପାଇବାକୁ ହେଲେ ଏ ପଥ, ପଥ ନୁହେଁ । ଇନ୍ଦ୍ରିୟ ଜୟ କରିବାକୁ ଏପରି କଠୋର ସାଧନା କେତେ ଦୂର ବଳ ଦେବ ବା କେତେଦୂର ନେବ ? ଓଦା କାଠରେ ନିଆଁ ଧରେନା, ବଣ୍ଟାକୁ ପାଣିରେ ବୁଡ଼ାଇଲେ ଅନ୍ଧାର ଯାଏନାହିଁ । କଦର୍ଯ୍ୟ ଭାବରେ ଆତ୍ମତ୍ୟାଗ କରି ବଞ୍ଚିଥିବା ଲୋକ ମାୟା ମୋହରୁ ନିଜକୁ ମୁକ୍ତ କରିବା ସମ୍ଭବ ନୁହେଁ । ସେ ତା'ର କାମ, କ୍ରୋଧ, ହିଂସା ଅଭିମାନ ମଧ୍ୟ ଛାଡ଼ି ପାରିବ ନାହିଁ । ମନୁଷ୍ୟ ତା'ର ଦରକାର ପାନାହାର କରିବ । ଦେହକୁ କଷ୍ଟ ଦେଇ ଉପାସ ପଡ଼ିଲେ ଦେହ ମର୍ତ୍ତ୍ୟର ସୁଖ କି ସ୍ୱର୍ଗର ସୁଖ କିଛି ଭୋଗ କରିବ ନାହିଁ । ତା'ର ଦରକାର ଜିନିଷ ଯାହା, ତାହା ସେ ଗ୍ରହଣ କରିବାପାଇଁ ସର୍ବଦା ଭିତରୁ ପ୍ରବର୍ତ୍ତନା ପାଉଥିବ । ତେଣୁ ଦେହ ରହିବା ମତେ ଖାଇବା ପିଇବା ଦରକାର । ମନର ଭୋଗ ବାସନା ବଞ୍ଚିଥିବା ଯାଏ କିଛି ସାଧନ କରିବା ଫଳ ନାହିଁ । ମନ ମର୍ତ୍ତ୍ୟ ବା ସ୍ୱର୍ଗ ସୁଖ ଲୋଡ଼ିବ କିନ୍ତୁ ସ୍ୱର୍ଗ ବା ମର୍ତ୍ତ୍ୟ ସୁଖ ଭୋଗର ବାସନା ନିର୍ବାଣ ହେଲେ ମନୁଷ୍ୟର ଦୁଃଖ ଶେଷ ହେବ । ତେଣୁ ସ୍ୱର୍ଗ ମର୍ତ୍ତ୍ୟର କିଛି ସୁଖ ବାସନା ରଖ ନାହିଁ ।

Digitized by srujan ka@gmail.com

## ଗୃହସ୍ଥର କର୍ତ୍ତବ୍ୟ

ଯୁବକ ଗୃହସ୍ଥର କର୍ତ୍ତବ୍ୟ ହେଉଛି ତା'ର ପିତାମାତାଙ୍କର ଯତ୍ନନେବା, ଗୁରୁଙ୍କୁ ସମ୍ମାନିତ କରିବା, ସ୍ତ୍ରୀ ପୁତ୍ର-କନ୍ୟାଙ୍କର ତତ୍ତ୍ୱାବଧାନ କରିବା, ବନ୍ଧୁ ଓ ସହଯୋଗୀମାନଙ୍କୁ ସ୍ନେହ କରିବା, ନିଜର ଭୃତ୍ୟ ବା ଶ୍ରମିକ ଥିଲେ ସେମାନଙ୍କୁ ନିଜର ବୋଲି ଜ୍ଞାନ କରି ବ୍ୟବହାର କରିବା ଏବଂ ସାଧୁସନ୍ଥମାନଙ୍କ ସେବା କରିବା ।

'ଆଘାତ ପରିବର୍ତ୍ତେ ଆଘାତ କଲେ ତାହା ପ୍ରତିକାର ନୁହେଁ, ତାହା ପାପବୁଦ୍ଧିକୁହିଁ ଜନ୍ମଦିଏ ।'

'ଯେଉଁଲୋକ ନିର୍ଦ୍ଦୋଷ, ପବିତ୍ର, ନିଷ୍ପାପ ବ୍ୟକ୍ତିଙ୍କ ପ୍ରତି ବିନା କାରଣରେ ଦୋଷାରୋପ କରେ, ପବନର ବିପରୀତ ଗତିରେ କ୍ଷିପ୍ତ ସୂକ୍ଷ୍ମ ଧୂଳିକଣା ପରି ପାପ ତାହା ଆଡ଼କୁ ଫେରିଆସେ ।

'ଯେଉଁଲୋକ ପ୍ରଥମରେ ଦୁଷ୍କୃତ ବା ପାପକରି ପଶ୍ଚାତ୍ ସାବଧାନ ହୁଏ, ସେ ମେଘନିର୍ମୁକ୍ତ ଚନ୍ଦ୍ରପରି ଏହି ଜଗତକୁ ଆଲୋକିତ କରେ ।

ଯେଉଁଲୋକର ଧର୍ମାଧର୍ମ ଜ୍ଞାନ ନଥାଏ, ସତ୍ୟପ୍ରତି ଆସ୍ଥା ନ ଥାଏ, ମିଥ୍ୟା କହୁଥାଏ ଓ ପରଜନ୍ମ ଅଛି—ଏ ବିଶ୍ୱାସ ତାହାର ନଥାଏ, ସେ ସବୁ ପାପ କରିପାରେ ।

ଯେଉଁଲୋକ ଥରେ ପୁଣ୍ୟକରେ, ତେବେ ସେ ତାହା ବାରମ୍ବାର କରିବା ଉଚିତ ଏବଂ ସେଥିରେ ଅନୁରାଗ ରଖିବା ଉଚିତ, ଏଥିରେ ପୁଣ୍ୟର ସଞ୍ଚୟ ହୋଇ ତାହାର ଜୀବନ ସୁଖମୟ ହୋଇଥାଏ ।

Digitized by srujan ka@gmail.com

'ପାପୀ ଇହଲୋକରେ ଶୋକ କରେ, ମୃତ୍ୟୁପରେ ଶୋକ କରେ—ଉଭୟ ଲୋକରେ ଶୋକ କରେ ବା ଦୁଃଖ ଅନୁଭବ କରେ । ସେ ନିଜର ପାପକର୍ମ ଦେଖି ଶୋକ କରେ ଓ ଅତ୍ୟନ୍ତ କଷ୍ଟ ପାଏ ।

ପୁଣ୍ୟବାନ ବ୍ୟକ୍ତି ଇହଲୋକରେ ଆନନ୍ଦିତ ହୁଏ, ମୃତ୍ୟୁପରେ ଆନନ୍ଦିତ ହୁଏ—ଉଭୟ ଲୋକରେ ଆନନ୍ଦିତ ହୁଏ । ସେ ନିଜର ବିଶୁଦ୍ଧ ବା ପୁଣ୍ୟକର୍ମ ଦେଖି ଆନନ୍ଦରୁ ଅଧିକ ଆନନ୍ଦ ଲାଭ କରେ ।

ଅସତ୍ ଓ ମୂର୍ଖ ସହିତ ସୌହାର୍ଦ୍ଦ୍ୟ କରିବ ନାହିଁ ଓ ତାହା ସହିତ ବୈବାହିକ ସୂତ୍ରରେ ଆବଦ୍ଧ ହେବନାହିଁ ।

ମନୁଷ୍ୟ ନିଜେ ବଞ୍ଚିବାପାଇଁ ଅନ୍ୟ ପ୍ରାଣୀକୁ ବିପଦରେ ପକାଇବ ନାହିଁ ।

———

Digitized by srujan ka@gmail.com



# ପ୍ରଭୁ ଯୀଶୁ ଖ୍ରୀଷ୍ଟ

ରାୟବାହାଦୁର ସାମୁଏଲ ଦାସ, ଏମ. ଏ. ସି. ଆଇ. ଇ.
(ଅବସରପ୍ରାପ୍ତ ଓଡ଼ିଶା ରେଭିନ୍ୟୁ କମିସନର, ପୂର୍ବତନ କୁଳପତି
ଶ୍ରୀରାମପୁର ବିଶ୍ୱବିଦ୍ୟାଳୟ, ଆଜୀବନ ସଭ୍ୟ-ଉତ୍କଳ ବିଶ୍ୱବିଦ୍ୟାଳୟ
ସିନେଟ ଇତ୍ୟାଦି, ଇତ୍ୟାଦି)

ପ୍ରାୟ ଦୁଇହଜାର ବର୍ଷ ପୂର୍ବେ ଏହି ଧରାଧାମରେ ଶ୍ରୀ ଯୀଶୁ ଖ୍ରୀଷ୍ଟଙ୍କର ଆବିର୍ଭାବ ହୋଇଥିଲା । ଏସିଆ ମହାଦେଶର ପଶ୍ଚିମ

Digitized by srujan ka@gmail.com

ପ୍ରାନ୍ତରେ ଯିହୁଦା ଦେଶର ମହାନଗରୀ ଯିରୁଶାଲମଠାରୁ ଅନତି ଦୂରରେ ବେଥଲିହମ ନାମକ ଏକ ପଲ୍ଲୀଗ୍ରାମର ଗୋଶାଳାରେ ସେ ଜନ୍ମଗ୍ରହଣ କରିଥିଲେ । ରାଜକାୟ କୁଳର ବଂଶଧର ହେଲେ ମଧ୍ୟ କାଳବଶେ ବିଦେଶୀୟ ଶାସନ ହେତୁ ତାଙ୍କର ପରିବାର ଅବହେଳିତ ହୋଇଥିଲା । ତାଙ୍କର ପିତା ଯୋଷେଫ ଜଣେ ଗରିବ ସୂତ୍ରଧର ଥିଲେ । ଯୀଶୁଙ୍କ ଜନ୍ମ ସମୟରେ ଏହି ଦୈବୀବାଣୀ ଶୁଣା ଯାଇଥିଲା, 'ଉର୍ଦ୍ଧ୍ୱ ଲୋକରେ ଈଶ୍ୱରଙ୍କ ମହିମା, ପୃଥିବୀରେ ଶାନ୍ତି ଏବଂ ତାଙ୍କର ସନ୍ତୋଷ ପାତ୍ର ମନୁଷ୍ୟମାନଙ୍କ ମଧ୍ୟରେ ମୈତ୍ରୀ ଓ ସଦ୍ଭାବ ବର୍ତ୍ତୁ ।' ଐଶୀ ଆଦେଶମତେ ନବଜାତ ଶିଶୁଙ୍କର ନାମକରଣ ହେଲା 'ଯୀଶୁ'; ଏହାର ଅର୍ଥ ସେ ଲୋକମାନଙ୍କୁ ନିଜ ନିଜ ପାପରୁ ଉଦ୍ଧାର କରିବେ ।'

ବିଦେଶୀୟ ଶାସକଙ୍କ ଦ୍ୱାରା ଶାସିତ ଅଞ୍ଚଳର ଲୋକେ ଶୋଷିତ ଓ ଉତ୍ପୀଡ଼ିତ ହେଉଥିଲେ । ରୋମୀୟ ଶାସକଙ୍କ ଦ୍ୱାରା ନିଯୁକ୍ତ ଯିହୁଦା ପ୍ରଦେଶର ରାଜା ହେରୋଦ ଏକ ଅସାଧୁ ଓ ନିଷ୍ଠୁର ପ୍ରକୃତିର ଲୋକ ଥିଲେ । ଅସନ୍ତୁଷ୍ଟ ଜନତାକୁ ସନ୍ତୁଷ୍ଟ କରିବାପାଇଁ ହେରୋଦ ରାଜା ଜୀର୍ଣ୍ଣ ଓ ଭଗ୍ନ ମନ୍ଦିର ଯିରୁଶାଲମରେ ପୁନଃନିର୍ମାଣ କରିଥିଲେ ! ଏହି ମନ୍ଦିର ସଙ୍ଗେ ସମ୍ପୃକ୍ତ ଅନୁଷ୍ଠାନର ଧର୍ମଯାଜକମାନେ ପୁଣି ଜୀର୍ଣ୍ଣୟବାଦୀ ପଣ୍ଡିତ କିନ୍ତୁ କୁଟିଳ 'ଫାରିଷୀ' ନାମଧେୟ ଜନନାୟକମାନେ ଲୋକଙ୍କ ନୈତିକ ଓ ପବିତ୍ର ଜୀବନର ସତ୍ତା ଉପରେ ଗୁରୁତ୍ୱ ନଦେଇ ବାହ୍ୟିକ ବିଧି-ବିଧାନ ଓ ଲୋକଙ୍କ ଆଡ଼ମ୍ବରପୂର୍ଣ୍ଣ ଉତ୍ସବ ପାଳନରେ ଅଜ୍ଞ ଜନତା ଉପରେ ଧର୍ମ ନାମରେ ପ୍ରଭାବ ବିସ୍ତାର କରି ଯଥେଷ୍ଟ ଧନାଗମର ପନ୍ଥା ଉଦ୍ଭାବନ କରିଥିଲେ ।

Digitized by srujan ka@gmail.com

ଏପରି ଏକ ରାଜନୈତିକ ଅସ୍ଥିରତା, ସାମାଜିକ ବିଶୃଙ୍ଖଳା ଓ ଧର୍ମହୀନ ବାତାବରଣ ମଧ୍ୟରେ ଶ୍ରୀ ଯୀଶୁଙ୍କର ଜୀବନ ଓ କାର୍ଯ୍ୟ ପଙ୍କିଳ କର୍ଦ୍ଦମରୁ ପଦ୍ମର ପରି ପ୍ରସ୍ଫୁଟିତ ହେବାକୁ ଲାଗିଲା । ବାଲ୍ୟକାଳରେ ଅଦୃଶ୍ୟ ଅନ୍ତରାଳରେ ବିଦ୍ୟମାନ ମହାନ୍ ଈଶ୍ବରଙ୍କୁ ଆତ୍ମାର ସହିତ ସେ ନିରନ୍ତର ସଂଯୋଗ ରଖିଥିଲେ । ଏପରିକି ଦ୍ୱାଦଶବର୍ଷ ବୟସରେ ପ୍ରଧାନ ଭଜନାଳୟରେ ଧର୍ମଗୁରୁମାନଙ୍କସହ ଆଲୋଚନାରେ ଅନନ୍ତ ସତ୍ୟର ପ୍ରାଞ୍ଜଳ ବିବୃତିରେ ସେମାନଙ୍କୁ ବିସ୍ମିତ କରିଥିଲେ । ଶ୍ରୀ ଯୀଶୁଖ୍ରୀଷ୍ଟ ୩୦ ବର୍ଷ ବୟସ ପର୍ଯ୍ୟନ୍ତ ପିତାମାତାଙ୍କ ବାଧ୍ୟରହି ପରିବାରର ଦାୟିତ୍ବରେ ପୂର୍ଣ୍ଣ ଅଂଶ ଗ୍ରହଣ କରିଥିଲେ । ଇତ୍ୟବସରରେ ମାନବର ପାପପ୍ରିୟ ପ୍ରବୃତ୍ତି, କଳୁଷ ପ୍ରକୃତି ଓ ତନ୍ଜନିତ ଜଗତରେ ଦୁଃଖ ଓ କ୍ଲେଶର ବିରାଟ ସମସ୍ୟା ତାଙ୍କୁ ଏକ ନୂତନ ଐଶରାଜ୍ୟ ରାଜ୍ୟ ପ୍ରତିଷ୍ଠାନର ଆହ୍ୱାନ ଦେଲା । ଈଶ୍ବରଙ୍କ ଏହି ମହତ୍ ଇଚ୍ଛା ସାଧନର ପରିକଳ୍ପନା ନେଇ ସେ ଅରଣ୍ୟରେ ଚାଳିଶ ଦିନ ଏପରି ଧ୍ୟାନ ବିଭୋର ହୋଇ ପଡ଼ିଥିଲେ ଯେ, କ୍ଷୁଧା ଓ ତୃଷ୍ଣା ସୁଦ୍ଧା ଭୁଲି ଯାଇଥିଲେ । ତାଙ୍କୁ ସାଧନାପଥରୁ ବିଚ୍ୟୁତ କରିବାପାଇଁ ଈଶ୍ବରଦ୍ରୋହୀ ଦୁରାତ୍ମା ମାନବଜାତିର ତିନୋଟି ମୌଳିକ ପ୍ରବୃତ୍ତି ନେଇ ପ୍ରଲୋଭନ ଦେଖାଇଲା ।

ପ୍ରଥମତଃ ଏହି ଭାବ ଦେଲା, ଶରୀର ସୃଷ୍ଟିର ଉଦ୍ଦେଶ୍ୟ ହେଉଛି ଶରୀରର ଅଭିଳାଷ ତୃପ୍ତି କରିବା; ଖାଅ, ପିଅ ଓ ଶରୀରର ତୃପ୍ତିସାଧନ କର । ଯୀଶୁ କହିଲେ, 'ମନୁଷ୍ୟ ଖାଦ୍ୟ ବା ଅଭିଳାଷର ତୃପ୍ତିରେ ବଞ୍ଚେ ନା; ସେ ଈଶ୍ବରଙ୍କ ଇଚ୍ଛା ସାଧନ ଦ୍ୱାରାହିଁ ପ୍ରକୃତ ଜୀବନ ପାଏ ।' ଦ୍ୱିତୀୟରେ ଦୁରାତ୍ମା ଏହି ଭାବ ଦେଲା ଆପଣ ଜ୍ଞାନ ଓ ଅଲୌକିକ କାର୍ଯ୍ୟସାଧନରେ ଲୋକଙ୍କ ମଧ୍ୟରେ

Digitized by srujan ka@gmail.com

ନିଜର କୀର୍ତ୍ତି ପ୍ରତିଷ୍ଠା କରିବାଦ୍ୱାରା ଜୀବନର ଉଦ୍ଦେଶ୍ୟ ସାଧନ କରି ପାରିବେ । ଯୀଶୁ କହିଲେ, 'ଏପରି ତୁଚ୍ଛ ବିଷୟଦ୍ୱାରା ତୁମର ପ୍ରଭୁଙ୍କୁ ପରୀକ୍ଷା କରନାହିଁ ।' ତୃତୀୟରେ ଦୁରାତ୍ମା ଜଗତର ମହା ଐଶ୍ୱର୍ଯ୍ୟ ଦେଖାଇ କହିଲା—ମୋତେ ଯଦି ଭଜନା କରିବ ଏସବୁ ଆପଣଙ୍କର ହେବ । ଯୀଶୁ ଦୁରାତ୍ମାକୁ ଧମକ ଦେଇ କହିଲେ, 'ଦୂର ହୁଅ, ଈଶ୍ୱରଙ୍କର ଭଜନା କର, କେବଳ ତାହାଙ୍କରହିଁ ଆରାଧନା କର' । ତପରେ ଦୁରାତ୍ମା କିଛିକ୍ଷଣ ତାଙ୍କୁ ଛାଡ଼ି ଚାଲିଗଲା; କିନ୍ତୁ ଅନ୍ୟ ଉପାୟରେ ତାଙ୍କର ବିନାଶ ପରି-କଳ୍ପନା କରିବାକୁ ଲାଗିଲା ।

ତଦନନ୍ତର ଯୀଶୁଖ୍ରୀଷ୍ଟ ନଗର ଓ ଗ୍ରାମମାନଙ୍କରେ ଯାଇ ଐଶ୍ୱରୀୟ ରାଜ୍ୟର ନିଗୂଢ଼ ତତ୍ତ୍ୱ ପ୍ରଚାର କରିବାକୁ ଲାଗିଲେ । ଧର୍ମାଳୟମାନଙ୍କରେ ଶିକ୍ଷା ଦେଲେ ଏବଂ ଦୁଃସ୍ଥ ଓ ରୋଗଗ୍ରସ୍ତ ଲୋକଙ୍କୁ ସୁସ୍ଥ କରିବାକୁ ଲାଗିଲେ । ଏସବୁ କାର୍ଯ୍ୟରେ ବୃଦ୍ଧି କରିବା ପାଇଁ ସେ ବାରଜଣ ଶିଷ୍ୟଙ୍କୁ ମନୋନୀତ କଲେ । ଯୀଶୁ ଯେଉଁ-ଆଡ଼େ ଗଲେ ଲୋକଗହଳ ହେବାକୁ ଲାଗିଲା । ଜନତାକୁ ଶିକ୍ଷା ଦେଇ କହିଲେ, 'ଅନୁତାପ କର ହୃଦୟ ପରିବର୍ତ୍ତନ କର ଏବଂ ଈଶ୍ୱରଙ୍କ ନିକଟକୁ ଫେରି ତହିଁରେ ଶାନ୍ତିମୟ ରାଜ୍ୟ କେଉଁଠି ସନ୍ନିକଟ ତାହା ବୁଝିପାରିବ । ମନୁଷ୍ୟ ଶରୀରର ଅଭିଳାଷରୁ ଜନ୍ମ ହେବାଦ୍ୱାରା ଶରୀରର ଅଭିଳାଷ ପାଇଁ ତୃଷିତ; କିନ୍ତୁ ଆତ୍ମାରେ ତୁମର ନୂଆ ଜନ୍ମ ପାଇବାର ପ୍ରୟୋଜନ, ସେହି ପୁନର୍ଜନ୍ମ ଊର୍ଦ୍ଧ୍ୱରୁ ହୁଏ ।

ମନୁଷ୍ୟର ଅନ୍ତଃକରଣରେ ଅଭିଳାଷର ପ୍ରବୃତ୍ତି ଓ ପ୍ରକୃତି ପ୍ରଚ୍ଛନ୍ନଭାବେ ଥାଏ; ତହିଁରୁ କାମୁକତା, କୁଅଭିଳାଷ, ଦ୍ୱେଷ, ଈର୍ଷା,

Digitized by srujan ka@gmail.com

ଘୃଣା, କ୍ରୋଧ, ଅତି ସ୍ୱାର୍ଥପରତା, ଆତ୍ମପ୍ରତିଷ୍ଠା, ଦଳଭେଦ, ଲୌକିକ ଗର୍ବ, ପରଗ୍ଲାନି ଇତ୍ୟାଦି ପାପମସ୍ତୁ ବିଷ ସର୍ବତ୍ର ଚରି ଯାଇ ନିଜର ଓ ଅନ୍ୟର ଅନିଷ୍ଟ ସାଧନ କରିଥାଏ । ଅପରିଷ୍କାର ଚାଟିଆ ଭିତରେ ମଇଳାରଖି ବାହାର ମାଜି ଚକ୍ ଚକ୍ କଲେ ଯେପରି, ସେହିପରି ହୃଦୟରେ କଳୁଷତା ରଖି ବାହାରେ ଉପବାସ, ବ୍ରତ, ପୂଜା ଓ ଉପାସନା କଲେ କି ଲାଭ ? ମନୁଷ୍ୟ ଜଗତର ସବୁ ଐଶ୍ୱର୍ଯ୍ୟ ପାଇ ନିଜର ଆତ୍ମା ଯଦି ହରାଏ ତାହା କେଡ଼େ ମୂର୍ଖତା !

ଜଣକର ଶହେ ମେଷ ଥାଇ ଯଦି ଗୋଟିଏ ହଜିଯାଏ, ସେ କ'ଣ ହଜିଲା ମେଣ୍ଢାଟିକୁ ଖୋଜିବ ନାହିଁ ? ପିଲାଙ୍କ ମଧ୍ୟରୁ ଯଦି ଗୋଟିଏ ବିପଥଗାମୀ ହୁଏ ଅବା ଘରୁ ପଳାଏ, ବାପା କ'ଣ ଘରେ ଶାନ୍ତିରେ ବସି ରହିବ ? ହଜିଲା ପିଲାର ନିମନ୍ତେ ବାପାର ହୃଦୟ ଯେପରି କାନ୍ଦେ, ଈଶ୍ୱରଙ୍କ ଅନ୍ତରର ବେଦନା ହଜିଲା ମାନବଜାତି ପାଇଁ କି ତତୋଧିକ ନୁହେଁ ? ଈଶ୍ୱର ପତିତମାନବଙ୍କୁ ଏଡ଼େ ପ୍ରେମ କଲେ ଯେ ପାପର ପ୍ରାୟଶ୍ଚିତ ସ୍ୱରୂପେ ଆତ୍ମବଳି ଦାନର ଦୁଃଖ ବରଣ କରିବାପାଇଁ ତାଙ୍କର ଅନ୍ତରାତ୍ମା ବାସ୍ତବ ଜଗତରେ ଦେହ ଧାରଣ କରି ତାହା ପ୍ରକାଶ କଲେ । ଶ୍ରୀ ଯୀଶୁଖ୍ରୀଷ୍ଟ କହିଲେ, 'ଅନ୍ୟର ନିମନ୍ତେ ପ୍ରାଣ ଦେବାର ବିରଳ, ମିତ୍ର ନିମନ୍ତେ କେହି ପ୍ରାଣ ଦେଇଥାଏ; କିନ୍ତୁ ଶତ୍ରୁ ନିମନ୍ତେ ପ୍ରାଣଦାନଠାରୁ ବଳି ପ୍ରେମ କି ହୋଇପାରେ' ।

ଶ୍ରୀ ଯୀଶୁଖ୍ରୀଷ୍ଟଙ୍କର ଐଶ୍ୱରୀୟ ପ୍ରେମର ସୁସମ୍ବାଦ ଓ ସତ୍ୟର ବାଣୀ ଶୁଣି ଜନତା ତାଙ୍କର ପଛେ ପଛେ ଯିବାକୁ ଲାଗିଲେ । ସେଉଁ ପ୍ରଭାବଶାଳୀ ଦଳନେତାମାନେ ପାରମ୍ପରିକ

Digitized by srujan ka@gmail.com

ଶତ୍ରୁମାନଙ୍କଦ୍ୱାରା ଲୋକଙ୍କୁ ବାନ୍ଧି ରଖିଥିଲେ ସେମାନେ ଈର୍ଷାପରବଶ ହୋଇ ଯୀଶୁଙ୍କୁ ହତ୍ୟା କରିବାର ଚକ୍ରାନ୍ତ କଲେ । ଯୀଶୁ ଯେ ଧର୍ମଦ୍ରୋହୀ ଓ ରାଜଦ୍ରୋହୀ ଏହି ଅପପ୍ରଚାରଦ୍ୱାରା ମତାନ୍ଧ ଲୋକଙ୍କୁ ଓ ଶାସକବର୍ଗଙ୍କୁ ଉତ୍ତେଜିତ କରିବାକୁ ଲାଗିଲେ । ତତ୍କାଳୀନ ରୋମୀୟ ଶାସକ ଓ ବିଚାରକର୍ତ୍ତା ପୀଲାତଙ୍କ ନିକଟରେ ନାନାପ୍ରକାର ମିଥ୍ୟା ଅଭିଯୋଗରେ ଦଳନେତାଗଣ ଯୀଶୁଙ୍କର ବିରୁଦ୍ଧରେ ପ୍ରାଣ ଦଣ୍ଡାଜ୍ଞା ପ୍ରାର୍ଥନା କଲେ । କିନ୍ତୁ ଯୀଶୁ ନୀରବ ରହିଲେ । ପରି-ଶେଷରେ ଦଳନେତାମାନେ କହିଲେ ଏ ଲୋକ ନିଜକୁ ରାଜା ବୋଲି ପ୍ରଚାର କରେ, ଇଏ ରାଜଦ୍ରୋହୀ । ବିଚାରକର୍ତ୍ତା ଯୀଶୁଙ୍କୁ ପଚାରିଲେ "କ'ଣ ଆପଣ ଜଣେ ରାଜା ?" ଯୀଶୁ ଉତ୍ତର ଦେଲେ, "ଆପଣ ହିଁ କହୁଛନ୍ତି; କିନ୍ତୁ ମୋର ରାଜ୍ୟ ଏ ଜଗତ ସମ୍ବନ୍ଧୀୟ ନୁହେଁ, ଯଦି ତାହା ହୋଇଥାଆନ୍ତା ଅଗଣିତ ଅଲୌକିକ ବାହିନୀ ମୋର ସପକ୍ଷରେ ଯୁଦ୍ଧ କରିଥାଆନ୍ତେ ।" ପୀଲାତ ଜାଣୁଥିଲେ ଯେ ଅଭିଯୋଗକାରୀମାନେ ଈର୍ଷାପରବଶ ହୋଇ ଯୀଶୁଙ୍କର ମୃତ୍ୟୁ ଲୋଡ଼ୁଅଛନ୍ତି, ତେଣୁ ସେ କହିଲେ 'ମୁଁ ଏ ଲୋକର ପ୍ରାଣଦଣ୍ଡା-ଜ୍ଞାର କୌଣସି ଦୋଷ ଦେଖୁନାହିଁ । ତୁମ୍ଭମାନଙ୍କ ପର୍ବ ଦିନରେ ଜଣେ ବନ୍ଦୀଙ୍କୁ ମୁକ୍ତ କରିବାର ବିଧି ଅଛି, ସୁତରାଂ ବାରବାନାମକ ଦଣ୍ଡିତ ବ୍ୟକ୍ତି ସ୍ଥଳରେ ଯୀଶୁଙ୍କୁ ମୁକ୍ତ କରିବାର ମୋର ଇଚ୍ଛା ଅଛି ।" ଏଥିରେ ନେତାଗଣ ଓ ଉତ୍ତ୍ୟକ୍ତ ଜନତା ଚିତ୍କାର କରି କହିଲେ "ବାରବା ନୁହେଁ ମାତ୍ର ଯୀଶୁଙ୍କୁ କ୍ରୁଶର ଶୂଳୀକାଠରେ ଚଢ଼ାଅ ।" ପୀଲାତ ପରିଶେଷରେ ଜନତାଙ୍କୁ ତୁଷ୍ଟ କରିବାପାଇଁ ଯୀଶୁଙ୍କୁ ପ୍ରାଣଦଣ୍ଡାଜ୍ଞାପାଇଁ ସମର୍ପଣ କରି କହିଲେ "ମୁଁ ଜଳରେ ହାତ ଧୋଉଅଛି ଯେହେତୁ ଏ ବ୍ୟକ୍ତିର ରକ୍ତପାତର ଦୋଷ ମୋ ଉପରେ ନ ବର୍ତ୍ତେ ।" ଯାଜକକୁଳ ଓ ଜନତା ଉଚ୍ଚ ସ୍ୱରରେ

Digitized by srujan ka@gmail.com

କହିବାକୁ ଲାଗିଲେ "ତାଙ୍କର ରକ୍ତ ଆମ ଉପରେ ପୁଣି ଆମ ବଂଶ ଉପରେ ବର୍ତ୍ତୁ ।" ତଦନନ୍ତର ତାଙ୍କୁ ନେଇ ଲୋକେ କ୍ରୁଶ ବା ଆଡ଼ କାଠରେ ଯୀଶୁଙ୍କର ହାତ ଓ ପାଦରେ କଣ୍ଟାମାରି ତାଙ୍କ ମୁଣ୍ଡରେ କଣ୍ଟାର ମୁକୁଟ ଦେଇ ଉପହାସ କରୁ କରୁ ତାଙ୍କୁ କାଠରେ ଟଙ୍ଗାଇଲେ । ତଥାପି ଯୀଶୁ ଦୟା ଓ ପ୍ରେମରୁ ବିଚ୍ୟୁତ ନ ହୋଇ ଦାରୁଣ ବେଦନା ମଧ୍ୟରେ କହିଲେ " ହେ ପରମ ପିତା ! ଏମାନଙ୍କୁ କ୍ଷମା କର, ଏମାନେ ଅଜ୍ଞାନପଣରେ କଣ କରୁଅଛନ୍ତି ତାହା ବୁଝି ନାହାନ୍ତି ।" ଲିଖିତ ଅଛି, ସେଠାରେ ଭୂମିକମ୍ପ ହେଲା, ପୁଣି ତିନ-ଘଣ୍ଟା ପର୍ଯ୍ୟନ୍ତ ଅନ୍ଧକାର ଘୋଟି ପାଇଥିଲା । ଶେଷରେ ଯୀଶୁ ଉଚ୍ଚାରଣ କରି କହିଲେ "ଏବେ ସବୁ ସମାପ୍ତ ହେଲା" ଏହା କହି ସ୍ୱର୍ଗସ୍ଥ ପିତାଙ୍କଠାରେ ଆତ୍ମସମର୍ପଣ କଲେ । ଜଣେ ଶିଷ୍ୟ ଯୀଶୁଙ୍କର ମୃତ ଦେହକୁ ନେଇ ସମାଧିସ୍ଥ କଲେ ।

ଯୀଶୁଙ୍କ ମୃତ୍ୟୁପରେ ତାଙ୍କ ଶିଷ୍ୟମାନେ ଦୁଃଖରେ ଅଭିଭୂତ ହୋଇ ହତାଶ ହୋଇପଡ଼ିଲେ । ସେମାନେ ମନେ କରିଥିଲେ ଯୀଶୁ ସେମାନଙ୍କୁ ବିଦେଶୀ ଶାସନ କବଳରୁ ମୁକ୍ତ କରି ସ୍ୱାଧୀନ କରିବେ ଏବଂ ଅଲୌକିକ ଶକ୍ତି ବଳରେ ଶତ୍ରୁମାନଙ୍କୁ ବଶୀଭୂତ କରି ଏକ ସୁଦୃଢ଼ ରାଜ୍ୟ ସଂସ୍ଥାପନ କରିବେ; କିନ୍ତୁ ତାହା କାର୍ଯ୍ୟକାରୀ ନ ହେବାରୁ ସେମାନେ ଲଜ୍ଜିତ ଓ ନିରାଶ ହୋଇପଡ଼ିଲେ । ଯୀଶୁଙ୍କ ମୃତ୍ୟୁର ତୃତୀୟ ଦିନ ପ୍ରଭାତରେ ଏକ ଗହଳ ପଡ଼ିଗଲା । କେତେକ ଆସି କହିଲେ ଯେ ସେମାନେ ଯୀଶୁଙ୍କର ଦର୍ଶନ ପାଇଅଛନ୍ତି । ଏହିପରି କେତେ ଥର ଧ୍ୟାନରତ ଶିଷ୍ୟମାନେ ତାଙ୍କର ଦର୍ଶନ ପାଇଲେ । ମୃତ୍ୟୁର ଚାଳିଶଂଶତ ଦିନ ସମସ୍ତ ଶିଷ୍ୟ ଏକତ୍ରିତ ହୋଇ ଭଜନା କରିବା ସମୟରେ ସେମାନେ ଯୀଶୁଙ୍କର ପ୍ରତ୍ୟା-

Digitized by srujan ka@gmail.com

ଦେଖା ପାଇଲେ । ତାହାଙ୍କର ଏହି ବାଣୀ ହେଲା "ମୁଁ ମୃତ ହେଲି, ଦେଖ ମୁଁ ଜୀବିତ ଅଛି । ତୁମ୍ଭେମାନେ ଊର୍ଦ୍ଧ୍ୱଲୋକରୁ ପରମାତ୍ମାଙ୍କର ଶକ୍ତି ଓ ପରାକ୍ରମ ପାଇବା ପର୍ଯ୍ୟନ୍ତ ଆତ୍ମିକ ସହବାସରେ ଅପେକ୍ଷା କରି ରୁହ, ସେହି ପରାକ୍ରମ ପାଇଲା ପରେ ମୋର କ୍ଷମା ଓ ପ୍ରେମର ସୁସମ୍ବାଦ ସର୍ବତ୍ର ପ୍ରଚାର କର, ପୁଣି ମୁଁ ଆତ୍ମବଳିଦାନ ରୂପ ଯେଉଁ ପ୍ରେମରେ ତୁମ୍ଭମାନଙ୍କୁ ପ୍ରେମ କଲି ସେହି ବାସ୍ତବ ପ୍ରେମର ପନ୍ଥୀ ହୋଇ ମୋର ଅନୁଗ୍ରହର ସାକ୍ଷୀ ହୁଅ । ଏହି ଅନୁଗ୍ରହର ଯୁଗ ଯେବେ ଶେଷ ହେବ ଏବଂ ପ୍ରତ୍ୟେକେ ନିଜ ନିଜ କାର୍ଯ୍ୟର ହିସାବ ଦେବେ । ଦେଖ ମୁଁ ଯୁଗ ଶେଷ ପର୍ଯ୍ୟନ୍ତ ତୁମ୍ଭମାନଙ୍କ ସହିତ ଅଛି ।"

ଶ୍ରୀ ଯୀଶୁଖ୍ରୀଷ୍ଟଙ୍କ ଜନ୍ମଗ୍ରହଣ ସମୟରେ ଜଗତରେ ଶାନ୍ତି ଓ ଊର୍ଦ୍ଧ୍ୱଲୋକରେ ଈଶ୍ୱରଙ୍କ ମହିମାର ବାଣୀ ମୁଖରିତ ହୋଇଥିଲା, ତାଙ୍କର ଅନ୍ତର୍ଦ୍ଧାନ ସମୟରେ ଯୀଶୁ ଶାନ୍ତିର ଆଶୀର୍ବାଦ ଉଚ୍ଚାରଣ କରୁ କରୁ ଊର୍ଦ୍ଧ୍ୱଲୋକରେ ଗୃହୀତ ହେଲେ । ତିରିଶବର୍ଷ ବୟସରେ ସେ ଐଶ୍ୱରୀୟ ପ୍ରେମ ରାଜ୍ୟର ପନ୍ଥା ଓ ପରିକଳ୍ପନାର ସୁସମ୍ବାଦ ପ୍ରଚାର ଆରମ୍ଭ କରି ତେତିଶ ବର୍ଷ ବୟସରେ ସ୍ୱର୍ଗାରୋହଣ କରିଥିଲେ ।

### ଯୀଶୁଖ୍ରୀଷ୍ଟଙ୍କ ସମ୍ବନ୍ଧରେ କେତେକଙ୍କ ମତ :—

## ସ୍ୱାମୀ ବିବେକାନନ୍ଦ

ଯୀଶୁଙ୍କୁ ଆମ୍ଭେମାନେ ଜାଣୁ ଯେ ସେ ପ୍ରାଚ୍ୟ ମହାଦେଶରେ ସୁପୁତ୍ର ଏବଂ ପ୍ରକୃତ କର୍ମକୁଶଳ । ଏ ଅନିତ୍ୟ ସଂସାରରେ ତାଙ୍କର କୌଣସି ବିଶ୍ୱାସ ନାହିଁ ବା ଉହିଁର ବସ୍ତୁ ଉପରେ ସେ ନିର୍ଭର

Digitized by srujan ka@gmail.com

କରୁ ନ ଥିଲେ । ଯୀଶୁଙ୍କଠାରେ ଆମ୍ଭେମାନେ ଏକ ମହାନ ଜୀବନର ବାର୍ତ୍ତାବହ ସ୍ୱରୂପ ଦେଖିଥାଉଁ । ତାଙ୍କର ନିର୍ଦ୍ଦେଶ ହେଉଛି "ମର୍ତ୍ତ୍ୟ ଜୀବନ ନୁହେଁ; କିନ୍ତୁ ମହତ୍ତର ଏକ ଜୀବନ ।" ସେ କହିଥିଲେ "ତୁମେ କି ଜାଣନା ସ୍ୱର୍ଗରାଜ୍ୟ ତୁମ ମଧ୍ୟରେ ଅଛି ?" ତାଙ୍କ ଜାତିର ଯାହା ଉତ୍କୃଷ୍ଟ ଓ ଯାହା ଅତି ମହତ୍ ତାହା ତାଙ୍କଠାରେ ସନ୍ନିବିଷ୍ଟ ଏବଂ ଭବିଷ୍ୟତ ଯୁଗର ଶକ୍ତି ଉଦ୍ଦୀପକ, କେବଳ ତାଙ୍କ ଗୋଷ୍ଠୀ ନିମନ୍ତେ ନୁହେଁ, ସେ ବିଶ୍ୱର ଅନ୍ୟ ଗୋଷ୍ଠୀବର୍ଗର ଅଗଣିତ ଜନତାର ମଧ୍ୟ ।

ଯଦି ମୁଁ ଜଣେ ପ୍ରାଚ୍ୟ ଜଗତର ଲୋକ ହୋଇ ନାଜରତର ଯୀଶୁଙ୍କୁ ପୂଜା କରେ ତେବେ ଏକମାତ୍ର ପନ୍ଥା ହେଉଛି, ତାଙ୍କୁ ଈଶ୍ୱର ରୂପେ ମାନ୍ୟ କରିବା ବ୍ୟତୀତ ଅନ୍ୟ କିଛି ନୁହେଁ ।

## ହେନେରି ଭ୍ୟାନ ଡାଇକ

ପାଶ୍ଚାତ୍ୟ ଦେଶର ଜଣେ ଦାର୍ଶନିକ ହେନେରି ଭ୍ୟାନ ଡାଇକ କହନ୍ତି, "ପ୍ରାଚ୍ୟ ଦେଶରେ ଜନ୍ମି, ପ୍ରାଚ୍ୟ ଦେଶର ଆବରଣ ମଧ୍ୟରେ ବଢ଼ି ଯୀଶୁଖ୍ରୀଷ୍ଟ ନିଜର ଉକ୍ତିକୁ ବିଶ୍ୱ ଜଗତରେ ପରିବ୍ୟାପ୍ତ କରିଛନ୍ତି । ସେ ଯେପରି ସର୍ବଦା ସମସ୍ତଙ୍କର ନିଜସ୍ୱ, ତାଙ୍କ ବାକ୍ୟ ସହସ୍ର ଭାଷାରେ କୋଟୀ ଜନତାର ହୃଦୟରେ ପ୍ରତିଫଳିତ ହୋଇଛି । ପିଲାଏ ତାଙ୍କୁ ମନଦେଇ ଶୁଣନ୍ତି, ଦୁଷ୍ଟ ଓ ଦାମ୍ଭିକ ସେ କଥାଶୁଣି ସ୍ତବ୍ଧ ହୁଅନ୍ତି ଏବଂ କ୍ଳିଷ୍ଟ ଓ ଅନୁତପ୍ତ ଜନତା ମାତୃସ୍ନେହର ସାନ୍ତ୍ୱନା ପରି ଆଶ୍ୱାସନା ଲାଭ କରନ୍ତି । ଯୀଶୁଙ୍କ ଭାଷାରେ ତାଙ୍କ ଜୀବନର

Digitized by srujan ka@gmail.com

ଘଟଣା ଗୁଡ଼ିକ ଅତି ସ୍ପଷ୍ଟଭାବରେ ଚିତ୍ରିତ । ତାହା ମାନବର ଅନନ୍ତ ଆଶାରେ ଓତଃପ୍ରୋତ ଭାବରେ ଜଡ଼ିତ । ସୁତରାଂ ପ୍ରେମ, ମୈତ୍ରୀ, ଶାନ୍ତି, ସହାନୁଭୂତି ଓ ପ୍ରଶାନ୍ତ ମଧୁର ଭାଷାର ଆବରଣ ନେଇ ସର୍ବଦା କଥା କହେ । ଯେ ଏହାକୁ ବହୁମୂଲ୍ୟ ବସ୍ତୁ ସ୍ୱରୂପ ଲାଭ କରେ, ସେ ନିଜକୁ ଦରିଦ୍ର ଓ ପରିତ୍ୟକ୍ତ ବୋଲି ମନେକରି ପାରେନା । ମୃତ୍ୟୁଛାୟାର ଉପତ୍ୟକାରେ ପ୍ରବେଶ କରି ମଧ୍ୟ ସେ ଭୟଭୀତ ହୁଏନା । କାରଣ ନିବିଡ଼ ଅନ୍ଧକାର ମଧ୍ୟରେ ସେ ଆଲୋକର ସନ୍ଧାନ କରି ଜୀବନ ଯାତ୍ରା ନିର୍ବାହ କରେ ।

## ମହାତ୍ମା ଗାନ୍ଧୀ

ମୁଁ ଏକଥା ବୁଝେ ଯେ, ଯୀଶୁଖ୍ରୀଷ୍ଟ ହେଉଛନ୍ତି ମାନବ ଜାତିର ସର୍ବଶ୍ରେଷ୍ଠ ଗୁରୁମାନଙ୍କ ମଧ୍ୟରେ ଅନ୍ୟତମ । ମୋପାଇଁ ଯୀଶୁ ହେଉଛନ୍ତି ଏକ ଆଧ୍ୟାତ୍ମିକ ସତ୍ତା । ମୁଁ ଏହିପରି ଭାବରେ ତା'ର ଅର୍ଥ କରିବାକୁ ଚାହେଁ ଯେ, ଯୀଶୁ ତାଙ୍କ ଜୀବନକାଳ ମଧ୍ୟରେ ଈଶ୍ୱରଙ୍କର ଅତି ନିକଟରେ ଥିଲେ । ଈଶ୍ୱରଙ୍କ ଇଚ୍ଛା, ଈଶ୍ୱରଙ୍କର ମହତ୍ତ୍ୱ ସେ ଯେପରି ଭାବରେ ପ୍ରକାଶ କରିଥିଲେ ତାହା ଅନ୍ୟ କେହି କରିପାରି ନଥିଲେ । ଏହି ଅର୍ଥରେ ମୁଁ ତାହାଙ୍କୁ ଈଶ୍ୱରଙ୍କ ପୁତ୍ର ବୋଲି ଦେଖିବାକୁ ଓ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛି । ଯୀଶୁଖ୍ରୀଷ୍ଟଙ୍କ ଜୀବନ ହେଉଛି ମାନବ ଜାତିପାଇଁ ଏକ ଆଶା ଓ ବିଶ୍ୱାସର ଜୀବନ । ତାଙ୍କର ଉପସ୍ଥିତି, ତାଙ୍କର କାର୍ଯ୍ୟ, ତାଙ୍କ ମୁଖନିଃସୃତ ଉପଦେଶାବଳୀ ସମସ୍ତଙ୍କ ଜୀବନରେ ଅଳ୍ପ ହେଉ ବା ବେଶିହେଉ ପରିବର୍ତ୍ତନ ଆଣି ଦେଇଛି । ଏହି ଦୃଷ୍ଟିରୁ ଯୀଶୁଖ୍ରୀଷ୍ଟ-

Digitized by srujan ka@gmail.com

ଙ୍କର ଜୀବନର ମହତ୍ତ୍ୱ ଉପଲବ୍ଧି କରି ମୁଁ କହିପାରେ ଯେ କେବଳ ଖ୍ରୀଷ୍ଟିୟାନମାନଙ୍କର ନୁହନ୍ତି ସମଗ୍ର ମାନବ ଜାତିର ।

## ଆଚାର୍ଯ୍ୟ ବିନୋବା ଭାବେ

ଯୀଶୁ ନିଜକୁ ମନୁଷ୍ୟର ପୁତ୍ର ବୋଲି କହୁଥିଲେ । ଯୀଶୁ ସମଗ୍ର ମାନବଜାତିର, ସେ ଜାତିଧର୍ମ ଓ ବର୍ଣ୍ଣର ଊର୍ଦ୍ଧ୍ୱରେ । ସେ ମାନବଜାତିର ପ୍ରତିନିଧିତ୍ୱ କରିଥିଲେ ଓ ତାକୁ ଉଠାଇବା ପାଇଁ ଉଦ୍ୟମ କରିଥିଲେ । ସେ ନିଜର ଜୀବନଦେଇ ଅନ୍ୟମାନଙ୍କୁ ଉଠାଇଥିଲେ । ଯୀଶୁ ପୃଥିବୀରେ ସ୍ୱର୍ଗରାଜ୍ୟ ପ୍ରତିଷ୍ଠାପାଇଁ ଉଦ୍ୟମ କରିଥିଲେ । ଘୃଣାକୁ ପ୍ରେମରେ ଜୟ କରିବା ପାଇଁ ଶିକ୍ଷା ଦେଇଥିଲେ । ସେଥିପାଇଁ ମୁଁ ନିଃସଙ୍କୋଚରେ କହି ପାରେ ଯେ ଯୀଶୁଖ୍ରୀଷ୍ଟ ହେଉଛନ୍ତି ଆମର ନିଜର, ଆପଣାର । ତାଙ୍କର ଶିକ୍ଷା ଆମକୁ ଅଦ୍ଭୁତ ବା ଅବାସ୍ତବ ବୋଧହୁଏ ନାହିଁ । ଆମେ ତାଙ୍କୁ ଆମର ପରିବାରର ଜଣେ ବୋଲି ମନେକରୁ—

## ଆର୍ଥର ଗଣ୍ଟ

ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ଼ ତା ୨୦-୮-୧୯୬୭ରିଖରେ ଦୈନିକ ସଂଖ୍ୟାରେ ଆର୍ଥର ଗଣ୍ଟ ନାମକ ଏକ ବିଶିଷ୍ଟ ପ୍ରକାଶକ ଲେଖିଅଛନ୍ତି ଯେ, ପୃଥିବୀରେ ଏ ପର୍ଯ୍ୟନ୍ତ ଯେତେ ପୁସ୍ତକ ରଚିତ ହୋଇଅଛି ତାହା ମଧ୍ୟରେ ବାଇବେଲ୍ ଓ ତା ଅଂଶର ବିକ୍ରୟ ଏବଂ କାଟତି ସବୁଠାରୁ ବେଶୀ, ବିଶ୍ୱ ବାଇବେଲ୍ ସୋସାଇଟିଙ୍କ ହିସାବମତେ ୧୯୬୭ ମସିହାରେ ୯ କୋଟି ୩୦ ଲକ୍ଷ ବାଇବେଲ ବିକ୍ରୟ ହୋଇଅଛି । ଏହା ମଧ୍ୟ ୧୨୭୦ ଭାଷା ଓ ଉପଭାଷାରେ ଅନୁବାଦିତ ହୋଇଅଛି । ସେଥି-

Digitized by srujan ka@gmail.com

ନିମିତ୍ତ ସହସ୍ରାଧିକ ଅନୁବାଦକ ନିଯୁକ୍ତ ହୋଇ-ଅଛନ୍ତି ।

ମହାତ୍ମାଗାନ୍ଧୀ କହିଅଛନ୍ତି "ବାଇବେଲ୍ ବିନା ଇଂରାଜୀଭାଷା ଅନ୍ତଃସାର ଶୂନ୍ୟ ।"

## ମହାତ୍ମା ଯୀଶୁଖ୍ରୀଷ୍ଟଙ୍କ ବାଣୀ

(ସଂଗ୍ରାହକ ନିମାଇଁ ଚରଣ ଦାସ)

ମନୁଷ୍ୟ କେବଳ ରୋଟିରେ ବଞ୍ଚିବ ନାହିଁ । ମାତ୍ର ଈଶ୍ୱରଙ୍କ ମୁଖରୁ ନିର୍ଗତ ପ୍ରତ୍ୟେକ ବାକ୍ୟରେ ବଞ୍ଚିବ ।

ଯେ କେହି କୌଣସି ସ୍ତ୍ରୀ ପ୍ରତି କାମଭାବରେ ଦୃଷ୍ଟିପାତ କରେ, ସେ ତା ସଙ୍ଗରେ ମନେ ମନେ ବ୍ୟଭିଚାର କଲାଣି ।

ପରସ୍ତ୍ରୀର ମୁଖ ଗଭୀର ଖାତ, ପ୍ରଭୁଙ୍କ ଘୃଣିତ ଲୋକ ସେଥିରେ ପଡ଼ଇ । ପରଦାରଗାମୀ ପୁରୁଷ ନିତାନ୍ତ ନିର୍ବୋଧ । ସେ ନିଜର ପ୍ରାଣନାଶ କରିବ—ସେ ତାହା କରଇ ।

ପରସ୍ତ୍ରୀର ଚାଟୁବାକ୍ୟରେ ପ୍ରଲୋଭିତ ହୁଅ ନାହିଁ । ଅନ୍ତଃ-କରଣରେ ତାହାର ସୌନ୍ଦର୍ଯ୍ୟକୁ ଲୋଭ କର ନାହିଁ । ଅଥବା ତାହାର କଟାକ୍ଷରେ ତୁମ୍ଭକୁ ଧରିବାକୁ ଦିଅ ନାହିଁ ।

ଯେହେତୁ ବେଶ୍ୟା ସକାଶୁଁ ଅନ୍ନ ଅଭାବ ଅଟଇ । ଆଉ ବ୍ୟଭିଚାରିଣୀ ସ୍ତ୍ରୀ ତାର ମହାମୂଲ୍ୟ ପ୍ରାଣକୁ ଧରିବାପାଇଁ ମୃଗୟା କରଇ । ଦୁଷ୍ଟମାନଙ୍କର ଦୌରାତ୍ମ୍ୟ ସେମାନଙ୍କୁ ଶେଷ କରିବ ।

ଗର୍ବୀଲୋକ ଗୃହକୁ ପ୍ରଭୁ ଉପାଡ଼ି ପକାଇଦେବେ ।

ଲୋକର ନିଜ ଅପରାଧ ତାହାକୁ ଧରଇ ।

Digitized by srujan ka@gmail.com

ଆଦୌ ଶପଥ କର ନାହିଁ, ସ୍ୱର୍ଗର ଶପଥ କର ନାହିଁ, କାରଣ ତାହା ଈଶ୍ୱରଙ୍କ ସିଂହାସନ, କିମ୍ବା ପୃଥିବୀର ଶପଥ କର ନାହିଁ, କାରଣ ତାହା ତାଙ୍କର ପାଦପୀଠ ।

ତୁମ୍ଭମାନଙ୍କ ଶତ୍ରୁମାନଙ୍କୁ ପ୍ରେମ କର, ପୁଣି ଯେଉଁମାନେ ତୁମ୍ଭଙ୍କୁ ତାଡ଼ନା କରନ୍ତି, ସେମାନଙ୍କ ନିମନ୍ତେ ପ୍ରାର୍ଥନା କର, ଯେପରି ତୁମ୍ଭେମାନେ ତୁମ୍ଭମାନଙ୍କର ସ୍ୱର୍ଗସ୍ଥ ପିତାଙ୍କର ସନ୍ତାନ ହେବ ।

ଲୋକ ଦେଖାଇବାପାଇଁ ସେମାନଙ୍କର ସାକ୍ଷାତରେ ଯେପରି ଧର୍ମ କର୍ମ ନ କର ଏଥିପାଇଁ ତୁମ୍ଭେମାନେ ସାବଧାନ ହୋଇଥାଅ । ନୋହିଲେ ତୁମ୍ଭମାନଙ୍କର ସ୍ୱର୍ଗସ୍ଥ ପିତାଙ୍କ ନିକଟରେ ପୁରସ୍କାର ନାହିଁ ।

ତୁମ୍ଭେ ଦାନ କରିବା ସମୟରେ ତୁମ୍ଭର ଦକ୍ଷିଣ ହସ୍ତ କ'ଣ କରୁଛି, ତାହା ତୁମ୍ଭର ବାମହସ୍ତ ନ ଜାଣୁ, ଯେପରି ତୁମ୍ଭର ଦାନ ଗୋପନରେ ହେବ, ଆଉ ତୁମ୍ଭର ପିତା ଯେ ଗୋପନରେ ଦେଖନ୍ତି ସେ ତୁମ୍ଭଙ୍କୁ ଫଳ ଦେବେ ।

ଉପବାସ କରିବା ସମୟରେ କପଟୀମାନଙ୍କ ପରି ବିଷଣ୍ଣ ବଦନ କର ନାହିଁ ।

ଧନୀଲୋକ ଅତି କଷ୍ଟରେ ସ୍ୱର୍ଗ ରାଜ୍ୟରେ ପ୍ରବେଶ କରିବ । ଈଶ୍ୱରଙ୍କ ରାଜ୍ୟରେ ଧନୀଲୋକର ପ୍ରବେଶ କରିବା ଅପେକ୍ଷା ବରଂ ସୂଚୀର ଛିଦ୍ର ଦେଇ ଓଟର ପ୍ରବେଶ କରିବା ସହଜ ।

Digitized by srujan ka@gmail.com

ଯାହାକିଛି ବାହାରୁ ମନୁଷ୍ୟ ଭିତରେ ପ୍ରବେଶ କରେ ତାହା ଅଶୁଚି କରିପାରେ ନାହିଁ, କାରଣ ତାହା ତାହାର ହୃଦୟରେ ପ୍ରବେଶ କରେ ନାହିଁ । ମାତ୍ର ଉଦରରେ ପ୍ରବେଶ କରି ବାହ୍ୟ ସ୍ଥାନରେ ବହିର୍ଗତ ହୁଏ ଓ ଏହି ପ୍ରକାରରେ ସମସ୍ତ ଖାଦ୍ୟ ପରିଷ୍କୃତ ହୋଇଥାଏ । ଯାହା ମନୁଷ୍ୟଠାରୁ ବାହାରେ ତାହା ହିଁ ତାହାକୁ ଅଶୁଚି କରେ । କାରଣ ଭିତରୁ ମନୁଷ୍ୟର ହୃଦୟରୁ, କୁଚିନ୍ତା ବାହାରେ । ବେଶ୍ୟାଗମନ, ଚୌର୍ଯ୍ୟ, ନରହତ୍ୟା, ବ୍ୟଭିଚାର, ଲୋଭ, ଦୁଷ୍ଟତା, ଶଠତା, କାମୁକତା, ଈର୍ଷାଦୃଷ୍ଟି, ନିନ୍ଦା, ଅହଙ୍କାର, ମୂର୍ଖତା, ଏହି ସମସ୍ତ ମନ୍ଦ ବିଷୟ ଭିତରୁ ବାହାରି ମନୁଷ୍ୟକୁ ଅଶୁଚି କରେ ।

କ୍ଷମା କର, ଯେପରି ତୁମ୍ଭମାନଙ୍କ ସ୍ୱର୍ଗସ୍ଥ ପିତା ମଧ୍ୟ ତୁମ୍ଭମାନଙ୍କର ଅପରାଧ ସବୁ କ୍ଷମା କରିବେ; କିନ୍ତୁ ତୁମ୍ଭେମାନେ ଯେବେ କ୍ଷମା ନ କର, ତେବେ ତୁମ୍ଭମାନଙ୍କର ସ୍ୱର୍ଗସ୍ଥ ପିତା ମଧ୍ୟ ତୁମ୍ଭମାନଙ୍କର ଅପରାଧ ସବୁ କ୍ଷମା କରିବେ ନାହିଁ ।

ତୁମ୍ଭମାନଙ୍କ ଶତ୍ରୁମାନଙ୍କୁ ପ୍ରେମ କର, ଯେଉଁମାନେ ତୁମ୍ଭମାନଙ୍କୁ ଘୃଣା କରନ୍ତି, ସେମାନଙ୍କର ମଙ୍ଗଳ କର ।

ଯେଉଁମାନେ ତୁମ୍ଭମାନଙ୍କୁ ଅଭିଶାପ ଦିଅନ୍ତି, ସେମାନଙ୍କୁ ଆଶୀର୍ବାଦ କର ।

ଯେଉଁମାନେ ତୁମ୍ଭମାନଙ୍କୁ ଅପମାନ କରନ୍ତି, ସେମାନଙ୍କ ନିମନ୍ତେ ପ୍ରାର୍ଥନା କର ।

Digitized by srujan ka@gmail.com

ଲୋକମାନେ ତୁମ୍ଭମାନଙ୍କ ପ୍ରତି ଯେ ପ୍ରକାର ବ୍ୟବହାର କରନ୍ତୁ ବୋଲି ଇଚ୍ଛା କର, ତୁମ୍ଭେମାନେ ସେମାନଙ୍କ ପ୍ରତି ସେହି ପ୍ରକାର କର ।

ତୁମ୍ଭମାନଙ୍କର ପିତା ଯେପରି ଦୟାଳୁ, ତୁମ୍ଭେମାନେ ସେହିପରି ଦୟାଳୁ ହୁଅ । କ୍ଷମା କର, ତାହାହେଲେ ତୁମ୍ଭମାନଙ୍କୁ କ୍ଷମା କରାଯିବ । ଦାନକର ତାହାହେଲେ ତୁମ୍ଭମାନଙ୍କୁ ଦାନ ଦିଆଯିବ ।

ଧାର୍ମିକ ଲୋକ ସାତ ଥର ପଡ଼ିଲେ ମଧ୍ୟ ଉଠେ, ମାତ୍ର ଦୁଷ୍ଟମାନେ ବିପଦରେ ଝୁଣ୍ଟି ପଡ଼ନ୍ତି ।

ଯେ ଅଧର୍ମ ବୀଜ ବୁଣେ ସେ ବିପଦ ରୂପକ ଶସ୍ୟ କାଟିବ ।

କୌଣସି ଭୃତ୍ୟ ଦୁଇ ପ୍ରଭୁଙ୍କର ଦାସ ହୋଇପାରେ ନାହିଁ, କାରଣ ସେ ଜଣକୁ ଘୃଣା କରିବ ଓ ଅନ୍ୟ ଜଣକୁ ପ୍ରେମ କରିବ, ଅଥବା ଜଣକ ପ୍ରତି ଅନୁରକ୍ତ ହେବ ଓ ଅନ୍ୟ ଜଣକୁ ଅବଜ୍ଞା କରିବ । ସେଥିପାଇଁ ତୁମ୍ଭେମାନେ ଈଶ୍ୱର ଓ ଧନ ଉଭୟଙ୍କର ଦାସ ହୋଇ ପାରିବ ନାହିଁ ।

ଯେ କେହି ଆପଣା ସ୍ତ୍ରୀକୁ ପରିତ୍ୟାଗ କରି ଅନ୍ୟକୁ ବିବାହ କରେ ସେ ବ୍ୟଭିଚାର କରେ, ପୁଣି ଯିଏ ସ୍ୱାମୀ ଦ୍ୱାରା ପରିତ୍ୟକ୍ତା ସ୍ତ୍ରୀକୁ ବିବାହ କରେ ସେ ବ୍ୟଭିଚାର କରେ ।

ଅନ୍ୟ ଲୋକ ତୁମ୍ଭର ପ୍ରଶଂସା କରୁ ମାତ୍ର ତୁମ୍ଭର ନିଜ ମୁଖରୁ ତାହା ନ ବାହାରୁ ।

ପ୍ରାଚୀନ ସୀମାକୁ ଘୁଞ୍ଚାଅ ନାହିଁ । ପିତୃହୀନ କ୍ଷେତ୍ରରେ ଓ ବିଧବାର ସୀମାରେ ପ୍ରବେଶ କର ନାହିଁ । କାରଣ ସେମାନେ

Digitized by srujan ka@gmail.com

ଅସହାୟ ଓ ସେମାନଙ୍କର ତ୍ରାଣ (ମୁକ୍ତି) କର୍ତ୍ତା ଭଗବାନ, ଯେ କି ତୁମ୍ଭ ସହିତ ସେମାନଙ୍କ ବିବାଦର ପ୍ରତିକାର କରିବେ ।

କୋମଳ ବାକ୍ୟ କ୍ରୋଧକୁ ଦମନ କରେ, ମାତ୍ର କଟୁବାକ୍ୟ କୋପ ଜନ୍ମାଏ । କୋପ ଦୁରନ୍ତ ଓ କ୍ରୋଧ ପ୍ରଳୟଙ୍କରୀ, ମାତ୍ର ଅନ୍ତର୍ଜ୍ୱାଳା ଆଗରେ କିଏ ଠିଆ ହୋଇପାରେ ?

ରାଗଶୀଳ ଲୋକ ସହିତ ମିତ୍ରତା କର ନାହିଁ, ପୁଣି କ୍ରୋଧି ଲୋକ ସହିତ ଗମନ କରନାହିଁ, ଏପରି କଲେ ଆପଣା ପ୍ରାଣ ପାଇଁ ଫାନ୍ଦ ପ୍ରସ୍ତୁତ କରିବ । ଯେପରି ଜ୍ୱଳନ୍ତ ଅଙ୍ଗାରକୁ ଅଙ୍ଗାର ଓ ଅଗ୍ନିକି କାଷ୍ଠ, ତେମନ୍ତ ବିବାଦ ବଢ଼ାଇବାକୁ କଳହପ୍ରିୟା ଲୋକ, ତୋଷାମଦକାରୀ, କାନଭରା ବ୍ୟକ୍ତିଙ୍କ ବାକ୍ୟ ଅମୃତ ତୁଲ୍ୟ ଉଦରର ଅନ୍ତଃସ୍ଥଳକୁ ଚାଲିଯାଏ ।

ଯେ ଖାତ ଖୋଳେ, ସେ ଆପେ ତହିଁ ଭିତରେ ପଡ଼ିବ; ପୁଣି ଯେ ପଥର ଗଡ଼ାଏ ତାହା ତାହା ଉପରକୁ ଲେଉଟିବ ।

ଯେଉଁ ବ୍ୟକ୍ତି ପରମେଶ୍ୱରଙ୍କ ବାକ୍ୟକୁ ତୁଚ୍ଛ ଜ୍ଞାନ କରେ ସେ ଆପଣା ଉପରକୁ ବିନାଶ ଆଣେ; ମାତ୍ର ଯେ ଆଜ୍ଞାକୁ ଭୟକରେ ସେ ପୁରସ୍କାର ପ୍ରାପ୍ତ ହେବ ।

ଯେଉଁ ବ୍ୟକ୍ତି ଭଲ ବଦଳରେ ମନ୍ଦ କରେ ତାହାର ଗୃହକୁ ମନ୍ଦ କେବେହେଁ ଛାଡ଼ିବ ନାହିଁ, ଯେ ଦୁଷ୍ଟକୁ ନିର୍ଦୋଷ ପ୍ରମାଣ କରେ ଓ ଧାର୍ମିକକୁ ଦଣ୍ଡ ଦିଏ, ସେ ପ୍ରଭୁଙ୍କଠାରେ ଘୃଣିତ ।

ଯେ କେହି ତୁମ୍ଭଙ୍କୁ ମାଗେ ତାହାକୁ ଦିଅ, ତୁମ୍ଭମାନଙ୍କର ଯାହା ଅଛି ତାହା ବିକ୍ରୟ କରି ଦାନ କର । ଯାହା କ୍ଷୟ ପାଏନାହିଁ ଏପରି ଥଳି ଆପଣା ନିମନ୍ତେ ପ୍ରସ୍ତୁତ କର; ଯେଉଁଠାରେ

Digitized by srujan ka@gmail.com

ଚୋର ନିକଟକୁ ଆସେ ନାହିଁ, କମ୍ବା କୀଟ ନଷ୍ଟ କରେ ନାହିଁ ଏପରି ସ୍ୱର୍ଗରେ ଅକ୍ଷୟ ଧନ ସଞ୍ଚୟ କର; କାରଣ ଯେଉଁଠାରେ ତୁମ୍ଭମାନଙ୍କର ଧନ ସେହିଠାରେ ମଧ୍ୟ ତୁମ୍ଭମାନଙ୍କର ମନ ।

ଯେ ଦରିଦ୍ରକୁ ଦୟା କରେ ସେ ମହାପ୍ରଭୁଙ୍କୁ ଋଣ ଦିଏ । ଯେ ଦରିଦ୍ରକୁ ଦାନ କରେ ତାହାର ଅଭାବ ହେବ ନାହିଁ, ଯେ ଆପଣା ଚକ୍ଷୁ ମୁଦେ ସେ ଅନେକ ଅଭିଶାପ ପାଇବ ।

ଯେଉଁଲୋକ ଦୀନହୀନ ଡାକିଲେ କର୍ଣ୍ଣରୁଦ୍ଧକରେ ସେ କେବେ ଡାକିଲେ ତାହାର ଉତ୍ତର ପାଇବ ନାହିଁ ।

ଯେଉଁଲୋକ ଦରିଦ୍ରକୁ ଉପହାସ କରେ ସେ ତାହାର ସୃଷ୍ଟି କର୍ତ୍ତାଙ୍କୁ ନିନ୍ଦାକରେ ।

ମହାପ୍ରଭୁ ଦୁଷ୍ଟମାନଙ୍କଠାରୁ ଦୂରରେ ଥାଆନ୍ତି । ପୁଣି ଧାର୍ମିକମାନଙ୍କ ପ୍ରାର୍ଥନା ଶୁଣି କରେ କରେ ଥାଆନ୍ତି । ଯେଉଁଲୋକ ଲାଞ୍ଚକୁ ଘୃଣା କରେ ସେ ବଞ୍ଚିବ ।

ଅନ୍ୟାୟ ଅର୍ଜିତ ପ୍ରଚୁର ଆୟ ଅପେକ୍ଷା ସତ୍ ଉପାୟରେ ଅର୍ଜିତ ଅଳ୍ପ ଆୟ ଶ୍ରେୟସ୍କର । ମିଥ୍ୟାବାଦୀର ଓଷ୍ଠ ଦ୍ୱାରା ପ୍ରାପ୍ତ ଧନ ଏଣେ ତେଣେ ଚାଳିତ ବାଷ୍ପତୁଲ୍ୟ । ଯେଉଁମାନେ ତାହା ଅନ୍ୱେଷଣ କରନ୍ତି ସେମାନେ ମୃତ୍ୟୁ ଅନ୍ୱେଷଣ କରନ୍ତି ।

ଅନ୍ୟାୟରେ ଅର୍ଜିତ ଧନ କ୍ଷୟ ପାଇବ; ମାତ୍ର ସତ୍‌ମାର୍ଗରେ ଅର୍ଜିତ ଧନ ବୃଦ୍ଧି ପାଇବ; ଅସତ୍‌ରେ ଅର୍ଜିତ ଆହାର ତୁଣ୍ଡକୁ ସୁମିଷ୍ଟ ଲାଗେ, ଫଳରେ ତାହା ଅଧାର ଗୋଡ଼ ତୁଲ୍ୟ ।

———

Digitized by srujan ka@gmail.com

# ମହାପୁରୁଷ ମହମ୍ମଦ

ଅବ୍ଦୁଲ୍ ମେଜବାନ୍ ଖାଁ, ଆଡ଼ଭୋକେଟ, ପୂର୍ବତନ ମନ୍ତ୍ରୀ (ଓଡ଼ିଶା)
ଓ ପୂର୍ବତନ ଆଇନ ଅଧ୍ୟାପକ

## ଇସଲାମ ଧର୍ମର ପ୍ରବର୍ତ୍ତକ ମହାପୁରୁଷ ମହମ୍ମଦ

୫୭୦ ଖ୍ରୀଷ୍ଟାବ୍ଦରେ ଆରବ ଦେଶର ମକ୍କା ନଗରୀରେ ଆବିର୍ଭୂତ ହୋଇଲେ । ସେତେବେଳେ ଆରବ ଦେଶର ଲୋକେ ଗଛ ବୃକ୍ଷ ଓ ସୂର୍ଯ୍ୟ ଚନ୍ଦ୍ର ଆଦି ବହୁ ପ୍ରକାର ଦେବତା ପୂଜା କରୁଥିଲେ । ଆରବମାନେ ଅବ୍ରାହମଙ୍କ ଔରସରୁ ଜାତ । ମହମ୍ମଦଙ୍କ ଜନ୍ମସମୟରେ ଆବ୍ରାହମଙ୍କଦ୍ୱାରା ନିର୍ମିତ "କାବା" ପ୍ରତିଷ୍ଠିତ ଥିଲା । ସେତେବେଳେ ଏଥିରେ ୩୬୦ଟି ମୂର୍ତ୍ତିକୁ ପୂଜା କରାଯାଉଥିଲା । ଚାନ୍ଦ୍ରାନୁଗ ବର୍ଷର ପ୍ରତ୍ୟେକ ଦିନ ଗୋଟିଏ ଗୋଟିଏ ପିତୁଳାକୁ ସେମାନେ ଦୈନିକ ପୂଜା କରୁଥିଲେ । ଅସଭ୍ୟ ଆରବ ଦେଶ ଏକ ପ୍ରକାର ମରୁଭୂମି ଥିଲା । ପାଠପଢ଼ା ଏମାନେ କେବେ ଜାଣୁ ନ ଥିଲେ । ମକ୍କାରେ ଆଙ୍ଗୁଠି ଅଗରେ ଗଣିଦେଲା ଭଳି କେତେ ଜଣ କୁଆଡ଼େ ଲେଖିପଢ଼ି ଜାଣିଥିଲେ । ଯୁଦ୍ଧବିଗ୍ରହ ଓ ପଶୁପକ୍ଷୀ ଶିକାରରେ ସେତେବେଳେ ଏଠା ଲୋକେ ଜଡ଼ିତ ଥିଲେ । ମଦ୍ୟପାନ ଅତି ପ୍ରବଳଭାବରେ ବ୍ୟାପି ଥିଲା । ମଦ୍ୟପାନ ଓ ଜୁଆଖେଳ ସେତେବେଳେ ଆରବ ଦେଶର ଏକ-ପ୍ରକାର ଜାତୀୟ କ୍ରୀଡ଼ାରୂପେ ବିବେଚିତ ହେଉଥିଲା । ଆଦିବାସିନୀମାନେ

Digitized by srujan ka@gmail.com

ସିରଆ, ପାଲେଷ୍ଟାଇନ ଏପର୍କି ଭାରତବର୍ଷ ପର୍ଯ୍ୟନ୍ତ ଏମାନେ ବାଣିଜ୍ୟ କରିବାପାଇଁ ପର୍ଯ୍ୟଟକରୂପେ ଆସୁଥିଲେ । ଏଠାରେ ଲୁଗା କପଡ଼ା ଲୋକେ ତିଆରି କରି ଜାଣି ନ ଥିଲେ । ସେତେବେଳେ ଲୋକଙ୍କର ସ୍ଥାୟୀ ଘର ବା ବସତି ନ ଥିଲା । ଯାଯାବର ଭଳି ଏମାନେ ବୁଲି ବୁଲି କାଳ କାଟୁଥିଲେ । ଏପରିକି ଦିନକୁ ପାଞ୍ଚଥର ମଦ ପିଇବା ସେତେବେଳେ ଆରବଲୋକଙ୍କର ଅଭ୍ୟାସ ଥିଲା । ମାରପିଟ, ଲୁଟତରାଜପ୍ରଭୃତି ନାନା ଅପକର୍ମରେ ଲୋକେ ଉନ୍ମତ୍ତ ଓ ଜଡ଼ିତ ହୋଇ ରହୁଥିଲେ; କିନ୍ତୁ ସେତେବେଳେ ଆରବ ଲୋକଙ୍କର ଗୋଟିଏ ସଦ୍‌ଗୁଣ ଥିଲା ସେ କୌଣସି କଥାରେ ଜବାବ ଦେଲେ ସେମାନେ ଜବାବ ଭଙ୍ଗ କରୁ ନ ଥିଲେ । କେହି ସେମାନଙ୍କର ଶରଣାର୍ଥୀ ହେଲେ ସେମାନେ ତାକୁ ଆଶ୍ରୟ ଦେଇ ଏପରି କି ନିଜର ଜୀବନ ପର୍ଯ୍ୟନ୍ତ ଦେଇ ରକ୍ଷା କରୁଥିଲେ ।

ମହମ୍ମଦଙ୍କ ଜନ୍ମ ପୂର୍ବରୁ ତାଙ୍କ ପିତାଙ୍କ ମୃତ୍ୟୁ ହୋଇଥିଲା । ଛଅବର୍ଷ ବୟସରେ ମାତୃହୀନ ହୋଇ ସେ ପିତାମହ ଅବଦୁଲ ମତ୍ତଲେବଙ୍କଦ୍ୱାରା ପ୍ରତିପାଳିତ ହେଲେ, ତ୍ରୟୋଦଶ ବର୍ଷ ବୟସରୁ ପଚିଶ ବର୍ଷ ବୟସ ପର୍ଯ୍ୟନ୍ତ ସେ ପିତୃବ୍ୟ ଆବୁତାଲେବଙ୍କ ସହିତ ବାଣିଜ୍ୟ ସକାଶେ ସିରିଆ, ଆବିସିନିଆ, ପାରସ୍ୟପ୍ରଭୃତି ଦେଶକୁ ଗମନ କରିଥିଲେ । ଅତଃପର ଖାଦିଜାନାମ୍ନୀ ଏକ ଧନବତୀ ବିଧବାକୁ ବିବାହ କରି ସେ ଧର୍ମଚର୍ଚ୍ଚାରେ ମନୋନିବେଶ କଲେ । ସେ ସମୟରେ ଆରବ ଦେଶର ଲୋକେ ପ୍ରତିମା ପୂଜା କରୁଥିଲେ ବୋଲି ସେ ତାହାର ପ୍ରତିବାଦ କରିବାକୁ ଲାଗିଲେ । ନିର୍ଜନ ଗିରିଗହ୍ୱରରେ ସର୍ବଦା ଧ୍ୟାନରେ ନିଯୁକ୍ତ ରହି ସେ ସ୍ୱର୍ଗୀୟ ଦୂତ ଜିବ୍ରାୟେଲଙ୍କ ନିକଟରୁ ଧର୍ମକଥା ଶ୍ରବଣ କରୁଥିଲେ । ସେହି ଧର୍ମକଥା ଲିପିବଦ୍ଧ ଆକାରରେ "କୋରାନ-ଶରିଫ"

Digitized by srujan ka@gmail.com

ନାମରେ ପ୍ରକାଶିତ ହେଲ । ଚାଳିଶ ବର୍ଷ ବୟସରେ ସେ ଏକେଶ୍ୱରବାଦ ପ୍ରଚାର କରିବାକୁ ଆରମ୍ଭ କଲେ । ପ୍ରଥମେ ପ୍ରଥମେ ଅନେକ ଏହି ମତ ଗ୍ରହଣ କଲେ ନାହିଁ । ଏପରି କି ବିରୁଦ୍ଧବାଦୀଗଣର ବିରୋଧିତାରେ ତାଙ୍କର ଜୀବନ ସଂଶୟ ଘଟିଲା । ଫଳରେ ୬୨୨ ସାଲରେ ସେ ମକ୍କାରୁ ମଦିନାକୁ ପଳାୟନ କଲେ । ଏହି ସମୟଠାରୁ ହିଜରାବ୍ଦ ଗଣନା କରାଯାଏ । ମଦିନାର ଲୋକେ ତାଙ୍କର ନୂତନ ଧର୍ମ ଗ୍ରହଣ କଲେ । ଅତଃପର ସେ ଶିଷ୍ୟବର୍ଗଙ୍କ ସହ ପୁନର୍ବାର ମକ୍କାକୁ ଗମନ କଲେ । ସେଠାରେ ତାଙ୍କ ସହିତ ମକ୍କାବାସୀମାନଙ୍କ ଯୁଦ୍ଧ ହେଲା । ଆରବବାସୀମାନେ କ୍ରମେ ତାଙ୍କର ମତକୁ ଗ୍ରହଣ କରିବାକୁ ଲାଗିଲେ । ତାଙ୍କର ମୃତ୍ୟୁ ପୂର୍ବରୁ ସମଗ୍ର ଆରବ ଇସଲାମ ଧର୍ମ ଗ୍ରହଣ କରିଥିଲେ ।

ପୟଗମ୍ବର ମହମ୍ମଦଙ୍କ ଅଲୌକିକ ତ୍ୟାଗ, ଐଶୀଶକ୍ତି ବଳରେ ପ୍ରଚାରିତ ଇସଲାମ ଧର୍ମ ସମଗ୍ର ଆରବବାସୀଙ୍କୁ ଗୋଟିଏ ଧର୍ମରେ ଦୀକ୍ଷିତ କରାଇ ସେମାନଙ୍କର ସାମାଜିକ ଜୀବନରେ ଅଭୂତପୂର୍ବ ପରିବର୍ତ୍ତନ ଆଣିଦେଲେ । ନିରାକାର ଏକେଶ୍ୱରବାଦ ଏ ଧର୍ମର ମୂଳମନ୍ତ୍ର ହେଲା । ଧନୀ, ଦରିଦ୍ର, ଉଚ୍ଚ, ନୀଚ ସମସ୍ତେ ଏକ ଓ ସମାନ ବିବେଚିତ ହେଲେ । ପ୍ରାପ୍ତ-ବୟସ୍କ ଅର୍ଥାତ୍ ୧୮ ବର୍ଷ ବୟସର ମୁସଲମାନଙ୍କୁ ପାଞ୍ଚୋଟି ଈଶ୍ୱର ଆଦେଶ ପାଳିବାକୁ ହୁଏ । (୧) କଲମା ପଢ଼ିବା, (୨) ନମାଜ ପଢ଼ିବା, (୩) ରୋଜା ରଖିବା, (୪) ଜେକାତ୍ ଦେବା, (୫) ମକ୍କା ବା ହଜ୍ ଯାତ୍ରା କରିବା । ଏହି ପାଞ୍ଚୋଟି ଅନୁଜ୍ଞା ଯେ

Digitized by srujan ka@gmail.com

ପାଳନ କରିବେ ସେ ପକ୍କା ବିଶ୍ୱାସୀ ମୁସଲମାନ ବୋଲି ପରିଚିତ ।

ତାଙ୍କ ମୁଖନିଃସୃତ ବାଣୀ କୋରାନ ଶାସ୍ତ୍ରରେ ଈଶ୍ୱରବାଣୀ ରୂପେ ଲିପିବଦ୍ଧ ହେଲା । ଯେଉଁ ଆରବର ଲୋକେ ଦିନକୁ ପାଞ୍ଚଥର ମଦ ପିଉଥିଲେ ସେମାନେ ନିଶା ପରିହାର କରି ସମସ୍ତ ଅପରାଧରୁ ମୁକ୍ତ ରହି ଏକତା, ଶାନ୍ତି ଓ ମୈତ୍ରୀ ଧର୍ମରେ ଉଦ୍‌ବୁଦ୍ଧ ହେଲେ । ଦିନକୁ ପାଞ୍ଚଥର ନମାଜ ପଢ଼ିଲେ । ଡକ୍ଟର ଆକବର ହଜରତ ମହମ୍ମଦଙ୍କ ବିଷୟରେ ଲେଖିଛନ୍ତି :–

"Although, by profession, he was an illiterate shepherd and caravancer of a barren desert, yet he taught to his people boundless wisdom and gave the world the concept of true freedom"

ମରୁରାଜ୍ୟରେ ଶିକ୍ଷାବିହୀନ, ନିରକ୍ଷର ଯାଯାବରଶ୍ରେଣୀର ଲୋକେ ବାସ କରୁଥିବା ଅଞ୍ଚଳରେ ଜନ୍ମଗ୍ରହଣ କରିଥିବା ଏ ମହାପୁରୁଷ ଯେଉଁ ଶାନ୍ତି ଓ ଏକତାର ବାଣୀ ପ୍ରଚାର କଲେ ଏବଂ କୋରାନରେ ଯେଉଁ ଧର୍ମତତ୍ତ୍ୱ ଲିପିବଦ୍ଧ କରିଗଲେ, ତାହା ପୃଥିବୀର ଛଅ ଭାଗରୁ ଭାଗେ ଲୋକଙ୍କୁ ଯେ ଧର୍ମଶିକ୍ଷା ଦେଇ ମାନବ-ସମାଜର ବିକାଶରେ ଅପୂର୍ବ ଓ ଅଭିନବ ସଂସ୍କାର ସୃଷ୍ଟି କଲା, ଏହା କମ୍ କଥା ନୁହେଁ । ବେଦ, ଉପନିଷଦ, ବାଇବେଲ, କୋରାନ ଓ ଯୋରାଷ୍ଟ୍ର ଶାସ୍ତ୍ରରେ ସମାନ ଋଷିବାଣୀ ପ୍ରଚାରିତ ହୋଇଛି । ଦେଶ-କାଳ-ପାତ୍ର-ଦୃଷ୍ଟିରୁ ଏହା ଭିନ୍ନ ନାମ ଓ ରୂପରେ ପରିଗୃହୀତ ଏବଂ ପ୍ରଚାରିତ । "ଇସଲାମ" ନାମକ ଆରବୀୟ ଶବ୍ଦର ଅର୍ଥ ହେଲା ଶାନ୍ତି ଧର୍ମ Religion of Peace. ମହାପୁରୁଷ

Digitized by srujan ka@gmail.com

ହଜରତ୍ ମହମ୍ମଦ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭିତରେ ଏକତା ପ୍ରତିଷ୍ଠା କରିଥିଲେ । ସମଗ୍ର ମାନବସମାଜକୁ ଏକ ଗୋଷ୍ଠୀ ବୋଲି ପ୍ରତିପାଦିତ କରିଥିଲେ ଏବଂ ଶାନ୍ତି ମୈତ୍ରୀ ଓ ଏକତା ବଳରେ ସମସ୍ତେ ସେହି ଈଶ୍ୱରାଭିମୁଖୀ ହୁଅନ୍ତୁ ବୋଲି ନିର୍ଦ୍ଦେଶ ଦେଇଥିଲେ ।

## ମହାପୁରୁଷ ମହମ୍ମଦଙ୍କ ବାଣୀ

(କ) ନିଜ କର୍ମର କିଛି ପ୍ରତିଦାନ ପାଇବା ଆଶାରେ କର୍ମ କର ନାହିଁ । ସେବକକୁ କିପରି ଭାବରେ ପୁରସ୍କୃତ କରିବାକୁ ହୁଏ ସେଇ ଈଶ୍ୱର ତା ଜାଣନ୍ତି । ଈଶ୍ୱରଙ୍କଠାରେ ବିଶ୍ୱାସ କର । ସମଗ୍ର ମାନବସମାଜକୁ ସ୍ନେହ କର ।

(ଖ) ଜଗଦୀଶ୍ୱର, ଅନ୍ତର୍ଯ୍ୟାମୀ, ସର୍ବଜ୍ଞ, ସର୍ବଶକ୍ତିମାନ୍, ଦୟାବାନ୍, ପାପକ୍ଷମାକାରୀ, ଅନୁତାପଗ୍ରହଣକାରୀ, କଠିନଶାସ୍ତିଦାତା ଓ ଦୟାଳୁ ଅଟନ୍ତି ।

(ଗ) ଅରଣ୍ୟ ଓ ସମୁଦ୍ରରେ ଯାହାଅଛି ତାହା ଈଶ୍ୱରଙ୍କର । ପରମେଶ୍ୱରଙ୍କ ଅଜ୍ଞାତସାରରେ କୌଣସି ବୃକ୍ଷ ପତ୍ର ଏବଂ ଶସ୍ୟକଣାର ସୁଦ୍ଧା ପତନ ହୁଏ ନାହିଁ ।

(ଘ) ଜଗତର ସର୍ବତ୍ର ହିଁ ଈଶ୍ୱରଙ୍କର ନିଦର୍ଶନ ରହିଛି । ଚନ୍ଦ୍ର ସୂର୍ଯ୍ୟରେ ବୃକ୍ଷପତ୍ର ଓ ତାହାର ଫଳରେ ଈଶ୍ୱରଙ୍କର ଉଜ୍ଜ୍ୱଳ ନିଦର୍ଶନ ରହିଛି । ପୃଥିବୀର ସମସ୍ତ ବୃକ୍ଷ ଯଦି ଲେଖନୀ ହୁଏ ଏବଂ ସାଗର ମସୀ ବା କାଳି ହୁଏ, ତଥାପି ଈଶ୍ୱରସମ୍ବନ୍ଧୀୟ କଥା ପରିସମାପ୍ତ ହେବ ନାହିଁ । ଈଶ୍ୱର ବିଜ୍ଞାନମୟ ଓ ବିବେକୀ ।

Digitized by srujan ka@gmail.com

ଈଶ୍ୱରଙ୍କର ପୂଜା ନ କଲେ ମନର ଦ୍ୱାର ରୁଦ୍ଧ ହୋଇଯିବ। ଈଶ୍ୱର ଉପାସନା ଦୁଷ୍କ୍ରିୟା ଏବଂ ଅବୈଧକର୍ମରୁ ମନୁଷ୍ୟକୁ ନିବୃତ୍ତ କରେ।

(ଚ) ଈଶ୍ୱରଙ୍କ ପ୍ରତି ମନୁଷ୍ୟର ବ୍ୟବହାର ବିଶୁଦ୍ଧ ଦୁଗ୍ଧ ପରି ନିର୍ମଳ ହେବା ଉଚିତ। ତହିଁରେ ଯେପରି କପଟତା ନ ଥାଏ।

(ଛ) ପରମେଶ୍ୱର ମନୁଷ୍ୟମାନଙ୍କୁ ସମ୍ପଦ ଓ ବିପଦଦ୍ୱାରା ପରୀକ୍ଷା କରନ୍ତି।

(ଜ) ଧର୍ମଶାସ୍ତ୍ର ଲୋକମାନଙ୍କପାଇଁ ପରଲୋକ କଲ୍ୟାଣର ଆଳୟ।

(ଝ) ଯେଉଁମାନେ ସ୍ୱର୍ଣ୍ଣ, ରୌପ୍ୟ ସଂଗ୍ରହ କରି ଈଶ୍ୱରଙ୍କ ମାର୍ଗରେ ବ୍ୟୟ କରନ୍ତି ନାହିଁ ସେମାନଙ୍କ ସକାଶେ ଭୟଙ୍କର ଶାସ୍ତି ରହିଛି।

(ଟ) ପ୍ରତ୍ୟେକ ବ୍ୟକ୍ତି ନିଜର ପାପ ଭାର ବହନ କରେ। ଅନ୍ୟର ଭାର ବହନ କରେ ନାହିଁ। ଯେ କୁକର୍ମ କରିବ ତା'ର ଶାସ୍ତି ନିଶ୍ଚୟ ହେବ।

(ଠ) କାହାପ୍ରତି ବିଶ୍ୱାସ ବା ଭକ୍ତି ହେଲେ ତାହାର ଗୁଣାନୁବାଦରେ ସୀମା ଲଙ୍ଘନ କରିବ ନାହିଁ; ଯେତେଦୂର ସତ୍ୟ ସେତିକି କହିବ।

(ଡ) ବିବାହ ବନ୍ଧନ ଏବଂ ବିପୂବିସମ୍ବାଦରେ ଯେଉଁ ଅଙ୍ଗୀକାର କରିଥିବ ତାହା ପୂର୍ଣ୍ଣ କରିବ।

Digitized by srujan ka@gmail.com

ଜଗଦୀଶ୍ୱରଙ୍କ ନାମରେ ଯେଉଁ ସମସ୍ତ ବସ୍ତୁ ଉତ୍ସର୍ଗିତ ହୋଇ ଅଛି, ସେଥିରେ ହସ୍ତକ୍ଷେପ କରିବ ନାହିଁ । ନିରାଶ୍ରୟର ସମ୍ପତ୍ତିର ନିକଟବର୍ତ୍ତୀ ହୁଅ ନାହିଁ । ସୁରାପାନ ଓ ଦ୍ୟୁତକ୍ରୀଡ଼ାଠାରୁ ସର୍ବଦା ବିରତ ହୁଅ । ମିଥ୍ୟା ସାକ୍ଷ୍ୟଦାନ କରିବ ନାହିଁ । ନିଷିଦ୍ଧ କର୍ମରେ ଅର୍ଥ ବ୍ୟୟ କର ନାହିଁ । ଅପବ୍ୟୟ କର ନାହିଁ । ଅପବ୍ୟୟୀଗଣ ଶୟତାନ୍‌ର ଭ୍ରାତା । ଗୋଟିଏ ଯବକଣିକା ସୁଦ୍ଧା ଅନର୍ଥରେ ବ୍ୟୟିତ ହେଲେ ଅପବ୍ୟୟ ହୁଏ । ଦୟା ଓ କ୍ଷମାଦ୍ୱାରା ଅପରାଧୀ-ମାନଙ୍କର ଅପରାଧ ବିସ୍ମୃତ ହେବ । ଅତ୍ୟାଚାରୀକୁ ଉପକାରଦ୍ୱାରା ଉପକୃତ କରଅ ଓ ବିନମ୍ରଭାବରେ ଲୋକମାନଙ୍କୁ ସମାଦର କର ।

(ତ) ମନୁଷ୍ୟର ମନ କୁମନ୍ତ୍ରଣା ପାଇଲାମାତ୍ରେ ଈଶ୍ୱର ଜାଣନ୍ତି । କାରଣ ତାଙ୍କର ନାମ ଅନ୍ତର୍ଯ୍ୟାମୀ । କାରଣ ଈଶ୍ୱର ମନୁଷ୍ୟ ପ୍ରାଣର ଶିରା-ପ୍ରଶିରା ଅପେକ୍ଷା ସର୍ବଦା ନିକଟବର୍ତ୍ତୀ । ତୁମ୍ଭମାନଙ୍କର ଧନ-ସମ୍ପତ୍ତି ଯେପରି ତୁମ୍ଭମାନଙ୍କୁ ଈଶ୍ୱର ପ୍ରସଙ୍ଗରୁ ଶିଥିଳ ନ କରେ ।

(ଣ) କଳଙ୍କ ଓ ଅପବିତ୍ରତାରୁ ମୁକ୍ତ ନ ହେଲେ ଏବଂ ଦେବ ଚରିତ୍ର ଲାଭକରି ନ ପାରିଲେ ସ୍ୱର୍ଗୋଦ୍ୟାନରେ ପ୍ରବେଶ ଅସମ୍ଭବ ।

ଇସଲାମ ଧର୍ମ ଅତି ସରଳ ଓ ମହମ୍ମଦଙ୍କ ବାଣୀରେ ଅନେକ ରତ୍ନ ନିହିତ ଅଛି । ଏ ଧର୍ମରେ ଜାତି, ଗୋଷ୍ଠୀ-ବିବାଦ ନାହିଁ । ସମସ୍ତେ ଏକ ପରାତ୍ପର ସର୍ବଶକ୍ତିମାନ ଭଗବାନଙ୍କୁ ଆରାଧନା କରନ୍ତି । ଏ ଧର୍ମରେ ପୌତ୍ତଳିକତା ନାହିଁ । ସମଗ୍ର ମାନବଜାତି ଭଗବାନଙ୍କର ସନ୍ତାନ ଓ ସମସ୍ତ ମୁସଲମାନମାନେ ଭ୍ରାତୃପ୍ରେମରେ

Digitized by srujan ka@gmail.com

ଆବଦ୍ଧ ବୋଲି ମହମ୍ମଦ ତାଙ୍କର ସର୍ବପ୍ରଧାନ ନୀତି ବର୍ଣ୍ଣନା କରିଛନ୍ତି । ଏହି ଧର୍ମର ବାଣୀରେ ଅସଭ୍ୟଲୋକ ସଭ୍ୟ ପାଲଟିଲେ, ନାସ୍ତିକ କାଫେରମାନେ ଭଗବାନଙ୍କଠାରେ ବିଶ୍ୱାସ ସ୍ଥାପନ କଲେ । ସାମାଜିକ ସ୍ତରରେ ଉଚ୍ଚ ନୀଚ ଭେଦ ରହିଲା ନାହିଁ । ମଧ୍ୟଏସିଆ, ପୂର୍ବ ଓ ଉତ୍ତର ଆଫ୍ରିକାର ଆର୍ଯ୍ୟମାନେ ଏହି ଧର୍ମ-ବାଣୀରୁ ପ୍ରେରଣା ପାଇ ସଭ୍ୟ ଓ ସୁଶିକ୍ଷିତ ହେଲେ—ଭଗବାନ ଏକ ଅଟନ୍ତି । ଅନ୍ୟ କେହି ଦ୍ୱିତୀୟ ନାହାନ୍ତି ଓ ସେ ତାଙ୍କ ଇଚ୍ଛାରେ ଜଗତରେ ମଙ୍ଗଳ ସ୍ଥାପନ କରୁଛନ୍ତି; ତାଙ୍କ ଉପରେ ବିଶ୍ୱାସ ସ୍ଥାପନ କରି ନୀତି-ଅନୁମୋଦିତ ପଥରେ ମାନବ ସମାଜ ତାର କର୍ମ ପନ୍ଥା ନିୟନ୍ତ୍ରଣ କରୁ ଏହାହିଁ ଏ ଧର୍ମର ସାରମର୍ମ । ମହମ୍ମଦ ନିର୍ଦ୍ଦେଶ ଦେଇ ଯାଇଥିଲେ ଯେ, ତାଙ୍କ ମୃତ୍ୟୁପରେ ଯେପରି କେହି ତାଙ୍କ ମୂର୍ତ୍ତିକୁ ଦେବତା ପରି ପୂଜା କରିବେ ନାହିଁ । ତେଣୁ ମହମ୍ମଦଙ୍କର ପ୍ରତିମୂର୍ତ୍ତି, ଛବିପ୍ରଭୃତି ରଖାଯାଏ ନାହିଁ । ତାଙ୍କ ପ୍ରତି-ମୂର୍ତ୍ତି ରଖିବା ଧର୍ମବିରୁଦ୍ଧ ଏବଂ ସେ ମଧ୍ୟ କହିଥିଲେ ଧର୍ମ ଉପରେ କେହି ଆକ୍ରମଣ କଲେ ତା'ର ପ୍ରତିରୋଧ କରିବା ପ୍ରୟୋଜନ । ଏହି ପ୍ରତିରୋଧକୁ ଜେହାଦ ବୋଲାଯାଏ ।

---

Digitized by srujan ka@gmail.com



# ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ

**ଶ୍ରୀ ଅନନ୍ତପ୍ରସାଦ ପଣ୍ଡା**

ଆଧ୍ୟାତ୍ମ ଜଗତର ଲୀଳାଭୂମି ଏଇ ଭାରତବର୍ଷରେ ଯୁଗେ ଯୁଗେ କେତେ କେତେ ଯୁଗଜନ୍ମା ମହାପୁରୁଷ ଜନ୍ମଲାଭ କରିଛନ୍ତି କେବଳ ସ୍ୱୀୟ ଜନ୍ମଭୂମିକୁ ଅଲଙ୍କୃତ କରିବାପାଇଁ ନୁହେଁ, ସମଗ୍ର ଜଗତକୁ ମଧ୍ୟ ଜ୍ଞାନର ଆଲୋକ ବିତରଣ କରିବାପାଇଁ । ସେଇ ଯୁଗଜନ୍ମା-ମାନଙ୍କ ମଧ୍ୟରେ ଆଚାର୍ଯ୍ୟ ଶଙ୍କର ଥିଲେ ଏକ ଅତ୍ୟୁଜ୍ଜ୍ୱଳ ଦୀପସ୍ତମ୍ଭ ।

Digitized by srujan ka@gmail.com

ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି— ଯେତେବେଳେ ଧର୍ମର ଗ୍ଳାନି ଉପସ୍ଥିତ ହୁଏ, ଅଧର୍ମର ପ୍ରଭାବ ବିସ୍ତାରିତ ହୁଏ, ସେତେବେଳେ ସ୍ୱୟଂ ଭଗବାନ ଅବତାରରୂପରେ ଜନ୍ମଗ୍ରହଣ କରନ୍ତି, ଧର୍ମର ପୁନଃ ସଂସ୍ଥାନପାଇଁ । ସେହିପରି ଯେତେବେଳେ ଭାରତର ଧର୍ମକ୍ଷେତ୍ରରେ ଗୋଟିଏ ଗାଢ଼ କୁଜ୍‌ଝଟିକା ଘୋଟି ଯାଇଥିଲା, ଈଶ୍ୱର ଅଛନ୍ତି କି ନାହିଁ, ଥିଲେ ତାଙ୍କର ସ୍ୱରୂପ କ'ଣ, ବା ତାଙ୍କର ଅଧିଷ୍ଠାନ କେଉଁଠି, ଇତ୍ୟାଦି ପ୍ରଶ୍ନର କୌଣସି ଠିକ୍ ଉତ୍ତର ମିଳୁ ନ ଥିଲା, ସେତେବେଳେ ଏହି ଅଜ୍ଞାନ ଅନ୍ଧକାରକୁ ଦୂର କରିବାପାଇଁ ପ୍ରଖର ଜ୍ଞାନର ମାର୍ତ୍ତଣ୍ଡସ୍ୱରୂପ ଏକ ଅଦ୍ୱିତୀୟ ମହାପୁରୁଷ ଶଙ୍କରାଚାର୍ଯ୍ୟ ଜନ୍ମଗ୍ରହଣ କରିଥିଲେ । ଭାରତର ଦକ୍ଷିଣ ସୀମାନ୍ତ କୁମାରିକାର ନିକଟବର୍ତ୍ତୀ କେରଳ ରାଜ୍ୟର କାଲଡ଼ିନାମକ ଏକ କ୍ଷୁଦ୍ର ଗ୍ରାମରେ ୭୮୮ ଖ୍ରୀଷ୍ଟାବ୍ଦରେ ତାଙ୍କର ପିତା ଶିବଗୁରୁ ଥିଲେ ଜଣେ ନୈଷ୍ଠିକ ନାମ୍ବୁଦ୍ରି ବ୍ରାହ୍ମଣ ଓ ତାଙ୍କ ମାତାଙ୍କର ନାମ ଥିଲା ବଶିଷ୍ଟା ବା ଆର୍ଯ୍ୟମ୍ବା ।

ଆଜନ୍ମଜ୍ଞାନୀ ଶୁକଦେବଙ୍କ ପରି ଶିଶୁ ଶଙ୍କର ଜନ୍ମରୁ ଥିଲେ ମହାପଣ୍ଡିତ । ତାଙ୍କର ଅସାଧାରଣ ବୁଦ୍ଧି ଓ ସ୍ମୃତିଶକ୍ତି ଦେଖି ତାଙ୍କ ସମସାମୟିକ ଲୋକେ ଚମତ୍କୃତ ହୋଇଯାଉଥିଲେ, ମାତ୍ର ତିନି ବର୍ଷ ବୟସରେ ସେ ତାଙ୍କର ମାତୃଭାଷା ମାଲୟାଲମ୍ ସାହିତ୍ୟର ଯେ କୌଣସି ପୁସ୍ତକ ପଢ଼ିପାରୁଥିଲେ ଓ ଅନାୟାସରେ ପଠିତ ବସ୍ତୁକୁ ଆବୃତ୍ତି କରିପାରୁଥିଲେ । ଆଠ ବର୍ଷ ବୟସରେ ଶଙ୍କରଙ୍କର ଉପନୟନ ହେଲା ଓ ତା'ପରେ ସେ ସଂସ୍କୃତ ଭାଷା ଶିକ୍ଷା କରି ବେଦ-ବେଦାନ୍ତ ସମ୍ବନ୍ଧୀୟ ବହୁ ଶାସ୍ତ୍ର ଅଧ୍ୟୟନ କରି ତା'ର ଗୂଢ଼ ତତ୍ତ୍ୱମାନ ଉପଲବ୍ଧି କରିପାରୁଥିଲେ ଓ ପ୍ରାଞ୍ଜଳଭାବରେ ବ୍ୟାଖ୍ୟା ମଧ୍ୟ କରିପାରୁଥିଲେ । ଆଚାର୍ଯ୍ୟ ଶଙ୍କର ଷୋଡ଼ଶ

Digitized by srujan ka@gmail.com

ବର୍ଷରେ ଉପନୀତ ହେବା ବେଳକୁ ସେ ସମସ୍ତ ଷଡ୍‌ଦର୍ଶନରେ ଅଗାଧ ପାଣ୍ଡିତ୍ୟ ଲାଭ କରିପାରିଥିଲେ ।

ଏହି ସୁକୋମଳ ତରୁଣ ବୟସରେ ମଧ୍ୟ ତାଙ୍କର ସଂସାର ପ୍ରତି ବୈରାଗ୍ୟ ଜାଗ୍ରତ ହୋଇଥିଲା ଓ ଦୃଶ୍ୟମାନ ଜଗତକୁ ମିଥ୍ୟା ବା ଅବିଦ୍ୟାର କ୍ରୀଡ଼ା ଭୂମିଭାବରେ ଉପଲବ୍‌ଧି କରି ବ୍ରହ୍ମାନନ୍ଦ ଲାଭ ଉଦ୍ଦେଶ୍ୟରେ ସେ ସନ୍ନ୍ୟାସ-ଗ୍ରହଣପୂର୍ବକ ଗୃହତ୍ୟାଗ କରିବା-ପାଇଁ ସଂକଳ୍ପ କଲେ । ତାଙ୍କର ଏଇ ସଂକଳ୍ପର ପ୍ରଥମ ପ୍ରତିବନ୍ଧକ-ରୂପେ ଛିଡ଼ା ହେଲେ ତାଙ୍କର ଜନନୀ । ଏତେ ଅଳ୍ପ ବୟସରେ ଏତେ ବଡ଼ ଜ୍ଞାନୀ ପଣ୍ଡିତ ପୁଅକୁ ଗୃହତ୍ୟାଗୀ ସନ୍ନ୍ୟାସୀଭାବରେ ଛାଡ଼ ଦେବାପାଇଁ କେଉଁ ଜନନୀର ହୃଦୟ ସମ୍ଭବ ? ତା'ପରେ ଶଙ୍କର ଥିଲେ ଖୁବ୍ ମାତୃଭକ୍ତ । ସେ ଏକ ବିଷମ ଦ୍ୱନ୍ଦ୍ୱର ସମ୍ମୁଖୀନ ହେଲେ । ଏକ ଦିଗରେ ଅନ୍ତରର ଆହ୍ୱାନ—ସନ୍ନ୍ୟାସୀ ହୋଇ ଧର୍ମର ଅନ୍ଧକାର ଦୂର କରିବାକୁ ହେବ ଜ୍ଞାନାଲୋକର ବିସ୍ତାର-ଦ୍ୱାରା, ଅନ୍ୟ ଦିଗରେ ସ୍ନେହମୟୀ ଜନନୀଙ୍କର କାତର ନିବେଦନ—'ମୋତେ ଛାଡ଼ ଯାଆନା ।' ଯାହାଙ୍କର ଆବିର୍ଭାବ ଧର୍ମର ଗ୍ଲାନି ଦୂର କରିବାପାଇଁ, ତାଙ୍କୁ କ'ଣ ମାୟାମମତାର ବନ୍ଧନ ବାନ୍ଧି ରଖି-ପାରେ ? ସେ ମାତାଙ୍କୁ ତାଙ୍କର ଅନ୍ତରର ନିବେଦନ ଜଣାଇଲେ । ମା' ସବୁକଥା ବୁଝିପାରି କହିଲେ—"ଯା ବାପା; କିନ୍ତୁ ଗୋଟିଏ ସର୍ତ୍ତ ରହିଲା, ମୋର ଅନ୍ତିମ ସମୟରେ ମୁଁ ଯେପରି ତୋତେ ମୋ ପାଖରେ ପାଇବି ।" ଶଙ୍କର ମାତାଙ୍କର ସର୍ତ୍ତରେ ରାଜି ହୋଇ ଗୃହ ସଂସାରର ମାୟା ତୁଟାଇ ମାତ୍ର ଷୋଡ଼ଶ ବର୍ଷ ବୟସରେ ଗୁରୁଙ୍କ-ଠାରୁ ଜ୍ଞାନ ଲାଭ ଉଦ୍ଦେଶ୍ୟରେ ନର୍ମଦା ନଦୀ କୂଳକୁ ଚାଲିଗଲେ । ସେଠାରେ ସେ ତାଙ୍କର ନିର୍ବାଚିତ ଗୁରୁ ଗୋବିନ୍ଦପାଦଙ୍କଠାରୁ ସନ୍ନ୍ୟାସ ଧର୍ମରେ ଦୀକ୍ଷିତ ହେଲେ । ଗୁରୁଙ୍କ ନିର୍ଦ୍ଦେଶରେ ସେ

Digitized by srujan ka@gmail.com

ସେଇଠାରେ କିଛି କାଳ ରହି ବେଦବ୍ୟାସଙ୍କର ବେଦାନ୍ତସୂତ୍ରର ଭାଷ୍ୟ ଲେଖିଥିଲେ ।

ତାହାପରେ ଆରମ୍ଭ ହେଲା ଆଚାର୍ଯ୍ୟ ଶଙ୍କରଙ୍କର ଦିଗ୍‌ବିଜୟ ଯାତ୍ରା । ସେହି ମାର୍ତ୍ତଣ୍ଡ ସଦୃଶ ତରୁଣ ସନ୍ନ୍ୟାସୀ ଦଣ୍ଡକମଣ୍ଡଳୁ ଘେନି ଆରମ୍ଭ କଲେ ତାଙ୍କର ଦିଗ୍‌ବିଜୟର ପଦଯାତ୍ରା । ସେତେବେଳେ ରାସ୍ତା ଘାଟ ଯାନବାହନ ପ୍ରଭୃତିର ସୁବିଧା ନ ଥିଲା । ଗ୍ରୀଷ୍ମଣ ଗିରି-ବନାକୀର୍ଣ୍ଣ, ବିପଦସଙ୍କୁଳ ରାସ୍ତାରେ ପଦବ୍ରଜରେ ଚାଲିଲେ ଏକ ତେଜୋଦୀପ୍ତ ତରୁଣ ସନ୍ନ୍ୟାସୀ ଆଚାର୍ଯ୍ୟ ଶଙ୍କର, ମନରେ ଏକ ଅଦମ୍ୟ ଉତ୍ସାହ ଓ ଦୃଢ଼ସଙ୍କଳ୍ପ ଘେନି, କୁମାରିକାଠାରୁ ହିମାଳୟ ଓ କାମରୂପଠାରୁ ଦ୍ୱାରକା ପର୍ଯ୍ୟନ୍ତ ସମଗ୍ର ଭାରତବର୍ଷରେ ପରି-ବ୍ରାଜକଭାବରେ ପର୍ଯ୍ୟଟନ କରି ବିଶୁଦ୍ଧ ଅଦ୍ୱୈତବାଦର ମହା-ମନ୍ତ୍ର—"ସୋଽହଂ, ଶିବୋଽହଂ, ସଚ୍ଚିଦାନନ୍ଦୋଽହଂ"ର ପ୍ରଚାର କରିବେ । ତାଙ୍କର ଏଇ ଦିଗ୍‌ବିଜୟ ଯାତ୍ରାପଥରେ ସେ ଅସଂଖ୍ୟ ଜ୍ଞାନୀ ଓ ମହାପଣ୍ଡିତମାନଙ୍କୁ ଭେଟିଥିଲେ ଓ ସେମାନଙ୍କ ସହିତ ଶାସ୍ତ୍ରାଲୋଚନାପୂର୍ବକ ସେମାନଙ୍କର ପୂର୍ବ ସଂସ୍କାରକୁ ଦୂର କରି ଅଦ୍ୱୈତବାଦର ମହାମନ୍ତ୍ରରେ ଦୀକ୍ଷିତ କରାଇଥିଲେ । ତାଙ୍କର ଏଇ ଜୟ ଯାତ୍ରା ପଥରେ ଏକ ଉଲ୍ଲେଖଯୋଗ୍ୟ ବିଜୟ ହେଉଛି ମହା-ପଣ୍ଡିତ ଶ୍ରୀ ମଣ୍ଡନ ମିଶ୍ର ଓ ତାଙ୍କର ମହାବିଦୁଷୀ ପତ୍ନୀ ଉଭୟ-ଭାରତୀଙ୍କୁ ତର୍କରେ ପରାସ୍ତ କରି ନିଜର ଶିଷ୍ୟତ୍ୱରେ ବରଣ କରିବା । ସେଇ ମଣ୍ଡନ ମିଶ୍ର ହିଁ ଶଙ୍କରାଚାର୍ଯ୍ୟଙ୍କର ପ୍ରଥମ ଚାରି ଶିଷ୍ୟମାନଙ୍କ ମଧ୍ୟରେ ଜଣେ ପ୍ରଧାନ ଶିଷ୍ୟ ହୋଇଥିଲେ ଓ ତାଙ୍କର ନାମ ହେଲା ଶ୍ରୀ ସୁରେଶ୍ୱରାଚାର୍ଯ୍ୟ । ତାଙ୍କର ଅନ୍ୟ ତିନି ଜଣ ପ୍ରଧାନ ଶିଷ୍ୟ ହେଲେ ଶ୍ରୀ ପଦ୍ମପାଦ, ଶ୍ରୀ ତୋଟକାଚାର୍ଯ୍ୟ ଓ ଶ୍ରୀ ହସ୍ତାମଳକ । ଏଇ ଚାରିଜଣ ପ୍ରଧାନ ଶିଷ୍ୟଙ୍କୁ ଅଧିଷ୍ଠିତ କରିବାପାଇଁ



Digitized by srujan ka@gmail.com

ଆଚାର୍ଯ୍ୟ ଶଙ୍କର ଭାରତର ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ ଚାରି ଦିଗରେ ଚାରି ଗୋଟି ମଠ ସ୍ଥାପନ କଲେ । ସେଗୁଡ଼ିକ ହେଲା ପୂର୍ବ ଦିଗରେ ପୁରୀର ଗୋବର୍ଦ୍ଧନ ମଠ, ପଶ୍ଚିମରେ ଦ୍ୱାରକାର ସାରଦା ମଠ, ଉତ୍ତର ଦିଗରେ ହିମାଳୟସ୍ଥ ବଦ୍ରିକାଶ୍ରମରେ ଜ୍ୟୋତିର୍ମଠ ଓ ଦକ୍ଷିଣ ଦିଗରେ ମହୀଶୂରର ଶୃଙ୍ଗେରି ମଠ । ଅଦ୍ୟାବଧି ଏଇ ଚାରି ଗୋଟି ମଠରେ ଅଧିଷ୍ଠିତ ମଠାଧୀଶମାନେ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ନାମରେ ଅଭିହିତ ହୋଇଥାନ୍ତି । ଏଥିରୁ ସ୍ପଷ୍ଟଭାବରେ ପ୍ରମାଣିତ ହୁଏ ଯେ ଶଙ୍କରାଚାର୍ଯ୍ୟ ସମଗ୍ର ଭାରତବର୍ଷରେ ଏକ ସାଂସ୍କୃତିକ ଓ ଆଧ୍ୟାତ୍ମିକ ଅଖଣ୍ଡତା ଆନୟନ କରିଥିଲେ ।

ଶଙ୍କରାଚାର୍ଯ୍ୟ ଯେ କେବଳ ଜଣେ ମହାପଣ୍ଡିତ, ମହାଜ୍ଞାନୀ ଓ ସଂସାରତ୍ୟାଗୀ ମହାସନ୍ନ୍ୟାସୀ ଥିଲେ ତାହା ନୁହେଁ, ସେ ଥିଲେ ଜଣେ ମହାକବି । ସରଳ ସଂସ୍କୃତ ଭାଷାରେ ଯତି, ଯମକ ଓ ଛନ୍ଦର ମଧୁର ସମନ୍ୱୟ ଆଣିଥିଲେ ପ୍ରଥମେ ଶଙ୍କରାଚାର୍ଯ୍ୟ । ଏପରି ଲଳିତ କାନ୍ତ ପଦାବଳୀର ମାଧ୍ୟମରେ ଏତେ ଶୁଷ୍କ ସାର-ଗର୍ଭକ ତାତ୍ତ୍ୱିକ ସତ୍ୟର ଏତେ ସହଜ ଓ ସରଳ ପରିପ୍ରକାଶ କେବଳ ଶଙ୍କରଙ୍କ ରଚନାରେ ହିଁ ପରିଦୃଷ୍ଟ ହୁଏ । ଶଙ୍କରଙ୍କର ଦର୍ଶନ ମୁଖ୍ୟତଃ ଅଦ୍ୱୈତବାଦ ବା "ସୋଽହଂ" ବାଦ ଉପରେ ପ୍ରତିଷ୍ଠିତ ହେଲେ ସୁଦ୍ଧା, ସେ ଦ୍ୱୈତବାଦର ମଧୁରତାକୁ ଖୁବ୍ ଭଲ ଭାବରେ ଉପଲବ୍ଧି କରି ବହୁ ଦେବଦେବୀଙ୍କର ସ୍ତବ, ସ୍ତୋତ୍ର ଇତ୍ୟାଦି ରଚନା କରି ଯାଇଛନ୍ତି । ସେହିଁ ଲେଖାମାନଙ୍କରୁ ମୋହ ମୁଦ୍‌ଗର ରୂପ ସଂସାର-ବିରାଗୀ ଲେଖା ଝରିଛି—

ମୂଢ଼ ! ଜହୀହି ଧନାଗମ ତୃଷ୍ଣାଂ
କୁରୁ ତନୁବୁଦ୍ଧେ ! ମନସି ବିତୃଷ୍ଣାଂ,

Digitized by srujan ka@gmail.com

ସେଇ ଲେଖଣୀରୁ ପୁଣି ଝରିଛି ଜଗନ୍ନାଥ ସ୍ତୋତ୍ର—

କଦାଚିତ୍ କାଳିନ୍ଦୀ-ତଟ-ବିପିନ-ସଙ୍ଗୀତକବରୋ

ମୁଦାଭୀରୀ ନାରୀ-ବଦନ-କମଳାସ୍ୱାଦମଧୁପଃ ଇତ୍ୟାଦି ।

ସେ ଉପନିଷଦ୍, ବ୍ରହ୍ମସୂତ୍ର ଓ ଭଗବତ୍ ଗୀତାର ଭାଷ୍ୟ ପ୍ରଣୟନ କରିଥିଲେ ।

ଯେଉଁ ଅଦ୍ୱୈତଭାବର ପ୍ରବର୍ତ୍ତକ ଶଙ୍କରାଚାର୍ଯ୍ୟ ବ୍ରହ୍ମ ସତ୍ୟଂ ଜଗନ୍ମିଥ୍ୟା ବୋଲି ଉପଲବ୍ଧି କରି ପ୍ରତିପାଦିତ କରିଥିଲେ ଓ ନିଜକୁ ସ୍ୱୟଂ ବ୍ରହ୍ମ ବୋଲି ଉପଲବ୍ଧି କରି 'ସୋଽହଂ ଶିବୋଽହଂ' ମହାମନ୍ତ୍ରର ପ୍ରଚାର କରିଥିଲେ, ସେଇ ଶଙ୍କରାଚାର୍ଯ୍ୟ ଅସଂଖ୍ୟ ଦେବ-ଦେବୀଙ୍କର ସ୍ତବ, ସ୍ତୋତ୍ର ଓ ନାମ ଜପ ଇତ୍ୟାଦିର ପ୍ରଶସ୍ତି ଗାଇ ଯାଇଛନ୍ତି ।

ମୋଟ ଉପରେ କହିବାକୁ ଗଲେ, ଶଙ୍କର ଥିଲେ ଏକ ଅଦ୍ୱିତୀୟ ମହାପୁରୁଷ । ଅନେକେ ତାଙ୍କୁ ସ୍ୱୟଂ ଶଙ୍କର ବା ଶିବଙ୍କର ଅବତାର ବୋଲି ଜ୍ଞାନ କରିଥାନ୍ତି; ମାତ୍ର ବତିଶ ବର୍ଷ ବୟସରେ ମହାତ୍ମା ମହାସନ୍ନ୍ୟାସୀ ଶଙ୍କରାଚାର୍ଯ୍ୟ ସାରା ଭାରତରେ ଜ୍ଞାନର ଆଲୋକଛଟା ଖେଳାଇ ଦେଇ ୮୩୨ ଖ୍ରୀଷ୍ଟାବ୍ଦରେ ହିମା-ଳୟର କେଦାରନାଥରେ ମହାସମାଧି ଗ୍ରହଣ କରିଥିଲେ ।

ଆସ ଆଜି ସେଇ ମହାମାନବ ଶଙ୍କରସ୍ୱରୂପ ଶଙ୍କରା-ଚାର୍ଯ୍ୟଙ୍କର ବନ୍ଦନା ଗାନ କରିବା—

ଶଙ୍କରଂ ଶଙ୍କରାଚାର୍ଯ୍ୟଂ କେଶବଂ ବାଦରାୟଣମ୍

ସୂତ୍ର ଭାଷ୍ୟ କୃତୌ ବନ୍ଦେ ଭଗବନ୍ତୌ ପୁନଃ ପୁନଃ ।

× × ×

ଶ୍ରୁତି ସ୍ମୃତି ପୁରାଣାନାମାଳୟଂ କରୁଣାଳୟମ୍

ନମାମି ଭଗବତ୍‌ପାଦଂ ଶଙ୍କରଂ ଲୋକ ଶଙ୍କରମ୍ ।

Digitized by srujan ka@gmail.com

## ଶଙ୍କରାଚାର୍ଯ୍ୟଙ୍କ ବାଣୀ

ଅନୁବାଦକ—ଶ୍ରୀ ବ୍ରଜବନ୍ଧୁ ଦାସ, ଏମ୍: ଏ: (ଆଡ଼ଭୋକେଟ)

| | |
|---|---|
| ମାୟା କୁହୁକ କଏ ? | ଏ ସଂସାର । |
| ସ୍ୱପ୍ନ କଅଣ ? | ଏ ସଂସାରର କାର୍ଯ୍ୟାବଳୀ । |
| ନିଦ୍ରା କଅଣ ? | ଅଜ୍ଞାନତାହିଁ ନିଦ୍ରା । |
| କ'ଣ ଭୟ ଜନ୍ମାଏ ? | ସମ୍ପତ୍ତିର ରକ୍ଷଣାବେକ୍ଷଣ । |
| ଦାରିଦ୍ର୍ୟ କ'ଣ ? | ଅଶାନ୍ତି ହିଁ ଦାରିଦ୍ର୍ୟ । |
| ବିଷର ଆଧାର କଏ ? | ପାପୀ ବ୍ୟକ୍ତି । |
| ସବୁଠାରୁ ଅଶୁଦ୍ଧ ଦ୍ରବ୍ୟ କଣ ? | ଋଣ । |
| ଘୃଣ୍ୟ ବିଷୟ କ'ଣ ? | ନୀଚ ଲୋକଙ୍କୁ ମାଗିବା । |
| ମନୁଷ୍ୟ ମଧ୍ୟରେ କୁକୁର କଏ ? | ଯେ ନୀଚଲୋକଙ୍କୁ ସେବା କରେ । |
| ନରକ କ'ଣ ? | ଅନ୍ୟ ବ୍ୟକ୍ତିର ଆଶ୍ରୟରେ ବଞ୍ଚିବା । |
| ଦୁଃଖୀ କଏ ? | ବିଷୟାସକ୍ତ ବ୍ୟକ୍ତି । |
| ଦରିଦ୍ର କଏ ? | ଯାହାର ଆଶା ଅତ୍ୟନ୍ତ ଅଧିକ । |
| ଅଧମ ବ୍ୟକ୍ତି କଏ ? | ସ୍ୱାର୍ଥପର ବ୍ୟକ୍ତି । |
| ପ୍ରକୃତ ଚୋର କଏ ? | ଯାହା ଇନ୍ଦ୍ରିୟମାନଙ୍କୁ ପ୍ରଲୋଭିତ କରେ । |
| ଶତ୍ରୁ କଏ ? | ଆଳସ୍ୟ । |
| ପ୍ରକୃତ ଶତ୍ରୁ କଏ ? | କାମପ୍ରବୃତ୍ତି । |
| ମିତ୍ର ପ୍ରାପ୍ତ ଶତ୍ରୁ କଏ ? | ପୁତ୍ର, କଳତ୍ର, ବନ୍ଧୁ ଓ ଜ୍ଞାତି । |
| ଅନ୍ଧ କଏ ? | ଜାଣି ହେଲେ ପଛକେ ଯେ ମନ୍ଦ କାର୍ଯ୍ୟ କରେ । |

Digitized by srujan ka@gmail.com

| | |
|---|---|
| ଅନ୍ଧଠାରୁ ବଳି ଅନ୍ଧ କିଏ ? | ଯାହାର ବାସନା ଅଛି । |
| ଚକ୍ଷୁ ଥାଇ ଅନ୍ଧ କିଏ ? | ଯେଉଁ ନାସ୍ତିକମାନେ ବେଦରେ ବିଶ୍ୱାସ କରନ୍ତି ନାହିଁ । |
| ମୂକ କିଏ ? | ଉପଯୁକ୍ତ ସମୟରେ ଯେ ଭଲ କଥା କହେ ନାହିଁ । |
| ବଧିର କିଏ ? | ଯେ ସଦୁପଦେଶ ଶୁଣେ ନାହିଁ । |
| ଲୁଣ୍ଠିତ କିଏ ? | ଲୋଭୀ । |
| ମୃତ ସମ କିଏ ? | ଯାହାର ବଳ ପଣ ନାହିଁ କି ପଣ ପୌରୁଷ ନାହିଁ । |
| ପଶୁ କିଏ ? | ବିଦ୍ୟାହୀନ ଜନ । |
| ଅଧମ ପଶୁ କିଏ ? | ଯାହାର ଧର୍ମାଧର୍ମ ବିଚାର ନାହିଁ । |
| ସଜ୍ଜନମାନେ କ'ଣ ଉଚ୍ଚାରଣ କରନ୍ତି ନାହିଁ ? | ଅସତ୍ୟ ଓ ପର ନିନ୍ଦା । |
| ପାପ କ'ଣ ? | ଅନ୍ୟ ପ୍ରତି ନିଷ୍ଠୁରତା । |
| ସୁଖର ମୂଳ ଉପାଦାନ କ'ଣ ? | ସତ୍‌କର୍ମ ସମ୍ପାଦନ । |
| ପ୍ରକୃତ ଜୀବନ କ'ଣ ? | ଯେଉଁ ଜୀବନ ଦୋଷ-ବିବର୍ଜିତ । |
| ପ୍ରସିଦ୍ଧ ବ୍ୟକ୍ତି ପକ୍ଷରେ ମୃତ୍ୟୁଠାରୁ ବଳି କ'ଣ ? | ଅପବାଦ । |
| ପ୍ରାଣୀମାନଙ୍କର ଜ୍ୱର କ'ଣ ? | ସଂସାର ଚିନ୍ତା । |
| ସଂସାରରେ ଅଜ୍ଞେୟ କ'ଣ ? | ନାରୀମାନଙ୍କର ମନ କଥା । |
| ଜୀବନକୁ ବାନ୍ଧି ରଖିବା ରଜ୍ଜୁ କ'ଣ ? | ବାସନା (ମମତା) । |
| ପ୍ରାଣୀମାନଙ୍କର ଶୃଙ୍ଖଳ କିଏ ? | ନାରୀ । |
| ସୁରାପ୍ରାୟ କିଏ ମତ୍ତ କରାଏ ? | ସୁନ୍ଦରୀ ନାରୀ । |

Digitized by srujan ka@gmail.com

| | |
|---|---|
| ମନୁଷ୍ୟର ଉପଘାତକାରୀ ଇନ୍ଦ୍ରିୟ କିଏ ? | ଜିହ୍ୱା । |
| ସର୍ବାପେକ୍ଷା ଅଧମ ଗୁଣ କ'ଣ ? | କ୍ରୋଧ । |
| ସର୍ବାପେକ୍ଷା ଲୋଭନୀୟ ପଦାର୍ଥ କ'ଣ ? | ପୁରୁଷ ପକ୍ଷରେ ସ୍ତ୍ରୀ ଓ ସ୍ତ୍ରୀ ପକ୍ଷରେ ପୁରୁଷ । |
| ସତ୍‌ସାହସୀ କିଏ ? | ଯିଏ ପାପ ବିରୁଦ୍ଧରେ ନିଜକୁ ଜଗି ରଖେ । |
| ଶ୍ରେଷ୍ଠତମ ଜୀବନ ଧାରଣ କ'ଣ ? | ନିନ୍ଦାମୁକ୍ତ ଜୀବନଯାପନ । |
| ଜନ୍ମପ୍ରାପ୍ତ କ୍ଷଣସ୍ଥାୟୀ କେଉଁ-ମାନେ ? | ଧନ, ଯୌବନ ଓ ପରମାୟୁ । |
| ପାପହାରୀ କିଏ ଷଷ୍ଠଗ୍ରସ୍ତ ହୁଏନାହିଁ ? | ଯେ ସର୍ବଦା ଭଗବାନଙ୍କୁ ତପସ୍ୟା କରେ । |
| ପ୍ରକୃତ ସୁଖୀ କିଏ ହୁଏ ? | ସଜ୍ଜନ-ସଙ୍ଗତ । |
| ସବୁଠାରୁ ବଳି ବେଶୀ ଭୋଗ୍ୟ ଦ୍ରବ୍ୟ କ'ଣ ? | ସ୍ୱାସ୍ଥ୍ୟ । |
| କେଉଁ କେଉଁ ବିଷୟ ପ୍ରତି ପ୍ରଚେଷ୍ଟା କରିବ ? | ଶିକ୍ଷା, ସ୍ୱାସ୍ଥ୍ୟ ଓ ଦାନ । |
| ପ୍ରକୃତ ବନ୍ଧୁ କିଏ ? | ଆମକୁ ପାପକାର୍ଯ୍ୟ କରିବାରେ ଯେ ବାଧା ଦିଏ । |
| କେଉଁମାନେ ସତ୍‌ପଥରେ ମନ ବଳାନ୍ତି ନାହିଁ ? | ବଦ୍‌ମାସ୍, ସନ୍ଦେହୀ, କୃତଘ୍ନ ଓ ନିର୍ଗୁଣବାଦୀ । |
| ଜଗତରେ ଦୁର୍ଲ୍ଲଭ କ'ଣ ? | ସଦ୍‌ଗୁରୁ । |
| ଚନ୍ଦ୍ରର କିରଣ ପ୍ରାପ୍ତ ଆହ୍ଲାଦଦାୟକ କ'ଣ ? | ସତ୍‌ପୁରୁଷମାନଙ୍କର ଜୀବନୀ । |

Digitized by srujan ka@gmail.com

| | |
|---|---|
| କାହାକୁ ପ୍ରିୟବସ୍ତୁ କରିବ ? | ଅସହାୟ ବ୍ୟକ୍ତିକୁ ସାହାଯ୍ୟ, ସତ୍ ଓ ଧାର୍ମିକ ଲୋକ ସଙ୍ଗେ ବନ୍ଧୁତା । |
| ଦିନରାତି କ'ଣ ଚିନ୍ତା କରିବା ଉଚିତ ? | ସଂସାରରେ ନିଜ ଜୀବନ-କଥା ନ ଭାବି ବ୍ରହ୍ମାଣ୍ଡପତିଙ୍କ ପାଦ-ପଦ୍ମରେ ମନୋନିବେଶ । |
| ଦାନ କ'ଣ ? | ଅଯାଚିତଭାବରେ ଯାହାକିଛି ଆସିଯାଏ । |
| ଅମୂଲ୍ୟ ଦ୍ରବ୍ୟ କ'ଣ ? | ସାମୟିକ ଦାନ । |
| କ'ଣ ଅର୍ଜନ କରିବା ଉଚିତ ? | ଅପର ବ୍ୟକ୍ତି ନିମନ୍ତେ ତ୍ୟାଗ ସ୍ୱୀକାର । |
| ଦେବତାମାନେ ମଧ୍ୟ କାହାକୁ ପୂଜା କରନ୍ତି ? | ଯେ ଦୟାଳୁ । |
| କିଏ ସେବା ପାଇବାର ଉପଯୁକ୍ତ ? | ଦାମୀ । |
| ପ୍ରଶଂସାଯୋଗ୍ୟ କ'ଣ ? | ଅନ୍ୟପ୍ରତି ଦୟାଳୁଭାବ । |
| ଦେବତାମାନଙ୍କର ସର୍ବୋତ୍କୃଷ୍ଟ ଭକ୍ତ କିଏ ? | ଯେ ଅନ୍ୟର କ୍ଷତି କରେ ନାହିଁ ଓ ନିଜେ ମଧ୍ୟ କ୍ଷତିଗ୍ରସ୍ତ ବୋଲି ମନେକରେ ନାହିଁ । |
| ମାନ୍ୟ କିପରି ମିଳେ ? | ଅନୁଗ୍ରହ ନ ମାଗିଲେ । |
| ଦୁଃଖ ଦାରିଦ୍ର୍ୟରୁ କିଏ ମୁକ୍ତ କରିପାରେ ? | କର୍ତ୍ତବ୍ୟପରାୟଣା ସ୍ତ୍ରୀ ଓ ଚିର-ସ୍ଥାୟୀ ଧନ । |
| ସଦ୍‌ଗୁଣକୁ କିଏ ଧ୍ୱଂସ କରେ ? | କୃପଣତା । |
| ଜ୍ଞାନୀମାନେ କାହାକୁ ପୂଜା କରନ୍ତି ? | ବିନୟୀ ନମ୍ର ବ୍ୟକ୍ତିକୁ । |

Digitized by srujan ka@gmail.com

| | |
|---|---|
| ପ୍ରାଣୀମାନେ କାହାଦ୍ୱାରା ବଶୀଭୂତ ହୁଅନ୍ତି ? | ଯାହାର ବାଣୀ ସତ୍ୟ ଓ ସ୍ନେହ ଉପରେ ପ୍ରତିଷ୍ଠିତ । |
| ସଂସାରକୁ ଜିଣେ କିଏ ? | ଯେ ସତ୍ୟକୁ ମାନେ ଓ ଯାହାର ଧୈର୍ଯ୍ୟ ଅଛି । |
| ଧାର୍ମିକ ବ୍ୟକ୍ତି କିଏ ? | ଯାହାର ସତ୍‌ଚରିତ୍ର ଅଛି । |
| ସୌନ୍ଦର୍ଯ୍ୟ କ'ଣ ? | ସତ୍ ଚରିତ୍ର । |
| ମନୁଷ୍ୟ ଯାହା ଇଚ୍ଛା କରେ ତାହା ସମ୍ପନ୍ନ କରିବାରେ ତା'କୁ କିଏ ସାମର୍ଥ୍ୟ ଦିଏ ? | ଯାତନାପୂର୍ଣ୍ଣ ତପସ୍ୟା । |
| କ'ଣ ଅର୍ଜନ କରିବା ଉଚିତ ? | ଜ୍ଞାନ, ଧ୍ୟାନ, ସତ୍‌ସାହସ, ଯଶ ଓ ସତ୍‌କର୍ମ । |
| ବିପଦ କାହାକୁ ଆକ୍ରମଣ କରିପାରେ ନାହିଁ ? | ଯେ ଗୁରୁଜନମାନଙ୍କ ବାଣୀ ମନୋଯୋଗ ଦେଇ ଶୁଣେ ! |
| ବାସ କରିବାପାଇଁ ଉପଯୁକ୍ତ ସ୍ଥାନ କିଏ ? | ସଜ୍ଜନବ୍ୟକ୍ତିମାନଙ୍କ ପ୍ରତିବେଶୀତା ଥିବା ସ୍ଥାନ । |
| କେଉଁ ସ୍ଥାନ ବାସର ଉପଯୁକ୍ତ ନୁହେଁ ? | ନୀଚବ୍ୟକ୍ତିଙ୍କ ପ୍ରତିବେଶିତା ସ୍ଥାନ ଓ କୃପଣ ରାଜାର ରାଜ୍ୟ । |
| କିଏ ଦୁଃଖରେ ବଞ୍ଚିବାକୁ ଉପଯୁକ୍ତ ? | ଯାହାର ଅଛି କିନ୍ତୁ ଦିଏ ନାହିଁ । |
| କେଉଁ ଜନମଣ୍ଡଳୀକୁ ପରିତ୍ୟାଗ କରିବା ଉଚିତ ? | ଯେଉଁ ଗୋଷ୍ଠୀରେ ବୟସ୍କ ଓ ଅଭିଜ୍ଞ ବ୍ୟକ୍ତି ନ ଥାନ୍ତି । |
| ସଂସାରରେ କେଉଁ ବିଷୟରେ ସାବଧାନ ହୋଇ ଚଳିବ ? | ରାଜକାର୍ଯ୍ୟ ବିଷୟରେ । |

Digitized by srujan ka@gmail.com

| | |
|---|---|
| ଜୀବନ ଅପେକ୍ଷା ଅଧିକ ମୂଲ୍ୟବାନ କ'ଣ ? | ପରମାର୍ଥଗତ କର୍ତ୍ତବ୍ୟ ଓ ସଜ୍ଜନ-ବ୍ୟକ୍ତିଙ୍କ ସହବାସ । |
| କେଉଁ ଦ୍ରବ୍ୟକୁ ସଞ୍ଚୟ କରିବ ? | ଯଶ, ଦାନ ଓ ନିଜର ଜ୍ଞାନ । |
| ସଂସାରରେ କଳ୍ପବୃକ୍ଷ କ'ଣ ? | ଉତ୍ତମ ଉପଯୁକ୍ତ ଶିଷ୍ୟକୁ ଯେଉଁ ଜ୍ଞାନ ଦାନ କରାଯାଏ । |
| କେଉଁ ଅସ୍ତ୍ରଶସ୍ତ୍ର ସମସ୍ତଙ୍କର ଅଛି ? | ବିଚାରଶକ୍ତି । |
| ସମସ୍ତଙ୍କର ମାତା କିଏ ? | ଗାଈ । |
| ସେନାବାହିନୀ କିଏ ? | ସାହସ । |
| ଯମଦେବତା କିଏ ? | ଅନ୍ୟର ଦୁଃଖସୁଖ ପ୍ରତି ଅମନଯୋଗୀ । |
| ନିର୍ଭୀକତା କେଉଁଠି ଥାଏ ? | ତ୍ୟାଗ । |
| କ'ଣ ଅର୍ଜନ କରିବା ଦୁଷ୍ପ୍ରାପ୍ୟ ? | ବିଶ୍ୱ ପ୍ରଭୁଙ୍କଠାରେ ଭକ୍ତି । |
| କେଉଁ ବିଷୟ ବାଞ୍ଛା କରିବା ଉଚିତ ? | ନିଜର ଓ ଅପରର କଲ୍ୟାଣ ଓ ମଙ୍ଗଳପାଇଁ ବୃଦ୍ଧି ହେବା । |
| ମିଥ୍ୟା କହିବା କେତେବେଳେ ପାପ ନୁହେଁ ? | ନିଜର କର୍ତ୍ତବ୍ୟ ଉପଯୁକ୍ତରୂପେ ସାଧନ କରିବାବେଳେ ଯାହା କୁହାଯାଏ । |
| ପୁଣ୍ୟବାନ ବ୍ୟକ୍ତିଙ୍କ ବଳ କିଏ ? | ଭଗବାନ । |
| କେଉଁ ବିଷୟ ସୁସମ୍ପାଦନ କରିବାକୁ କଷ୍ଟସାଧ୍ୟ ? | ଚିତ୍ତକୁ ଦମନ କରିବା । |
| ସାହସୀ ବ୍ୟକ୍ତି କିଏ ? | ଭୟାକ୍ରାନ୍ତ ବ୍ୟକ୍ତିର ରକ୍ଷକ । |

Digitized by srujan ka@gmail.com

| | |
|---|---|
| କିଏ ଦୁଃଖ-ମୁକ୍ତ ? | ଯିଏ କ୍ରୋଧକୁ ବଶୀଭୂତ କରେ । |
| ପ୍ରକୃତ ସୁଖ କ'ଣ ? | ଯହିଁରେ ବାହ୍ୟହର୍ଷ ନ ଥାଏ ଅନ୍ତଃକରଣରେ ହର୍ଷ ଥାଏ । |
| କଣଗତ ଯଶକୁ କିଏ ନଷ୍ଟ କରେ ? | ଧାର୍ମିକ ବ୍ୟକ୍ତିଙ୍କ ମନରେ ଯାହା ରାଗ ଜନ୍ମାଏ । |
| ଶରୀରକୁ କିଏ ବଞ୍ଚାଏ ? | ପ୍ରାରବ୍ଧ କର୍ମ । |
| ମୁକ୍ତି କ'ଣ ? | ଅଜ୍ଞାନର ଧ୍ୱଂସ । |
| କାହାକୁ ଖାଇବାକୁ ଦେବ ? | କ୍ଷୁଧାର୍ତ୍ତକୁ । |
| ଈଶ୍ୱର-ଭକ୍ତିର ଫଳ କ'ଣ ? | ସ୍ୱର୍ଗୀୟସୁଖ ଓ ଆନନ୍ଦ । |

Digitized by srujan ka@gmail.com

# ବିଦ୍ୟାପତି

ଶ୍ରୀ ବିନୋଦଚନ୍ଦ୍ର ନାୟକ, ଏମ୍. ଏ. (ପାଟଣା), ଏମ୍. ଏ.
(ଉତ୍କଳ) ଓ. ଇ. ଏସ୍. ସେକ୍ରେଟାରୀ, ସାହିତ୍ୟ ଏକାଡେମୀ,
ଭୁବନେଶ୍ୱର

ଚତୁର୍ଦ୍ଦଶ ଶତାବ୍ଦୀର ଶେଷ ଭାଗରେ ମିଥିଳାରେ ବିଦ୍ୟାପତି ଜନ୍ମ ଗ୍ରହଣ କରିଥିଲେ । ପିତାଙ୍କ ନାମ ଗଣପତି ସିଂ । ମାତା ହାସିନୀ ଦେବୀ । ଚୈତନ୍ୟଙ୍କ ଆବିର୍ଭାବ ପୂର୍ବରୁ ମଧୁର ଭକ୍ତି-ରସାପ୍ଲୁତ କାବ୍ୟ ରଚନା କରିବାରେ ଜୟଦେବଙ୍କ ସେ ସମକକ୍ଷ । ତାଙ୍କ କାବ୍ୟ-ପ୍ରତିଭାରେ ବିମୁଗ୍ଧ ହୋଇ ତତ୍କାଳୀନ ମିଥିଳାର ରାଜା ଶିବ ସିଂହ ତାହାଙ୍କୁ ବିସପୀ ନାମକ ଏକ ଜନପଦ ସଂପ୍ରଦାନ କରିଥିଲେ । ଏଯାବତ୍ କବିଙ୍କର ଉତ୍ତରାଧିକାରୀଗଣ ସେ ସ୍ଥାନରେ ବସବାସ କରି ଆସୁଛନ୍ତି ।

ବିଦ୍ୟାପତି ମୈଥିଳୀ ଭାଷାର ଆଦି କବି ହୋଇଲେ ମଧ୍ୟ ସଂସ୍କୃତ ଭାଷାରେ 'ପୁରୁଷ ପରୀକ୍ଷା' 'ଦୁର୍ଗାଭକ୍ତି-ତରଙ୍ଗିଣୀ', 'ବିବାଦ-ସାର', 'ଦାନ-ବାକ୍ୟାବଳୀ' 'ଗଙ୍ଗାପତ୍ତନ' ଇତ୍ୟାଦି ଉଚ୍ଚ କୋଟୀର ଗ୍ରନ୍ଥ ରଚନା କରିଯାଇଛନ୍ତି ।

ତାହାଙ୍କର ବ୍ୟବହୃତ ମୈଥିଳୀ ଭାଷାରେ ଉତ୍କଳ ଭାଷାର ସାଦୃଶ୍ୟ ପରିଲକ୍ଷିତ ହୁଏ । ତାଙ୍କ ପଦାବଳୀରେ ଶୃଙ୍ଗାରରସର ପ୍ରାଚୁର୍ଯ୍ୟ ଅଭିମନ୍ୟୁ ସାମନ୍ତସିଂହାର, ବଳଦେବ ରଥ ଓ ଗୋପାଳ-କୃଷ୍ଣଙ୍କ ଭାବ-ଐଶ୍ୱର୍ଯ୍ୟକୁ ସ୍ମରଣ କରାଇଦିଏ । ଯଥା :—

"ପିଆ ଜବ ଆଓବ ଈ ମଝୁ ଗେହେ
ମଙ୍ଗଲ ଯତହୁଁ କରବ ନିଜ ଗେହେ ।
କନକ କୁମ୍ଭ କରି କୁଚ ଯୁଗ ରାଖି
ଦରପନ ଧରବ କାଜର ଦେଇ ଆଁଖି ।"

Digitized by srujan ka@gmail.com

ବିଦ୍ୟାପତିଙ୍କ କାବ୍ୟଗୀତ ଜୟଦେବଙ୍କ ଅନୁରୂପ; ନିମ୍ନ ଉଦାହରଣରୁ ତାହା ସ୍ପଷ୍ଟରୂପେ ଅନୁମିତ ହୁଏ :—

'ନବ ବୃନ୍ଦାବନ ନବ ନବ ତରୁଗନ
ନବ ନବ ବିକଶିତ ଫୂଲ,
ନବଲ ବସନ୍ତ ନବଲ ମଲୟା ନିଲ
ମାତଲ ନବ ଅଲିକୂଲ ।
ବିହରଇ ନବଲ କିସୋର
କାଲିନ୍ଦୀ ପୁଲିନ କୁଞ୍ଜବନ ଶୋଭନ
ନବ ନବ ପ୍ରେମବିଭୋର ।

ପ୍ରେମ ଭକ୍ତିର ନିବିଡ଼ତା ଅନୁରକ୍ତି ଓ ତନ୍ମୟତା ବିଦ୍ୟାପତିଙ୍କ କବିତାର ଅନ୍ତରାତ୍ମା କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କ ଅମର ପଦାବଳୀ ତେଣୁ ଯୁଗେ ଯୁଗେ ପ୍ରେମିକ, ଭକ୍ତ, ପାଠକ ହୃଦୟରେ ଅନୁରଣିତ ହୋଇଛି, ହେଉଥିବ ମଧ୍ୟ :—

"ଜନମ ଅବଧି ହମ ରୂପ ନିହାରିଲ
ନୟନ ନା ତିରପିତ ଭେଲ,
ସେ ହୋ ମଧୁ ବୋଲ ସବନ ହିଁ ଶୁନଲ
ଶ୍ରୁତିପଥ ପରସ ନ ଭେଲ ।
କତ ମଧୁଯାମିନୀ ରଭସ ଗମାଓଲ
ନ ବୁଝିଲ କଇସନ କେଲ,
ଲାଖ ଲାଖ ଯୁଗ ହିୟେ ହିୟା ରାଖଲ
ତବୁ ହିୟା ଜୁଡ଼ଲ ନା ଗେଲ ।"

———

Digitized by srujan ka@gmail.com

# ଶୂଦ୍ରମୁନି ସାରଳାଦାସ

ଅଧ୍ୟାପକ ଡକ୍ଟର ବଂଶୀଧର ମହାନ୍ତି,
ବାଣୀବିହାର, ଭୁବନେଶ୍ୱର

ଶୂଦ୍ରମୁନି ସାରଳାଦାସ ଓଡ଼ିଆ ସାହିତ୍ୟର ଆଦି କବି ତଥା ବ୍ୟାସଭାବରେ ପରିଚିତ । ବ୍ୟାସଦେବ ସାରଳାଦାସ ଅଷ୍ଟାଦଶ ପର୍ବବିଶିଷ୍ଟ ମହାଭାରତ ରଚୟିତାରୂପେ ଓଡ଼ିଶାର ଘରେ ଘରେ ସୁପରିଚିତ । ଓଡ଼ିଆ ଭାଷାର ସର୍ବଶ୍ରେଷ୍ଠ ପ୍ରାଚୀନ ସାହିତ୍ୟ ହେଉଛି ସାରଳା ସାହିତ୍ୟ ।

ପଡ଼ୋଶୀ ପ୍ରାଦେଶିକ ଭାଷା ବଙ୍ଗଳା ଓ ହିନ୍ଦିରେ ପୁରାଣ ରଚନାର ନାମଗନ୍ଧ ନ ଥିବାବେଳେ ସେ ମହାପୁରୁଷ 'ଝଙ୍କଡ଼'ପରି ଏକ ପଲ୍ଲୀଗ୍ରାମର କୃଷକପରିବାରରେ ଜନ୍ମଗ୍ରହଣ କରି ସେଠା-କାର ଅଧିଷ୍ଠାତ୍ରୀ ଦେବୀ 'ସାରଳା'ଙ୍କ ପ୍ରସାଦରୁ ମହାଭାରତ ପରି ଅଷ୍ଟାଦଶ-ପର୍ବବିଶିଷ୍ଟ ଏକ ବିରାଟ ମୌଳିକ ରଚନାର ରଚୟିତା ରୂପେ ଉତ୍କଳର ପୂରପଲ୍ଲୀରେ ଖ୍ୟାତ ହୋଇଥିଲେ ।

ସାରଳାଦାସଙ୍କ ରଚିତ ମହାଭାରତ କେବଳ ଓଡ଼ିଶାରେ କାହିଁକି ସମଗ୍ର ଉତ୍ତର ଭାରତରେ ଅଦ୍ୱିତୀୟ ଗ୍ରନ୍ଥ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସାରଳାଦାସଙ୍କ ମହାଭାରତ ଓଡ଼ିଆ ସାହିତ୍ୟର ଗଙ୍ଗୋତ୍ରୀ ।

ସାରଳାଦାସ ଜଣେ କବି, ଜ୍ଞାନୀ ଓ ସିଦ୍ଧ ପୁରୁଷ ଥିଲେ । ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା ଓ ସେ ସାଧନାରେ ସିଦ୍ଧି ଲାଭ କରିଥିଲେ ।

Digitized by srujan ka@gmail.com

ସାରଳାଦାସ ସଂସ୍କୃତ ସାହିତ୍ୟରେ ଗଭୀର ପାଣ୍ଡିତ୍ୟ ଅର୍ଜନ କରି ନ ଥିଲେ, ମହାଭାରତ ଭଳି ବିରାଟ ଗ୍ରନ୍ଥକୁ ଓଡ଼ିଆ ଭାଷାରେ ସେ ଲେଖିପାରି ନ ଥାନ୍ତେ । ସାରଳାଦାସ ଇତିହାସ, ବିଜ୍ଞାନ ଓ ସଂସ୍କୃତ କେଉଁ ଭାଷା ଯେ ଜାଣି ନ ଥିଲେ ଏହା କହିବା କଷ୍ଟକର ।

ସାରଳାଙ୍କ ପୂର୍ବ ଯୁଗରେ ଓଡ଼ିଆ ସାହିତ୍ୟ ସୃଷ୍ଟି ହୋଇଥିଲେ ସୁଦ୍ଧା ତାହା କେବଳ ଛାନ୍ଦ, ଚୌତିଶା ଓ କୋଇଲିରେ ଆବଦ୍ଧ ଥିଲା । ସାରଳାଦାସ ସର୍ବପ୍ରଥମେ ଓଡ଼ିଆ ଭାଷାରେ ମହାକାବ୍ୟ ରଚନା କଲେ । ଏହାଛଡ଼ା ସାରଳାଙ୍କ 'ଦାଣ୍ଡିବୃତ୍ତି' ଶୈଳୀ ମଧ୍ୟ ସାହିତ୍ୟକ୍ଷେତ୍ରରେ ସମ୍ପୂର୍ଣ୍ଣ ଅଭିନବ ଥିଲା । ସେ ସାଧାରଣ ପାଠକଙ୍କ ବୋଧଗମ୍ୟ ହେଲା ଭଳି ସରଳ ଓଡ଼ିଆ ଭାଷାରେ ମହାଭାରତ ରଚନା କଲେ ।

ସାରଳାଙ୍କ ଭାଷା-ବିଭବ, ବର୍ଣ୍ଣନାବୈଚିତ୍ର୍ୟ ଚରିତ୍ର-ଚିତ୍ରଣଚାତୁରୀ ମାଧୁର୍ଯ୍ୟ ଏବେ ମଧ୍ୟ ଜନଜଗତକୁ ମୁଗ୍ଧ କରି ରଖିଛି ।

ସାରଳାଦାସଙ୍କ ଶ୍ରେଷ୍ଠ ଦାନ ହେଉଛି ଓଡ଼ିଆ ଭାଷାରେ ପୁରାଣ ରଚନା ।

ସାରଳାଦାସଙ୍କ ଓଡ଼ିଆ ମହାଭାରତ ସଂସ୍କୃତ ମହାଭାରତର ଅନୁବାଦ ନୁହେଁ—ଏହି ମହାଭାରତ ସାରଳାଦାସଙ୍କର ଏକ ସମ୍ପୂର୍ଣ୍ଣ ଅଭିନବ ରଚନା ।

ସାରଳାଦାସ ବ୍ୟାସଦେବ ସଂସ୍କୃତ ମହାଭାରତରୁ ବିଷୟବସ୍ତୁ ଆହରଣ କରିଥିଲେ ସୁଦ୍ଧା ତାଙ୍କ ରଚିତ ମହାଭାରତର ସ୍ୱାତନ୍ତ୍ର୍ୟ ବଜାୟ ରହିଛି ।

Digitized by srujan ka@gmail.com

କବି ସାରଳା ସ୍ୱଚକ୍ଷୁରେ ଯାହା ଦେଖିଛନ୍ତି ତାହା ଲେଖି-ଛନ୍ତି । ଯାହା ଅନୁଭବ କରିଛନ୍ତି ତାହା ନିଜ ମହାଭାରତରେ ମହାପ୍ରସାଦ କରି ଯାଇଛନ୍ତି ।

ସାରଳା ଦାସଙ୍କ ମହାଭାରତ କେବଳ କୁରୁ ପାଣ୍ଡବଙ୍କ ଯୁଦ୍ଧ ଗାଥା ନୁହେଁ, ଏହା ଓଡ଼ିଆ ଜାତିର ପ୍ରକୃତ ଓ ପ୍ରକୃଷ୍ଟ ଜାତୀୟ ମହାକାବ୍ୟ । ଓଡ଼ିଶାର ତତ୍କାଳୀନ ସମାଜ ଓ ସଂସ୍କୃତିର ଉଜ୍ଜ୍ୱଳ ଚିତ୍ର ସାରଳା ମହାଭାରତରେ ଯେପରି ଦେଖିବାକୁ ମିଳେ, ତାହା ପରବର୍ତ୍ତୀ କୌଣସି ପ୍ରାଚୀନ ଓଡ଼ିଆ ସାହିତ୍ୟରେ ସେପରି ଚିତ୍ର ଆମ୍ଭେମାନେ ଦେଖିବାକୁ ପାଇ ନଥାଉଁ । ମୋଟ ଉପରେ ସାରଳା ମହାଭାରତ ଓଡ଼ିଆଭାଷା ଓ ଓଡ଼ିଆ କୃଷ୍ଟିର ଭିତ୍ତି । ଐତିହାସିକ ଓ ସାଂସ୍କୃତିକ ପରିପ୍ରେକ୍ଷୀରେ କବି ସାରଳା ଜନଶ୍ରୁତି ଆଖ୍ୟାୟିକାକୁ ପୌରାଣିକ ମର୍ଯ୍ୟାଦା ପ୍ରଦାନ କରି ଏକ ପ୍ରତିଷ୍ଠା ପର୍ଯ୍ୟାୟଭୁକ୍ତ କରି ଦେଇଛନ୍ତି । କେବଳ ସେତିକି ନୁହେଁ । ପୂର୍ଣ୍ଣଜାତୀୟତାରେ ଉଦ୍‌ବୁଦ୍ଧ ହୋଇ ଉତ୍କଳର ନଦନଦୀ, ଗିରି,ବନ,ନଗର, ଜନପଦ, ତୀର୍ଥସ୍ଥାନ, ବାର, ବ୍ରତ, ଧର୍ମ, ପାରମ୍ପରିକ ଚଳଣି, ରୁଚି, ବେଶଭୂଷା, ଖେଳ-କୌତୁକକୁ ବଡ଼ କରି ତାଙ୍କର ମହାଭାରତର ଛତ୍ରେ ଛତ୍ରେ ବର୍ଣ୍ଣନା କରିଛନ୍ତି । ପ୍ରତି ଘଟଣାକୁ ପୌରାଣିକ ପୁଟ ଦେଇ ଏଭଳି ଭାବରେ ବର୍ଣ୍ଣନା କରିଛନ୍ତି ଯେ, ତାକୁ ଯେତେ ପଢ଼ିଲେ ବି ସେ ନୂଆପରି ଲାଗୁଛି ଏବଂ ପ୍ରକୃତ ଘଟଣା ଭଳି ପ୍ରତୀୟମାନ ହେଉଛି ।

ମୁସଲମାନ, ମରାଠା, ଇଂରେଜ ଆଦିଙ୍କ ଶାସନକାଳରେ ଅନ୍ୟୂନ ଗତ ସ୍ୱତିଶହ ବର୍ଷ ଧରି ପ୍ରାକୃତିକ ଉତ୍କଳ ରାଜନୀତିକ କ୍ଷେତ୍ରରେ ଛିନ୍ନ ଭିନ୍ନ ହୋଇ ଯାଇଥିଲେ ସୁଦ୍ଧା ତାହାର ଜାତୀୟ ଏକତା ଯେଉଁମାନଙ୍କ ପାଇଁ କ୍ଷୁର୍ଣ୍ଣ ହୋଇ ନ ଥିଲା, ସେମାନଙ୍କ ଭିତରେ ଆଦି କବି ସାରଳା ଦାସ ହେଉଛନ୍ତି ମଜଡ଼ମଣି ।

Digitized by srujan ka@gmail.com

ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ ଯେଉଁ ଭାଗରେ ଯେଉଁଭଳି ଭାବରେ ଓଡ଼ିଆମାନେ ରହିଥାନ୍ତୁ ନା କାହିଁକି ସାରଳା ମହାଭାରତ ଓ ଜଗନ୍ନାଥ ଦାସ ଭାଗବତକୁ ଛାଡ଼ି ପାରି ନାହାନ୍ତି । ଏହି ଗ୍ରନ୍ଥଗୁଡ଼ିକ ଯୋଗୁଁ ହିଁ ଓଡ଼ିଆ ଜାତୀୟତା ପଡ଼ୋଶୀଙ୍କ ନାନା ଅପଚେଷ୍ଟା ସତ୍ତ୍ୱେ ଜୀବନ୍ତ ରହିଛି ।

ଦୁଃଖର କଥା ଆଜି କାଲି ଯୁଗରେ ମହାଭାରତ ପଢ଼ିବାତ ଦୂରର କଥା, ଯୁବ ସମାଜ ତା'ର କଳେବର ବି ଅବଲୋକନ କରୁ ନାହାନ୍ତି ।

ନାଗ କବି ବଦୂର୍ଯ୍ୟ ପ୍ରଭାଙ୍କ ଭାଷାରେ :—

ଅସାମାନ୍ୟ ତୁମ ପ୍ରତିଭା-ବଳେ
ପ୍ରକଟାଇ ଗଲ ଭାବର ଛଳେ ।
କି ମଧୁ ସୁବୋଧ ସରଳ ଭାଷା
ଗାଇବ ତା' କାଳେ କାଳେ ଓଡ଼ିଶା
  କରିଗଲ ଯାହା ଦାନ
ଅନ୍ୟ କବି ତୁମ କଳ୍ପନା ବିଳାସ
  ଆବର ବିଷୟଜ୍ଞାନ ।
ଉତ୍କଳ ଜାତିକୁ ପ୍ରେରଣା ତବ
ଅଦ୍ଭୁତ ଜଡ଼୍ ବୁଦ୍ଧ କରୁଛେ ଦେବ ।
କରିଣି ଭୁମୃତ କରି ସ୍ମରଣ
ଅନ୍ତରେ ଜାଗନ୍ତୁ ଏ ଦେଶ ଜନ
  ତବ ଯଶୋଗାନ କରି
ତବ ପୁଣ୍ୟ କୀର୍ତ୍ତି ଖେଳିଯାଉ ଦେଶେ
  ଚନ୍ଦନ ସୁବାସ ପରି ।

Digitized by srujan ka@gmail.com

## ସାରଳାଦାସଙ୍କ ବାଣୀ

ସଂଗ୍ରାହକ—ଶ୍ରୀ ଗଣେଶ ପ୍ରସାଦ ପରିଜା

ମାତାର ବଚନ ମେଣ୍ଟିଲେ ଆୟୁଷ ହୋଇ କ୍ଷୟେ ।
ପିତାର ବଚନ ଭଙ୍ଗିଲେ ଧର୍ମ ନାଶ ଯାଏ ॥

ମାତାପିତା ବଚନ ଯେ ପୁତ୍ରକୁ ନସହାର ।
ଏହା ଚହ୍ନିଲେ ପିଣ୍ଡ ପ୍ରାଣ ଏକଇ ଶରୀର ॥

କ୍ଷତ୍ରିପଣ ହୋଇଣ ଯେବେ ପର ପୋଷଣ କର ।
ରଜା ହୋଇ ଯେବେ ସଂଗ୍ରାମେ ଭୟ କର ॥

ଦେବତା ହୋଇ ଯେବେ ପରରେ ନିର୍ଦ୍ଦୟା ।
ତୀର୍ଥ ହୋଇ ଯେବେ ହୁଅଇ ସେ ମାୟା ॥

ସୁନ୍ଦର ସ୍ତ୍ରୀ ଯେବେ ହୁଅଇ ଦୁର୍ଭାଗୀ ।
ଇନ୍ଦ୍ରିୟ ନିଗ୍ରହଣ ନୋହଇ ଯେବଣ ଯୋଗୀ ॥

ପଣ୍ଡିତ ହୋଇ ଯେବେ ନୋହିବ ଉପାୟବନ୍ତ ।
ମହାତମାଙ୍କର ବଚନେ ପ୍ରେତକ ଜୀବନ ବ୍ୟର୍ଥ ॥

ଭାରିଯା ହୋଇଣ ଯେବେ ହୋଇଲା ପରଦାରପ୍ରେଷଣୀ ।
ସ୍ୱାମୀ ଦଣ୍ଡିବ ନାହିଁକି ? ଦୋଷ ପରିମାଣି ॥

ଅପାର ଔଷଧରେ ନ ବଞ୍ଚଇ ରୋଗୀ ।
ଅପାର ଅନ୍ନ ଖାଇଲେ ନାଶଯାଇ ଯୋଗୀ ॥

ଅପାର କୁଟୁମ୍ବ ହୋଧ ହୋଇ ଅପାରଇ ।
ଅପାର ପ୍ରତିଗ୍ରହେ ବ୍ରାହ୍ମଣ ନାଶ ଯାଇ ॥

Digitized by srujan ka@gmail.com

ଅପାର ବୃଷ୍ଟିରେଣ ସେ କାର୍ଯ୍ୟ ହୁଏ ହାସ ।
ଆପଣେ ନାଶଯାଇ ଅପାର ମତ ସେବ ॥

ଅପାର ସ୍ତୁତ ପ୍ରସଙ୍ଗ ହୋଇଲେ ।
ଅପୂର୍ବ ଚପୁଯାଏ ଅପାର ଶୃଙ୍ଗାର କଲେ ॥

ଅପାର ଲୋକରେ ଚନ୍ଦ୍ର ନୋହେ ମାର ।
ଅପାର ସ୍ପର୍ଶ କଲେ ହୁଅଇ ଦେଶାନ୍ତର ॥

ଅପାର ସ୍ଥାନରେ ନେତ୍ର ପତନ ଯେ ହୋଇ ।
ଅପାର ଲୋଭରେ ହାତେ ମଙ୍ଗଳ ଛୁଟଇ ॥

ଧର୍ମ ଥିଲେ କଦାପି ନାହିଁଟି ପ୍ରାଣୀଙ୍କ ।
ଆପଦ ବିପଦ ପଡ଼ିଲେ ଧର୍ମ ହିଁସେ ପ୍ରାଣୀଙ୍କ ରକ୍ଷି ॥

ପର୍ବତ ଫୁଟେ କି ନାଥ ! ଟେକାରେ ମାରିଲେ ?
ସମୁଦ୍ର ପୋତିହୁଏ କି ଧୂଳି ପକାଇଲେ ?

ମୃଗର ବଳ କାହିଁ ହେ ସିଂହ ଜିଣି ହୁଏ ?
ଛୁଲାହାସ ପିଟିଲେ କି ଲୁହା ଛୁଟିଯାଏ ?

ଭୁଜଙ୍ଗମ ବଳମାନ ଅପ୍ରମିତ ହେଲେ ?
ସେ କି ରହିପାରନ୍ତି ଗରୁଡ଼ ଆସିଲେ ?

ବହୁ ପରିମାଣ ତୃଣ ଏକତ୍ର ହୋଇଲେ
ଏକା କେଶରୀ କି ଝିଣି ପାରିବେ କି ଭଲେ ?

— — —

Digitized by srujan ka@gmail.com



# ଗୁରୁ ନାନକ

ଶ୍ରୀ ଅନିରୁଦ୍ଧ ଦାଶ, I.A.S.

ଆଜକୁ ପ୍ରାୟ ପାଞ୍ଚଶହ ବର୍ଷ ତଳେ ୧୪୬୯ ଖ୍ରୀଷ୍ଟାବ୍ଦରେ ଲାହୋରଠାରୁ ୩୫ ମାଇଲ ଦୂରବର୍ତ୍ତୀ ତଲ୍‌ୱାଣ୍ଡି ବା ଆଧୁନିକ ନାନ୍‌କାନାରେ ଏକ କ୍ଷତ୍ରୀୟ ପରିବାରରେ ମହାପୁରୁଷ ନାନକ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା କାଲୁବେଦୀ ବା କାଲିଆ ବେଦୀ ଓ ମାତା ତୃପ୍ତା ଦେବୀ । ପୁତ୍ର ନାନକଙ୍କ ଛଡ଼ା ସେମାନଙ୍କର ନାନକୀ ବୋଲି ଏକମାତ୍ର କନ୍ୟା ମଧ୍ୟ ଥିଲେ । କାଲୁବେଦୀ ମୁସଲ୍‌ମାନ ଜମିଦାର ରାୟବୁଲାରଙ୍କ ଗୁମାସ୍ତା । ଜମିଦାର ଭାରି ସଜ୍ଜନ

Digitized by srujan ka@gmail.com

ଏବଂ ଧର୍ମପରାୟଣ । କାଳୁବେଦୀ ନିଜ କର୍ତ୍ତବ୍ୟନିଷ୍ଠା ଯୋଗୁ ଜମିଦାରଙ୍କ ପ୍ରୀତିଭାଜନ ହୋଇଥିଲେ ଓ ତାଙ୍କର ପ୍ରତିପତ୍ତି ମଧ୍ୟ ବଢ଼ିଥିଲା ।

ପିତାମାତାଙ୍କ ବହୁ ଚେଷ୍ଟାସତ୍ତ୍ୱେ ନାନକ ପାଠ ପଢ଼ିଲେ ନାହିଁ । କୌଣସି ଅଜଣା ଶକ୍ତିର ଆକର୍ଷଣରେ ନାନକ ମୁକ୍ତ ବିହଙ୍ଗ ପରି ବନ ପର୍ବତ ପଥ ପ୍ରାନ୍ତରରେ ବୁଲନ୍ତି । ତାଙ୍କ ମୁଖରୁ ନିଜ ରଚିତ ଭଜନମାଳା ବାହାରିପଡ଼େ । ସେ ଭକ୍ତିରେ ବିଭୋର ହୁଅନ୍ତି ଏବଂ ଅନବରତ ସୁଲଳିତ ପଦ୍ୟାବଳୀ ଭଜନ ତାଙ୍କୁ ତନ୍ମୟ କରେ ।

ନାନକଙ୍କୁ ସାଂସାରିକ ବନ୍ଧନରେ ଆବଦ୍ଧ କରିବାକୁ ପିତା-ମାତା ବଦ୍ଧପରିକର ହେଲେ ଏବଂ ଚଉଦବର୍ଷ ବୟସରେ ଗୋଟିଏ ରୂପବତୀ ଓ ସୁଲକ୍ଷଣୀ ପାତ୍ରୀ ସହିତ ତାଙ୍କୁ ବିବାହ କରି ଦେଇ-ଥିଲେ । ଏହି ବିବାହଦ୍ୱାରା ମଧ୍ୟ ନାନକଙ୍କର ମତିଗତିରେ କୌଣସି ପରିବର୍ତ୍ତନ ଘଟି ନ ଥିଲା । ସେ ଆହୁରି ଉଦାସୀନ ହୋଇଉଠିଲେ । ନାନକ 'ଯଥା ପୂର୍ବଂ ତଥା ପରମ୍' ବନ ପ୍ରାନ୍ତରରେ ବୁଲିଲେ ।

ନାନକଙ୍କର ଉଦାସୀନତା ବଢ଼ିବାକୁ ଲାଗିଲା । ମା' ସବୁ-ବେଳେ ଚିନ୍ତିତା ରହିଲେ । ବିକଳ କଣ୍ଠରେ ତାଙ୍କୁ କହିଲେ, "ବାବା, କୃଷିବାସ ଦେଖ ।" ସଙ୍ଗେ ସଙ୍ଗେ ସୁଲଳିତ କଣ୍ଠରେ ନାନକ ଭଜନଦ୍ୱାରା ପ୍ରକାଶ କଲେ, "ଏହି ତନୁ କ୍ଷେତ-ସ୍ୱରୂପ, ସତ୍‌କର୍ମ ବୀଜ-ସ୍ୱରୂପ, ମନ ଏହି କ୍ଷେତକୁ କର୍ଷଣ କରୁ, ହୃଦୟରେ ଈଶ୍ୱର-ରୂପ-ବୃକ୍ଷ ରୋପିତ ହେଉ ଏବଂ ଈଶ୍ୱର ତହିଁରେ ଜଳ-ସେଚନ କରନ୍ତୁ ତେବେ ନିର୍ବାଣପ୍ରାପ୍ତି ହେବ ।" ମା' କହିଲେ, "ଯଦି କୃଷିବାସ କରିବାକୁ ଇଚ୍ଛା ହେଉନାହିଁ, ତେବେ ବ୍ୟବସାୟ କର ।" ବ୍ୟବସାୟ କରିବାକୁ ଦେଇଥିବା ଟଙ୍କାକୁ

Digitized by srujan ka@gmail.com

ନାନକ ସେହି ଟଙ୍କାରେ ନାନା ଭୋଜ୍ୟଦ୍ରବ୍ୟ କଣି ସନ୍ନ୍ୟାସୀମାନଙ୍କୁ ଖୁଆଇ ରିକ୍ତ ହସ୍ତରେ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ ।

ଏହା ପରେ ପରେ ଏକ ସାଧୁଗୋଷ୍ଠୀ ଗ୍ରାମକୁ ଆସିଲେ ଏବଂ ନାନକ ତାଙ୍କ ବିବାହରେ ଯୌତୁକ ଲାଭ କରିଥିବା ସୁନାମୁଦ ଓ ଲୋଟା ଦାନ କଲେ । ଏଥିରେ ପିତା କ୍ରୁଦ୍ଧ ହୋଇ ନାନକଙ୍କୁ ଗୃହରୁ ତଡ଼ିଦେଲେ ।

ତନେ ନାନକ ନିରୁଦ୍ଦିଷ୍ଟ ହେଲେ । ଏକ ଗହନବନରେ ପ୍ରବେଶ କରି ତିନଦିନ ପରେ ଫେରି ଆସିଥିଲେ । ତାଙ୍କର ମୁଖମଣ୍ଡଳ ଦିବ୍ୟ ଆଲୋକରେ ଉଦ୍ଭାସିତ ହେଲା । ତାଙ୍କ ମୁଖରୁ ଭଗବାନ୍ ଓ ଗୁରୁଙ୍କ ଉଦ୍ଦେଶ୍ୟରେ ସୁଲଳିତ ପଦ୍ୟାବଳୀରେ ଭଜନ ବାହାରିଲା "ପ୍ରଭୁ, ତୁମ୍ଭେ ଜ୍ୟୋତିର୍ମୟ । ସେ ଜ୍ୟୋତିରେ ଚନ୍ଦ୍ର, ସୂର୍ଯ୍ୟ ଉଦ୍ଭାସିତ । ଗୁରୁ କୃପାରେ ସେ ଜ୍ୟୋତିର ଦର୍ଶନ ପାଇଲି ।" ତାଙ୍କୁ ଭଗବାନ ନିର୍ଦ୍ଦେଶ ଦେଲେ—"ନାନକ ! ତୋ ଶରୀରରେ ମୁଁ ସର୍ବଦା ବିରାଜିତ । ଏବେ ତୁ ମୁକ୍ତ ଓ ନିର୍ଲିପ୍ତ ହୋଇ ଜୀବଙ୍କ ଉଦ୍ଧାରରେ ବ୍ରତୀ ହୁଅ ।"

ନାନକ ଗୃହତ୍ୟାଗ କଲେ । ପତ୍ନୀଙ୍କ କ୍ରନ୍ଦନ, ପୁତ୍ରଦ୍ୱୟଙ୍କ ବିଳାପ ତାଙ୍କୁ ଘରେ ଆବଦ୍ଧ କରି ରଖିପାରିଲା ନାହିଁ । ସେ ବନପ୍ରାନ୍ତର ଓ ଶ୍ମଶାନରେ ବିଭୁ ପ୍ରାର୍ଥନା ଗାଇ ବୁଲିଲେ । ଲୋକମାନେ ତାଙ୍କୁ ପ୍ରଶ୍ନ କଲେ "ଆପଣ କେଉଁ ଧର୍ମର ? କେଉଁ ସମ୍ପ୍ରଦାୟର ?" ସେ ଉତ୍ତର ଦେଇଥିଲେ, 'ମୁଁ କେଉଁ ସମ୍ପ୍ରଦାୟର ନୁହେଁ—ମୋର ଉଚ୍ଚ, ନୀଚ, ହିନ୍ଦୁ, ମୁସଲମାନ ଭେଦ ନାହିଁ । ଦେଶରେ ଆଜି ଜଣେମାତ୍ର ହିନ୍ଦୁ ବା ଜଣେମାତ୍ର ମୁସଲମାନ ନାହାନ୍ତି ।"

ଏହିସବୁ କଥା ଶୁଣି ସମସ୍ତେ ଅବାକ୍ ହୋଇଗଲେ ଏବଂ ନାନକଙ୍କୁ ମହାପୁରୁଷ ବୋଲି ସ୍ୱୀକାର କଲେ । ତାଙ୍କର ଅଲୌକିକ

Digitized by srujan ka@gmail.com

ଏବଂ ଅତିମାନସିକ ଶକ୍ତି ଚତୁର୍ଦ୍ଦିଗରେ ପ୍ରସ୍ଫୁରିତ ହେବାକୁ ଲାଗିଲା ।

ତତ୍ପରେ ନାନକ ବହୁ ସ୍ଥାନ ବୁଲିଲେ । ତାଙ୍କର ଭ୍ରମଣ-କାଳରେ ପାପୀ, ତାପୀଙ୍କୁ ଉଦ୍ଧାର କରି ସତ୍‌ପଥରେ ନେଲେ ଏବଂ ବହୁ ସ୍ଥାନରେ ସେ ଅଲୌକିକ ଘଟଣାମାନ ଦେଖାଇଲେ । ଏ ସମସ୍ତ 'ଗ୍ରନ୍ଥସାହେବ'ରେ ଲିପିବଦ୍ଧ ହୋଇଅଛି ।

ଗ୍ରାମରୁ ଗ୍ରାମାନ୍ତରରେ ବୁଲି ବୁଲି ସେ ଧର୍ମ ପ୍ରଚାର କରି-ଥିଲେ । ସେ ଦୁଃସ୍ଥ, ପତିତ, ଦୁର୍ଗତଙ୍କ ନିକଟକୁ ଯାଇଥିଲେ । ସେ ହିଂସା, କ୍ରୋଧ, ଜାତିଭେଦ ବିରୁଦ୍ଧରେ ଉପଦେଶ ଦେଇଥିଲେ । ଈଶ୍ୱର ଏକ, ସେ ନିରାକାର ଏବଂ ଏହି ସାକାର ବିଶ୍ୱ ତାଙ୍କ ଇଚ୍ଛାରେ ସୃଷ୍ଟ ହୋଇଛି । ସମସ୍ତେ ଈଶ୍ୱରଙ୍କ ପୁତ୍ର କନ୍ୟା । ଏଣୁ ମନୁଷ୍ୟ ମନୁଷ୍ୟ ମଧ୍ୟରେ ଜାତିଗତ ପାର୍ଥକ୍ୟ ନାହିଁ । ଏହିସବୁ କଥା ସେ ସୁମଧୁର ଓ ସୁଲଳିତ ଭଜନ ଛଳରେ ଲୋକଙ୍କୁ ଶିକ୍ଷା ଦେଇ-ଥିଲେ ।

ବାବା ନାନକଙ୍କ ଜ୍ଞାନଦୃଷ୍ଟି ପ୍ରାପ୍ତି ଏକତ୍ରିଶ ବର୍ଷ । ଏଥିରୁ ୨୫ ବର୍ଷ କାଳ ସେ ଅନବରତ ଭାରତର ହିମାଳୟଠାରୁ କୁମାରିକା, ସିଂହଳ, ମକ୍‌କା, ମଦିନା, ଚୀନ୍, ତୁରସ୍କ, କାଶ୍ମୀର, ଇଜିପ୍ଟ ପ୍ରଭୃତି ନାନା ସ୍ଥାନ ଭ୍ରମଣ କରିଥିଲେ । ଏହି ଭ୍ରମଣକାଳ ମଧ୍ୟରେ ସେ ୫୦,୦୦୦ ମାଇଲ ପଦବ୍ରଜରେ କଠୋର ପିନ୍ଧି ବୁଲିଥିଲେ ବୋଲି ସ୍ଥିର ହୋଇଛି । ସିଂହଳରେ ଦୁଇବର୍ଷ ପାଞ୍ଚମାସ ରହି-ଥିଲେ ଏବଂ ସେଠାରେ ରାଜା ଶିବନାଥଙ୍କୁ ନିଜ ଧର୍ମରେ ଦୀକ୍ଷିତ କରାଇଥିଲେ । ମକ୍‌କାରେ ମସ୍‌ଜିଦରେ ନମାଜ ପଢିବା ସମୟରେ ସେ ଦୁଇଗୋଡ଼କୁ ମସ୍‌ଜିଦ୍ ଆଡ଼କୁ କରି ଶୋଇଥିଲେ, ତାଙ୍କୁ ଏଥି ପାଇଁ ତିରସ୍କାର କରିବାରୁ ସେ କହିଲେ, ଯେଉଁଆଡ଼େ ଭଗବାନ୍

Digitized by srujan ka@gmail.com

ନାହାନ୍ତି, ମୋ ଗୋଡ଼ ଦୁଇଟିକୁ ଘୁଞ୍ଚାଇ ଦିଅ ଭାଇ; ଆଶ୍ଚର୍ଯ୍ୟର କଥା ଯେ ତାଙ୍କ ଗୋଡ଼ ଟାଣି ଯେଉଁଆଡ଼େ ଘୁଞ୍ଚାଇଲେ, ଲୋକେ ଦେଖିଲେ ସେଇ ଦିଗକୁ ମସ୍‌ଜିଦ୍‌ ମଧ୍ୟ ଘୁଞ୍ଚିଯାଉଛି । ୧୫୦୭ ଖ୍ରୀଷ୍ଟାବ୍ଦରେ ସେ ମଧ୍ୟ ଭାରତ ଓ ସିଂହଳ ଭ୍ରମଣରେ ବାହାରି ପୁରୀ ଆସିଲେ । ସେହି ସମୟରେ ଶ୍ରୀ ଚୈତନ୍ୟଦେବ ପୁରୀରେ ଥିଲେ । ପୁରୀରେ ସେ ଦୁହିଁଙ୍କ ଭେଟ, ଧର୍ମଚର୍ଚ୍ଚା ଓ କୀର୍ତ୍ତନ ହୋଇଥିବା ତଥ୍ୟ ଈଶ୍ୱର ଦାସଙ୍କର ଓଡ଼ିଶା ଚୈତନ୍ୟ ଭାଗବତରେ ଅଛି । ପୁରୀରେ ଜଗନ୍ନାଥ ମନ୍ଦିରରେ ଜଗନ୍ନାଥଙ୍କ ଆରତି ହେଲାବେଳେ ସେ ରୂପକ ଛଳରେ ଜଗତ୍ର ପ୍ରଭୁଙ୍କ ଆରତି ବର୍ଣ୍ଣନା କଲେ । ସେ କହିଲେ ହେ ମୋର ପ୍ରଭୁ, ଗଗନ ହେଲା ତୁମର ଆରତିର ଥାଳ । ସେଠାରେ ରବି ଓ ଚନ୍ଦ୍ର ଏ ଦୁଇଦୀପ ନିରନ୍ତର ଜଳୁଛନ୍ତି । ମୁକ୍ତାଖଚିତ ଚାନ୍ଦୁଆ ପରି ସେଠାରେ ତାରକାମଣ୍ଡଳ ସୁଶୋଭିତ ହୋଇ ରହିଛନ୍ତି । ମଳୟଜ ଚନ୍ଦନ ତୁମର ଧୂପ, ତା'ର ସୁଗନ୍ଧ ବହି ନେଇ ପବନ ତୁମର ଚାମର ବ୍ୟଜନ କରେ । ହେ ଜ୍ୟୋତିର୍ମୟ ପ୍ରଭୁ, ହେ ମୁକ୍ତିଦାତା ଅନନ୍ତମୟ ତୁମ ଆରତି, ଏହି ଆରତି ଅନାହତ ଧ୍ୱନି ମଧ୍ୟରେ ବାଜି ଉଠୁଛି ।

× × × ×

ନାନକଙ୍କ ଓଡ଼ିଶା ଆଗମନର ଐତିହାସିକ ପ୍ରମାଣ ଅବଶ୍ୟ ନାହିଁ; କିନ୍ତୁ ଭଦ୍ରକର ସଙ୍ଗତ ଗ୍ରାମ ଓ ସେହି ଗ୍ରାମରେ ଥିବା ନାନକ ଗଡ଼, ନାନକଙ୍କ ଓଡ଼ିଶା ଆଗମନର ସୂଚନା ଦିଏ । ସଙ୍ଗତ ଅର୍ଥ ଶିଖଭାଇମାନଙ୍କର ସମବେତ ଭଜନଗାନ । ଏହି ଗ୍ରାମ ଏବଂ ଗଡ଼ ରାଜସ୍ୱବିଭାଗର ନଥିପତ୍ରରେ ଚିହ୍ନିତ ହୋଇଛି । ନାନକ କଟକର କାଳିଆବୋଦାରେ ପଥଶ୍ରାନ୍ତ ହୋଇ ଏକରାତ୍ରି ଯାପନ କରିଥିଲେ ବୋଲି କିମ୍ବଦନ୍ତୀ ରହିଛି । ବୋଧହୁଏ ନାନକଙ୍କ

Digitized by srujan ka@gmail.com

ଓଡ଼ିଶା ଆଗମନ ସମୟରେ ତାଙ୍କ ପିତା କାଲିଆବେଦୀ ମଧ୍ୟ ପୁତ୍ର ସଙ୍ଗରେ ତୀର୍ଥଯାତ୍ରା କରିଥିବେ । ତାଙ୍କ ନାମ କାଲିଆ ବେଦୀରୁ ସ୍ଥାନର ନାମ କାଳିଆବୋଦା ହୋଇଥିବା ଅନୁମାନର ବିଷୟ ।

ମହାପୁରୁଷଙ୍କ ମହାପ୍ରୟାଣ କାଳ ଆଗତପ୍ରାୟ । ଏକ ଶୁଭ ଲକ୍ଷଣରେ ସମସ୍ତ ଶିଷ୍ୟଙ୍କୁ ଏକ ସଭାରେ ଡକାଇ ପ୍ରିୟ ଶିଷ୍ୟ ଅଙ୍ଗଦଙ୍କ ହାତ ଧରି ନିଜ ଆସନରେ ବସାଇଦେଲେ ଏବଂ ଶିଖ୍ ସଂପ୍ରଦାୟର ଗୁରୁସ୍ୱରୂପ ପ୍ରଥମେ ନିଜେ ତାଙ୍କର ଅଭିବାଦନ ଗ୍ରହଣ କଲେ । ତା'ପରେ ଧର୍ମସଭା ତ୍ୟାଗ କରି ନଦୀତୀରରେ ଏକ ବୃକ୍ଷମୂଳରେ ବସିଲେ, ଏବଂ ସମାଧିସ୍ଥ ହୋଇ ନଶ୍ୱର ଶରୀର ତ୍ୟାଗ କଲେ । ସାଙ୍ଗେ ସାଙ୍ଗେ ଶରୀରକୁ ବସ୍ତ୍ରାବୃତ କରିଦେଲି । ମର ଶରୀରର ସତ୍କାରପାଇଁ ହିନ୍ଦୁ ଓ ମୁସଲମାନ ଭକ୍ତମାନଙ୍କ ମଧ୍ୟରେ ବହୁ ବିତର୍କ ଓ ଦ୍ୱନ୍ଦ୍ୱ ହେଲି । ହିନ୍ଦୁ ଶିଷ୍ୟମାନେ ହିନ୍ଦୁ ମତରେ ଏବଂ ମୁସଲମାନ ଶିଷ୍ୟମାନେ ମୁସଲମାନ ମତରେ ଶରୀରର ସତ୍କାରପାଇଁ ଦାବୀ କଲେ; କିନ୍ତୁ ମହାପୁରୁଷଙ୍କ ଶେଷ ଦର୍ଶନପାଇଁ ବସ୍ତ୍ର ଉନ୍ମୋଚନ କରି ସମସ୍ତେ ଅବାକ୍ ହୋଇ ଦେଖିଲେ ଯେ ଶରୀର ଅନ୍ତର୍ହିତ ହୋଇଯାଇଛି । ଏଣୁ କଥିତ ଅଛି ସେହି ବସ୍ତ୍ରକୁ ଦୁଇଖଣ୍ଡ କରି ଖଣ୍ଡେ ହିନ୍ଦୁମାନେ ତାହା ଚିତ୍ତା-ଦ୍ୱାରା ଓ ଆଉ ଖଣ୍ଡେ ମୁସଲମାନମାନେ ସମାଧିଦ୍ୱାରା ତାହାଙ୍କର ସତ୍କାର କରିଥିଲେ ।

ବାବା ନାନକ ଜାତିଭେଦ, ଉଚ୍ଚନୀଚ ଭେଦ, ସାଂପ୍ରଦାୟିକ ବିଦ୍ୱେଷ ବିରୁଦ୍ଧରେ ଏକ ନୂତନ ଧର୍ମ ପ୍ରଚାର କରିଥିଲେ । ସମସ୍ତ ଧର୍ମର ସାରମର୍ମ ହେଉଛି—ଏକେଶ୍ୱରବାଦ । ଈଶ୍ୱର ଏକ, ଏହି ଭାବରେ ସମସ୍ତଙ୍କୁ ଅନୁପ୍ରାଣିତ କରି ଭାରତର ଅଖଣ୍ଡତାପାଇଁ ପ୍ରାଣାନ୍ତ ଉଦ୍ୟମ କରିଥିଲେ । ବାବା ନାନକଙ୍କର ଭାରତକୁ ବଳିଷ୍ଠ

Digitized by srujan ka@gmail.com

ଶିଖ୍-ସଂପ୍ରଦାୟର ଏକ ମହତ୍ତ୍ୱ ଦାନ । ଭାରତର ସ୍ୱାଧୀନତା ଏବଂ ଅଖଣ୍ଡତା ରକ୍ଷା ଦିଗରେ ଶିଖ୍ ଭାଇମାନଙ୍କ ଦାନ ଅତୁଳନୀୟ ।

## ନାନକ (ଶିଖ ଗୁରୁ)ଙ୍କ ବାଣୀ

ସଂକଳୟିତା — ଶ୍ରୀ ନିମାଇଁ ଚରଣ ଦାସ

ହେ ଯୋଗିଜନ, କାହିଁକି ଜୀବନକୁ ବୃଥା ଆଳସ୍ୟରେ, ତନ୍ଦ୍ରାରେ କଟାଉଅଛ ? ଏହି ଦୁର୍ଲଭ ଜୀବନକୁ ତୁମ୍ଭର ପ୍ରିୟ ପ୍ରତିବେଶୀମାନଙ୍କର, ଈଶ୍ୱର ସୃଷ୍ଟ ଜୀବମାନଙ୍କର ମଙ୍ଗଳରେ ନିଯୋଗ କର । ଯେ ମୁଣ୍ଡ ଝାଳ ତୁଣ୍ଡରେ ମାରି ଅନ୍ନ ସଂସ୍ଥାନ କରେ ଏବଂ ସେହି ଅନ୍ନ ନିଜ ଉଦରରେ ଦେବା ପୂର୍ବରୁ ଆଉ ପାଞ୍ଚଜଣଙ୍କ ପେଟରେ ପକାଇବାକୁ କଳ୍ପନା କରେ, ସେହିପରି ଲୋକପାଇଁ ଏକା ସିଦ୍ଧିର ପଥ ଉନ୍ମୁକ୍ତ ହୁଏ । କେବଳ ସଂସାରରେ ସେବା-ଧର୍ମ ଗ୍ରହଣ କରି ଆମ୍ଭେମାନେ ପରମ ପିତାଙ୍କ ଶ୍ରୀଚରଣତଳେ ଆମ୍ଭମାନଙ୍କର ଆସନଟିକକ ପାଇପାରୁ । ଭଗବାନଙ୍କୁ ସର୍ବଦା ସମ୍ମୁଖରେ ରଖି ହେ ମାନବ ! ତୁମ୍ଭେ ତୁମ୍ଭର ହସ୍ତପଦକୁ ସେହି ପ୍ରଭୁଙ୍କର ଜୀବମାନଙ୍କ ସେବାରେ ନିୟୋଜିତ କର—ଏହାହିଁ ପ୍ରକୃତ ଯୋଗ ଏବଂ ଏହି ଯୋଗକୁ କର୍ମକ୍ଷେତ୍ରରେ ଅଭ୍ୟାସରେ ଏ ସଂସାରରେ ଲାଭ କରିବାକୁ ହୁଏ । ଏ ସଂସାରକୁ ଘୃଣାରେ ଛାଡ଼ି କାହିଁକି ଚାଲି ଯାଉଅଛ ? ସର୍ବ ସୁଖର ଆଧାର ଏହି ଶରୀରକୁ କାହିଁକି ଅବହେଳା କରୁଅଛ ? କାହିଁକି ଏ ଶରୀରକୁ ସାଧୁ କର୍ମରେ ନିଯୁକ୍ତ କରୁନାହଁ ? ଏ ଶରୀର ତୁମ୍ଭ ଆତ୍ମାର ରକ୍ଷକ ସ୍ୱରୂପ, ବାହକସ୍ୱରୂପ କାର୍ଯ୍ୟ କରିବାକୁ ରହିଅଛି । ତାହାକୁ ସେ ବାହକ କର୍ମରେ ନିୟୋଜିତ ନ କରି ତୁମ୍ଭର ବା କି ଲାଭ ? ଆତ୍ମାର ଯେପରି ପ୍ରୟୋଜନ ଅଛି, ଆତ୍ମାର ବାହକ ଶରୀରର ମଧ୍ୟ

Digitized by srujan ka@gmail.com

ସେହିପରି ପ୍ରୟୋଜନ ଅଛି । ଉଭୟ ପ୍ରତି ସମାନଭାବରେ ଯତ୍ନଶୀଳ ହୁଅ ।

ଇହଅବଧି ସୁଖପନ୍ଥୀମାନଙ୍କୁ ଶିଖଗୁରୁମାନଙ୍କର ଉପଦେଶ । ଏହିପରି :—

କ'ଣ କରୁଛ, ତୁମ୍ଭେମାନେ ଆତ୍ମାକୁ ଏକାବେଳକେ ଭୁଲି ଯାଉଅଛ । ମନେରଖ, ତୁମ୍ଭର ସ୍ଥାୟୀ ଆବାସ ଏହି ସଂସାର ନୁହେଁ । ଏଠାକୁ ଅତଥିରୂପେ କିଛିଦିନ-ପାଇଁ ମାତ୍ର ଆସିଅଛ । ସଂସାରରେ ଯେଉଁ ସୁଖ ଭୋଗ କରୁଅଛ, ଏହା ତୁମ୍ଭମାନଙ୍କୁ ହୀନବଳ କରି ଦେଉଅଛି । ମୁହୂର୍ତ୍ତିକପାଇଁ ସେ ସବୁ ସୁଖ ତୁମ୍ଭଙ୍କୁ ଅବଶ୍ୟ ଉଚ୍ଚ ରାଜ୍ୟକୁ ନେଲାପରି ବୋଧହୁଏ, ମାତ୍ର ତାହା କ୍ଷଣକପାଇଁ । ପର ମୁହୂର୍ତ୍ତରେ ତାହା ତୁମ୍ଭଙ୍କୁ ଅକ୍ଷମ, ଅସମର୍ଥ ଓ ମାନହୀନ କରି ପକାଇବ । ତୁମ୍ଭେ ତୁଚ୍ଛ ସୁଖର ସନ୍ଧାନରେ ଏଣେ ତେଣେ ପାଗଳ ପରି ବୁଲୁଅଛ । ମନେ କରୁନାହିଁ, ତୁମ୍ଭ ଭିତରେ କି ଐଶ୍ବରିକ ଅଗ୍ନି ସ୍ଫୁଲିଙ୍ଗ ବର୍ତ୍ତମାନ ଅଛି । ଅନ୍ତର୍ବର୍ତ୍ତୀ ସେହି ଆଲୋକ ବର୍ତ୍ତିକାକୁ ପ୍ରଜ୍ଜ୍ୱଳିତ କର, ଦେଖିବ—ତୁମ୍ଭର ଜୀବନ ଆଲୋକିତ ହୋଇଯିବ, ତୁମ୍ଭର ମାନବ-ଜନ୍ମ ସାର୍ଥକ ହେବ । ଅନ୍ତର୍ନିହିତ ସେହି ଐଶୀ ଶକ୍ତିକୁ ଅବହେଳା କର ନାହିଁ । ଅସାର ଶରୀରର ସୁଖ ଖୋଜି ସାର ଆତ୍ମାର ମହିମା ଭୁଲିଯାଅ ନାହିଁ । ଶରୀର କେବଳ ମାତ୍ର ସାର ପଦାର୍ଥ ନୁହେ । ଆତ୍ମାର ବାହକରୂପେ ଭଗବାନ ଶରୀରକୁ ପଠାଇ ଅଛନ୍ତି । ଶରୀର ବାହନରେ ଯେଉଁ ପରମପୁରୁଷ ଅଧିଷ୍ଠାନ କରିଅଛନ୍ତି ତାଙ୍କୁ ଭୁଲିଗଲେ କିପରି ଚଳିବ ? ଶରୀର ତୁମ୍ଭଙ୍କୁ ଦିଆ ଯାଇଅଛି ଯେ, ତୁମ୍ଭେ ଏ ଶରୀରକୁ ଜୀବଜଗତର କଲ୍ୟାଣରେ ନିୟୋଜିତ କଲେ

Digitized by srujan ka@gmail.com

ତୁମ୍ଭର ଆତ୍ମା ସେହି ଫଳରେ ଭଗବାନଙ୍କ ଶ୍ରୀଚରଣ ତଳ ଅଧିକାର କରିବାର ଅଧିକ ପରିମାଣରେ ଉପଯୁକ୍ତ ହେବ ।

ତୁମ୍ଭର ଏହି ଆତ୍ମସର୍ବସ୍ୱ ନୀତିର ଅର୍ଥ କ'ଣ ? ତୁମ୍ଭର ଏ ପରସ୍ୱାପହରଣ ତୁମ୍ଭଙ୍କୁ କେଉଁ ଦିଗକୁ ନେଉଅଛି ? ତୁମ୍ଭେ ଯେଉଁ ଶୋଷଣ ନୀତି ଧରିଅଛ ତାହା କ'ଣ ତୁମ୍ଭର ପଦମର୍ଯ୍ୟାଦାର ଉପଯୁକ୍ତ ? ତୁମ୍ଭେ ସମସ୍ତେ ପରା ଏକ ପରମ ପିତାଙ୍କର ସନ୍ତାନ ? ତୁମ୍ଭେ ଯଦି ପରର ଧନ ଅପହରଣ କର, ତୁମ୍ଭର ପିତା ତୁମ୍ଭ ପ୍ରତି ସନ୍ତୁଷ୍ଟ ହେବେ ତ ? ଏହି ଈଶ୍ୱରଖ୍ୟାତି ତୁମ୍ଭର ହୃଦୟରେ ନିତ୍ୟ ବିରାଜିତ ହେଉ ।

—ସାଧୁ ଜୀବନର ଉପାୟ—

ଶିଖ-ଗୁରୁମାନଙ୍କର ମତରେ ସାଧୁ ଜୀବନର ରହସ୍ୟ ଏହିପରି:—

ସ୍ତ୍ରୀ, ପୁତ୍ର କନ୍ୟା, ବନ୍ଧୁବାନ୍ଧବ, ଆତ୍ମୀୟ ସ୍ୱଜନପ୍ରଭୃତିଙ୍କୁ ଏତେ ଭଲ ପାଉଅଛ, ସେମାନଙ୍କୁ ସନ୍ତୁଷ୍ଟ କରିବାପାଇଁ କେତେ ଦୁଷ୍କାର୍ଯ୍ୟ କରୁଅଛ, କେତେ ପାପାଚରଣ କରୁଅଛ, ସେମାନଙ୍କ ସନ୍ତୋଷ ଆଣିବାକୁ କେତେ ଅସଦୁପାୟରେ ଅର୍ଥ ଅର୍ଜ୍ଜନ କରୁ-ଅଛ । ଏ ସବୁରେ ମାତି ତୁମ୍ଭେ ତୁମ୍ଭର ଉଚ୍ଚ ବଂଶ, ଉଚ୍ଚ କୁଳର ମର୍ଯ୍ୟାଦା ସବୁ ଭୁଲି ଯାଉଅଛ । ତୁମ୍ଭେ ଯେ ସ୍ୱର୍ଗର ସନ୍ତାନ, ଅମୃତର ସନ୍ତାନ, ଏ ସତ୍ୟ କେତେଦିନ ଭୁଲି ଏସବୁ ସଂସାର-ସୁଖରେ ମାତି ରହିବ ? ତୁମ୍ଭର ପୁତ୍ର, କନ୍ୟା, ଭାଇ ବନ୍ଧୁମାନେ କେତେ ଦିନ ବା ତୁମ୍ଭର ବନ୍ଧୁ ହୋଇ ରହିବେ ? ସେହି ଅନ୍ତିମ ଦିନର କଥା ଚିନ୍ତା କର, ଶେଷରେ ସେ ଭୟଙ୍କର ଦିନର କଥା ମନେ କର, ସେଦିନ ତୁମ୍ଭର ଯେଉଁ ଯାତ୍ରାର ଆରମ୍ଭ

Digitized by srujan ka@gmail.com

ଆରମ୍ଭ ହେବ, ତାହାର ପରିଣାମ ମନେ କର । ସେଦିନ ତୁମେ ଏକାକୀ ସେହି ଅଜଣା ବାଟରେ ଯିବ, ଯେଉଁମାନଙ୍କୁ ଏତେ ଆପଣାର କରି ରଖିଅଛ, ସେମାନେ କେହି ସେଦିନ ତୁମ୍ଭର ସାଥି ହେବେ ନାହିଁ । ସେମାନଙ୍କର ସାହାଯ୍ୟ ସହାନୁଭୂତି ତୁମ୍ଭର ସେଦିନ କିଛି କାମରେ ଲାଗିବ ନାହିଁ । ତେବେ ବୃଥା ଏ ଦୁର୍ଲଭ ମାନବ ଜନ୍ମକୁ କାହିଁକି ଏପରି ନଷ୍ଟ କରୁଅଛ ? ଈଶ୍ୱରଙ୍କର ତୁମ୍ଭ ପ୍ରତି ଅନୁଗ୍ରହ ଯେ, ସେ ତୁମ୍ଭଙ୍କୁ ଏ ଦୁର୍ଲଭ ମାନବ ଜନ୍ମ ଦେଇଅଛନ୍ତି । କେବଳ ଏହି ଜନ୍ମରେ ତୁମ୍ଭର ଏ ସୌଭାଗ୍ୟ ଅଛି ଯେ, ତୁମ୍ଭେ ସେହି ପରମ ପିତା ପରମେଶ୍ୱରଙ୍କ ସଙ୍ଗେ ସମ୍ମିଳିତ ହୋଇ ପାରିବ । ଦେବତାଗଣ ମଧ୍ୟ ଏ ନରଜନ୍ମ ଲାଭ କରିବାକୁ ଲାଳସା ରଖିଥାନ୍ତି । ଏ ନରଜନ୍ମକୁ ହରିଙ୍କ ସେବାରେ ନିୟୋଜିତ କର । ତାହାଙ୍କୁ ସର୍ବଦା ସ୍ମୃତି ପଟରେ ରଖ ଏବଂ ତାଙ୍କର ପ୍ରାଣୀମାନଙ୍କ ପ୍ରତି ଦୟା ରଖ । ନାମରେ ଭକ୍ତି, ଜୀବରେ ଦୟା ନରଜନ୍ମର ସର୍ବଶ୍ରେଷ୍ଠ କାର୍ଯ୍ୟ ।



Digitized by srujan ka@gmail.com

# କବୀର ସାହେବ

## ଶ୍ରୀମତୀ ସରଳା ଦେବୀ

କବୀର ୧୪୯୦ ଖ୍ରୀଷ୍ଟାବ୍ଦରେ ଗୋଟିଏ ବିଧବା ଗର୍ଭରୁ ଜାତ ହୋଇଥିଲେ । ସେହି ବ୍ରାହ୍ମଣ ଶିଶୁଟିକୁ ଜଙ୍ଗଲରେ ପକାଇ ଦେଇ ଚାଲିଗଲେ । ଜଙ୍ଗଲ ନିକଟରେ ନୀରୁତନ୍ତୀର ଘର । ନୀରୁ ଜାତିରେ ମୁସଲମାନ ଥିଲା । ସେ ଶିଶୁଟିର କାନ୍ଦଣା ଶୁଣି ତାକୁ ନେଇ ପାଳିଲା । ନିଃସନ୍ତାନ ଥିବାରୁ ନୀରୁର ଘର ଆନନ୍ଦରେ ଉଚ୍ଛୁଳି ପଡ଼ିଲା । ନୀରୁ ଲୁଗା ବୁଣି ପେଟ ପୋଷୁଥିଲା । ତେଣୁ କବୀରକୁ ପାଠ ପଢ଼ାଇ ପାରି ନ ଥିଲା ।

ସାତବର୍ଷ ବୟସରେ କବୀର ଲୁଗା ବୁଣି ବାପକୁ ସାହାଯ୍ୟ କରୁଥିଲେ, ମାତ୍ର ଏହି ପିଲାଟିର ବିଦ୍ୟା ପୂର୍ବାର୍ଜିତ ଥିଲା । ସେ ପାଠ ଶୁଣି ଶୁଣି ମନେ ରଖୁଥିଲେ । ପିଲାଟିଦିନୁ କବୀର ଈଶ୍ୱରଭକ୍ତ ଥିଲେ । ସାଧୁସଙ୍ଗ କରି ସଦ୍‌ଗ୍ରନ୍ଥ ଶୁଣି ତାଙ୍କ ମନ ଭଗବତ୍ ପ୍ରେମରେ ବୁଡ଼ିଗଲା ।

ସେ ସମୟରେ ରାମାନନ୍ଦ ବୈଷ୍ଣବ ଧର୍ମ ପ୍ରଚାର କରୁଥିଲେ । ତାଙ୍କର ମୁସଲମାନ ଶିଷ୍ୟ ନ ଥିଲେ । କବୀର ବହୁତ ଆକୁଳ ହୋଇ ତାଙ୍କୁ ଶିଷ୍ୟରୂପେ ଗ୍ରହଣ କରିବାକୁ ରାମାନନ୍ଦଙ୍କୁ ପ୍ରାର୍ଥନା କଲେ, ମାତ୍ର ରାମାନନ୍ଦ ଶୁଣି ନ ଥିଲେ । ନିତି ରାମାନନ୍ଦ ଗଙ୍ଗା

Digitized by srujan ka@gmail.com

ଥାଇଁ ଥାଇଁ ଗଙ୍ଗାସ୍ନାନକୁ ଯାଉଥିଲେ । କବୀର ଗଙ୍ଗାନଦୀ ଘାଟରେ ପଡ଼ିଥିଲେ, ରାମାନନ୍ଦଙ୍କ ଶିଷ୍ୟ ହେବେ ବୋଲି । ରାମାନନ୍ଦ ସ୍ନାନ କରି ଉଠିଲାବେଳେ କବୀରଙ୍କ ଉପରେ ଯିବାରୁ ତାଙ୍କ ପାଦ ପଡ଼ିଗଲା, ସେ 'ହା ରାମ' ବୋଲି ଚାଲି ଆସିଲେ ଏବଂ କବୀର ଆନନ୍ଦରେ ନାଚିଲେ । ସେହିଦିନୁ ସେ ରାମନାମ ଆଶ୍ରୟ କଲେ । କିଛିଦିନ ପରେ କବୀର ଆତ୍ମ ପରିଚୟ ଦେବାରୁ ରାମାନନ୍ଦ ତାଙ୍କର ଗୁରୁଭକ୍ତି ଦେଖି ଖୁସି ହୋଇ କବୀରଙ୍କୁ ଶିଷ୍ୟରୂପେ ଗ୍ରହଣ କଲେ ।

କବୀର ପୌତ୍ତଳିକ ନ ଥିଲେ ଓ ତାଙ୍କଠାରେ ସାମ୍ପ୍ରଦାୟିକତା ନ ଥିଲା । ସେ କି ହିନ୍ଦୁ କି ମୁସଲମାନ ସମସ୍ତଙ୍କୁ ସ୍ନେହ ଦୃଷ୍ଟିରେ ଦେଖି ଶିଷ୍ୟ କରୁଥିଲେ । ନିଜେ ସେ ଏକେଶ୍ୱରବାଦୀ ଥିଲେ । ଗୁରୁଙ୍କର କୃପା ଓ ଈଶ୍ୱରଙ୍କର କୃପାରେ ସେ ଆଦର୍ଶ ମହାତ୍ମା ହୋଇ ଭାରତରେ ଅସାମ୍ପ୍ରଦାୟିକ ଏକେଶ୍ୱରବାଦ ଧର୍ମ ପ୍ରଚାର କରୁଥିଲେ । ତାଙ୍କର ହିନ୍ଦୀର ଦୋହା ଜଗତ୍ ବିଖ୍ୟାତ ।

କବୀର ଭଗବାନଙ୍କ ବିଷୟରେ କହୁଥିଲେ "ଭଗବାନ କହୁଥିଲେ ମତେ କାହିଁକି ବୃଥା ବାହାରେ ଖୋଜି ଧନ୍ଦାଳି ହେଉଛୁ । ମୁଁ ତ ତୋ ପାଖରେ ଅଛି । ମୁଁ ନ ଥାଏ ଦେବାଳୟରେ, ନ ଥାଏ ମସଜିଦ୍‌ରେ, ନ ଥାଏ କୈଳାସରେ, ଥାଏ ଭକ୍ତ ହୃଦୟରେ, ତା ପାଖରେ ।"

ମସ୍ତକ ମୁଣ୍ଡନ କଲେ କ'ଣ ହେବ ? ଜଟା ରଖିଲେ ଅବା କ'ଣ ହେବ ? ଆଉ ଦେହରେ ଭସ୍ମଲେପନ କଲେ ବା କ'ଣ ହେବ ଯଦି ଚିତ୍ତଶୁଦ୍ଧି ନ ହେଲା ତେବେ ଏ ସବୁ ବେଶଭୂଷାର କି କାର୍ଯ୍ୟ ?

Digitized by srujan ka@gmail.com

# କବୀର ସାହେବଙ୍କ ବାଣୀ

## ସଂକଳୟିତା—ଶ୍ରୀ ନିମାଇଁ ଚରଣ ଦାସ

ଅନେକ ଲୋକ କାଠମାଳ ଧରି ହରିନାମ ଜପ କରନ୍ତି । ସେପରି ଭକ୍ତି କେବଳ ଲୋକଦେଖାଣିଆ ଭକ୍ତି । ସେପରି ବର୍ଷ ବର୍ଷ ଧରି ମାଳାଜପ କରିବାରେ ଯଦି ହୃଦୟର କିଛି ପରିବର୍ତ୍ତନ ନହେଲା ତେବେ ସେଥିରେ ଲାଭ କ'ଣ ? ଯେଉଁମାନେ ମୁହଁରେ ରାମନାମ କହନ୍ତି ଓ ହାତରେ ମାଳାଧରି ଜପ କରୁଥାନ୍ତି; କିନ୍ତୁ ପ୍ରକୃତରେ ସେମାନଙ୍କର ମନରେ ଈଶ୍ୱର ଭକ୍ତିର ଗୋଟିଏ କଣିକା ବି ନ ଥାଏ, ସେପରି ଲୋକଙ୍କୁ ଲକ୍ଷ୍ୟ କରି ମହାତ୍ମା କବୀର କହିଛନ୍ତି ଯେ, ମାଳା ଗୋଟି ଗୋଟି କରି ଜପ କରୁକରୁ ଜୀବନର ଅନେକ ସମୟ ବିତିଗଲା; କିନ୍ତୁ ସେଥିରେ କିଛି ଫଳ ହେଲା ନାହିଁ । ଭଗବାନଙ୍କର ପ୍ରକୃତ ସ୍ୱରୂପ ଜାଣିବାପାଇଁ ଏବେ ଭିତର ମନରେ ବା ଅନ୍ତର୍ଦ୍ଦୃଷ୍ଟିରେ ଭକ୍ତି ଆରମ୍ଭ କର ! ଲୋକଦେଖାଣିଆ ଭକ୍ତିରେ କୌଣସି ଲାଭ ନାହିଁ ।

ସୁଖ ସମୟରେ ମନୁଷ୍ୟ ଭଗବାନଙ୍କୁ ଭୁଲିଯାଏ । ଦୁଃଖର ସମୟ ଆସିଲେ ପୁଣି ଭଗବାନଙ୍କୁ ସ୍ମରଣ କରେ । ମହାତ୍ମା କବୀର କହିଛନ୍ତି ଯେ ଯଦି ସୁଖସମୟରେ ମନୁଷ୍ୟ ଭଗବାନଙ୍କୁ ସ୍ମରଣ କରେ ଓ ତାଙ୍କର ନିର୍ଦ୍ଦେଶ ମାନି ଚଳେ ତେବେ ଦୁଃଖ କେବେ-ହେଲେ ତା ପାଖକୁ ଆସି ପାରିବ ନାହିଁ ବା ସୁଖ ଦୁଃଖର ପ୍ରଭେଦ ତାକୁ ବିଚଳିତ କରି ପାରିବ ନାହିଁ ।

ମହାତ୍ମା କବୀର କହିଛନ୍ତି ଯେ ଯେଉଁପରି ଅଗ୍ନିଶିଖା ଶୁଷ୍କ ତୃଣଖଣ୍ଡମାନ ପୋଡ଼ି ପାଉଁଶ କରିଦିଏ, ସେହିପରି ହୃଦୟର ସହିତ ଭଗବାନଙ୍କର ନାମ ସ୍ମରଣ କରିବାରେ ସକଳ ପାପ ନାଶ ହୁଏ ।

Digitized by srujan ka@gmail.com

ମହାତ୍ମା କବୀର କହିଛନ୍ତି କି ଯେପରି ମାଛ ପାଣିକୁ, ଲୋଭୀ ଧନକୁ ଓ ମାତା ପୁଅକୁ ଭଲ ପାଏ, ସେହିପରି ପ୍ରକୃତ ଭକ୍ତ ଭଗବାନଙ୍କର ନାମକୁ ଭଲ ପାଏ ।

ଭଗବାନଙ୍କର ଆଶ୍ରୟ ହିଁ ପ୍ରକୃତ ଆଶ୍ରୟ । ଅନ୍ୟପ୍ରକାର ଆଶ୍ରୟ କିଛି ନୁହେଁ । ପାଣିଭିତରେ ଘର କରି ଯଦି କେହି ଶୋଷରେ ମରିଯାଏ, ତେବେ ତାହା ଆଶ୍ଚର୍ଯ୍ୟ ବୋଲି ଜାଣିବାକୁ ହେବ । ଭଗବାନଙ୍କର ଶରଣାଗତ ହେଲେ ସକଳ ପ୍ରକାରର ବାସନା ପୂର୍ଣ୍ଣ ହୁଏ । ତେଣୁ ଭଗବାନଙ୍କର ଆଶ୍ରୟ ହିଁ ଶ୍ରେୟଃ ।

ପ୍ରତିମୁହୂର୍ତ୍ତରେ ଆମର ଶରୀର କ୍ଷୟ ହେଉଛି । ତେଣୁ ଏପରି ଶରୀରକୁ ବିଶ୍ୱାସ କରାଯାଇ ପାରେ ନା । ଜୀବନକୁ ସାର୍ଥକ କରିବାପାଇଁ ପ୍ରତିନିଃଶ୍ୱାସରେ ଭଗବାନଙ୍କର ନାମ ସ୍ମରଣ କରିବା ଆବଶ୍ୟକ ।

କୂଅରୁ ପାଣି ବାହାର କରୁଥିବା ଲୋକର ଧ୍ୟାନ ଯେପରି କଲସି ଉପରେ ନିବଦ୍ଧ ଥାଏ, ସେହିପରି ତୁମର ଧ୍ୟାନ ଈଶ୍ୱର-ସ୍ମରଣ ପ୍ରତି ରହିବା ଉଚିତ ।

ଧନ ନ ଥାଇ ଯେପରି କେହି ମହାଜନ ବା ସାହୁକାର ବୋଲାଇ ପାରେ ନାହିଁ, ସେହିପରି ହରିଭକ୍ତି ବା ହରିଭଜନ ବ୍ୟତୀତ କେହି ସାଧୁ ବୋଲାଇ ପାରେ ନାହିଁ ।

ମହାତ୍ମା କବୀର କହିଛନ୍ତି କି, ଏ ମାଟିର ଶରୀର ଦିନେ ହେଲେ ମାଟିରେ ମିଶିବ ଅର୍ଥାତ୍ ଆମକୁ ମରିବାକୁ ହେବ । ସେଥି-ପାଇଁ ପୂର୍ବରୁ ଅକ୍ଷୟ କୀର୍ତ୍ତି ଅର୍ଜ୍ଜନ, ସାଧୁସେବା ଏବଂ ଭଗବତ୍ ଭଜନ କରିବା ଉଚିତ ।

ଅନୁର୍ବର ଜମିରେ ଯେତେ ମଞ୍ଜି ପୋତିଲେ ବି ତାହା ଅଙ୍କୁରିତ ହୁଏ ନାହିଁ । ଯେଉଁମାନେ ପାଶବିକ ରୀତିରେ ଜୀବନ

Digitized by srujan ka@gmail.com

ଅଭିବାଞ୍ଛିତ କରୁଛନ୍ତି, ସେମାନଙ୍କ ହୃଦୟରେ ଭଗବାନଙ୍କ ପ୍ରତି ଭକ୍ତି କେବେହେଲେ ଅଙ୍କୁରିତ ହୋଇ ପାରିବ ନାହିଁ ।

ଯେଉଁ କାର୍ଯ୍ୟ ଆଜି କରାଯାଇ ପାରିବ, ତାହା କାଲିକୁ ନ ରଖ; ଯାହା ଆଜି କରିବାର କଥା ତାହା ସଙ୍ଗେ ସଙ୍ଗେ କର । ମୃତ୍ୟୁ ଅନିଶ୍ଚିତ ଓ ଅନିବାର୍ଯ୍ୟ, ତାହା କେତେବେଳେ ଯେ ଆସି ଆଗରେ ଠିଆ ହୋଇଯିବ, ତାହା କିଏ କହି ପାରିବ ? ସେତେ-ବେଳେ ଅମୁକ କାମଟା କରି ପାରିଲି ନାହିଁ ବୋଲି ପଶ୍ଚାତ୍ତାପ କରିବାରେ ଲାଭ କ'ଣ ?

ଦୟା ଧର୍ମର ମୂଳବସ୍ତୁ । ଦୟା କରିବାରେ ଧର୍ମ ପାଳିତ ହୁଏ । ଲୋଭ କରିବାଦ୍ୱାରା ପାପ ଅର୍ଜନ କରାଯାଏ । କ୍ରୋଧ ପ୍ରକାଶ କରିବାର ଅର୍ଥ ମରଣକୁ ପାଖକୁ ଡାକିବା । ହୃଦୟରେ କ୍ଷମାଭାବ ଧାରଣ କର । ତେବେ ଯାଇ ପରମାତ୍ମାଙ୍କର ଭକ୍ତ ହୋଇ ପାରିବ ।

ଦାନ, ତୃଷାର୍ତ୍ତ ଲୋକେ ନଦୀର ପାଣିକୁ ପିଇଲେ ନଦୀ ଶୁଖିଯାଏ ନାହିଁ । ସେହିପରି ପ୍ରକୃତ ଦାନଦ୍ୱାରା କେତେବେଳେ ହେଲେ ଧନର କ୍ଷୟ ଘଟେ ନାହିଁ ।

ସେଥିପାଇଁ ଜୀବିତଥିବା ପର୍ଯ୍ୟନ୍ତ ଦାନ କରୁଥାଅ—

କାହାରି ପାଖରେ ହାତ ପତାଇ କିଛି ମାଗିବା ମରଣ ସମାନ ଅଟେ । କାହାରି ପାଖରେ ହାତ ପତାଇ ମାଗିବାଠାରୁ, ମରଣକୁ ବରଣ କରିବା ଶ୍ରେୟସ୍କର ।



Digitized by srujan ka@gmail.com

ଭଗବାନଙ୍କର ନିର୍ଦ୍ଦେଶରେ ଯାହାକୁ ଯେଉଁ ପରିମାଣରେ ସୁଖଦୁଃଖ ଭୋଗ କରିବାକୁ ଅଛି, ସେ ସେତିକି ପରିମାଣରେ ତାହା ଭୋଗକରେ । କେତେ ପ୍ରକାରର ଯତ୍ନ କଲେ ବି ସେଥିରୁ ରତିମାଏ ହେଲେ ହ୍ରାସ ବା ବୃଦ୍ଧି ହୁଏ ନାହିଁ ।

କେହି ଯଦି ତୁମ ପ୍ରତି ଖରାପ ଆଚରଣ କରୁଥାଏ ତେବେ ତୁମେ ତା ପ୍ରତି ଭଲ ଆଚରଣ କର । ତୁମର ଭଲପଣିଆର ଭଲ ଫଳ ନିଶ୍ଚୟ ତୁମକୁ ମିଳିବ; କିନ୍ତୁ ତୁମ ସହିତ ଖରାପ ଆଚରଣ କରୁଥିବା ଲୋକର ପରିଣାମ ନିଃସନ୍ଦେହରୂପେ ବିଶୂଳ-ମୂଳ ପରି ଅସହ୍ୟ କଣ୍ଟକମୟ ହେବ ।

କାହାରିକୁ ନ୍ୟୂନ ବା ଶ୍ରେଷ୍ଠ ମନେ କରି ଅନାଦର କରିବା ଉଚିତ ନୁହେଁ; ପ୍ରତ୍ୟେକ ଶ୍ରେଷ୍ଠବସ୍ତୁର ମଧ୍ୟ ମୂଲ୍ୟ ଅଛି ବୋଲି ଭାବିବାକୁ ହେବ ।

ପତିବ୍ରତା ନାରୀ ରୂପହୀନା ହେଲେ ମଧ୍ୟ ସେ ସ୍ୱାମୀର ଆଦରଣୀୟା ହେବା ଉଚିତ ।

କବୀର କହନ୍ତି ଯେ, "ତମ ଆସିବା ବାଟରେ ଯେ କଣ୍ଟା ଦେଉଛନ୍ତି, ତୁମେ ତାଙ୍କ ଆସିବା ବାଟରେ ଫୁଲ ପକାଅ ।"

---

Digitized by srujan ka@gmail.com



# ଯୁଗାବତାର ଶ୍ରୀ ଗୌରାଙ୍ଗ

## ( ଶ୍ରୀ ଚୈତନ୍ୟଦେବ )

ଅଧ୍ୟାପକ ପଠାଣି ପଟ୍ଟନାୟକ, ଖଲ୍ଲିକୋଟ କଲେଜ

ଶ୍ରୀ ଚୈତନ୍ୟ ହେଉଛନ୍ତି ଭକ୍ତପ୍ରବର, ପରମ ସାଧକ ତଥା ଭଗବତ ଅଂଶାବତାର । ସେ ଥିଲେ ବିଶ୍ୱଜନୀନ ମୈତ୍ରୀ-ଭାବର ସର୍ବଶ୍ରେଷ୍ଠ ପ୍ରଚାରକ । କେବଳ ଓଡ଼ିଶା ନୁହେଁ ଭାରତର ସର୍ବାଞ୍ଚଳରେ ଶ୍ରୀ ଚୈତନ୍ୟଙ୍କ ପ୍ରବର୍ତ୍ତିତ ବୈଷ୍ଣବ ଧର୍ମ ପ୍ରସାର ଲାଭ କରିଥିଲା । ତାହାଙ୍କୁ ଯଥାର୍ଥରେ ଯୁଗାବତାର ବୋଲି କୁହାଯାଏ ।

Digitized by srujan ka@gmail.com

ତାଙ୍କର ଆବିର୍ଭାବ ଫଳରେ ପ୍ରାଚୀନ ବଙ୍ଗ ସାହିତ୍ୟ ଓ ଓଡ଼ିଆ ସାହିତ୍ୟ ବୈଷ୍ଣବ-ଭାବଧାରାରେ ଅନୁପ୍ରାଣିତ ହୋଇ ଯଥେଷ୍ଟ ସମୃଦ୍ଧ ହୋଇଥିଲା ।

ଶ୍ରୀ ଚୈତନ୍ୟଦେବଙ୍କ ପୂର୍ବ ପୁରୁଷ ଯାଜପୁରନିବାସୀ ଓଡ଼ିଆ ବ୍ରାହ୍ମଣ ଥିଲେ । ତଦାନୀନ୍ତନ ଉତ୍କଳର ଗଜପତି ରାଜା କପିଳେନ୍ଦ୍ର ଦେବଙ୍କର ରାଜତ୍ୱକାଳରେ ଚୈତନ୍ୟଦେବଙ୍କ ପୂର୍ବ ପୁରୁଷ ଉପେନ୍ଦ୍ର ମିଶ୍ରଙ୍କ ପିତା ମଧୂ ମିଶ୍ର ବା ମଧୂକର ମିଶ୍ରଙ୍କର ରାଜାଙ୍କ ସହିତ ମନୋମାଳିନ୍ୟ ଘଟିବାରୁ ସେ ଓଡ଼ିଆ ପ୍ରବାସୀ-ଭାବରେ ବଙ୍ଗ ଦେଶର ଶ୍ରୀହଟ୍ଟ ଜିଲ୍ଲାରେ ବାସ କରିବାକୁ ଲାଗିଲେ । ଶ୍ରୀ ଚୈତନ୍ୟଙ୍କ ପିତା ଜଗନ୍ନାଥ ମିଶ୍ର ବିଦ୍ୟାଚର୍ଚ୍ଚା ନିମନ୍ତେ ସକୁଟୁମ୍ବେ ନବଦ୍ୱୀପଠାରେ ବସବାସ କରୁଥିଲେ । ଏହିଠାରେ ୧୪୮୫ ଖ୍ରୀଷ୍ଟାବ୍ଦ ଦୋଳପୂର୍ଣ୍ଣିମା-ରାତିରେ ଚନ୍ଦ୍ର ଗ୍ରହଣ ସମୟରେ ମାତା ଶଚୀ ଦେବୀଙ୍କ ଗର୍ଭରୁ ଚୈତନ୍ୟଦେବ ଜନ୍ମ ଗ୍ରହଣ କରି-ଥିଲେ । ସେ ନିମାଇଁ, ଗୌରାଙ୍ଗ, ବିଶ୍ୱମ୍ଭର, ଗୋରାଚାନ୍ଦ ପ୍ରଭୃତି ନାମରେ ସୁପରିଚିତ । ପ୍ରଥମ ଜୀବନରେ ଶ୍ରୀ ଚୈତନ୍ୟ ନାନାଶାସ୍ତ୍ର ଅଧ୍ୟୟନ କରି ନିଜକୁ ଏକ ଅଦ୍ୱିତୀୟ ପଣ୍ଡିତଭାବରେ ପ୍ରତିଷ୍ଠା କଲେ । ଜୀବନରେ ସେ ଲକ୍ଷ୍ମୀ ଓ ବିଷ୍ଣୁପ୍ରିୟାନାମକ ଦୁଇଟି ସ୍ତ୍ରୀଙ୍କୁ ବିବାହ କରି କିଛିକାଳ ସାଂସାରିକ ଜୀବନଯାପନ କରିଥିଲେ । ଈଶ୍ୱରପୁରୀନାମକ ଜଣେକ ବୈଷ୍ଣବ ବ୍ରହ୍ମଚାରୀଙ୍କଠାରୁ ଦୀକ୍ଷା ଗ୍ରହଣ କରି ବୈଷ୍ଣବ ଧର୍ମର ପ୍ରେମମନ୍ତ୍ରରେ ଉଦ୍‌ବୁଦ୍ଧ ହୋଇ-ଥିଲେ । ଏହା ପରଠାରୁ ସନ୍ନ୍ୟାସ ବ୍ରତ ଗ୍ରହଣ କରି ବହୁ ତୀର୍ଥ ପର୍ଯ୍ୟଟନ କରିବାର ସୁଯୋଗ ଲାଭ କଲେ ।

ବାସ୍ତବିକ ସେ ହେଉଛନ୍ତି ଆଧୂନିକ ବୈଷ୍ଣବଧର୍ମ-ମତର ପ୍ରକୃତ ପ୍ରବର୍ତ୍ତକ । ଅନେକଙ୍କ ଧାରଣା ଯେ ସେ ଓଡ଼ିଶାରେ ପ୍ରଥମେ

Digitized by srujan ka@gmail.com

ବୈଷ୍ଣବଧର୍ମ ପ୍ରଚାର କରିଥିଲେ; କିନ୍ତୁ ଇତିହାସରୁ ଜଣାଯାଏ ଯେ, ଉତ୍କଳର ଗଜପତି ରାଜା ପ୍ରତାପରୁଦ୍ରଙ୍କ ସମୟରେ ଖ୍ରୀ: ଅ: ୧୫୧୦ରେ ଚୈତନ୍ୟ ଓଡ଼ିଶା ଆଗମନ କରି ବୈଷ୍ଣବଧର୍ମ ପ୍ରଚାର କରିଥିଲେ ।

ଶ୍ରୀ ଚୈତନ୍ୟ ପୁରୀ ଆଗମନ କରି ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ବଡ଼ ଦେଉଳରେ ପ୍ରବେଶ କଲେ । ସେତେବେଳେ ଓଡ଼ିଆ ଭାଗବତକାର ଜଗନ୍ନାଥ ଦାସ ବଟମୂଳରେ ଉପସ୍ଥିତ ରହି ଶ୍ରୀମଦ୍ଭାଗବତର ୧୦ମସ୍କନ୍ଧର ବସ୍ତ୍ର ହରଣ ପାଠ କରୁଥିଲେ । ସେଠାରେ ଉଭୟଙ୍କର ସାକ୍ଷାତ ହେଲା । ନିତ୍ୟ ବୃନ୍ଦାବନ ନୀଳାଚଳ ଧାମରେ ଏହା ଥିଲା ଅପୂର୍ବ ମିଳନ । ଶ୍ରୀ ଚୈତନ୍ୟ ଓ ଭକ୍ତ କବି ଜଗନ୍ନାଥ ଦାସ ପରସ୍ପରକୁ ପ୍ରେମାଲିଙ୍ଗନ କରିବା ଅବସ୍ଥାରେ ଭାବାବିଷ୍ଟ ହୋଇ ପଡ଼ିଲେ ।

ନୀଳାଚଳର ଶ୍ରୀ ଜଗନ୍ନାଥ ଭାରତର ସମସ୍ତ ସମ୍ପ୍ରଦାୟର ଆରାଧ୍ୟ ଦେବତା । ଭିନ୍ନ ଭିନ୍ନ ବୈଷ୍ଣବସମ୍ପ୍ରଦାୟର ଗୁରୁମାନେ ଜଗନ୍ନାଥଙ୍କ ଧାମରେ ଆସି ନିଜ ନିଜର ମତବାଦ ପ୍ରଚାର କରିଥିଲେ । ସେହି ସମ୍ପ୍ରଦାୟଗୁଡିକର ମଠମାନ ଏହାର ସାକ୍ଷୀରୂପେ ବିଦ୍ୟମାନ ଅଛନ୍ତି । ବୈଷ୍ଣବଧର୍ମର ପ୍ରଚାର ପ୍ରଥମେ ଦକ୍ଷିଣଭାରତରେ ହୋଇଥିଲା । କ୍ରମେ କ୍ରମେ ଏହା ଉତ୍ତରଭାରତକୁ ବିସ୍ତୃତି ଲାଭ କଲା । ଏହି ଧର୍ମ ପ୍ରଚାରରେ ରାମାନୁଜାଚାର୍ଯ୍ୟ, ମାଧ୍ୱାଚାର୍ଯ୍ୟ, ବିଷ୍ଣୁ ସ୍ୱାମୀ ଓ ନିମ୍ବାର୍କପ୍ରଭୃତି ବରିଷ୍ଠ ଆଚାର୍ଯ୍ୟ ସହଯୋଗ କରିଥିଲେ । ଏହାଙ୍କ ସହିତ ପରେ ଯୋଗ ଦେଇଥିଲେ ରାମାନନ୍ଦ, ବଲ୍ଲଭ ଆଚାର୍ଯ୍ୟ ଓ ଶ୍ରୀ ଚୈତନ୍ୟ । ଚୈତନ୍ୟଙ୍କ ଉତ୍କଳ ଆଗମନ ପୂର୍ବରୁ ଏହି ଆଚାର୍ଯ୍ୟଗଣ ଓଡ଼ିଶାଭୂମିରେ ଧର୍ମ ପ୍ରଚାର କରି ଯାଇଥିଲେ । ଶ୍ରୀ ମନ୍ଦିରରେ କବି ଜୟଦେବଙ୍କ

Digitized by srujan ka@gmail.com

ଗୀତଗୋବିନ୍ଦ ପାରାୟଣ ସେବା ଚୈତନ୍ୟଙ୍କ ପୂର୍ବରୁ ଉତ୍କଳରେ ବୈଷ୍ଣବଧର୍ମ ପ୍ରଚଳନ ଥିବାର ପ୍ରମାଣ କରୁଅଛୁ । ରାଜା ପୁରୁଷୋତ୍ତମଦେବ ଏବଂ କପିଳେନ୍ଦ୍ରଦେବ ସେମାନଙ୍କର ଦୁଇଟି ଶିଳାଲେଖରେ ଜଗନ୍ନାଥ ମନ୍ଦିରରେ ଗୀତଗୋବିନ୍ଦ ପାଠ ହେବାପାଇଁ ଆଦେଶ ଦେଇ ଯାଇଅଛନ୍ତି ।

ଶ୍ରୀ ଚୈତନ୍ୟଙ୍କର ଗୁରୁ ଈଶ୍ୱରପୁରୀ ଓଡ଼ିଶାର ପରମ ସାଧକ ଓ ବୈଷ୍ଣବ ମାଧବେନ୍ଦ୍ର ପୁରୀଙ୍କର ଶିଷ୍ୟ ଥିଲେ । ବ୍ରଜବୋଲି ସାହିତ୍ୟର ଇତିହାସ ପୁସ୍ତକରେ ଐତିହାସିକ ଏସ. କେ. ସେନ ସେହି ବିଷୟରେ କେତେକ ଚମତ୍କାର କଥା କହି ଅଛନ୍ତି । ଭାଗବତର ପ୍ରେମଧର୍ମ ମାଧବେନ୍ଦ୍ରଙ୍କଦ୍ୱାରା ପ୍ରବର୍ତ୍ତିତ ହୋଇଥିଲା । ଶିଷ୍ୟ-ପରମ୍ପରାରେ ଈଶ୍ୱରପୁରୀ ଶ୍ରୀ ଚୈତନ୍ୟ ଏବଂ ବଙ୍ଗୀୟ ଗୋସ୍ୱାମୀଗଣ ବଙ୍ଗ ଦେଶ ଏବଂ ତାହାର ବାହାରେ ଏହି ଭାବନାକୁ ଅଧିକ ଲୋକପ୍ରିୟ କରି ପାରିଥିଲେ । ଚୈତନ୍ୟଦେବଙ୍କ ଓଡ଼ିଶା ଅବସ୍ଥାନ କାଳରେ ସେ ରାଜମହେନ୍ଦ୍ରୀର ତତ୍କାଳୀନ ଶାସନକର୍ତ୍ତା ଉତ୍କଳର ପ୍ରଧାନ ସେନାପତି ପରମ ବୈଷ୍ଣବ ରାୟ ରାମାନନ୍ଦଙ୍କ ସହିତ ମିଳିତ ହୋଇଥିଲେ । ସେଠାରେ ରାୟ ରାମାନନ୍ଦ ବ୍ରଜଲୀଳାର ପ୍ରେମଭାବ ଶ୍ରୀ ଚୈତନ୍ୟଙ୍କ ସମ୍ମୁଖରେ ବର୍ଣ୍ଣନା କରି ନିଜର ଭକ୍ତିମତ୍ତର ପରିଚୟ ପ୍ରଦାନ କରିଥିଲେ । ନିଜେ ଶ୍ରୀ ଚୈତନ୍ୟ ଏ କଥା ସ୍ୱୀକାର କରିବା ଜଣାଯାଏ ।

"ଯେ ସବ୍ ଶିଖାଇଲ ମୋତେ ରାୟ ରାମାନନ୍ଦ
ସେ ସବ୍ ଶୁନିତେ ହୟ ପରମ ଆନନ୍ଦ ।
କହିଲେ ନ ଯାଏ ରାମାନନ୍ଦେର ପ୍ରଭାବ
ଯା'ର ପ୍ରସାଦେ ଜାନି ବ୍ରଜେର ଶୁଦ୍ଧଭାବ ।"

Digitized by srujan ka@gmail.com

ଶ୍ରୀ ଚୈତନ୍ୟଦେବଙ୍କ ଓଡ଼ିଶା ଆଗମନ କାଳରେ ରାଧାକୃଷ୍ଣ ମିଳିତଭାବରେ ପୂଜିତ ହେଉ ନ ଥିଲେ । ଶ୍ରୀ ନିମାଇଁ ମହାପ୍ରଭୁଙ୍କ ହରିଲୀଳା ପ୍ରଚାର ଯୋଗୁଁ ଓଡ଼ିଶାର ବହୁସ୍ଥାନରେ ମିଳିତଭାବରେ ରାଧାକୃଷ୍ଣ-ପୂଜାର ପ୍ରଚଳନ ହେଲା । କୃଷ୍ଣ ଭଜନରେ ନବଧା ଭକ୍ତି ସାଧନ କରି ପ୍ରେମଭକ୍ତିର ନୂତନ ଭାବ ସଞ୍ଚାର କରିବାରେ ଶ୍ରୀ ଚୈତନ୍ୟ ସାକ୍ଷୀ ହୋଇଥିଲେ । ଗ୍ରାମେ ଗ୍ରାମେ ଲକ୍ଷ ଲକ୍ଷ ନରନାରୀ ତାଙ୍କର ପ୍ରେମମନ୍ତ୍ରରେ ଦୀକ୍ଷିତ ହେଲେ । ଭଗବାନ ଶ୍ରୀକୃଷ୍ଣଙ୍କ ଭଜନ କଲେ ଏହି ପାପପୂର୍ଣ୍ଣ କଳିକାଳରେ ଜୀବ ଉଦ୍ଧାର ଲାଭ କରିବ ବୋଲି ସେ କହିଯାଇ ଅଛନ୍ତି ।

ଶ୍ରୀଚୈତନ୍ୟ ଚରିତାମୃତ ଗ୍ରନ୍ଥରେ ଶ୍ରୀ ଗୌରାଙ୍ଗଙ୍କର ଉପଦେଶ ଏହିପରି :—

"ପରମ ଦୁର୍ଲ୍ଲଭ ଏହି କୃଷ୍ଣାଧରାମୃତ
ତାହା ଯେଇ ପାଏ ତା'ର ସଫଳ ଜୀବତ ।
× × ×
ହର୍ଷେ ପ୍ରଭୁ କହେ—ଶୁନ ସ୍ୱରୂପ ରାମରାୟ ।
ନାମ ସଂକୀର୍ତ୍ତନ କଲୌ ପରମ ଉପାୟ ।।
ସଂକୀର୍ତ୍ତନ-ଯଜ୍ଞେ କରେ କୃଷ୍ଣ ଆରାଧନ
ସେଇ ତ ସୁମେଧା ପାଏ କୃଷ୍ଣେର ଚରଣ ।"

ପୁରୀର ରାଧାକାନ୍ତ ମଠ ଶ୍ରୀ ଚୈତନ୍ୟଙ୍କର ସାଧନାର ପରମପୀଠରୂପେ ପରିଚିତ । ଶ୍ରୀକୃଷ୍ଣଙ୍କୁ ସର୍ବଦା ଧ୍ୟାନ ଏବଂ ନାମ ସଙ୍କୀର୍ତ୍ତନହିଁ ମୋକ୍ଷର ପ୍ରଧାନ ଉପାୟ ବୋଲି ସେ ପ୍ରଚାର କରିଗଲେ । ୧୫୩୩ ଖ୍ରୀଷ୍ଟାବ୍ଦରେ ମହାପ୍ରଭୁ ଶ୍ରୀଚୈତନ୍ୟ ପୁରୀଧାମରେ ଦେହ ତ୍ୟାଗ କରିଥିଲେ ।

Digitized by srujan ka@gmail.com

ତାଙ୍କର କେତେକ ଉପଦେଶ ବାଣୀ ନିମ୍ନରେ ଦିଆଗଲା—

(କ) ସୂର୍ଯ୍ୟୋଦୟ ହେଲେ ଯେପରି ଦୁଃଖ ପଳାଏ, ସେହିପରି ହୃଦୟରେ କୃଷ୍ଣପ୍ରେମ ଜାତ ହେଲେ ହୃଦୟରୁ ବିଷୟ-ବାସନା ଲୁପ୍ତ ହୋଇଯାଏ ।

(ଖ) ହରିଭକ୍ତି ହୃଦୟରେ ଏକ ଅଦ୍ଭୁତ ଶକ୍ତି ଜାଗ୍ରତ କରାଇ ସକଳ ଅବିଦ୍ୟା ନାଶ କରିଦିଏ । ଦାବାନଳ ଯେପରି ସର୍ପିଣୀକୁ ଭସ୍ମୀଭୂତ କରି ପକାଏ, ସେହିପରି ହରିଭକ୍ତି ହୃଦୟରେ ସତ୍ଶକ୍ତି ଜାଗ୍ରତ କରାଇ ଅବିଦ୍ୟାକୁ ନଷ୍ଟ କରିଦିଏ । ହୃଦୟରୁ ଯେତିକି ପାପ, ଅବିଦ୍ୟା ଦୂର ହେବ, ସେତିକି ଭଗବାନଙ୍କଠାରେ ନିଷ୍ଠା ଜାତ ହେବ, ନିଷ୍ଠା ଜାତ ହେଲେ ତାଙ୍କ ବିଷୟ ଶୁଣିବାପାଇଁ କୀର୍ତ୍ତନ କରିବାପାଇଁ ମନରେ ରୁଚି ଜାତ ହେବ । ରୁଚି ଯେତିକି ଅଧିକ ହେବ, ଆସକ୍ତି ସେତିକି ବଢ଼ିବ । ଭଗବାନଙ୍କ ପ୍ରତି ଆସକ୍ତି ଆସିଲେ ଭାବ ଜାତ ହେବ ଏବଂ ଭାବ ହେଲା ମାତ୍ରେ ପ୍ରେମର ଉଦୟ ହେବ ।

(ଗ) କାହାରିକୁ ଘୃଣା କରିବ ନାହିଁ । କୌଣସି ପ୍ରାଣୀ ମନରେ ଉଦ୍‌ବେଗ ଦେବ ନାହିଁ । କାୟମନୋବାକ୍ୟରେ ଯଥା-ସାଧ୍ୟ ସମସ୍ତଙ୍କର ସନ୍ତୋଷ ବିଧାନ କରିବ । ସର୍ବଜୀବ ପ୍ରତି ସମ୍ମାନ ପ୍ରଦର୍ଶନ କରିବ । ସଦାଚାର, ଦୟା, କ୍ଷମା, ସହିଷ୍ଣୁତା, ସତ୍ୟ, ଧର୍ମ, ଶାନ୍ତି ପ୍ରଭୃତି ସଦ୍‌ଗୁଣରେ ଆତ୍ମାକୁ ସର୍ବଦା ଭୂଷିତ କରିବ । ପରନିନ୍ଦା, ପରଚର୍ଚ୍ଚା, ପରର ଅନିଷ୍ଟ ଚିନ୍ତା, ଅନ୍ୟର ପ୍ରାଣରେ କଷ୍ଟ ଦେବା ମହାପାତକ ମଧ୍ୟରେ ଗଣ୍ୟ ।

ସମସ୍ତ ମନୁଷ୍ୟ ସମାନ, ସମସ୍ତଙ୍କ ହୃଦୟରେ ଭଗବାନ ଅଛନ୍ତି, ଭଗବାନ ସମସ୍ତଙ୍କର ଏବଂ ଆମେ ସମସ୍ତେ ଭଗବାନଙ୍କର

Digitized by srujan ka@gmail.com

ସନ୍ତାନ । ତାଙ୍କୁ ପାଇବାକୁ ହେଲେ ମନ ପ୍ରାଣ ଦେଇ ଡାକିବାକୁ ହେବ । ସେ ସନ୍ତାନର ଡାକ ନିଶ୍ଚୟ ଶୁଣିବେ । ଭାଗ୍ୟରେ ଯାହା ଅଛି ତାହା ନିଶ୍ଚୟ ଘଟିବ । ସର୍ବଦା ସାଧୁସଙ୍ଗ କରିବାକୁ ଯଥାସାଧ୍ୟ ଚେଷ୍ଟା କରିବ ଓ ସଦ୍‌ଗ୍ରନ୍ଥ ପାଠ କରିବ ।

ଶ୍ରୀ ମହାପ୍ରଭୁ କେବଳ ଶିକ୍ଷାଷ୍ଟକ ବୋଲି ଆଠଗୋଟି ସଂସ୍କୃତ ଶ୍ଳୋକ ଲେଖିଥିଲେ । ମାତ୍ର ତାଙ୍କର ନିର୍ଦ୍ଦେଶରେ ବହୁ ଭକ୍ତ ସେ ଯୁଗରେ ସଂସ୍କୃତ ଭକ୍ତିଗ୍ରନ୍ଥ ଲେଖିଥିଲେ । ଶ୍ରୀଚୈତନ୍ୟ ଦେବ ନିଜେ ସନ୍ନ୍ୟାସଦୀକ୍ଷା ଗ୍ରହଣ କରି ଅନ୍ୟମାନଙ୍କୁ କଳିଯୁଗରେ ସନ୍ନ୍ୟାସୀ ହେବା ଅନୁଚିତ ବୋଲି କହୁଥିଲେ ଓ ଗୃହସ୍ଥଧର୍ମ ଆଚରଣ କରିବାକୁ କହୁଥିଲେ । ସାତ୍ତ୍ୱିକ ଆହାର ଏବଂ ଅହରହ ହରିନାମ କୀର୍ତ୍ତନ ଗାୟନ କରିବା ଏବଂ ଶ୍ରୀକୃଷ୍ଣଙ୍କଠାରେ ଆତ୍ମ-ସମର୍ପଣ କରିବା ତାଙ୍କ ଜୀବନର ଦର୍ଶନତତ୍ତ୍ୱ ଥିଲା । ସେ ଚଣ୍ଡୀ ଦାସ, ବିଦ୍ୟାପତି, ଭକ୍ତ ବିଲ୍ୱମଙ୍ଗଳଙ୍କର କୃଷ୍ଣକର୍ଣ୍ଣାମୃତ ଓ ଶ୍ରୀଶ୍ରୀମଦ୍‌ଭାଗବତ ପାଠ କରୁଥିଲେ । ତାଙ୍କ ପ୍ରେରଣାରେ ମୁମୁକ୍ଷୁ ସନ୍ନ୍ୟାସୀ ଗୋସେଇଁମାନେ ବିଶେଷତଃ ରୂପ ସନାତନ ସଂସ୍କୃତରେ ବହୁ ଭକ୍ତିଗ୍ରନ୍ଥ ଲେଖିଥିଲେ । ଆମ ଓଡ଼ିଶାର ଭକ୍ତଶ୍ରେଷ୍ଠ ରାୟ ରାମାନନ୍ଦ ମଧ୍ୟ ଜଗନ୍ନାଥବଲ୍ଲଭ ନାଟକ ଅଷ୍ଟଦଣ୍ଡ ଲୀଳା ପ୍ରଭୃତି ବହୁ ଗ୍ରନ୍ଥ ଲେଖିଥିଲେ । ଶ୍ରୀ ଚୈତନ୍ୟଙ୍କ ମତରେ ଜୀବେଦୟା ନାମରେ ପ୍ରୀତିଲାଭ ମନୁଷ୍ୟର କର୍ତ୍ତବ୍ୟ । ଶ୍ରୀ ଚୈତନ୍ୟ ଭଗବାନଙ୍କ ପ୍ରତି ଶୁଦ୍ଧଭକ୍ତି ପ୍ରେମ ଭାବ ପ୍ରଚାର କରିଥିଲେ । ଜୀବ ମୁକ୍ତିବାଞ୍ଛା ନକରି କୃଷ୍ଣଙ୍କ ଦାସ ବୋଲି ନିଜକୁ ଭାବି ଅହରହ ତାଙ୍କ ପ୍ରତି ଅନୁରାଗୀ ହେଲେ, ମନୁଷ୍ୟ ସୁଖ ଏବଂ ଆନନ୍ଦରେ ଦିନ କାଟିବ । ଶ୍ରୀଚୈତନ୍ୟ ଦେବ ବୈଷ୍ଣବ ଧର୍ମର ପ୍ରଚାର କରିଥିଲେ । ଅହଂଭାବ ନାଶ କରି ମନୁଷ୍ୟ ନିଜେ ଉତ୍ତମ ହୋଇ ମଧ୍ୟ ନିଜକୁ ଅଧମ ଭାବି କଦାପି

Digitized by srujan ka@gmail.com

ମୁକ୍ତିବାଞ୍ଛା କରିବ ନାହିଁ । ସେ ଧନଜନ, ସୁନ୍ଦରୀ ସ୍ତ୍ରୀ, କବିତା ଏ ସବୁ ତୁଚ୍ଛ ଭାବିବ । ଜୀବନରେ ଏକମାତ୍ର କୃଷ୍ଣ ଭଜନରେ ନବଧା ଭକ୍ତି ସାଧନ କରି ଶେଷସିଦ୍ଧାନ୍ତ କାନ୍ତଭକ୍ତି ବା ଜୀବପରମ ମିଳନ—ଭଗବାନଙ୍କ ସହିତ ଏକୀଭୂତ ହେବାର ସାଧନାକୁ ଶ୍ରେଷ୍ଠ ବୋଲି କହୁଥିଲେ । ସେ କହୁଥିଲେ କଳିହତ ଜୀବ ଉଦ୍ଧାରର ଏକମାତ୍ର ଉପାୟ—ଅହରହ ହରିନାମ ଶ୍ରବଣ, କୀର୍ତ୍ତନ ଓ ମନନ । ଜୀବମୁକ୍ତିର ଅନ୍ୟ ଉପାୟ ନାହିଁ । ଏହାର ଉପାୟସ୍ୱରୂପ ସେ କହୁଥିଲେ ସାଧକ ତୃଣଠାରୁ ନିଜକୁ ହୀନ ଭାବିବ । ଜୀବଠାରେ କୃଷ୍ଣ ଅଧିଷ୍ଠାନ ରହିଛି ବୋଲି ସେ ବ୍ରାହ୍ମଣ, କୁକ୍କୁର, ଚଣ୍ଡାଳ ଏବଂ ନୀଚ ଲୋକଙ୍କୁ ସମ୍ମାନ କରି ନିରଭିମାନ ହେବ ।

"ତୃଣାଦପି ସୁନୀଚେନ, ତରୋରିବ ସହିଷ୍ଣୁନା ।
ଅମାନିନା ମାନଦେନ କୀର୍ତ୍ତନୀୟଂ ସଦା ହରିଃ ।।"

ମହାପ୍ରଭୁଙ୍କ ମାତୃଦତ୍ତ ନାମ ନିମାଇଁ । ଗୁରୁଦତ୍ତ ନାମ ଶ୍ରୀକୃଷ୍ଣଚୈତନ୍ୟ ଥିଲା । ନବଦ୍ୱୀପରେ ତାଙ୍କର ବାପା ଶ୍ରୀ ଜଗନ୍ନାଥ ମିଶ୍ର ବାସ କରୁଥିଲେ । ତାଙ୍କ ମା'ଙ୍କ ନାମ ଶଚୀ ଦେବୀ ଓ ସ୍ତ୍ରୀଙ୍କ ନାମ ବିଷ୍ଣୁପ୍ରିୟା । ସେ ୨୪ ବର୍ଷ ବୟସରେ ମାଆଙ୍କ ଅନୁମତି ନେଇ ସନ୍ନ୍ୟାସ ଗ୍ରହଣ କରିଥିଲେ । ତାଙ୍କର ପିତୃପୁରୁଷମାନେ ଉତ୍କଳ ରାଜାଙ୍କ ଅତ୍ୟାଚାରରେ ଉତ୍କଳରୁ ପଳାଇ ସିଲହଟ ଜିଲ୍ଲାରେ ବାସ କରୁଥିଲେ । ଶ୍ରୀ ଜଗନ୍ନାଥ ମିଶ୍ର ବଙ୍ଗର ନବଦ୍ୱୀପକୁ ସେଠାରୁ ଆସିଥିଲେ ।

———

Digitized by srujan ka@gmail.com



# ଅତିବଡ଼ୀ ଜଗନ୍ନାଥ ଦାସ

ଅଧ୍ୟାପକ ଡକ୍‌ଟର କାହ୍ନୁଚରଣ ମିଶ୍ର
ଏମ୍. ଏ., ପି. ଏଚ୍. ଡ଼ି.

ଓଡ଼ିଆ ଭାଷାରେ ରଚିତ 'ଶ୍ରୀମଦ୍ ଭାଗବତ' ଓଡ଼ିଆ ଜାତିର ସର୍ବଶ୍ରେଷ୍ଠ ଧର୍ମଗ୍ରନ୍ଥ । ଏହି ଗ୍ରନ୍ଥ ଅବଲମ୍ବନରେ ହିଁ ଓଡ଼ିଆ ଜାତି, ଭାଷା ଓ ଦେଶର ପ୍ରାଣ ପ୍ରତିଷ୍ଠା ହୋଇଅଛି । ଇତିହାସ ଅନୁଧ୍ୟାନ କଲେ ଜଣାଯାଏ ଯେ, ପାଶ୍ଚାତ୍ୟଶିକ୍ଷା ଓ ଧର୍ମ ଏ ଦେଶକୁ ବିଶେଷ ଭାବରେ ପ୍ରଭାବିତ ନ କରିବା ମୂଳରେ ଥିଲା ଶ୍ରୀମଦ୍ ଭାଗବତ ।

Digitized by srujan ka@gmail.com

ସେହିଭଳି ଏକ ଅମୂଲ୍ୟ ଗ୍ରନ୍ଥ ରଚନା କରି ସେହିଁ ମନୀଷୀ ଅକ୍ଷୟ କୀର୍ତ୍ତି ରଖିଯାଇଛନ୍ତି, ସେ ହେଉଛନ୍ତି ପ୍ରାତଃସ୍ମରଣୀୟ ଅତିବଡ଼ୀ ଜଗନ୍ନାଥ ଦାସ ।

ପୁଣ୍ୟପୀଠ ନୀଳାଚଳ ଧାମର ଅନତି ଦୂରରେ ଅବସ୍ଥିତ କପିଳେଶ୍ୱରପୁର ଶାସନର ଏକ ପବିତ୍ର କୁଳୀନବ୍ରାହ୍ମଣ ପରିବାରରେ ଜଗନ୍ନାଥ ଦାସଙ୍କର ଆବିର୍ଭାବ ହୋଇଥିଲା । ପିତା ଭଗବାନ ଦାସ ଓ ମାତା ପଦ୍ମାବତୀଙ୍କ ଅଗାଧ ଭକ୍ତି ବଳରେ ଜଗତର ନାଥ— ଜଗନ୍ନାଥ ଉକ୍ତ ପୁତ୍ରରତ୍ନ ତାଙ୍କୁ ଦାନ କରିଥିବା ବିଶ୍ୱାସରେ ନବଜାତ ସନ୍ତାନର ନାମ ରଖାଯାଇଥିଲା 'ଜଗନ୍ନାଥ' । ତାଙ୍କର ଜନ୍ମ ଖ୍ରୀ: ଅ: ୧୪୯୦ ଭାଦ୍ର ଶ୍ରୀ ରାଧାଷ୍ଟମୀରେ ହୋଇଥିବା ବହୁ ଐତିହାସିକ ମତବ୍ୟକ୍ତ କରନ୍ତି

ତୁଳସୀ ଦୁଇପତ୍ରରୁ ବାସିଲାପରି ଜଗନ୍ନାଥ ଦାସଙ୍କ ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ତାଙ୍କ ବାଲ୍ୟାବସ୍ଥାରୁ ହିଁ ମିଳିଥିଲା । ମାତ୍ର ସେ ଅଳ୍ପବୟସରେ ଓଡ଼ିଆ ଏବଂ ସଂସ୍କୃତ ଭାଷାରେ ବ୍ୟୁତ୍ପତ୍ତି ଲାଭକରି ଜଣେ ଶାସ୍ତ୍ରଜ୍ଞ ପଣ୍ଡିତ ହୋଇ ପାରିଥିଲେ । ଉପଯୁକ୍ତ ଗୁରୁ ଲାଭ କରି ସେ ବେଦ, ବେଦାନ୍ତ, ନ୍ୟାୟ, ତର୍କ ତଥା ଅନ୍ୟାନ୍ୟ ପୁରାଣ ଶାସ୍ତ୍ରମାନଙ୍କରେ ମଧ୍ୟ ପାଣ୍ଡିତ୍ୟ ଅର୍ଜନ କରିପାରିଥିଲେ । ସମୟେ ସମୟେ ସେ ନିଜ ଯୋଗ୍ୟତାବଳରେ ବେଦ, ଉପନିଷଦର ଅତ୍ୟନ୍ତ ନିଗୂଢ଼ ତଥ୍ୟମାନଙ୍କୁ ଅତି ସରଳ ଓ ପ୍ରାଞ୍ଜଳଭାବରେ ବୁଝାଇ ଦେଇ ନିଜର ସହପାଠୀ, ଅନ୍ୟାନ୍ୟ ପଣ୍ଡିତମଣ୍ଡଳୀ ଏପରିକି ନିଜର ଗୁରୁଜନମାନଙ୍କୁ ଚମତ୍କୃତ କରି ଦେଉଥିଲେ । ମାତ୍ର ଷୋଳ ବର୍ଷ ବୟସ ମଧ୍ୟରେ ସେ ସଂସ୍କୃତ ଭାଷାରେ ଏକ ଅଭିନବ 'ଭାଷ୍ୟ' ରଚନା କରି ନିଜ ପାଣ୍ଡିତ୍ୟର ପରିଚୟ ଦେଇଯାଇଛନ୍ତି । ଏହିଭଳି ତାଙ୍କର ଅଲୌକିକ ପ୍ରତିଭା, ଅନୁପମ

Digitized by srujan ka@gmail.com

ସୌନ୍ଦର୍ଯ୍ୟ, ଶାନ୍ତସ୍ୱଭାବ, ବଳିଷ୍ଠବ୍ୟକ୍ତିତ୍ୱ, ନିରବଚ୍ଛିନ୍ନ ସାଧନା, ଗଭୀର ଈଶ୍ୱରଭକ୍ତି ଲକ୍ଷ୍ୟକରି ସେ ସମୟରେ ଲୋକେ ମନେକରୁଥିଲେ ସତେ ଯେପରି ସେ 'ଜଗନ୍ନାଥ ଧର୍ମ' ପ୍ରତିଷ୍ଠା କରିବାପାଇଁ ଈଶ୍ୱରଙ୍କ ଦ୍ୱାରା ପ୍ରେରିତ ।

ତାଙ୍କୁ ଯେତେବେଳେ ଅଠର ବର୍ଷ ବୟସ ସେତେବେଳେ ତାଙ୍କ ପିତା ତାଙ୍କୁ ବିବାହ ଦେବାପାଇଁ ଇଚ୍ଛା କରିଥିଲେ; କିନ୍ତୁ ଜଗନ୍ନାଥ ଚିର ସଂଯମୀ ହେବା ଉଦ୍ଦେଶ୍ୟରେ ସନ୍ନ୍ୟାସ ଧର୍ମ ଅବଲମ୍ବନ କରି ଚିରକୁମାର ବ୍ରତ ପାଳନ କଲେ । ଏହାର କିଛିକାଳ ପରେ ଭଗବାନ ଦାସଙ୍କର ମୃତ୍ୟୁ ଘଟିବାରୁ ମା'ଙ୍କର ଭରଣ ପୋଷଣର ଦାୟିତ୍ୱ ଜଗନ୍ନାଥଙ୍କ ଉପରେ ପଡ଼ିଲା । ସେ ପ୍ରତିଦିନ ଜଗନ୍ନାଥଙ୍କ ମନ୍ଦିରରେ ପୁରାଣ ପାଠକରି ଓ ବଟ ଗଣେଶଙ୍କ ପାଖରେ ଶାସ୍ତ୍ର ଆଲୋଚନା କରି କୌଣସିମତେ ସମୟ ଅତିବାହିତ କରିବାକୁ ଲାଗିଲେ । ସଂସ୍କୃତ ଭାଗବତକୁ ଓଡ଼ିଆ ଭାଷାରେ ପ୍ରକାଶ କରିବା ଏକ ଅଭିନବ ଉପାୟରେ ତାଙ୍କ ମନକୁ ସ୍ପର୍ଶ କରିଥିଲା ।

ସେତେବେଳେ ଶ୍ରୀମନ୍ଦିରରେ ସଂସ୍କୃତ ଭାଗବତ ପାଠ କରା-ଯାଉଥିବାବେଳେ ପୁରାଣ ପଣ୍ଡାମାନେ ନିରକ୍ଷର ଶ୍ରୋତାମାନଙ୍କଠାରୁ ବହୁ ଅର୍ଥ ଶୋଷଣ କରୁଥିଲେ । ଭଗବତ୍ ଜ୍ଞାନ ଲୋଭରେ ଜଗନ୍ନାଥଙ୍କର ବିଧବା ମାତା ପଦ୍ମାବତୀ ଅନେକବାର ଅର୍ଥ ଦେଇ ନ ପାରି ପଣ୍ଡାମାନଙ୍କଦ୍ୱାରା ଅପମାନିତା ହୋଇଥିଲେ । ସେ ସେଦିନଠାରୁ ଭାଗବତ ବାଣୀ ଶୁଣିବାରୁ ବଞ୍ଚିତା ହୋଇ ମନଦୁଃଖରେ ଫେରିଆସି ପୁତ୍ର ଜଗନ୍ନାଥଙ୍କୁ କାନ୍ଦି କାନ୍ଦି ନିଜର ଦୁରବସ୍ଥା ଜଣାଇଲେ ଏବଂ ଓଡ଼ିଆ ଭାଷାରେ ଭାଗବତ ରଚନା କଲେ କିପରି

Digitized by srujan ka@gmail.com

ପୁରାଣପଣ୍ଡାମାନଙ୍କର ଗର୍ବ ଖର୍ବ ହୁଅନ୍ତା ତାହା ପ୍ରକାଶ କଲେ । ସେହିଦିନ ଜଗନ୍ନାଥଙ୍କ ଭାଗ୍ୟ ରବି ଉଦୟ ହୋଇଥିଲା । ମା'ଙ୍କ ଅପମାନର ପ୍ରତିଶୋଧ ଓ ପୁରାଣ ପଣ୍ଡାମାନଙ୍କ ଅହଙ୍କାର ଧ୍ୱଂସ କରିବା ଅଭିପ୍ରାୟରେ ସେ ଓଡ଼ିଆ ଭାଗବତ ରଚନା କରିବାକୁ ଦୃଢ଼ପରିକର ହେଲେ । ମୂଳ ସଂସ୍କୃତ ଭାଗବତକୁ ମନ୍ଥନ କରି ସେଥିରୁ ସାର ସଂଗ୍ରହ କରି ସେ ସାବଲୀଳ ଭାଷା ଓ ଭଙ୍ଗୀରେ ଓଡ଼ିଆ ଭାଗବତ ଲେଖିବାକୁ ଆରମ୍ଭ କଲେ । ଏଥିପାଇଁ ତାଙ୍କୁ ସେ ସମୟର ପୁରାଣପଣ୍ଡାମାନଙ୍କର କଟୁ ସମାଲୋଚନା, ଜାତିରୁ ବହିଷ୍କାର ଏବଂ ମନ୍ଦିରଦ୍ୱାର ନିଷେଧ ଆଦି ଅନେକ ପ୍ରକାର ଅତ୍ୟାଚାରର ସମ୍ମୁଖୀନ ହେବାକୁ ହୋଇଥିଲା । ଏପରିକି ତଦାନୀନ୍ତନ ଓଡ଼ିଶାର ଗଜପତିରାଜା ପ୍ରତାପରୁଦ୍ରଙ୍କ ନିକଟରେ ତାଙ୍କ ବିରୁଦ୍ଧରେ ଅଭିଯୋଗମାନ ଅଣାଯାଇଥିଲା । କିନ୍ତୁ ଭକ୍ତଶ୍ରେଷ୍ଠ ସମସ୍ତ ବାଧା ବିଘ୍ନକୁ ଅମାୟିକ ହୃଦୟରେ ସହ୍ୟ କରି ସ୍ୱ-କର୍ତ୍ତବ୍ୟ ପଥରେ ଅଟଳ ରହିଲେ । ସମୁଦାୟ ଭାଗବତ ଗ୍ରନ୍ଥ ରଚନା ସରିବାପରେ ଏବଂ ଜାତି, ଧର୍ମ, ବର୍ଣ୍ଣ, ନିର୍ବିଶେଷରେ ସମସ୍ତେ ଓଡ଼ିଆ ଭାଗବତ ରସ ଆସ୍ୱାଦନ କଲାପରେ ଜଗନ୍ନାଥଙ୍କ ମହିମା, ଦିଗ ବିଦିଗକୁ ବ୍ୟାପିଗଲା । ସମଗ୍ର ଓଡ଼ିଆ ଜାତି ଜଗନ୍ନାଥଙ୍କ ମହତ୍ତ୍ୱ ବୁଝି ତାଙ୍କ ଭାଗବତକୁ ଘରେ ଘରେ ପୁରେ ପୁରେ ପୂଜାପାଠ କରିବାକୁ ଲାଗିଲେ । ପ୍ରତିଦିନ ସନ୍ଧ୍ୟାବେଳକୁ ପୁରପଲ୍ଲୀ ଓ ସହର ବଜାରର ପ୍ରତ୍ୟେକ ଘରୁ ଓଡ଼ିଆ ଭାଗବତ ବାଣୀ ବହୁ କଣ୍ଠରେ ଉଚ୍ଚାରିତ ହେବାକୁ ଲାଗିଲା । ପ୍ରତ୍ୟେକ ଅଧ୍ୟାୟ ଶେଷରେ ସମବେତ କଣ୍ଠ ସ୍ୱରରେ ଦିଗବିଦିଗ ମୁଖରିତ କରି ଝଙ୍କୃତ ହେଲା—

"କହଇ ଦାସ ଜଗନ୍ନାଥ      ଭାଷା ପ୍ରବନ୍ଧେ ଭାଗବତ ।"

Digitized by srujan ka@gmail.com

ଜଗନ୍ନାଥ ଦାସଙ୍କ ଜୀବନକାଳ ମଧ୍ୟରେ ବୈଷ୍ଣବ ଧର୍ମର ପ୍ରବର୍ତ୍ତକ ଶ୍ରୀଚୈତନ୍ୟ ଓଡ଼ିଶା ଆଗମନ କରିଥିଲେ । କଟିଗଣେଶଙ୍କ ନିକଟରେ ଭାଗବତ ଦଶମସ୍କନ୍ଧର ବ୍ରହ୍ମ ସ୍ତୁତି ବ୍ୟାଖ୍ୟା କରୁଥିବା-ବେଳେ ଶ୍ରୀ ଚୈତନ୍ୟ ତାଙ୍କୁ ସେଠାରେ ଭେଟିଥିଲେ । ମଣିକାଞ୍ଚନର ସଂଯୋଗ ହେଲାପରି ଜଗନ୍ନାଥ ଓ ଶ୍ରୀ ଚୈତନ୍ୟଙ୍କ ମିଳନ ଏକ ଅଭିନବ ଦୃଶ୍ୟ ସୃଷ୍ଟି କରିଥିଲା । ଶ୍ରୀ ଚୈତନ୍ୟ ଜଗନ୍ନାଥଙ୍କଠାରେ ସାତ୍ତ୍ୱିକ ପୁରୁଷର ଲକ୍ଷଣମାନ ଦେଖି ସେ ପ୍ରେମ-ଭକ୍ତି ରସରେ ଗଦ୍‌ଗଦ୍ ହୋଇ ତାଙ୍କୁ ଗମ୍ଭୀରଭାବରେ ଆଲିଙ୍ଗନ କରିଥିଲେ ଏବଂ ତାଙ୍କଠାରେ ଅସାଧାରଣ ପାଣ୍ଡିତ୍ୟ, ଈଶ୍ୱର ଭକ୍ତି, ସଂଯମ ଏବଂ ନିରହଙ୍କାର ଭାବ ଦେଖି ତାଙ୍କୁ 'ଅତିବଡ଼ୀ' ଉପାଧିରେ ଭୂଷିତ କରିଥିଲେ ।

ଅତିବଡ଼ୀ ଜଗନ୍ନାଥ ଦାସ ଯୁଗାବତାର ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଓଡ଼ିଆ ଶ୍ରୀମଦ୍‌ଭାଗବତଗ୍ରନ୍ଥ ରଚନା କରି ସେ ଓଡ଼ିଆ ଭାଷାର ମୂଳଦୁଆ ସ୍ଥାପନ କରିଯାଇଅଛନ୍ତି । ସେ କେବଳ ଜ୍ଞାନୀ ଓ ପଣ୍ଡିତ ନ ଥିଲେ । ସେ ଥିଲେ ଏକାଧାରରେ ଭକ୍ତ, ସାଧକ, ଯୋଗୀ ଓ ବଶିଷ୍ଟ ଆତ୍ମାନୁଭବୀ । ଜାଗତିକ ସତ୍ୟ, ମିଥ୍ୟା, ସ୍ତ୍ରୀ ପୁରୁଷ ଭେଦଭାବ ଜ୍ଞାନ ତାଙ୍କଠାରେ ପରାସ୍ତ ମାନି-ଥିଲା । ତାଙ୍କର ପବିତ୍ର ଆତ୍ମା ଖ୍ରୀ:ଅ: ୧୫୫୨ ମାଘସପ୍ତମୀ ତିଥିରେ ବାଷଠି ବର୍ଷରେ ନଶ୍ୱର ଦେହ ତ୍ୟାଗ କରି ଭଗବାନଙ୍କଠାରେ ଲୀନ ହୋଇ ଯାଇଥିଲା । କିନ୍ତୁ ଓଡ଼ିଆ ଭାଷା ଓ ଜାତି ଥିବାଯାଏ ଜଗନ୍ନାଥ ଦାସ ଏ ଜାତିର ଚିର ନମସ୍ୟ ହୋଇ ରହିଥିବେ ।

ବର୍ତ୍ତମାନ ସୁଦ୍ଧା ମିଳିଥିବା ପ୍ରମାଣରୁ ଦେଖାଯାଏ ଯେ ଜଗନ୍ନାଥ ଦାସ ଓଡ଼ିଶାର ତୃତୀୟ ପୁରାଣ ଲେଖକ । ପ୍ରଥମ ସାରଳା ଦାସ, ଦ୍ୱିତୀୟ ବଳରାମ ଦାସ ।

Digitized by srujan ka@gmail.com

ଜଗନ୍ନାଥ ଦାସ ନିମ୍ନଲିଖିତ ଗ୍ରନ୍ଥଗୁଡ଼ିକ ରଚନା କରିଥିବାର ପ୍ରମାଣମିଳେ । ସଂସ୍କୃତରେ (୧) କୃଷ୍ଣଭକ୍ତି କଲ୍ପଲତା (୨) କୃଷ୍ଣଭକ୍ତି କଲ୍ପଲତା ଫଳ (୩) ନିତ୍ୟ ଗୁପ୍ତମାଳା (୪) ଉପାସନା ଶତକ (୫) ପ୍ରେମସୁଧାନିଧି (୬) ନିତ୍ୟାଗ୍ରହ (୭) ଦୀକ୍ଷାସତ୍ତ୍ୱତୋପାସନା ବିଧିଃ (୮) ମାଳାଦ୍ଧ ଶତକଂ (୯) ଜଗନ୍ନାଥ ଚରିତାମ୍ଭୋଧି ସରଣୀ ।

ଓଡ଼ିଆରେ ଭାଗବତ, ଦୀକ୍ଷା ସମ୍ବାଦ, ଦଣ୍ଡି ଖେଳ, ବୋଲେଇଁ ଗୀତ, ଗୁପ୍ତ ଭାଗବତ, ଦାରୁବ୍ରହ୍ମ ଗୀତା, ଗଜସ୍ତୁତି, ଅର୍ଥ କୋଇଲି, ମୃଗୁଣୀ ସ୍ତୁତି, ତୁଳାଭିଣା, ଇତିହାସ ପୁରାଣ, ପାଷାଣ୍ଡ ଦଳନ, ମହାଭାରତ, ମନଶିକ୍ଷା ପ୍ରଭୃତି ଲେଖିଛନ୍ତି ।

ଭାଗବତ—ଜଗନ୍ନାଥ ଦାସଙ୍କ ଭାଗବତ ସଂସ୍କୃତ ଭାଗବତର ଆକ୍ଷରିକ ଅନୁବାଦ ନୁହେଁ । ମୂଳ ଗ୍ରନ୍ଥର ଶ୍ଲୋକ ଭାବକୁ ଗ୍ରହଣ କରି ଜଗନ୍ନାଥ ଦାସ ନିଜର ଭାଗବତ ରଚନା କରି ଯାଇଛନ୍ତି । ବହୁ ସ୍ଥଳରେ ମୂଳ ଗ୍ରନ୍ଥ ଓ ଦାସଙ୍କ ଗ୍ରନ୍ଥ ଭିତରେ ବିଷୟ ସଂସ୍ଥାପନ ଓ ଭାବପ୍ରକାଶରେ ପ୍ରଭେଦ ଦେଖାଯାଏ ।

## ଜଗନ୍ନାଥ ଦାସଙ୍କ ବାଣୀ

### ସଂକଳୟିତା—ଶ୍ରୀ ନିମାଇଁ ଚରଣ ଦାସ

ଦାସଙ୍କ ଭାଗବତରୁ କେତୋଟି ସର୍ବଜନପ୍ରିୟ ପଦ ନିମ୍ନରେ ଦିଆଗଲା ।

ସୁତ ତନୟ ଦାରା ଦାସ । ଏ ସର୍ବ ବନ୍ଧନ ପ୍ରକାଶ
ଏହାଙ୍କ ସଙ୍ଗେ ବନ୍ଧ ହୋଇ । ପୋଷଇ ଦୁଃଖ ଭାର ବହି
ଏ ପୁଣି ଯାନ୍ତି କର୍ମ ପଥେ । ଶୋକ ସନ୍ତାପ ଦେଇ ଚିତ୍ତେ
ଏହାଙ୍କ ସଙ୍ଗେ ଲଭ ଏହି । ଏ ଭାବ ମୂଢ଼ ନ ଜାଣଇ

Digitized by srujan ka@gmail.com

ପୁତ୍ର କଳତ୍ର ଦାସୀ ଦାସେ । ଏହାଙ୍କୁ ପୋଷି ଦେହ ଆଣେ
ଦେହର ସଙ୍ଗେ ଏ ରହନ୍ତି । ମରଣେ କେହି ନ ଗମନ୍ତି
ଏ ପୁତ୍ର ଦାର ବନ୍ଧୁ ସଙ୍ଗ । ଯେସନେ ସମୁଦ୍ର ତରଙ୍ଗ
ପଥିକ ଯେସନ୍ତେ ବୃକ୍ଷ ତଳେ । ଶ୍ରମେ ବସନ୍ତି ଏକ ମେଳେ
ଶ୍ରମ ସରିଲେ ଯେଝା ମତେ । ଚଳନ୍ତି ବୃକ୍ଷ ଛାଡ଼ି ଏତେ
ଯେସନେ ପ୍ରାଣୀ ନିଦ୍ରାଗତେ । ସମ୍ପଦ ଦେଖେ ସ୍ୱପ୍ନ ଗତେ
ଏହି ପ୍ରକାରେ ଗୃହ ବାସ । ନକର ଏଥିରେ ବିଶ୍ୱାସ

× × ×

ନାରୀ ସଙ୍ଗମ ଋତୁମତେ । କେବଳ ପୁତ୍ର ଜନ୍ମ ଅର୍ଥେ
ଅନ୍ୟଥା ରତି ସୁଖମତେ । ପ୍ରସଙ୍ଗ ନ କର ଏକାନ୍ତେ
ନାରୀ ସଙ୍ଗମେ ଯାର ମନ । ମୋତେ ସେ ହୁଏ ହତଜ୍ଞାନ
ତାର ଜୀବନ ଉଦ୍ଧରଣେ । କେ ପାରେ ବିନା ନାରାୟଣେ
କାମିନୀ ସଙ୍ଗେ କଲେ ଭାବ । କେବଳ ଦୁଃଖ ମାତ୍ର ଲାଭ
ସ୍ତ୍ରୀ ସଙ୍ଗ ସ୍ତ୍ରୀ ସଙ୍ଗୀଙ୍କ ସଙ୍ଗ । ଦୂରେ କରିବ ପରିତ୍ୟାଗ
ପାପର ମଧ୍ୟରେ ପ୍ରମାଦ । ସ୍ତ୍ରୀ ଗର୍ଭିଣୀ ଶିଶୁ ବଧ
ଏ ତିନ କର୍ମ ଯେ କରନ୍ତି । ଜୀବନ ଥାଉଁ ସେ ମରନ୍ତି
ଜୀବନ ଛାଡ଼ିବାର ବେଳେ । ନିନ୍ଦିତ ବୋଲନ୍ତି ସକଳେ
ଇହଲୋକରେ ଅପଯଶ । ମଲେ ନରକେ ପରବେଶ
ଯେ ନାରୀ ଧନଲୋଭପାଇଁ । ଧନେ ସୁରତ ଦାନ ଦେଇ ॥
ସେ ନାରୀ ଗଣିକା ସଦୃଶ । ତାକୁ ରମନ୍ତି କୁପୁରୁଷ
ଧନ ପ୍ରଧାନଟି ଏ ରସ । ଏଥିରେ ନାହିଁ ପ୍ରେମ ଲେଶ ॥

× × ×

ଅର୍ଜନ ସାଧାନ ସଞ୍ଚୟ । ଧନ ସେ ସର୍ବ ଦୁଃଖମୟ ॥
ତଉର୍ଯ୍ୟ ମିଥ୍ୟା ହିଂସା ଦମ୍ଭ । ବଇର ଛନ୍ଦ ମଦଭାବ ॥



Digitized by srujan ka@gmail.com

କ୍ରୋଧ କୁଟିଳ ଅବିଶ୍ବାସ । ଶ୍ରଦ୍ଧା ବ୍ୟସନ ଯେ ବିଶେଷ ॥
ଏ ପଞ୍ଚଦଶ ଦୋଷ ଧନେ । ଏଣୁ ପଣ୍ଡିତେ ସାଧୁଜନେ ॥
ଧନ ସଞ୍ଚୟ ଦୂର କର । ନିୟତ କର୍ମକୁ ଆଦର ॥
ମରଣ ପଥ ହେତୁ ଧନ । ତା'ର ଅର୍ଜ୍ଜନେ ନିତ୍ୟ ମନ ॥
ଅନେକ ଦୁଃଖେ ତା ସଞ୍ଚଇ । ନିଶି ଦିବସେ ମନ ଦେଇ ॥
ନରତେ ହୃଦୟ ନିର୍ଦ୍ଦୟ । ଏଣୁଟି ଧନ ଦୁଃଖମୟ ॥
ଦୁଃଖେ ସଞ୍ଚିତ ଯେତେଧନ । ସେ ନୁହେଁ ସୁଖେ ପ୍ରୟୋଜନ ॥
ଧନ ଅର୍ଜନେ ଯା'ର ଆଶ । ନିରତେ ଦୁଃଖ ସୁଖ ପ୍ରାସ ॥
ଧନ ସଞ୍ଚଇ ଯାଏ ଦିନ । ନ କରେ ସୁଖ ଭୋଗ ଦାନ ॥
ନିରନ୍ତେ କରଇ ସଞ୍ଚୟ । ପାପୀ କୃପଣ ଦୁରାଶୟ ॥
ତାହାର ଧନ ହରେ ଆନେ । ମଧୁ ସଞ୍ଚଇ ମାଛି ଯେହ୍ନେ ॥
ନ ଦେଇ ନ ଖାଇ ସଞ୍ଚଇ । ତାହାର ମୁଖେ ଅଗ୍ନି ଦେଇ ॥
ମଧୁ ଭକ୍ଷଇ ନେଇ ଆନ । ଏଣୁ ସେ ମୋର ଗୁରୁଜନ ॥
ମୋନାମନଗୁଣେଯେମୁଖେ । ଲୋଭେ ଯେ ଘରେ ଧନ ରଖେ ॥
ପାତ୍ରେ ନ କରେ ସମର୍ପଣ । କୁମତି କୁତ୍ସିତ କୃପଣ ॥
ଦୁଃଖକୁ ଦୁଃଖୀସେବୋଲଇ । ଉଭୟ ଲୋକେ ସୁଖ ନାହିଁ ॥
ସମ୍ପଦେ ବଢ଼େ ଅଭିମାନ । ଐଶ୍ବର୍ଯ୍ୟ ମଦରେ ମଗ୍ନ ॥
ଧନ ଅର୍ଜନେ ଧର୍ମ କର । ଧର୍ମେ ପ୍ରାପତ ନରହର ॥
ଦୁର୍ଜ୍ଜୟ ବିଷୟ ବାସନା । କେ କରି ପାରେ ତା ଖଣ୍ଡନା ॥
ଯହିଁ ଦୁରନ୍ତ ବହୁମଳ । ଅବଶ୍ୟ ଉପୁଜଇ କଳ ॥
ବୁଦ୍ଧି କି କରି ଆଗୁଆର । ପଣ୍ଡିତ ଜନଙ୍କ ବେଭାର ॥
ବିଶ୍ବାସଘାତକୀ ଯେ ନର । ତା ପାଦେ ନମସ୍କାର ମୋର ॥
ତା ଜନ୍ମ ଧନ୍ୟ ଏ ସଂସାରେ । ଯେ ରହେ ପର ଉପକାରେ

× × ×

Digitized by srujan ka@gmail.com

ଯେ ପିତାମାତା ନ ସେବନ୍ତି । ଅନ୍ୟାୟ କର୍ମ ଆଚରନ୍ତି ॥

× × ×

ଯେ ପୁଣ୍ୟ ଆପଣେ କରିବ । କେବେହେଁ ପରେ ନ କହିବ ॥

× × ×

ପ୍ରାଣୀଙ୍କ ହିତ ସାଧୁଜନ । ଯେ କରେ ଧନ୍ୟ ତା ଜୀବନ ॥
ପ୍ରାଣୀର ଭଲ ମନ୍ଦ ବାଣୀ । ମରଣ କାଳେ ତାହା ଜାଣି ॥
ଏ ଦେହ ଥିଲେ ସବୁପାଇ । ଜଳେ ଯେସନେ ଚନ୍ଦ୍ର ଛାଇ ॥
ସାତ୍ତ୍ୱିକ ପ୍ରାଣୀ ଯେବେ ମରେ । ସ୍ୱର୍ଗ ସମ୍ପଦ ଭୋଗ କରେ ॥
ଯେବେ ମରଇ ରଜୋଗୁଣୀ । ଏ ନର ଲୋକେ ତା ଭ୍ରମଣି ॥
ଯେ ପ୍ରାଣୀ ତମ ଗୁଣେ ମରେ । ମହାନରକେ ସେ ସଞ୍ଚରେ ॥
ଧନ୍ୟ ଜୀବନ ଏ ଜଗତେ । ଯେ ପ୍ରାଣ ଧରେ ପ୍ରାଣୀ ହିତେ ॥
ଧନ୍ୟ ଜୀବନ ଧନ୍ୟ ତାର । ଦୁର୍ଲ୍ଲଭ କର୍ମ ଏ ବୈଖାର ॥
ତ୍ରିଗୁଣରକ୍ଷୁ କରେ ଧରି । ମୃଗୀ ନଚ୍ଚଏ ନରହରି ॥
ବସ୍ତ୍ର ଭକତ ପ୍ରାଣୀଙ୍କର । ଜଗତେ ନାହିଁ ଆତ୍ମା ପର ॥
ଜୀବ ଅଜ୍ଞାନ ଭାବ ଦେଖ । ଦୁଃଖକୁ ମଣେ ମହା ସୁଖ ॥
ଗୃହୀ ସ୍ୱଭାବେ ପୁଣ୍ୟ କରି । ସ୍ୱର୍ଗେ ବସନ୍ତି ଦେହ ଧରି ॥
ଯାହାକୁ ମାରି ସୁଖ ଭୋଗେ । ସେ ତାକୁ ହିଂସେ ଅନ୍ତକାଳେ ॥
ଅମୃତ ବନସ୍ଥ ବଚନ । କହି ତୋଷିବ ପ୍ରାଣୀମନ ॥

ଆପଣା ଅର୍ଜିଲ କର୍ମ ଆପଣେ ଭୁଞ୍ଜଇ
ବିଧାତା ବଚନେ କର୍ମ ଅନ୍ୟଥା ନୁହଇ

———

Digitized by srujan ka@gmail.com

# ବଳରାମ ଦାସ

### ଅଧ୍ୟାପକ ବୈଷ୍ଣବଚରଣ ସାମଲ

ଭକ୍ତିଭାବ-ପ୍ରଣୋଦିତ ଯୋଗପଣ୍ଡିତ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ସିଦ୍ଧସାଧକ ସାହିତ୍ୟିକ ବଳରାମ ଦାସଙ୍କର ସ୍ଥାନ ସ୍ୱତନ୍ତ୍ର । ପଞ୍ଚସଖା ମଧ୍ୟରେ ବୟୋଜ୍ୟେଷ୍ଠ ଏବଂ ଜ୍ଞାନମାର୍ଗର ସାର୍ଥକ ସାଧକଭାବରେ ସ୍ୱୀକୃତ ବଳରାମ ଦାସ ଯେ କେବଳ ଓଡ଼ିଶାର ସିଦ୍ଧ ସାଧକମାନଙ୍କଦ୍ୱାରା ସମ୍ମାନିତ ହୋଇଥିଲେ ତାହା ନୁହେଁ, ତତ୍‌କାଳୀନ ଭିନ୍ନଧର୍ମମତାବଲମ୍ବୀ ଶ୍ରୀଚୈତନ୍ୟଙ୍କଦ୍ୱାରା ମଧ୍ୟ ଅଭିନନ୍ଦିତ ହୋଇଥିଲେ ବୋଲି 'ଚୈତନ୍ୟଚରିତାମୃତ' ଏବଂ 'ଚୈତନ୍ୟ ଭାଗବତ'ରେ ବର୍ଣ୍ଣିତ ହୋଇଅଛି । ସାହିତ୍ୟକୃତି ଏବଂ କୀର୍ତ୍ତିରେ ବଳରାମ କୀର୍ତ୍ତିଷ୍ମାନ୍ । ସାରଳାଦାସଙ୍କ 'ମହାଭାରତ' ଓ ଜଗନ୍ନାଥ ଦାସଙ୍କ 'ଭାଗବତ' ପରି ବଳରାମ ଦାସଙ୍କ 'ଜଗମୋହନ ରାମାୟଣ' ବା 'ଦାଣ୍ଡୀ ରାମାୟଣ' ଓଡ଼ିଶାରେ ସର୍ବତ୍ର ସୁପରିଚିତ, ମାତ୍ର ବଳରାମଦାସଙ୍କର ରାମାୟଣ ସାରଳାଦାସଙ୍କ ମହାଭାରତ-ମହାସମୁଦ୍ରର ଉତ୍ତାଳ ତରଙ୍ଗମାଳା ନୁହେ ବା ଜଗନ୍ନାଥ ଦାସଙ୍କର ଭାଗବତର ତତ୍ତ୍ୱଗମ୍ଭୀର ବାଣୀ ମଧ୍ୟ ନୁହେଁ । ଏଥିରେ ଅଛି ସୁକୁମାର କବିତ୍ୱର ଲୀଳାୟିତ ତରଙ୍ଗମାଳା । ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଏହାର ସ୍ଥାନ ତେଣୁ ସ୍ୱତନ୍ତ୍ର । ତାମିଲ

Digitized by srujan ka@gmail.com

ଭାଷାରେ 'କମ୍ବନ ରାମାୟଣ' ଏବଂ ହିନ୍ଦୀରେ ତୁଳସୀଦାସଙ୍କ 'ରାମଚରିତ-ମାନସ' ପରି ଓଡ଼ିଆରେ ବଳରାମଦାସଙ୍କ ରାମାୟଣ ସର୍ବଜନାଦୃତ । ସମଗ୍ର ଉତ୍ତରଭାରତରେ ପ୍ରାନ୍ତୀୟ ଭାଷାରେ ରାମାୟଣ ରଚନା କରିବାରେ ପ୍ରଥମ ସାର୍ଥକ ସ୍ରଷ୍ଟା ହେଉଛନ୍ତି ଏହି ପ୍ରଥିତଯଶା କବି ବଳରାମ ।

## ବଳରାମ ଦାସଙ୍କ ଜନ୍ମ—

ଓଡ଼ିଆ ରାମାୟଣର ପ୍ରଥମ ସ୍ରଷ୍ଟା ଏବଂ ମଧ୍ୟଯୁଗୀୟ ସିଦ୍ଧ ପରମ୍ପରାର ଯୋଗ୍ୟ ଦାୟାଦ ବଳରାମଦାସଙ୍କର ଜନ୍ମ ଏବଂ ବଂଶାନୁଚରିତ ସମ୍ବନ୍ଧରେ ସଠିକ ଐତିହାସିକ ତଥ୍ୟ ମିଳେ ନାହିଁ । ଓଡ଼ିଆ ସାହିତ୍ୟର ଇତିହାସ ଲେଖକମାନେ ତେଣୁ ଏ ସମ୍ବନ୍ଧରେ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇ ପାରି ନାହାନ୍ତି । ତେବେ ସେ ଯାହା ହେଉନା କାହିଁକି ଅଚ୍ୟୁତାନନ୍ଦଦାସଙ୍କ 'ଉଦୟକାହାଣୀ'ର ବର୍ଣ୍ଣନାନୁସାରେ ବଳରାମଦାସ ୧୪୮୪ ଖ୍ରୀ: ଅ: ରେ ଜନ୍ମଗ୍ରହଣ କରିଥିଲେ ବୋଲି ଅନୁମାନ କରାଯାଇପାରେ । ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଓଡ଼ିଆ ସାହିତ୍ୟର ଇତିହାସଗ୍ରନ୍ଥରେ ଏହି ତଥ୍ୟ ପ୍ରଦାନ କରିଛନ୍ତି ଏବଂ ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତି ଓଡ଼ିଆ ସାହିତ୍ୟର ମଧ୍ୟ-ପର୍ବରେ ମଧ୍ୟ ଏହି ମତକୁ ସ୍ୱୀକାର କରିଛନ୍ତି । ବଳରାମ ଦାସଙ୍କ ପିତାଙ୍କ ନାମ ସୋମନାଥ ମହାପାତ୍ର ଏବଂ ମାତାଙ୍କ ନାମ ଯମୁନାଦେବୀ । ଲକ୍ଷ୍ମଣଗୁପ୍ତ ଗୀତାରେ ବଳରାମ ଉଲ୍ଲେଖ କରିଛନ୍ତି ଯେ, ତାଙ୍କର ପିତା ପ୍ରତାପରୁଦ୍ରଦେବଙ୍କର ଜଣେ ପାତ୍ର ଥିଲେ । ଭଗବଦ୍‌ଗୀତାରେ ସେ ଲେଖିଛନ୍ତି—"ମହାପାତ୍ର ସୋମନାଥ ତନୟେ,

ବଳରାମ ଦାସ ଗୀତାରେ କହେ ।"

Digitized by srujan ka@gmail.com

ଏହାପରେ ସେ ତାଙ୍କର ରାମାୟଣର ଲଙ୍କାକାଣ୍ଡରେ ଲେଖିଛନ୍ତି—

"ସୋମନାଥ ମହାପାତ୍ର କୋଳେ ହୋଇଲି ସମ୍ଭୂତ
ସହୁଁ ପିତା ମୋର ବଡ଼ ନରେ ଭକତ ।
ତେଣୁ ଜଗନ୍ନାଥ ମୋତେ ଦୟା କଲେ
ରାମାୟଣ ଗ୍ରନ୍ଥ ମୋ ମୁଖେ ବଖାଣିଲେ ।
× × ×
ମହାମନ୍ତ୍ରୀବର ସୋମନାଥ ମହାପାତ୍ର
ବଳରାମଦାସ ମୁଁ ଯେ ତାହାଙ୍କର ପୁତ୍ର ।" (ଲଙ୍କାକାଣ୍ଡ)

ସେ ଜାତିରେ ଥିଲେ ଶୂଦ୍ର । ତେଣୁ ଶୂଦ୍ରମୁନିରୂପେ ସେ ଖ୍ୟାତି ଲାଭ କରିଥିଲେ । ଶୂଦ୍ର ଥିବାରୁ ତାଙ୍କୁ ବହୁ ନିର୍ଯ୍ୟାତନା ଭୋଗ କରିବାକୁ ପଡ଼ିଥିଲା । ତାଙ୍କ ରଚିତ ବିଭିନ୍ନ ଗ୍ରନ୍ଥମାନଙ୍କରୁ ଏ ସମ୍ବନ୍ଧରେ ବହୁଦୃଷ୍ଟାନ୍ତ ମିଳିଥାଏ । ବେଦାନ୍ତସାରଗୁପ୍ତଗୀତା, ଲକ୍ଷଣଗୁପ୍ତ-ଗୀତା, ଗୁପ୍ତଗୀତା, ରାମାୟଣ ଇତ୍ୟାଦି ପୁସ୍ତକରୁ ତାଙ୍କର ଜୀବନ ଏବଂ ବଂଶ ସମ୍ବନ୍ଧରେ ପରିଚୟ ମିଳିଥାଏ । "ମୁଁ ହୀନ ପାପୀବିଶେଷ ଶୂଦ୍ରଯୋନି"—ଲଙ୍କାକାଣ୍ଡରେ ସେ ନିଜ ସମ୍ବନ୍ଧରେ ଏହା ହିଁ ଉଲ୍ଲେଖ କରିଛନ୍ତି । ଈଶ୍ୱରଦାସଙ୍କ ଚୈତନ୍ୟ ଭାଗବତରେ ବର୍ଣ୍ଣିତ ଅଛି ଯେ, ସେ ଯାଜପୁର-ନିକଟବର୍ତ୍ତୀ ଚନ୍ଦ୍ରପୁରରେ ଜନ୍ମଗ୍ରହଣ କରିଥିଲେ, ମାତ୍ର ଦାଢ଼୍ୟତାଭକ୍ତି ରସାମୃତରେ ବର୍ଣ୍ଣିତ ଅଛି ଯେ, ସେ ସକୁଟୁମ୍ବ ପୁରୀରେ ବାସ କରୁଥିଲେ । ସେ ଉଚ୍ଚ ଜ୍ଞାନ ଲାଭ କରିଥିଲେ । ବିଭିନ୍ନ ଶାସ୍ତ୍ର ଅଧ୍ୟୟନ କରି ସେ ପ୍ରଭୂତ ଶାସ୍ତ୍ରଜ୍ଞାନ ଅର୍ଜନ କରିଥିଲେ । ତାଙ୍କଦ୍ୱାରା ରଚିତ ବିଭିନ୍ନ ଗ୍ରନ୍ଥମାନଙ୍କରୁ ତାଙ୍କର ଅସାଧାରଣ ପାଣ୍ଡିତ୍ୟର ପରିଚୟ ମିଳିଥାଏ ।

Digitized by srujan ka@gmail.com

## ପଞ୍ଚସଖା ସାଧକ ବଳରାମ—

ଓଡ଼ିଶୀ ବୈଷ୍ଣବ ଧର୍ମର ପଞ୍ଚସାଧକମାନଙ୍କୁ ପଞ୍ଚସଖାରୂପେ ନାମିତ କରାଯାଇଥାଏ । ବଳରାମ, ଜଗନ୍ନାଥ, ଅଚ୍ୟୁତାନନ୍ଦ, ଯଶୋବନ୍ତ ଏବଂ ଶିଶୁ ଅନନ୍ତ ହେଉଛନ୍ତି ଏହି ପଞ୍ଚସଖାଗୋଷ୍ଠୀର ଶ୍ରେଷ୍ଠ ସାଧକମଣ୍ଡଳୀ । ବଳରାମ ଏମାନଙ୍କ ମଧ୍ୟରେ ବୟୋ-ଜ୍ୟେଷ୍ଠ । ଅଚ୍ୟୁତାନନ୍ଦଙ୍କର 'ଶୂନ୍ୟସଂହିତା' ଏବଂ ଯଶୋବନ୍ତଙ୍କର 'ଚୌରାଶୀ ଅଜ୍ଞା'ରେ ଏହି ପଞ୍ଚସଖାମାନଙ୍କ ସମ୍ବନ୍ଧରେ ସୂଚନା ଅଛି, ମାତ୍ର ଚୈତନ୍ୟ ଚରିତାମୃତ ବା ଚୈତନ୍ୟ-ଭାଗବତରେ ଏମାନଙ୍କ ସମ୍ବନ୍ଧରେ ସୂଚନା ନାହିଁ । ଦିବାକର ଦାସଙ୍କର 'ଜଗନ୍ନାଥ ଚରିତାମୃତ'ରେ ମଧ୍ୟ କେବଳ ବଳରାମଦାସଙ୍କ ସମ୍ବନ୍ଧରେ ଉଲ୍ଲେଖ କରାଯାଇଛି । ଏମାନେ କେହି ଶ୍ରୀଚୈତନ୍ୟଙ୍କର ପଞ୍ଚସଖା ନ ଥିଲେ । ଅଚ୍ୟୁତାନନ୍ଦ କିନ୍ତୁ "ଦଶପଟଳ"ରେ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି ଯେ ସେମାନେ ଅନନ୍ତ-ଯୁଗରେ ଶ୍ରୀଦାମ, ସୁଦାମ, ବସୁଦାମ, ନନ୍ଦ ଏବଂ ସୁନନ୍ଦ; ସତ୍ୟଯୁଗରେ ମାର୍କଣ୍ଡ, କୃପାଜଳ, ଗାର୍ଗବ, ସ୍ୱୟମ୍ଭୁ ଏବଂ ନାରଦ; ତ୍ରେତାଯୁଗରେ ରାମସଖା ନଳ, ନୀଳ, ସୁଷେଣ, ଜାମ୍ବବ, ଏବଂ ହନୁମାନ; ଦ୍ୱାପର ଯୁଗରେ କୃଷ୍ଣସଖା ସୁବଳ, ସୁବାହୁ, ଦାମ, ସୁଦାମ ଓ ଶ୍ରୀବତ୍ସ ଅର୍ଦ୍ଧ ଆତ୍ମାରୂପ ପଞ୍ଚସଖାରୂପେ ଜନ୍ମ-ଗ୍ରହଣ କରିଥିଲେ । ବଳରାମ ଦାସ ଏହି ପଞ୍ଚସଖାମାନଙ୍କ ମଧ୍ୟରେ ବୟୋଜ୍ୟେଷ୍ଠ ଏବଂ ଅନ୍ୟତମ ସିଦ୍ଧ ସାଧକ । ସେ ୧୫୦୯-୧୫୧୦ ଖ୍ରୀ: ଅ ମଧ୍ୟରେ ଶ୍ରୀ ଚୈତନ୍ୟଙ୍କ ସମ୍ପର୍କରେ ଆସିଥିଲେ ଏବଂ ଚୈତନ୍ୟଦେବ ବଳରାମଙ୍କ ପାଣ୍ଡିତ୍ୟରେ ମୁଗ୍ଧ ହୋଇଥିଲେ ବୋଲି ତତ୍କାଳୀନ ବଙ୍ଗଳା ଗ୍ରନ୍ଥରୁ ସୂଚନା ମିଳେ । ବଳରାମ ଥିଲେ ଜଣେ ପ୍ରଧାନ ହଠଯୋଗୀ । ପଞ୍ଚସଖାଙ୍କ ମତରେ

Digitized by srujan ka@gmail.com

ଜଗନ୍ନାଥ ହିଁ ସ୍ୱୟଂ ନିତ୍ୟ ବୈକୁଣ୍ଠସ୍ୱାମୀ । ବିଷ୍ଣୁ ଏବଂ ନୀଳାଚଳ ଧାମ ହିଁ ନିତ୍ୟଧାମ । ବଳରାମଦାସ ତଥା ଅନ୍ୟାନ୍ୟ ସଖାମାନେ ପିଣ୍ଡ-ବ୍ରହ୍ମାଣ୍ଡ ତତ୍ତ୍ୱରେ ବିଶ୍ୱାସ କରୁଥିଲେ । କାୟା-ସାଧନାଦ୍ୱାରା ମୋକ୍ଷପ୍ରାପ୍ତି ହିଁ ଏମାନଙ୍କର ଅନ୍ତିମ ଲକ୍ଷ୍ୟ । ଏହି ସାଧନା ବଳରେ ଯୋଗୀ ନିଜ ଭିତରେ ସମଗ୍ର ବ୍ରହ୍ମାଣ୍ଡକୁ ଉପଲବ୍ଧି କରୁଥିଲା ଏବଂ ନିଜକୁ ଭଗବାନଙ୍କଠାରୁ ଅବିଚ୍ଛେଦ୍ୟଭାବରେ କଳ୍ପନା କରୁଥିଲା । ପଞ୍ଚସାଧକମାନେ ଏହି ପରମ୍ପରାର ଯୋଗ୍ୟ ଦାୟାଦଭାବରେ ଓଡ଼ିଶାରେ ସୁପରିଚିତ ।

## ଜାତିସ୍ମର 'ଶୂଦ୍ର ମୁନି' ବଳରାମ—

ବଳରାମ ଥିଲେ ଜାତିସ୍ମର । ସାରଳାଦାସ ଓ ଗୋରଖ-ନାଥଙ୍କ ପରି ସେ ତାଙ୍କର ପୂର୍ବଜନ୍ମର ବୃତ୍ତାନ୍ତ ବିଭିନ୍ନ ଗ୍ରନ୍ଥରେ ପ୍ରକାଶ କରିଛନ୍ତି । ଭଗବତ୍-ଭାବତଦ୍‌ଗତ ବ୍ୟକ୍ତି ସାଧନା ବଳରେ ତା'ର ଅତୀତ ଜନ୍ମର ଇତିହାସ ସବୁ ବର୍ଣ୍ଣନା କରିପାରେ । ବଳ-ରାମଦାସ ଲଙ୍କାକାଣ୍ଡରେ ତେଣୁ ଲେଖିଛନ୍ତି—

'ମୁଁ ବଳରାମ ଦାସ ରାମାୟଣ ଅବତାରେ ଥିଲି
ଦଣ୍ଡକ ଧରିଣ ମୁଁ ସମସ୍ତ ଦେଖିଲି ।
ମତେ ଆଜ୍ଞା ଦେଲେ ମର୍ତ୍ତ୍ୟପୁରକୁ ଯିବୁ
କଳିଯୁଗେ ଶୂଦ୍ରମୁନି ହୋଇଣ ଜନମିବୁ ।
ଜନ୍ମିକ ବର୍ଣ୍ଣି କଥା ସୁମରିବୁ ତୁହି
ଶ୍ରୀଜଗନ୍ନାଥ ପ୍ରଭୁ ଯେ ମୋହର ଗୋସାଇଁ । (ଲ. କା.)

ପ୍ରାକୃତ ଭାଷାରେ ଗ୍ରନ୍ଥ ରଚନା କରିଥିବା ହେତୁ ସାରଳା ଦାସଙ୍କୁ ମଧ୍ୟ ଦିନେ ବହୁ ପରୀକ୍ଷାର ସମ୍ମୁଖୀନ ହେବାକୁ ହୋଇ-

Digitized by srujan ka@gmail.com

ଥିଲା । ଶୂଦ୍ରଭାବରେ ତାଙ୍କୁ ନାନାଦି ଭର୍ତ୍ସନା କରାଯାଇଥିଲା । ବଳରାମଦାସଙ୍କୁ ମଧ୍ୟ ଏହିପରି ବହୁ ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ସେ ଶୂଦ୍ର । ତେଣୁ ବେଦ ଚର୍ଚ୍ଚା କରିବାରେ ତାଙ୍କର ଅଧିକାର ନାହିଁ । ବ୍ରାହ୍ମଣ ପଣ୍ଡିତମାନଙ୍କର ବ୍ରାହ୍ମଣେତର ବ୍ୟକ୍ତି-ମାନଙ୍କ ପ୍ରତି ହୀନ ମନୋଭାବ ଏବଂ ଆତ୍ମମ୍ଭରିତା ପ୍ରତି ମଧ୍ୟଯୁଗୀୟ ପରମ୍ପରାରେ ବଳରାମଦାସଙ୍କର ଆହ୍ୱାନ ବାସ୍ତବିକ୍ ସେ ଯୁଗରେ ସାମାଜିକ ବିପ୍ଳବର ଯଥାର୍ଥ ସଂକେତ ପ୍ରଦାନ କରିଥାଏ । ଭଗବଦ୍‌ଗୀତା ଆଲୋଚନାବେଳେ ମୁକ୍ତିମଣ୍ଡପରେ ବଳରାମ ଦାସ ଉପସ୍ଥିତ ଥିବାରୁ ବ୍ରାହ୍ମଣ ପଣ୍ଡିତମାନେ ତାଙ୍କୁ ଭର୍ତ୍ସନା କଲେ ଏବଂ ରାଜା ପ୍ରତାପରୁଦ୍ରଦେବଙ୍କୁ କହି ସେଠାରୁ ବିତାଡ଼ିତ କରାଇ-ବାକୁ ଚେଷ୍ଟା କଲେ, ମାତ୍ର ବଳରାମ ସାଧାରଣ ମୂର୍ଖ ବାଉରି ମୁଖରେ ମଧ୍ୟ ବେଦ ବ୍ୟାଖ୍ୟାନ କରାଇବାର ଆହ୍ୱାନ ଦେଲେ ବ୍ରାହ୍ମଣ ସମାଜକୁ । ପରୀକ୍ଷା ହେଲା, ମୂର୍ଖ ହରିଦାସକୁ ବ୍ରାହ୍ମଣମାନେ ଆଣି ମୁକ୍ତି-ମଣ୍ଡପରେ ଉପସ୍ଥିତ କରାଇଲେ । ବଳରାମ ହରିଦାସର ମସ୍ତିଷ୍କରେ ହସ୍ତ ସଞ୍ଚାଳନ କରିବା ମାତ୍ରେ ସେ ଅନର୍ଗଳ ବେଦ ଚର୍ଚ୍ଚା କଲା । ଜନତା ଆଶ୍ଚର୍ଯ୍ୟ ହେଲା । ପ୍ରତାପରୁଦ୍ର ବଳରାମ ଦାସଙ୍କ ମହନୀୟ ଭଗବତ୍ ସତ୍ତାରେ ମୁଗ୍ଧ ହେଲେ । ଦାକ୍ଷିଣାତ୍ୟରେ 'ତେନଗଲାଇ' ମାନେ ନିଜ ଭାଷାରେ ରଚିତ ଶାସ୍ତ୍ର ଓ ପୁରାଣମାନଙ୍କୁ ସ୍ୱୀକାର କରୁଥିଲାବେଳେ 'ବେଦଗଲାଇ'ମାନେ ବେଦକୁ ବିଶ୍ୱାସ କରୁଥିଲେ । ରାମାନୁଜପନ୍ଥୀ ବୈଷ୍ଣବମାନେ ଏହିଭଳି ଦୁଇ ଶାଖାରେ ବିଭକ୍ତ ହୋଇଥିଲେ । ଓଡ଼ିଶାରେ ମଧ୍ୟ ଅନୁରୂପଭାବରେ ଶୂଦ୍ରମୁନିମାନେ ତେନଗଲାଇମାନଙ୍କ ପରି ଓଡ଼ିଆ ଭାଷାରେ ରଚିତ ଗ୍ରନ୍ଥ ଏବଂ ଶାସ୍ତ୍ରକୁ ସ୍ୱୀକାର କରୁଥିଲେ । ସାରଳା ଦାସ, ବଳରାମ ଦାସ ଏବଂ ଜଗନ୍ନାଥ ଦାସ ପ୍ରଭୃତି ଏହି ଶ୍ରେଣୀୟ ସାଧକ ସିଦ୍ଧ ସାହିତ୍ୟିକ ।

Digitized by srujan ka@gmail.com

ଅବଶ୍ୟ ଜଗନ୍ନାଥ ଦାସ ବ୍ରାହ୍ମଣ ଥିଲେ, ମାତ୍ର ସେ ପ୍ରାକୃତ ଭାଷାରେ ଗୁରୁତ୍ୱ ଆରୋପ କରୁଥିଲେ ।

ବଳରାମ ଥିଲେ ରାମତାରକ ମନ୍ତ୍ରରେ ସିଦ୍ଧ । "ସମଗ୍ର ମଧ୍ୟ-ଯୁଗୀୟ ସାହିତ୍ୟରେ ବଳରାମଙ୍କ ସାହିତ୍ୟ ସମାଜ-ବିପ୍ଳବର ଏକ ପ୍ରେରଣାମୟ ସଙ୍କେତ ଥିଲା । * ବାସ୍ତବିକ ଏହାହିଁ ସ୍ୱୀକାର କରିବାକୁ ହୁଏ । ଭାବସମୁଦ୍ର, ରାମାୟଣ, କାନ୍ତକୋଇଲି ପ୍ରଭୃତି କେତେକ ରଚନାକୁ ଛାଡ଼ିଦେଲେ ତାଙ୍କର ଅନ୍ୟାନ୍ୟ ରଚନାମାନ ସମାଜ-ବିପ୍ଳବର ବାସ୍ତବ ସଙ୍କେତ ପ୍ରଦାନ କରିଥାଏ । ଭଗବତ୍ ଗୀତା, ବେଦାନ୍ତସାର ଗୁପ୍ତ ଗୀତା, ଗୁପ୍ତ ଗୀତା, ଛତିଶଗୁପ୍ତ ଗୀତା ବଟ-ଅବକାଶ, ବ୍ରହ୍ମାଣ୍ଡ ଭୂଗୋଳ ପ୍ରଭୃତି ଗ୍ରନ୍ଥଗୁଡ଼ିକରେ ସାହିତ୍ୟିକ ଉପାଦାନ ନ ଥିଲେହେଁ ଆଧ୍ୟାତ୍ମିକ ତତ୍ତ୍ୱର ସରଳ ବ୍ୟାଖ୍ୟା ସଙ୍ଗେ ସଙ୍ଗେ ସମାଜବିପ୍ଳବର ସଙ୍କେତ ରହିଛି । ବ୍ରହ୍ମ ବିଦ୍ୟାକୁ ମୁଷ୍ଟିମେୟ ତଥାକଥିତ ପଣ୍ଡିତମାନଙ୍କର ଚତୁର୍ବ୍ୟୂହରୁ ମୁକ୍ତ କରି ସେ ଜନସାଧାରଣରେ ସରଳ ଭାଷାମାଧ୍ୟମରେ ପ୍ରଚାର କଲେ । ବାଉରୀ ମୁଖରେ ବେଦଚର୍ଚ୍ଚା କରାଇ ବ୍ରାହ୍ମଣମାନଙ୍କର ଆସ୍ଫାଳନକୁ ବିଚୂର୍ଣ୍ଣ କରିଥିଲେ । "ରାଜରୋଷର ସମ୍ମୁଖୀନ ହୋଇ ସୁଦ୍ଧା, ବ୍ରାହ୍ମଣ ପଣ୍ଡିତମାନଙ୍କର ଅଭିଯୋଗର ଉତ୍ତରରେ ବଳରାମ ଦାସଙ୍କ ଉଦ୍ଦୀପ୍ତ ଘୋଷଣା ସମଗ୍ର ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ସମାଜବିପ୍ଳବ ଓ ମାନବବାଦର ଏକ ସ୍ୱର୍ଣ୍ଣିତ ଇସ୍ତାହାର ।" )( ଏହିଅସାଧାରଣ ସ୍ୱାଧୀନଚେତା ଅଲୌକିକ ଗୁଣବିମଣ୍ଡିତ ବ୍ୟକ୍ତି ଓଡ଼ିଆ ଜାତିର ଚିର ନମସ୍ୟ ହୋଇ ରହିବେ ।

---

* ଓଡ଼ିଆ ସାହିତ୍ୟର ମଧ୍ୟପର୍ବ—ଶ୍ରୀ ସୁରେନ୍ଦ୍ର ମହାନ୍ତି ପୃ ୨୫୧
)( ,, ,, ,, ,, ,, ପୃ-୨୫୨

Digitized by srujan ka@gmail.com

ବଳରାମଙ୍କ ରଚନାବଳୀ—

ବଳରାମ ତାଙ୍କର ଜୀବନକାଳ ମଧ୍ୟରେ ବହୁ ଗ୍ରନ୍ଥ ରଚନା କରିଛନ୍ତି । ଆବିଷ୍କୃତ ରଚନାମାନଙ୍କ ମଧ୍ୟରେ (୧) ଜଗମୋହନ ରାମାୟଣ (୨) ବ୍ରହ୍ମପୁରାଣ, (୩) ମହାଭାରତ (୪) ଚଣ୍ଡୀ ପୁରାଣ (୫) ଲକ୍ଷ୍ମୀ ପୁରାଣ (୬) କୁହାଳ ପୁରାଣ (୭) ନାମରତ୍ନ ଗୀତା (୮) ମୃଗୁଣୀ ସ୍ତୁତି (୯) ଦୁର୍ଗା ସ୍ତୁତି (୧୦) କାନ୍ତ କୋଇଲି (୧୧) କମଳଲୋଚନ ଚଉତିଶା (୧୨) ବାରମାସୀ (୧୩) ଭାବ-ସମୁଦ୍ର (୧୪) ବଟ ଅବକାଶ (୧୫) ଭକ୍ତି-ରସାମୃତ-ସିନ୍ଧୁ (୧୬) ସପ୍ତାଙ୍ଗବିନୋଦ (୧୭) ରାମ ବିଭା (୧୮) କୃଷ୍ଣଲୀଳା (୧୯) ରସକେଳି (୨୦) ବ୍ରହ୍ମାଣ୍ଡଭୂଗୋଳ [୨୧) ଶରୀରଭୂଗୋଳ (୨୨) ବେଢ଼ାପରିକ୍ରମା, (୨୩) ଅର୍ଜ୍ଜୁନ ଗୀତା (୨୪) ଗଜ ନିସ୍ତାରଣ ଗୀତା (୨୫) ଭଗବଦ୍ ଗୀତା (୨୬)ଅମରକୋଷ ଗୀତା (୨୭) ଗୁପ୍ତଗୀତା, (୨୮) ଲକ୍ଷଣଗୁପ୍ତ ଗୀତା (୨୯) ଗରୁଡ଼ ଗୀତା (୩୦) ବିରାଟ ଗୀତା (୩୧) ଗଣେଶ ବିଭୂତି ଗୀତା, (୩୨) ଗୀତାସାର (୩୩) ଶ୍ରୀକୃଷ୍ଣସୁନ୍ଦର ଗୀତା (୩୪) ଅମରକୋଷ ଗୀତା (୩୫) କଳିଭାରତ (୩୬) ବଉଳା ଅଧ୍ୟାୟ (୩୭) ପଣସ ଚୋରି – ଗ୍ରନ୍ଥସମୂହ ପ୍ରଧାନ । ମାତ୍ର ଏହି ସବୁ ଗ୍ରନ୍ଥ-ଗୁଡ଼ିକ ମଧ୍ୟରେ କେବଳ ଜଗମୋହନ ରାମାୟଣ ସାହିତ୍ୟର ରସ-ସୃଷ୍ଟି ଦୃଷ୍ଟିରୁ ଉଚ୍ଚକୋଟୀର, ମାତ୍ର ଅନ୍ୟାନ୍ୟ ଗ୍ରନ୍ଥଗୁଡ଼ିକ ନିଗୂଢ଼ ତତ୍ତ୍ୱରେ ପରିପୂର୍ଣ୍ଣ । ସାରଳାଦାସଙ୍କ ପରି ଦାଣ୍ଡୀ ବୃତ୍ତରେ ବଳରାମ ଦାସ ରାମାୟଣ ରଚନା କରିଥିଲେ । ବାଲ୍ମୀକି ରାମାୟଣର କଥା-ବସ୍ତୁ ଓ ବର୍ଣ୍ଣନାକୁ ସଠିକ ଅନୁକରଣ ନ କରି ନିଜର ମୌଳିକ ପ୍ରତିଭା ଓ କବିତ୍ୱଦ୍ୱାରା ଓଡ଼ିଆ ରାମାୟଣକୁ ଅଭିନବ ରୂପ ପ୍ରଦାନ କରିଥିଲେ । ଲୋକପ୍ରଚଳିତ ନାନା କାହାଣୀ କିମ୍ବଦନ୍ତୀ, ସମାଜର ନାନା ଆଚାର ବ୍ୟବହାର ଓ ଓଡ଼ିଶାର ନଦ ନଦୀ ଗିରି ବନ

Digitized by srujan ka@gmail.com

ପ୍ରକୃତି ସୁନ୍ଦର ଭାବରେ ସେ ବର୍ଣ୍ଣନା କରିଛନ୍ତି । ଲୋକ ଚରିତର ସଫଳ ବର୍ଣ୍ଣନା କବି ବଳରାମ ଏହି ଗ୍ରନ୍ଥରେ କରି ପାରିଛନ୍ତି । ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ କବିତ୍ୱର ଚରମ ନିଦର୍ଶନ ହିଁ ବଳରାମଦାସଙ୍କ ରାମାୟଣ ।

ବ୍ୟାସଦେବଙ୍କ କୃତ ଭଗବତ୍ ଗୀତାକୁ ସେ ସରଳ ଓଡ଼ିଆ ଭାଷାରେ ଅନୁବାଦ କରିଛନ୍ତି, ଏଥିରେ କବିଙ୍କ ଅପେକ୍ଷା ଗୀତା-ତତ୍ତ୍ୱଜ୍ଞାନର ପରିଚୟ ମିଳିଥାଏ । ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କର, ଉକ୍ତି ପ୍ରତ୍ୟୁକ୍ତି ଛଳରେ ସେ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ ଓ ଜ୍ଞାନଯୋଗକୁ 'ଗୁପ୍ତ-ଗୀତା'ରେ ବର୍ଣ୍ଣନା କରିଛନ୍ତି । ଶରୀର ମଧ୍ୟରେ ପୁଣି ସକଳ ତୀର୍ଥ ଓ ଚତୁର୍ଦ୍ଧାମୂର୍ତ୍ତିର ଅବସ୍ଥିତି ବୋଲି ସେ ଏହି ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । ବ୍ରହ୍ମାଣ୍ଡ-ଭୂଗୋଳରେ ସମଗ୍ର ଜଗତର ଦର୍ଶନକୁ ହରି ଅର୍ଜ୍ଜୁନ ଉକ୍ତି ପ୍ରତ୍ୟୁକ୍ତି ଛଳରେ ବର୍ଣ୍ଣନା କରିଛନ୍ତି । ବେଦା-ନ୍ତସାର-ଗୁପ୍ତଗୀତାରେ ମୂର୍ଖ ମୁଖରେ ବେଦ ଚର୍ଚ୍ଚା କରାଇଥିବା କଥା ଏବଂ ସେ ଅହଂମନ୍ୟ ପଣ୍ଡିତମାନଙ୍କଦ୍ୱାରା ନିର୍ଯ୍ୟାତିତ ହୋଇଥିବା କଥା ବର୍ଣ୍ଣନା କରିଛନ୍ତି । ବଟ ଅବକାଶରେ କବିଙ୍କର ଜଗନ୍ନାଥଙ୍କ ସହିତ ଲଙ୍କାଦର୍ଶନ ଏବଂ ସୁବର୍ଣ୍ଣଝର ଚୋରି ଅପ-ରାଧରେ ଦଣ୍ଡିତହେବା ଓ ଶେଷରେ ଜଗନ୍ନାଥଙ୍କର ରାଜାଙ୍କୁ ସ୍ୱପ୍ନ ଦେବାରୁ ମୁକ୍ତ ଇତ୍ୟାଦି ବର୍ଣ୍ଣିତ ହୋଇଛି । ରଥ ଉପରୁ ବିତାଡ଼ିତ ବଳରାମଙ୍କର ଅଭିମାନବ୍ୟଞ୍ଜିତ ଭକ୍ତିଗଦ୍‌ଗଦ ହୃଦୟର କାରୁଣ୍ୟ ଭାବଧାରା ଭାବସମୃଦ୍ଧ ଗ୍ରନ୍ଥରେ ରୂପାୟିତ ହୋଇଛି । ରାବଣ ସୀତାଙ୍କୁ ଚୋରି କରି ନେଇଯିବା ସମୟରେ ସୀତା କୋଇଲି ଆଗରେ ନିଜର କରୁଣଭାବକୁ ପ୍ରକାଶ କରିଛନ୍ତି । ବଳରାମ ଏହାକୁ ସୁନ୍ଦରଭାବରେ 'କାନ୍ତକୋଇଲି' କବିତାରେ ପ୍ରକାଶ କରିଛନ୍ତି । ଏହାଭିନ୍ନ ସେ ବେଢ଼ାପରିକ୍ରମା, ବିରାଟଗୀତା, ସପ୍ତାଙ୍ଗ ଯୋଗ-

Digitized by srujan ka@gmail.com

ସାରଟୀକା, ଗଣେଶବିଭୂତି ଟୀକା, ବଜ୍ରକୁଳି ଅଧ୍ୟାୟ, ଲକ୍ଷ୍ମୀପୁରାଣ ଆଦି ଗ୍ରନ୍ଥମାନ ରଚନା କରିଛନ୍ତି ।

ମୋଟ ଉପରେ ମଧ୍ୟଯୁଗୀୟ ଓଡ଼ିଆ ସିଦ୍ଧ ସାହିତ୍ୟ ପରମ୍ପରାରେ ହଠଯୋଗୀ ପିଣ୍ଡବ୍ରହ୍ମାଣ୍ଡବାଦୀ ଜ୍ଞାନମାର୍ଗୀ ବଳରାମଦାସ ଅନନ୍ୟ ସାଧାରଣ ପ୍ରତିଭାର ଅଧିକାରୀ ଥିଲେ, ସେ ଥିଲେ ଜଣେ ମହାପୁରୁଷ । ସାହିତ୍ୟମାଧ୍ୟମରେ ସେ ଆଧ୍ୟାତ୍ମିକ ବିପ୍ଳବ ସୃଷ୍ଟି କରି ପାରିଥିଲେ । ସେ ଓଡ଼ିଆ ଜାତିର ଚିର ନମସ୍ୟ ।

---

# ଓଡ଼ିଶାର ଅଚ୍ୟୁତାନନ୍ଦ

## ଅଧ୍ୟାପକ ଡକ୍ଟର ଶ୍ରୀ ଚିତ୍ତରଞ୍ଜନ ଦାସ

ପରମେଶ୍ୱର ଏକ । ଏହି ବିଶ୍ୱ ସଂସାର ତାଙ୍କର ବିଭୂତି । ସେହି ଗୋଟିଏ ଜ୍ୟୋତିରୁ ଅନେକ ଜ୍ୟୋତିର ସମ୍ଭବ ହୋଇଛି । ଗୋଟିଏ ପ୍ରାଣରୁ ଏହି ଯାବତୀୟ ପ୍ରାଣ ଜନ୍ମ ଲାଭ କରିଛି । ସିଏ ହେଉଛନ୍ତି ସବୁ ଦେବତାଙ୍କର ପରମ ଦେବତା । ସବୁ ଈଶ୍ୱରଙ୍କର ପରମ ମହେଶ୍ୱର, ମାତ୍ର ଅନେକ ସମୟରେ ଆମେ ଅନେକଙ୍କର ଜାଲ ଭିତରେ ଛନ୍ଦିହୋଇ ଏକକୁ ଭୁଲିଯାଉ । ଧର୍ମ ଓ ଧର୍ମ ଉପାସନା ନାମରେ ନାନା କୋଳାହଳ କରି ଧର୍ମ ପଥର ଅସଲ ଲକ୍ଷ୍ୟଟିକୁ ବଣା ହୋଇଯାଉ । ସେତିକିବେଳେ ଆମକୁ ସଚେତ ଅବା ବାଟକୁ ଫେରି ଆସିବାର ପ୍ରେରଣା ଦେବାଲାଗି ଆମରି ଭିତରୁ ସନ୍ଥ ବାହାରନ୍ତି, ମହାପୁରୁଷ ବାହାରନ୍ତି ।

ଓଡ଼ିଶାର ଅଚ୍ୟୁତାନନ୍ଦ ଦାସ ଆଜକୁ ପ୍ରାୟ ପାଞ୍ଚଶହ ବର୍ଷ ତଳେ ଆମ ସମାଜରେ ଆମକୁ ସେହି ପ୍ରେରଣା ଦେବାକୁ ଆସିଥିଲେ । ଓଡ଼ିଆ ଧର୍ମ ଓ ସାହିତ୍ୟରେ ତାଙ୍କର ଯୁଗଟିକୁ ପଞ୍ଚସଖା

Digitized by srujan ka@gmail.com

ଯୁଗବୋଲି କୁହାଯାଏ । ପଞ୍ଚସଖା ଯୁଗ ଅର୍ଥାତ୍ ପଞ୍ଚସଖାଙ୍କର ଯୁଗ । ସେହି ପଞ୍ଚସଖା ହେଉଛନ୍ତି, ବଳରାମ, ଅନନ୍ତ, ଜଗନ୍ନାଥ, ଅଚ୍ୟୁତାନନ୍ଦ ଓ ଯଶୋବନ୍ତ ।

କଟକ ଜିଲ୍ଲାର ନେମାଳୋ ଗ୍ରାମରେ ୧୪୮୯ ଖ୍ରୀଷ୍ଟାବ୍ଦରେ ଅଚ୍ୟୁତାନନ୍ଦ ଜନ୍ମଗ୍ରହଣ କରିଥିଲେ । ସେତେବେଳକୁ ରାଜା ପ୍ରତାପରୁଦ୍ର ଓଡ଼ିଶାରେ ରାଜତ୍ୱ କରୁଥାଆନ୍ତି । ଅଚ୍ୟୁତାନନ୍ଦଙ୍କର ମାଆଙ୍କ ନାମ ପଦ୍ମାବତୀ, ବାପା ଶ୍ରୀଦୀନବନ୍ଧୁ ଖୁଣ୍ଟିଆ । ପିଲାଟି ଦିନରୁ ଅଚ୍ୟୁତାନନ୍ଦ ବଡ଼ ଉଦାସ ପ୍ରକୃତିର ଲୋକ ଥିଲେ । ବାପା ତାଙ୍କୁ ପାଠ ପଢ଼ା ପାଇଁ ଚାଟଶାଳୀକୁ ପଠାଇଲେ, ମାତ୍ର ସେଠାରେ ତାଙ୍କର ମନ ଲାଗିଲା ନାହିଁ । ଜଗନ୍ନାଥଙ୍କୁ ଆଶ୍ରୟ କରି ଦୀନବନ୍ଧୁ ତାଙ୍କର ଏକମାତ୍ର ପୁତ୍ରଟିକୁ ପାଇଥିଲେ ବୋଲି ଏକାଧିକବାର ତାଙ୍କର ଦର୍ଶନ ଲାଗି ସେ ଶ୍ରୀକ୍ଷେତ୍ର ଆସୁଥିଲେ । ପୁତ୍ର ଅଚ୍ୟୁତାନନ୍ଦ ମଧ୍ୟ ବାପ-ମାଆଙ୍କ ସହିତ ଆସୁଥିଲେ । ସେତେବେଳେ ଚୈତନ୍ୟ-ଙ୍କର ଭକ୍ତି ଲୀଳାରେ ବଡ଼ଦାଣ୍ଡ ଉଚ୍ଛୁଳୁଥାଏ । ଅଚ୍ୟୁତାନନ୍ଦ ସେଇଠାରେ ଶ୍ରୀ ଚୈତନ୍ୟଙ୍କର ଦର୍ଶନ ଲାଭ କଲେ ଓ ତାଙ୍କର ଆଜ୍ଞାରେ ଦୀକ୍ଷା ଗ୍ରହଣ କରିଥିଲେ ।

ଦୀକ୍ଷା ନେଇ ସେ ଆପଣା ଗାଁକୁ ଫେରି ଆସିଲେ । ସେତେ-ବେଳକୁ ତାଙ୍କର ବୟସ ଖୁବ୍ ବେଶୀହେଲେ କୋଡ଼ିଏ ବର୍ଷ ହୋଇ ଥିବ । ଗାଁକୁ ଆସି ଅଚ୍ୟୁତାନନ୍ଦ ଗୋଟିଏ ବରଗଛମୂଳେ ଧ୍ୟାନ ସାଧନା କଲେ । ତା'ର କେତେବର୍ଷ ପରେ ସେ ପୁଣି ପୁରୀ ଗଲେ ଓ ପ୍ରାଚୀକୂଳର ପୀଠମାନଙ୍କରେ ବୁଲିଲେ; ପୁରୀଠାରେ ଶ୍ରୀ ଚୈତନ୍ୟଙ୍କ ସହିତ ତାଙ୍କର ପୁଣି ଭେଟ ହେଲା । ଅନ୍ୟ ପଞ୍ଚ ସଖାଙ୍କ ସହିତ ମଧ୍ୟ ପରିଚୟ ହେଲା । ଯେତେଦୂର ଅନୁମାନ କରାଯାଏ ସେ ରାମେଶ୍ୱର, ଦ୍ୱାରକା, ଅଯୋଧ୍ୟା, କାଶୀ, ପ୍ରୟାଗ ଓ

Digitized by srujan ka@gmail.com

ମଥୁରାପ୍ରଭୃତି ଭାରତର ବଡ଼ବଡ଼ ତୀର୍ଥମାନ ବି ଭ୍ରମଣ କରିଥିଲେ । ଅନ୍ୟତମ ସଖା ଯଶୋବନ୍ତଙ୍କର ଗାଁ ଅଡ଼ଙ୍ଗଗଡ଼ର ରାଜା ରଘୁରାମ ଦମ୍ପତିଙ୍କର କନ୍ୟା ଚମ୍ପା ଦେବୀଙ୍କ ସହିତ ତାଙ୍କର ବିବାହ ହୋଇ ଥିଲା । ସେ ଗଦାଧରନାମକ ଏକ ପୁତ୍ର ସନ୍ତାନର ବାପା ବି ହୋଇ ଥିଲେ ।

ଶ୍ରୀଚୈତନ୍ୟଙ୍କର ଉପସ୍ଥିତିସମସ୍ତରେ ଓଡ଼ିଶାର ଧର୍ମ ଓ ସାହିତ୍ୟ ଜଗତ ଅଭିଜାତ ମହଲମାନଙ୍କରେ ରାଜାଶ୍ରୟୀ ହୋଇ ପଡ଼ିଥିଲା । ପଞ୍ଚସଖା ତାହାକୁ ଲୋକାଶ୍ରୟୀ କରିବାକୁ ଚେଷ୍ଟା କରିଥିଲେ । ସେମାନେ ଓଡ଼ିଶାର ଚାରିଆଡ଼େ ବୁଲି କେତେ କେତେ ଗାଆଁରେ ଗୋଷ୍ଠୀଘର ପ୍ରତିଷ୍ଠା କରିଥିଲେ, ସଂସ୍କୃତ ଭାଷାର କେତେ କେତେ ଗ୍ରନ୍ଥ ଓ ପୁରାଣକୁ ସେମାନେ ଲୋକ ବୁଝିବାଭଳି ସରଳ ଅଥଚ ଭାବମୟୀ ଭାଷାରେ ଅନୁବାଦ କରି ଦେଇଥିଲେ । ଭେକ ବା ବାହ୍ୟ ରୂପରେ ଯାହାର ଧର୍ମ ଯେପରି ହୋଇ ଥାଉ ପଛକେ, ସେହି ଧର୍ମ ଖାଲି ବାହ୍ୟ ସ୍ତରରେ ଦେଖାଣିଆ ହୋଇ ନ ରହି ଜୀବନକୁ ଭେଦକରି ରହିବ । ସବୁ ଉଦ୍ୟମ ପଛରେ ଏହାହିଁ ପଞ୍ଚସଖାଙ୍କର ମୂଳ ଅଭିଳାଷ ହୋଇ ରହିଥିଲା ।

ଜଗନ୍ନାଥ ଦାସ ଭାଗବତର ଓଡ଼ିଆ କଲେ । ବଳରାମ ଦାସ ଦାଣ୍ଡି ରାମାୟଣ ଲେଖିଲେ, ଜଗନ୍ନାଥ ଓ ବଳରାମ ଉଭୟେ ଗୀତାର ଅନୁବାଦ କଲେ । ବିରାଟ ସଂସ୍କୃତ ଗ୍ରନ୍ଥ ହରିବଂଶର ଓଡ଼ିଆ ଭାଷାନ୍ତର କରିବା ଅଚ୍ୟୁତାନନ୍ଦଙ୍କ ଭାଗରେ ପଡ଼ିଥିଲା । ଓଡ଼ିଶାର ଧର୍ମରେ ଏକ ନୂତନ ଭାବର ସଞ୍ଚାର କରାଇବାରେ ଓଡ଼ିଶାର ନାନା ସ୍ଥାନରେ ବୁଲି ଅଚ୍ୟୁତାନନ୍ଦ ଶେଷ ଜୀବନରେ ପୁଣି ଆପଣାର ନିଜ ଗାଁକୁ ଫେରି ଆସିଥିଲେ ଓ ସେହିଠାରେ ତାଙ୍କର ତିରୋଧାନ ହୋଇଥିଲା ।

Digitized by srujan ka@gmail.com

ଅଚ୍ୟୁତାନନ୍ଦ କେବଳ ଓଡ଼ିଆ ହରିବଂଶ ଲେଖି ନାହାନ୍ତି; ସେ ଆହୁରି କେତେ କେତେ ଗ୍ରନ୍ଥ ଲେଖି ଯାଇଛନ୍ତି । ତାଙ୍କରି ଭାଷାରେ କହିଲେ ସେ ଛତିଶ ସଂହିତା ଓ ଅଠସ୍ତର ଗୀତା ଲେଖିଛନ୍ତି । ପୁଣି କେତେ କେତେ ପଦ ଓ ପଦ୍ୟାବଳୀ ବି ଲେଖି ଯାଇଛନ୍ତି । ସରଳ ପଦରେ ଧର୍ମତତ୍ତ୍ୱର ବ୍ୟାଖ୍ୟା କରିଛନ୍ତି । ସରଳ ଅନୁଭୂତି ଜରିଆରେ ଧର୍ମମାର୍ଗର ବଖାଣ କରିଛନ୍ତି । ତାଙ୍କର ଅନେକ ଗ୍ରନ୍ଥମଧ୍ୟରୁ ଆମେ ଗୁରୁଭକ୍ତି ଗୀତା, ଶୂନ୍ୟ ସଂହିତା ଓ ଅଣାକାର ସଂହିତାକୁ ନିଶ୍ଚୟ ମନେ ରଖିବା ।

ଅଚ୍ୟୁତାନନ୍ଦ ଜାତି ମାନୁ ନ ଥିଲେ । ରାଜସଭାରେ ବ୍ରାହ୍ମଣର ଆଦର ହେଉଥିଲାବେଳେ ସେ ଆପଣାକୁ ନିର୍ଭୟଭାବରେ ଶୂଦ୍ର ବୋଲି ଘୋଷଣା କରୁଥିଲେ । ଭକ୍ତ ହେଉଛି ଭଗବାନଙ୍କର ଦାସ ଏବଂ ତାହାହିଁ ତାଁର ସର୍ବୋତ୍ତମ ପରିଚୟ । ସେତେବେଳେ ରାଜସଭାରେ ପଣ୍ଡିତମାନଙ୍କୁ ପାରିତୋଷିକ ଦିଆ ଯାଉଥିବାବେଳେ ଅଚ୍ୟୁତାନନ୍ଦ ଓଡ଼ିଶାର ଗାଁକୁ ଗାଁ ବୁଲୁଥିଲେ । ଲୋକମାନଙ୍କୁ ଭଜନ ଶୁଣାଉଥିଲେ । ଭଜନ ଲେଖୁଥିଲେ, ସିଏ ବା ପଞ୍ଚସଖା ଓଡ଼ିଶାରେ କେଉଁଠି ହେଲେ କୌଣସି ମଠ ବସାଇ ନ ଥିଲେ । ମାତ୍ର ବିଭିନ୍ନ ସ୍ଥାନରେ ଗାଦିମାନ ସ୍ଥାପନା କରିଥିଲେ । ଗାଦିର ପୂଜା ଅର୍ଥାତ୍ ଧର୍ମଗ୍ରନ୍ଥର ପୂଜା ଅର୍ଥାତ୍ ସଦ୍‌ବସ୍ତୁର ଓ ସତ୍ ମନର ଆଗ୍ରହ ବଢ଼ିବାକୁ ହିଁ ସେମାନେ ଧର୍ମର ଅସଲ ପ୍ରକୃତି ବୋଲି ବୁଝୁଥିଲେ । ଅଚ୍ୟୁତାନନ୍ଦ ପୁରୀର ଜଗନ୍ନାଥଙ୍କୁ ଇଷ୍ଟଦେବ ବୋଲି ମାନୁଥିଲେ । ଜଗନ୍ନାଥ ଅର୍ଥାତ୍ ଜଗତର ନାଥ ଏ ମତର ବା ସେ ସମ୍ପ୍ରଦାୟର ନାଥ ନୁହନ୍ତି କିମ୍ବା

Digitized by srujan ka@gmail.com

ଏ ଭେକ ବା ସେ ମାଳାର ସମ୍ପତ୍ତି ନୁହନ୍ତି । ଜଗନ୍ନାଥଙ୍କ ଭିତରେ ସେ ପରଂବ୍ରହ୍ମଙ୍କୁ ଭଜନ କରୁଥିଲେ ଏବଂ ଆମ ପ୍ରତ୍ୟେକଙ୍କର ଏହି ମନକୁ ହିଁ ଚତୁର୍ଦ୍ଧାମୂରତି ବୋଲି କହୁଥିଲେ । ଅର୍ଥାତ୍ ଆପଣା-ଠାରୁ ଆରମ୍ଭ କରିବାକୁ ହେବ । ଆପଣାକୁ ଯୋଗ୍ୟ ଘଟରୂପେ ପ୍ରସ୍ତୁତ କରିବାକୁ ହେବ ଓ ଆପେ ଆପେ ଆତ୍ମନିବେଦନ କରିବାକୁ ହେବ । ତେବେ ଯାଇ ଏଇଠି ଜଗନ୍ନାଥଙ୍କର ଅନୁଭୂତି ମିଳିବ ଓ ଆପଣା ଭିତରେ ବିରାଟକୁ ଧାରଣ କରି ହେବ । ଅଚ୍ୟୁତାନନ୍ଦଙ୍କୁ ମନେ ରଖିବା ହେଉଛି ଏହି ଉଦ୍‌ବୋଧନଟିକୁ ମନେ ରଖିବା ।

---

# ରାୟ ରାମାନନ୍ଦ

## ଅଧ୍ୟାପକ ଡକ୍‌ଟର ଜାନକୀବଲ୍ଲଭ ମହାନ୍ତି, (ଭରଦ୍ୱାଜ)

ଭାରତର ସାଂସ୍କୃତିକ ଇତିହାସକ୍ଷେତ୍ରରେ ଅନେକ ବିଶିଷ୍ଟ ଭକ୍ତ, କବି, ପଣ୍ଡିତ ଓ ପ୍ରେମଭକ୍ତି-ତତ୍ତ୍ୱବିତ୍‌ଭାବରେ ରାୟ ରାମାନନ୍ଦ ସ୍ୱନାମଧନ୍ୟ । ସେ ଷୋଡ଼ଶ ଶତାବ୍ଦୀରେ ଓଡ଼ିଶାରେ ଆବିର୍ଭୂତ ହୋଇଥିଲେ । ସଠିକ୍‌ଭାବରେ ତାହାଙ୍କର ଆବିର୍ଭାବ ଓ ତିରୋଧାନର ସମୟ ନିର୍ଦ୍ଧାରିତ ହୋଇ ପାରିନାହିଁ । ବଙ୍ଗଳାରେ ଲିଖିତ 'ଚୈତନ୍ୟ-ଚରିତାମୃତ ଓ ଅନ୍ୟାନ୍ୟ ଚୈତନ୍ୟ-ଜୀବନୀ କାବ୍ୟରୁ ତାହାଙ୍କ ଜୀବନଚରିତ ସମ୍ପର୍କରେ କେତେକ ବିଷୟ ଜଣାପଡ଼େ । ସମ୍ଭବତଃ ତତ୍କାଳୀନ ଉତ୍କଳୀୟ ବୈଷ୍ଣବସମ୍ପ୍ରଦାୟ ଓ ଧର୍ମ ବିଶ୍ୱାସ ପ୍ରତି ତାଙ୍କର ଶ୍ରଦ୍ଧା ନ ଥିବାରୁ ଉତ୍କଳୀୟ ଭକ୍ତ ଓ ବୈଷ୍ଣବ କବିମାନଙ୍କ ରଚନାବଳୀରୁ ତାହାଙ୍କ ବିଷୟରେ

Digitized by srujan ka@gmail.com

ଯଥେଷ୍ଟ ଉପାଦାନ ମିଳେ ନାହିଁ, ମାତ୍ର ବଙ୍ଗ ତଥା ଓଡ଼ିଶାର ଗୌଡ଼ୀୟ ବୈଷ୍ଣବମାନଙ୍କ ନିକଟରେ ରାୟ ରାମାନନ୍ଦ ସୁପରିଚିତ ଓ ପରମ ଆରାଧ୍ୟ ବ୍ୟକ୍ତିରୂପରେ ପରିଗଣିତ ହୁଅନ୍ତି ।

ପୁରୀ ନିକଟବର୍ତ୍ତୀ ବେଣ୍ଟପୁର ଗ୍ରାମରେ ସେ ଏକ ସମ୍ଭ୍ରାନ୍ତ ଧନାଢ୍ୟ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କ ପିତାଙ୍କ ନାମ ଭବାନନ୍ଦ ପଟ୍ଟନାୟକ । ରାମାନନ୍ଦଙ୍କର ଆଉ ଚାରିଗୋଟି ଭାଇ ଥିଲେ ଓ ସେମାନଙ୍କ ମଧ୍ୟରୁ କେତେକ ଉଚ୍ଚ ରାଜ କର୍ମଚାରୀ ଭାବରେ ମଧ୍ୟ ନିଯୁକ୍ତ ହୋଇଥିଲେ । ସେତେବେଳେ ଓଡ଼ିଶାର ରାଜା ଥିଲେ ପ୍ରତାପରୁଦ୍ରଦେବ । ପ୍ରତାପରୁଦ୍ର ଭକ୍ତିପରାୟଣ ଓ କାବ୍ୟ ଶାସ୍ତ୍ରାନୁରାଗୀ ଥିଲେ । ସଂସ୍କୃତ ସାହିତ୍ୟରେ ସୁପଣ୍ଡିତ ରାମାନନ୍ଦ କୃଷ୍ଣଭକ୍ତି ପରାୟଣ ପ୍ରତାପରୁଦ୍ରଙ୍କ ସନ୍ତୋଷ ବିଧାନ ଲାଗି ସଂସ୍କୃତରେ "ଜଗନ୍ନାଥବଲ୍ଲଭ" ନାମକ ଏକ ନାଟକ ରଚନା କରିଥିଲେ । ସଂସ୍କୃତ ସାହିତ୍ୟରେ ଏହା ଏକ ପ୍ରଖ୍ୟାତ ନାଟକ ଭାବରେ ପରିଗଣିତ ହୁଏ ।

ପୁରୀର ବଡ଼ଦାଣ୍ଡରେ ଅବସ୍ଥିତ "ଜଗନ୍ନାଥବଲ୍ଲଭ ମଠ ହିଁ ରାୟ ରାମାନନ୍ଦଙ୍କ ବାସସ୍ଥଳୀ ଥିଲା । ପ୍ରତାପରୁଦ୍ର ଏହି ସୁପଣ୍ଡିତ ବ୍ୟକ୍ତିଙ୍କୁ ଗୋଦାବରୀ ନିକଟବର୍ତ୍ତୀ ଓଡ଼ିଶାର ଦକ୍ଷିଣାଞ୍ଚଳର ଶାସନକର୍ତ୍ତା ଭାବରେ ନିଯୁକ୍ତ କରିଥିଲେ । କଥିତ ଅଛି ଯୁଦ୍ଧରେ କୃତିତ୍ୱ ଦର୍ଶାଇ ଥିବାରୁ ରାଜା ପ୍ରତାପରୁଦ୍ର ତାଙ୍କୁ 'ରାୟ' ଉପାଧିରେ ଭୂଷିତ କରିଥିଲେ ।

ପ୍ରତାପରୁଦ୍ରଙ୍କ ରାଜତ୍ୱକାଳରେ ଖ୍ରୀ: ୧୫୧୦ରେ ଶ୍ରୀ ଚୈତନ୍ୟ ଓଡ଼ିଶାକୁ ଆସିଥିଲେ । ସେତେବେଳେ ଓଡ଼ିଶାରେ ଚୈତନ୍ୟଙ୍କ ଆଚରିତ ପ୍ରେମ-ଭକ୍ତି ତତ୍ତ୍ୱ ବିଷୟ କେବଳ ରାୟରାମାନନ୍ଦଙ୍କୁ ହିଁ ଉତ୍ତମରୂପେ ଜଣା ଥିଲା । ରାୟ ରାମାନନ୍ଦଙ୍କଠାରୁ ଏ ବିଷୟରେ

Digitized by srujan ka@gmail.com

ଚୈତନ୍ୟ ଯଥେଷ୍ଟ ଅବହିତ ହୋଇ ପାରିବେ—ଏହା ପୁରୀର ନୈୟାୟିକ ପଣ୍ଡିତ ବାସୁଦେବ ସାର୍ବଭୌମ ଚୈତନ୍ୟଙ୍କୁ ପୁରୀ-ଠାରେ ଜଣାଇଥିଲେ। ଚୈତନ୍ୟ ଦକ୍ଷିଣ ଭାରତରେ ତୀର୍ଥାଟନ କରୁଥିବା ସମୟରେ ଗୋଦାବରୀ ତୀରରେ ରାୟ ରାମାନନ୍ଦଙ୍କ ସାକ୍ଷାତ ଲାଭ କରିଥିଲେ । ଏହି ସାକ୍ଷାତ ଉଭୟଙ୍କ ମଧ୍ୟରେ ଏକ ଅପୂର୍ବ ଅଲୌକିକ ସଖ୍ୟ ଓ ଆନୁଗତ୍ୟ ସୃଷ୍ଟି କରିଥିଲା । ଉଭୟେ ପ୍ରେମଭକ୍ତି ତତ୍ତ୍ୱାଲୋଚନାରେ ଆତ୍ମବିଭୋର ହୋଇ ପଡ଼ିଥିଲେ । ଚୈତନ୍ୟଙ୍କ ପରାମର୍ଶକ୍ରମେ ପାରମାର୍ଥିକ ଜୀବନଯାପନ ଉଦ୍ଦେଶ୍ୟରେ ରାୟ ରାମାନନ୍ଦ ଦାୟିତ୍ୱସମ୍ପନ୍ନ ରାଜକାର୍ଯ୍ୟରୁ ଅବ୍ୟାହତି ନେଇ ପୁରୀକୁ ଫେରି ଆସିଥିଲେ । ଚୈତନ୍ୟଙ୍କ ଜୀବନୀକାରଙ୍କ ଭାଷାରେ ଚୈତନ୍ୟ ମଧ୍ୟ ରାମାନନ୍ଦଙ୍କ ସାହଚର୍ଯ୍ୟ ନିବିଡ଼ଭାବରେ କାମନା କରିଥିଲେ ।

ଚୈତନ୍ୟଙ୍କ ଜୀବନର ଶେଷ ଅଠରବର୍ଷ ପୁରୀରେ ଅତି-ବାହିତ ହୋଇଥିଲା । ରାୟ ରାମାନନ୍ଦ ଚୈତନ୍ୟଙ୍କ ସାହଚର୍ଯ୍ୟରେ ଭକ୍ତି ସାଧନା ଓ କାବ୍ୟ କବିତା ପ୍ରଣୟନରେ ତାହାଙ୍କ ଅବଶିଷ୍ଟ ଜୀବନକାଳ ପୁରୀରେ ଅତିବାହିତ କରିଥିବା ମନେହୁଏ । ତାହାଙ୍କ-ଠାରୁ କୃଷ୍ଣ କଥା ଶୁଣି ଚୈତନ୍ୟ ବିମୋହିତ ହେଉଥିଲେ —

‘ରାମାନନ୍ଦେର କୃଷ୍ଣ କଥା
ସ୍ୱରୂପେର ଗାନ
ବିରହ ବେଦନାୟ ପ୍ରଭୁର
ରାଖୟେ ପରାଣ ।’

ସମ୍ଭବତଃ ରାମାନନ୍ଦ ମାଧବେନ୍ଦ୍ର ପୁରୀଙ୍କ ଜନୈକ ଶିଷ୍ୟଙ୍କଠାରୁ ପ୍ରେମ ଭକ୍ତିତତ୍ତ୍ୱ ବିଷୟରେ ଜ୍ଞାନଲାଭ କରିଥିଲେ ।

ରାମାନନ୍ଦ ସନ୍ନ୍ୟାସ ଧର୍ମ ଗ୍ରହଣ କରି ନ ଥିଲେ ହେଁ ଚୈତନ୍ୟ ତାହାଙ୍କୁ ସମଧର୍ମୀ ଭକ୍ତ ସାଧକଭାବରେ ଗ୍ରହଣ କରି-

Digitized by srujan ka@gmail.com

ଅଛନ୍ତି । ଚୈତନ୍ୟ ତେଣୁ ତାଙ୍କୁ ବାଉଳ ପ୍ରେମ ସାଧକଭାବରେ ଅଭିହିତ କରି କହିଥିଲେ—

ଆମି ଏକ ବାଉଲ ତୁମି ଦ୍ୱିତୀୟ ବାଉଲ
ଅତଏବ ତୋମାର ଆମାର ସମତୁଲ ।

ବାସ୍ତବିକ ଗୌଡ଼ୀୟ ବୈଷ୍ଣବ ଦର୍ଶନତତ୍ତ୍ୱର ପ୍ରଥମ ଓ ପ୍ରସିଦ୍ଧ ବ୍ୟାଖ୍ୟାକାର ହେଉଛନ୍ତି ରାୟ ରାମାନନ୍ଦ । ରାଜମହେନ୍ଦ୍ରୀରେ ଚୈତନ୍ୟ ଓ ରାମାନନ୍ଦଙ୍କ ତତ୍ତ୍ୱାଲୋଚନାକୁ ଗୌଡ଼ୀୟ ପ୍ରେମଭକ୍ତି ତତ୍ତ୍ୱର ଚୂଡ଼ାନ୍ତ ଅଭିବ୍ୟକ୍ତିଭାବରେ ଗ୍ରହଣ କରାଯାଏ । ଚୈତନ୍ୟ ଏଣୁ ରାମାନନ୍ଦଙ୍କ ତତ୍ତ୍ୱ ଉପଲବ୍‌ଧି ଓ ସାଧନାର ଉତ୍କର୍ଷ ସ୍ୱୀକାର କରି କହିଥିଲେ—

'ଏ ସବ ଶିଖାଇଲା ମୋରେ ରାୟ ରାମାନନ୍ଦ
ରାୟର ପ୍ରସାଦେ ଶିଖିନୁ ବ୍ରଜେର ପ୍ରେମଭାବ ।'

ରାମାନନ୍ଦ ଦେବଦାସୀ କନ୍ୟାମାନଙ୍କୁ ଗୀତ, ଅଭିନୟ ଶିକ୍ଷା ଦେଉଥିଲେହେଁ ନିଜେ ଅତ୍ୟନ୍ତ ସଂଯତ ଓ ନିର୍ବିକାର ଥିଲେ ।

ଚୈତନ୍ୟଙ୍କ ଭାଷାରେ :—

'ନିର୍ବିକାର ଦେହ ମନ କାଷ୍ଠ ପାଷାଣ ସମ
ଆଶ୍ଚର୍ଯ୍ୟ ତରୁଣୀ ସ୍ପର୍ଶେ ନିର୍ବିକାର ମନ ।
× × × ×
ଏକା ରାମାନନ୍ଦେର ହୟ ଏଇ ଅଧିକାର
ତାତେ ଜାନି ଅପ୍ରାକୃତ ଦେହ ତାହାର ।
ତାହାର ମନେର ଭାବ ତେହିଁ ଜାନେ ମାତ୍ର
ତାହ ଜାନିବାରେ ଆର ଦ୍ୱିତୀୟ ନାହିଁ ପାତ୍ର ।''

ସ୍ୱକୀୟ ସାଧନା ବଳରେ ସେ ଭକ୍ତିମୟ ଦିବ୍ୟ ଦେହ ଲାଭ କରିଥିବା ବିଷୟକୁ ଆହୁରି ସ୍ପଷ୍ଟଭାବରେ ଅଭିବ୍ୟକ୍ତ କରି କୁହା-ଯାଇଛି— "ମନୁଷ୍ୟ ନହେଁ ରାୟ କୃଷ୍ଣ ଭକ୍ତିମୟ ।''

Digitized by srujan ka@gmail.com

ରାୟ ରାମାନନ୍ଦ ଜୀବନରେ ଆତ୍ମପ୍ରଚାରର ସ୍ପୃହା ନ ଥିଲେ ବା କୌଣସି ଗୋଷ୍ଠୀର ନେତୃତ୍ୱ ଆକାଙ୍କ୍ଷା କରି ନ ଥିଲେ । ରାମାନନ୍ଦଙ୍କ ପରମ ବୈଷ୍ଣବୋଚିତ ବିନୟ ଓ ମହାନୁଭବତାକୁ ଚୈତନ୍ୟ ସ୍ୱୀକାର କରିଥିବା ମଧ୍ୟ କୃଷ୍ଣଦାସ କବିରାଜଙ୍କ 'ଚୈତନ୍ୟ ଚରିତାମୃତ' ଗ୍ରନ୍ଥରେ ବର୍ଣ୍ଣିତ—

ପ୍ରଭୁ କହେ ରାମାନନ୍ଦ ବିନୟେର ଖଣି
ଆପନାର କଥା ପରମୁଣ୍ଡେ ଦେନ ଆଣି ।
ମହାନୁଭବେର ଏଇମତ ସ୍ୱଭାବ ହୟ,
ଆପନାର ଗୁଣ ନାହି ଆପନ କହୟ ।

ରାମାନନ୍ଦଙ୍କ ପାଣ୍ଡିତ୍ୟ ମଧ୍ୟ ସେ ଯୁଗରେ ଥିଲା ଅତୁଳନୀୟ । ସାଧକଭାବରେ ଯେପରି ତାଙ୍କୁ ସର୍ବଶ୍ରେଷ୍ଠ ଆସନ ପ୍ରଦତ୍ତ ହୋଇଛି, ପଣ୍ଡିତଭାବରେ ମଧ୍ୟ ଚୈତନ୍ୟ ତାହାଙ୍କୁ ସର୍ବଶ୍ରେଷ୍ଠଭାବରେ ଗଣନା କରିଅଛନ୍ତି । ଗୌଡ଼ୀୟ ବୈଷ୍ଣବତତ୍ତ୍ୱର ଅନ୍ୟତମ ବିଶିଷ୍ଟ ବ୍ୟାଖ୍ୟାକାର କବି ରୂପ ଗୋସ୍ୱାମୀ ତଥା ଅନ୍ୟାନ୍ୟ ଚୈତନ୍ୟ ଅନୁଗାମୀ ଲେଖକମାନଙ୍କ ରଚନାବଳୀର ଆଦ୍ୟ ସମୀକ୍ଷକ ଥିଲେ ରାୟ ରାମାନନ୍ଦ । ସାହିତ୍ୟକୃତି ସମ୍ପର୍କରେ ରାମାନନ୍ଦଙ୍କ ମତାମତକୁ ଚୈତନ୍ୟ ଯଥାର୍ଥ ମନେ କରୁଥିଲେ । ବୈଷ୍ଣବମାନଙ୍କ ରଚିତ ଯେଉଁ ଗ୍ରନ୍ଥକୁ ରାମାନନ୍ଦ ସୁପାରିସ୍ କରୁଥିଲେ ତାହା ହିଁ ଶ୍ରୀ ଚୈତନ୍ୟ ଶୁଣିଥିଲେ ଅଥବା ପାଠ କରୁଥିଲେ । ରୂପ ଗୋସ୍ୱାମୀ ରାମାନନ୍ଦଙ୍କ କବିତ୍ୱ ଓ ପାଣ୍ଡିତ୍ୟକୁ ମହତ୍ତର ବୋଲି ସ୍ୱୀକାର କରି କହିଛନ୍ତି—

'ରୂପ କହେ କାହାଁ ତୁମି ସୂର୍ଯ୍ୟ ସମ ଭାସ
ମୁଇଁ କୋନ କ୍ଷୁଦ୍ର ଯେନ ଖଦ୍ୟୋତ ପ୍ରକାଶ ।'

Digitized by srujan ka@gmail.com

ଚୈତନ୍ୟଙ୍କ ଉତ୍କଳ ଆଗମନ ପୂର୍ବରୁ ରାୟ ରାମାନନ୍ଦ ବଙ୍ଗଳା, ମୈଥିଳୀ, ବ୍ରଜବୋଲି ପ୍ରଭୃତି ଭାଷାରେ ମଧ୍ୟ ପାଣ୍ଡିତ୍ୟ ଲାଭ କରିଥିଲେ । ଶ୍ରୀ ଚୈତନ୍ୟଙ୍କୁ ରାମାନନ୍ଦ କବି ବିଦ୍ୟାପତି ଓ ଚଣ୍ଡୀଦାସପ୍ରଭୃତିଙ୍କ ଗୀତାବଳୀରୁ ଭାବାନୁରୂପ ଅଂଶ ଶୁଣାଉଥିଲେ ।

'ବିଦ୍ୟାପତି ଚଣ୍ଡୀଦାସ ଶ୍ରୀ ଗୀତଗୋବିନ୍ଦ
ଭାବାନୁରୂପ ଶ୍ଳୋକ ପଢ଼େ ରାୟ ରାମାନନ୍ଦ ।'

କ ୫ ରାମାନନ୍ଦ ମଧ୍ୟ ବ୍ରଜବୋଲି ଭାଷାରେ ସର୍ବ ପ୍ରଥମେ ସଙ୍ଗୀତ ରଚନା କରିଥିଲେ । ଏଣୁ ତାହାଙ୍କୁ ବ୍ରଜବୋଲି ଭାଷାର ପ୍ରଥମ କବିଭାବରେ ଗ୍ରହଣ କରାଯାଏ । ବଙ୍ଗଳା ଓ ବ୍ରଜବୋଲି ଭାଷାରେ ସେ ବହୁ ସଙ୍ଗୀତ ରଚନା କରିଯାଇଅଛନ୍ତି । ତାହାଙ୍କ ଓଡ଼ିଆରେ ରଚିତ କୌଣସି ଗୀତ ଏ ପର୍ଯ୍ୟନ୍ତ ମିଳି ନାହିଁ । ବଙ୍ଗଳା ଭାଷାରେ ସେ 'ଦଣ୍ଡାତ୍ମକ ଲୀଳା' ନାମକ ଏକ କାବ୍ୟ ମଧ୍ୟ ରଚନା କରିଥିବା ଜଣାଯାଏ ।

"ଶାନ୍ତ-ଶତକ ଟୀକା" ନାମକ ଏକ ଗ୍ରନ୍ଥର ସେ ରଚୟିତା ବୋଲି ବଙ୍ଗୀୟ ପଣ୍ଡିତ ନଗେନ୍ଦ୍ରନାଥ ବସୁ ଉଲ୍ଲେଖ କରି ଯାଇ ଅଛନ୍ତି । ଏତଦ୍‌ବ୍ୟତୀତ "ଟୀକା ପଞ୍ଚମ" ପ୍ରଭୃତି ବହୁ ଗ୍ରନ୍ଥ ସେ ପ୍ରଣୟନ କରିଯାଇଅଛନ୍ତି । ଦୁର୍ଭାଗ୍ୟବଶତଃ ତାହାଙ୍କ ଗ୍ରନ୍ଥ-ସମୂହ ଏପର୍ଯ୍ୟନ୍ତ ସଂଗୃହୀତ ହୋଇ ପାରି ନାହିଁ । କଟକରେ ଥିବା ତାହାଙ୍କ ଘର ଜଗନ୍ନାଥବଲ୍ଲଭରେ ମଧ୍ୟ ଚୈତନ୍ୟ ଅବସ୍ଥାନ କରିଥିଲେ ।

ଚୈତନ୍ୟଙ୍କ ତିରୋଧାନ ପରେ ଖ୍ରୀ ୧୫୩୪ରେ ତାହାଙ୍କର ସ୍ୱର୍ଗାରୋହଣ ହୋଇଥିଲି ବୋଲି ବଙ୍ଗୀୟ ପଣ୍ଡିତ ନଗେନ୍ଦ୍ରନାଥ ବସୁ ଉଲ୍ଲେଖ କରିଅଛନ୍ତି ।

---

Digitized by srujan ka@gmail.com

# ଭକ୍ତିମତୀ ମୀରାବାଈ

ଶ୍ରୀ ବୀରକିଶୋର ଦାସ, ବି. ଏ. ଏଚ୍. ଡି. ସି.

ସମ୍ପାଦକ 'କଲ୍ୟାଣୀ' ଓ 'ସମବାୟ ସମାଚାର'

୧୫୦୪ ମସିହାରେ ତତ୍କାଳୀନ ବିକାନୀର ଓ ଯୋଧପୁର ରାଜ୍ୟ ମଧ୍ୟରେ ଥିବା ମୈରତା ନଗରୀରେ ମୀରାବାଈଙ୍କର ଜନ୍ମ । ବାଲ୍ୟକାଳରୁ ମା'ଙ୍କଠାରୁ ଧର୍ମ କଥା ଶୁଣିବାକୁ ସେ ଖୁବ୍ ଭଲ ପାଉଥିଲେ । ପରେ ଗିରିଧରଲାଲଙ୍କର ସେ ହୋଇପାରିଥିଲେ ଜନୈକା ପ୍ରଧାନ ଭକ୍ତ ।

ବାଲ୍ୟକାଳରୁ ଭକ୍ତିଭାବର ବୀଜ ତାଙ୍କ ହୃଦୟରେ ବପିତ ହୋଇଥିଲା । କଥିତ ଅଛି—ଥରେ ଗୋଟିଏ ବୃର ବେଷମା କରି ରାଜନଅର ବାଟେ ଯାଉଥାଏ । ମୀରା ତାହା ଦେଖି ମା'ଙ୍କୁ ପଚାରିଲେ —"ମା ! ମୋ ବର କିଏ ? ମା' ଗିରିଧରଲାଲ ମୂର୍ତ୍ତିଙ୍କୁ ଦେଖାଇ କହିଲେ ଏହି ତୋର ବର ।" ସେହି ଦିନୁ ମୀରା ଠାକୁରଙ୍କୁ କ୍ଷଣେ ନ ଦେଖିଲେ ପାଗଳୀ ହୋଇଯାଉଥିଲେ । ଝିଅର ମନ ପରିବର୍ତ୍ତନ କରିବା ଲଗି ରାଣା ରତନ ସିଂହ ମିବାର ରାଣାଙ୍କ ପୁଅ କନଓ୍ବାର ଭୋଜରାଜଙ୍କ ସହିତ ମୀରାଙ୍କର ବିବାହ ସମ୍ପନ୍ନ କରିଥିଲେ; କିନ୍ତୁ ସେ ସାଂସାରିକ ସୁଖସମ୍ଭୋଗକୁ ହେୟ କରି ନିଜର ଭକ୍ତିଭାବରେ ଥିଲେ ଅଟଳ । ରାଣାଙ୍କଦ୍ୱାରା ବହୁ ଅଗ୍ନି-ପରୀକ୍ଷାର ସମ୍ମୁଖୀନ ହୋଇଥିଲେ ମଧ୍ୟ ତାଙ୍କର ନିଷ୍କଳୁଷ ହୃଦୟରେ ଭଗବତ୍ ପ୍ରାପ୍ତିର ଲାଳସା ସର୍ବଦା ଥିଲା ଉଜ୍ଜୀବିତ । ବିଳାସ-ବିହ୍ୱଳ ରାଜକୀୟ ଜୀବନର ବିନିମୟରେ ସେ ବରଣ କରିନେଇଥିଲେ ତ୍ୟାଗପୂତ ସନ୍ନ୍ୟାସିନୀ ଜୀବନ ।

Digitized by srujan ka@gmail.com

ବୃନ୍ଦାବନରେ ଅବସ୍ଥାନ କାଳରେ ତାଙ୍କ କବିତ୍ୱର ଯେଉଁ ଅପରୂପ ସ୍ଫୁରଣ ହୋଇଥିଲା, ତାହା ଯଥାର୍ଥେ ଅନନ୍ୟସାଧାରଣ । ତାଙ୍କ ଭଜନଗୁଡ଼ିକରେ ପ୍ରେମାଭିବ୍ୟଞ୍ଜନା, ଭଗବତ୍ ସାନ୍ନିଧ୍ୟ ପ୍ରାପ୍ତିର ଅଦମ୍ୟ ଲାଳସା ଓ କ୍ଷଣଭଙ୍ଗୁର ସଂସାର ପ୍ରତି ବୈରାଗ୍ୟ ସ୍ପଷ୍ଟ ହୋଇଉଠିଛି । ଉଦାହରଣସ୍ୱରୂପ—

"ଯୋ ସଂସାର ବକାର ସାଗର ବଚ୍‌ମେ ଘେରୀ
ନାବ ଫାଟି ପ୍ରଭୁ ପାଲ ବାନ୍ଧୋ ବୁଡ଼ତ ହୈ ବେରୀ ।"

ଅଲୌକିକ ପ୍ରେମ ପ୍ରତି ତାଙ୍କର ଦରଦୀ ହୃଦୟ ଥିଲା ଅନବରତ ଉନ୍ମୁଖ । ଅନୁରାଗ ଓ ବିରାଗ ଏହି ଦୁଇ ସହଜାତ ପ୍ରବୃତ୍ତି ମଧ୍ୟରେ ସଂଘର୍ଷ ତାଙ୍କ ହୃଦୟରେ ଯେଉଁ ଆଲୋଡ଼ନ ସୃଷ୍ଟି କରିଥିଲା, ତାହା ଉଭୟେ ମାଧୁର୍ଯ୍ୟ ଓ ଦାସ୍ୟଭାବର ଅଭିବ୍ୟଞ୍ଜକ । ତାଙ୍କର ବିଷୟୀପ୍ରଧାନ ରଚନା ଯୋଗୁଁ ପ୍ରତିଛନ୍ଦରେ ପାଠକ ଦେଖିପାରେ ବ୍ୟକ୍ତିତ୍ୱର ପ୍ରତିଫଳନ । ରାଗାନୁଭକ୍ତିରେ ପାଗଳ ହୋଇ କାନ୍ତ ଭାବର ଉପାସିକାଭାବେ ସେ ଗାଇ ଉଠିଥିଲେ—

"ପଗ୍ ଘୁଙ୍ଘରୁ ବାନ୍ଧ ମୀରା ନାଚରେ
ଲୋଗ୍ କହେ ମୀରା ହୋଗୟୀ ବାବରୀ, ସାସ୍ କହେ
କୁଲ୍‌ନାଶୀରେ ।
ଜହରକା ପ୍ୟାଲା ରାଣାଜୀ ଭେଜା ପୀୟତ ମୀରା
ହାଂସୀରେ
ମୈଁ ତୋ ଅପନେ ନାରାୟଣକୀ ହୋଗୟୀ ଆପହିଁ
ଦାସୀରେ ।
ମୀରାକେ ପ୍ରଭୁ ଗିରିଧର ନାଗର ବେଗ୍ ମିଲୟେ
ଅବିନାଶୀରେ ।"

Digitized by srujan ka@gmail.com

ତାଙ୍କର ରଚନା ଧାର୍ମିକ ରହସ୍ୟରଞ୍ଜିତ ହେଲେ ମଧ୍ୟ ସାଧାରଣ ପାଠକ ହୃଦୟର ପ୍ରତ୍ୟେକ ତନ୍ତ୍ରୀକୁ ସ୍ପର୍ଶ କରିଥାଏ । ମୀରାଙ୍କର ସାଧନା ନିର୍ଗୁଣଧର୍ମୀ; କିନ୍ତୁ ରାଧାଭାବର ସେ ଥିଲେ ଉପାସିକା । କୃଷ୍ଣ ହିଁ ଥିଲେ ତାଙ୍କର ଶ୍ରେଷ୍ଠପୁରୁଷ—"ମେରେ ତୋ ଗିରିଧର ଗୋପାଲ୍ ଦୁସ୍‌ରୋ ନ କୋଇ—" ଏହି ଦୃଢ଼ ବିଶ୍ୱାସ ତାଙ୍କ ହୃଦୟରେ ଭରି ଦେଇଥିଲା ତନ୍ମୟତା ।

ମୀରା ଜାଣିଥିଲେ ଯେ, ପ୍ରଭୁ ତାଙ୍କର ହେଉଛନ୍ତି ପୂର୍ଣ୍ଣବ୍ରହ୍ମ, ଅବିନାଶୀ । ଆନନ୍ଦ ତଥା ଆଲୋକମୟ ରାଜ୍ୟର ସନ୍ଧାନ ପାଇ ସାରିଲା ପରେ ରୂପଲୋକରୁ ସ୍ୱତଃ ବିଚ୍ଛିନ୍ନ ହୋଇ ଅରୂପଙ୍କ ଚିନ୍ମୟ ସତ୍ତା ସନ୍ଧାନରେ ସେ ହୋଇଥିଲେ ସତତ ବ୍ରତୀ । ତେଣୁ ତାଙ୍କର ବିରହ ରହସ୍ୟବାଦୀର ବିରହ । ଗିରିଧରଲାଲଙ୍କୁ ପତିଭାବେ ଉପାସନା କରୁଥିଲେ ମଧ୍ୟ ସେ ହୃଦୟଙ୍ଗମ କରିଥିଲେ ଯେ, ପ୍ରଭୁ ତାଙ୍କର ହେଉଛନ୍ତି ପୂର୍ଣ୍ଣବ୍ରହ୍ମ, ଅବିନାଶୀ । ତାଙ୍କ ରଚନାରେ ଭାବଗତ ସୌନ୍ଦର୍ଯ୍ୟ, ଛନ୍ଦର ରମଣୀୟତା, ସଂଗୀତମୟୀ ଭାଷା ପାଠକ ତଥା ଗାୟକ ପ୍ରାଣରେ ଅଭିନବ ରେଖାପାତ କରେ ।

ଶୈଳୀଦୃଷ୍ଟିରୁ ତାଙ୍କ ରଚନାରେ ଗୀତିଧର୍ମର ପ୍ରାଧାନ୍ୟ ପରିଲକ୍ଷିତ ହୋଇଥାଏ । ପ୍ରତ୍ୟେକ ପଦରେ ଭଗବାନ ଶ୍ରୀକୃଷ୍ଣଙ୍କର ନାମ, ରୂପ ଓ ଲୀଳା ବର୍ଣ୍ଣନା କରିବା ହେଉଛି ବୈଷ୍ଣବୀୟ ଗୀତି ପରମ୍ପରାର ଉପଜୀବ୍ୟ ଉପାଦାନ । ଏହା ବିରହପ୍ରଧାନ ଅନୁଭୂତି-ଦ୍ୱାରା ସାଧାରଣତଃ ଉପାଣିତ । ଭାଷାଦୃଷ୍ଟିରୁ ବିଚାର କଲେ ଜଣା-ଯାଏ ଯେ, ମୀରବାଈ କୌଣସି ନିର୍ଦ୍ଦିଷ୍ଟ ଭାଷାର ଅନୁସରଣ କରି-ନାହାନ୍ତି । ରାଜସ୍ଥାନୀ, ବ୍ରଜଭାଷା, ମଧ୍ୟ ଗୁଜରାଟି, ପଞ୍ଜାବୀ, ଖଡ଼ୀ ବୋଲି ଇତ୍ୟାଦିର ସମ୍ମିଶ୍ରଣରେ ତାଙ୍କ ଭାଷା ପୁଷ୍କଳ ହୋଇ ଉଠିଛି ।

Digitized by srujan ka@gmail.com

ମଣିଷ ପ୍ରତି ପ୍ରକୃତି ସମ୍ବେଦନଶୀଳ । ମୀରା ପ୍ରକୃତି ପ୍ରତି ଉଦାସୀନ ରହିଲେ ମଧ୍ୟ ପ୍ରକୃତିର ସ୍ୱତଃ ସରଳ ପ୍ରକାଶ ତାଙ୍କ ରଚନାରେ ସାମୟିକ ରୂପାୟିତ ହୋଇଛି । ପ୍ରିୟଙ୍କ ବିରହ ମର୍ମବ୍ୟଥା ଯୋଗୁଁ ବିରହିଣୀ ମୀରା ମଧୁର ଆତୁରତା ପ୍ରକାଶ କରି ଗାଇଛନ୍ତି—

"ପପଇୟାରେ ପିୟ କ ବାଣୀ ନ ବୋଲ
ଶୁଣି ପାବେଗୀ ବିରହିଣୀରେ ଧରେ ରାଲେଲୀ ପଂଖ ମରୋଡ଼୍ "

ଅବଶ୍ୟ ଏଥିରେ ତାଙ୍କ ପ୍ରକୃତି ବର୍ଣ୍ଣନାର ବ୍ୟାପକତା କମ୍ବା ବୈବିଧତା ନ ଥିଲେ ମଧ୍ୟ ଅଛି ନୈସର୍ଗିକ ଭାବୋଦ୍ରେକର ଲାବଣ୍ୟ ଓ ଶିଳ୍ପୀର କଳାନୈପୁଣ୍ୟ ।

ଭଗବାନଙ୍କର ଅଙ୍ଗସଙ୍ଗ ଲାଭ କରିବା ଭକ୍ତ ଜୀବନର ହେଉଛି ଚରମ ତଥା ପରମ କାମନା । ମୀରାଙ୍କର ସେହି କାମନା ପୂର୍ଣ୍ଣ ହୋଇଥିଲା । ସେ ଗିରିଧରଲାଲଙ୍କ ମନ୍ଦିରରେ ପ୍ରାର୍ଥନା କରୁ କରୁ ତାଙ୍କର ଅମରାତ୍ମା ପ୍ରଭୁଙ୍କ ଦେହରେ ଲୀନ ହୋଇଯାଇଥିଲା । ରୁଦ୍ଧ ମନ୍ଦିର ଦ୍ୱାରଭଙ୍ଗ କରି ପ୍ରତ୍ୟୁଷରେ ଲୋକେ ଦେଖିଲେ ଭକ୍ତମଣି ମୀରାବାଈ ନାହାନ୍ତି । ତାଙ୍କ ପିନ୍ଧିଥିବା ଗେରୁଆ ଲୁଗା ମୂର୍ତ୍ତି ଶ୍ରୀରପଟେ ଗୁଡ଼େଇ ହୋଇ ଯାଇଛି । କେବଳ ସାହିତ୍ୟିକ କୃତି ନୁହେଁ, ଭକ୍ତ ଜୀବନର ପରମ ପରାକାଷ୍ଠା ପ୍ରଦର୍ଶନ କରି ମୀରାବାଈ ଆଜି ସମଗ୍ର ଦେଶରେ ହୋଇଛନ୍ତି, ପ୍ରାତଃସ୍ମରଣୀୟା ।

## ରାମ ନାମ ରସ

### ମୀରାବାଈ

ରାମ ନାମ ରସ ପିଇ ଯା
ମନୁଆ, ରାମ ନାମ ରସ ପିଇଯା । (ଘୋଷା)
ମନ୍ଦ ସଙ୍ଗ ତେଜ ସାଧୁ ସଙ୍ଗ କର
କାନେ ହରି କଥା ନେଇ ଯା ॥

Digitized by srujan ka@gmail.com

କାମ କ୍ରୋଧ ମଦ ଲୋଭ ମୋହ ସବୁ
ଚିତ୍ତରୁ ତୁ ଛଡ଼ ଦେଇ ଯା ।
ମୀରାର ପ୍ରଭୁ ଗିରିଧର ନାଗର
ରଙ୍ଗେ ବୋଲା ସେ କହି ଯା ॥

## ଭକ୍ତମତୀ ମୀରାବାଈଙ୍କ ବାଣୀ

ସତ୍ ଉପାୟରେ ବଂଶବୃଦ୍ଧି । ସତ୍ ଉପାୟରେ ଅର୍ଥୋପାର୍ଜନ । ସତ୍ ଉପାୟରେ ସମ୍ପଦ ଓ ସମ୍ପଦ ବରଣ କରିବା ସଦାଚାର ପଦବାଚ୍ୟ । କେବଳ ବାହ୍ୟିକ କାର୍ଯ୍ୟାଚରଣଦ୍ୱାରା ଭଗବତ୍‌ପ୍ରାପ୍ତି ହୁଏ ନାହିଁ । ପ୍ରତ୍ୟହ ପ୍ରାତଃସ୍ନାନ କରି ଯଦି ହରିଚରଣ ଲାଭ ହୁଅନ୍ତା, ତେବେ ଜଳଜନ୍ତୁମାନେ ପାଣିରେ ରହନ୍ତି, ସେମାନେ ପ୍ରଥମେ ଭଗବାନଙ୍କୁ ପାଆନ୍ତେ ।

ଫଳାହାର କରି ଯଦି ଭଗବାନଙ୍କୁ ଲାଭ କରାଯାଇ ପାରନ୍ତା ତାହାହେଲେ ଫଳାହାରୀ ପଶୁପକ୍ଷୀମାନେ ପ୍ରଥମେ ଭଗବାନଙ୍କୁ ପାଇବେ ।

ସଂସାର ତ୍ୟାଗ କରି ଅର୍ଥାତ୍ ସ୍ତ୍ରୀ ବର୍ଜନ କରି ଯଦି ଭଗବତ୍ ଲାଭ ହୋଇ ପାରନ୍ତା ତାହାହେଲେ ବହୁତ ସନ୍ନ୍ୟାସୀ ଆଗ ପାଇପାରନ୍ତେ ।

ଦୁଗ୍ଧ ପାନକରି ଯଦି ଭଗବାନଙ୍କୁ ଲାଭ କରି ହୁଅନ୍ତା ତା'ହେଲେ ବାଛୁରୀମାନେ ଓ ଶିଶୁମାନେ ପ୍ରଥମେ ଭଗବାନଙ୍କୁ ପାଇ ପାରନ୍ତେ ।

ଅତଏବ ଭଗବାନଙ୍କଠାରେ ନିଃସ୍ୱାର୍ଥ ଶ୍ରଦ୍ଧାଭାବ ନ ଥାଇ କେବଳ ଉପର୍ଯ୍ୟୁକ୍ତ କାର୍ଯ୍ୟାଚରଣଦ୍ୱାରା ଭଗବାନଙ୍କୁ ଲାଭ କରିବା ।

---

Digitized by srujan ka@gmail.com

# ଗୋ-ସ୍ୱାମୀ ତୁଳସୀ ଦାସ

ଶ୍ରୀ ଜଗତ୍‌ବନ୍ଧୁ ମହାପାତ୍ର, ଏମ୍‌: ଏ: ଆଇ: ଏ: ଏସ୍ (ଅବସରପ୍ରାପ୍ତ)

ପ୍ରବାଦ ଅଛି ଯେ, ନିଜେ ବାଲ୍ମୀକ ଭାଷାରେ ରାମାୟଣ ଲେଖିବା ଉଦ୍ଦେଶ୍ୟରେ ତୁଳସୀ ଦାସ ରୂପରେ ଜନ୍ମଗ୍ରହଣ କରିଥିଲେ । ଜନ୍ମରୁ ତୁଳସୀ ଦାସଙ୍କ ମା' ମରିଯାଇଥିଲେ । ତାଙ୍କ ବାପା ତାଙ୍କୁ ଅଲକ୍ଷଣା ପୁଅ ବୋଲି ପାଖରେ ରଖିଲେ ନାହିଁ । ଜଣେ ଧାଈ ତାଙ୍କୁ ପାଳିଲା । ପାଞ୍ଚବର୍ଷ ବୟସରେ ସେ ଧାଈ ମଧ୍ୟ ମରିଗଲା । ତୁଳସୀ ଦାସ ଅରକ୍ଷ ପରି ବୁଲୁଥିଲେ । ପ୍ରବାଦ ଅଛି ସରସ୍ୱତୀ ନିଜେ ଆସି ତାଙ୍କୁ ଦୁଧ ପିଆଇ ଯାଉଥିଲେ । ଗୁରୁ ନରହରି ଦାସଙ୍କଠାରୁ ଦୀକ୍ଷା ନେଇ ବେଦ-ବେଦାନ୍ତ ଆଦି ପଢ଼ି ଉପନୟନ ପରେ ପୁଣି ତୁଳସୀ ଦାସ ଗ୍ରାମକୁ ଆସିଲେ । ଗ୍ରାମରେ ପ୍ରତ୍ୟହ ରାମାୟଣ ପାଠ କରନ୍ତି । ଏହି ସମୟରେ ଜଣେ ବିଦେଶୀ ବ୍ରାହ୍ମଣ ତାଙ୍କ ରାମାୟଣ ଶୁଣି ତା'ର ନିଜ କନ୍ୟାକୁ ତୁଳସୀ ଦାସଙ୍କ ହାତରେ ଅର୍ପଣ କଲେ । ବିବାହ ପରେ ତୁଳସୀ ଦାସ ତାଙ୍କ ପତ୍ନୀଙ୍କଠାରେ ବଡ଼ ଆସକ୍ତ ହୋଇ ପଡ଼ିଲେ । ଦିନେ ସେ ନ ଥିବା ଅବସ୍ଥାରେ ତାଙ୍କ ସ୍ତ୍ରୀଙ୍କ ଭାଇ ଆସି ତାଙ୍କୁ ଗ୍ରାମକୁ ନେଇଗଲେ । ତୁଳସୀ ଦାସ ଘରକୁ ଫେରି ସ୍ତ୍ରୀଙ୍କୁ ନ ଦେଖି ବର୍ଷା ଝଡ଼ ମଧ୍ୟ-ଦେଇ ଶ୍ୱଶୁର ଘରେ ଯାଇ ହାର ବାଡ଼େଇଲେ; ତାଙ୍କ ସ୍ତ୍ରୀ ଦ୍ୱାର ଫିଟାଇ ଦେଖନ୍ତି ତ ତାଙ୍କର ସ୍ୱାମୀ ଆସି ଉପସ୍ଥିତ । ସେ ଟିକିଏ ବିରକ୍ତ ହୋଇ କହିଲେ—

Digitized by srujan ka@gmail.com

ହାଡ଼ମାଂସର ଏ ଦେହ ଖଣ୍ଡେ ପ୍ରଭୁ
ଅଦ୍ଭୁତ ଏ ପ୍ରୀତି ତବ ।
ଏଥିରୁ ଅର୍ଦ୍ଧେକ ସ୍ୱାମୀ ପଦେ ଦେଲେ
ଭବବନ୍ଧ ଯାନ୍ତା ଧ୍ରୁବ ॥

ଏତକ ଶୁଣି ତୁଳସୀ ଦାସଙ୍କର ମନ ବଦଳି ଗଲା । ତାଙ୍କୁ ଲାଗିଲା ସତେ ଯେପରି ସରସ୍ୱତୀ ତାଙ୍କୁ ଏହା କହୁଛନ୍ତି । ସେ ଫେରି, ହେଲେ ମହାସନ୍ନ୍ୟାସୀ । ବହୁତ ଭକ୍ତିଗ୍ରନ୍ଥ ଲେଖିଲେ । ପ୍ରବାଦ ଅଛି ତାଙ୍କ ଲିଖିତ 'ବିନୟ ପତ୍ରିକା'ରେ ନିଜେ ରାମଚନ୍ଦ୍ର ଦସ୍ତଖତ କରିଛନ୍ତି । ତାଙ୍କ ରଚିତ ଗ୍ରନ୍ଥ ମଧ୍ୟରୁ 'ରାମଚରିତ ମାନସ' ଏତେ ଜନପ୍ରିୟ ହେଲା ଯେ, ସଂସ୍କୃତ ପଣ୍ଡିତମାନେ ଭାଷାଗ୍ରନ୍ଥର ଏତେ ଆଦର ଦେଖି ଇର୍ଷାବଶ ହେଲେ । ସେମାନେ ଦୁଇଟି ଚୋର ପଠାଇ ରାମାୟଣକୁ ଚୋରି କରିବାର ଚେଷ୍ଟାକଲେ; ମାତ୍ର ଚୋରମାନେ ଦେଖିଲେ ଦୁଇଟି ଧନୁର୍ଦ୍ଧର ରାଜକୁମାର ତୁଳସୀଦାସଙ୍କ ପୁସ୍ତକକୁ ଜଗି ରହିଛନ୍ତି ।

ଦିନେ ତୁଳସୀ ଦାସ ଗଙ୍ଗାସ୍ନାନପାଇଁ ଯିବାବେଳେ ଜଣେ ସ୍ତ୍ରୀ ପ୍ରଣାମ କଲା । ସେ କଲ୍ୟାଣ କଲେ "ସୁଲକ୍ଷଣୀ ହୁଅ" ଲୋକେ କହିଲେ "ତା'ର ସ୍ୱାମୀ ତ ମରିଯାଇଛି, ତାକୁ ବିଧବା କରିବାକୁ ଗଙ୍ଗାକୁ ନେଉଛନ୍ତି ।" ତତ୍‌କ୍ଷଣାତ୍ ଗୋସ୍ୱାମୀ ସେ ମୃତଦେହ ପାଖକୁ ଫେରିଲେ ଓ ରାମନାମ ଉଚ୍ଚାରଣ କରି ତାଙ୍କୁ ଜୀବଦାନ ଦେଲେ ।

ଏହିପରି ତାଙ୍କ ଜୀବନରେ ବହୁ ଅଲୌକିକ ଘଟଣା ନିତ୍ୟ ଘଟୁଥିଲା । ତାଙ୍କୁ ଦେଖିବାକୁ ନିତି ସହସ୍ରାଧିକ ଲୋକ ଆସୁଥିଲେ । କଥିତ ଅଛି ନିଜେ ହନୁମାନ ତାଙ୍କ ରାମାୟଣ ଶୁଣିବାକୁ ପ୍ରତିଦିନ ଗଙ୍ଗା ଘାଟକୁ ଆସୁଥିଲେ ।

Digitized by srujan ka@gmail.com

# ଗୋସ୍ୱାମୀ ତୁଳସୀ ଦାସଙ୍କ ବାଣୀ

## (ସଂଗ୍ରାହକ ନିମାଇଁ ଚରଣ ଦାସ)

### ଗୋସ୍ୱାମୀ ତୁଳସୀ ଦାସଙ୍କର ରାମଚନ୍ଦ୍ରଙ୍କ ବନ୍ଦନା

ଶ୍ରୀ ରାମଚନ୍ଦ୍ର ଶୋଭାର ସମୁଦ୍ର, ଗୁଣର ସାଗର, ତେଜର ମହୋଦଧି, ସୁନ୍ଦର ଭ୍ରୂଲତା, କମନୀୟ କପୋଳ, ମସ୍ତକରେ ଜଟା-ମୁକୁଟ, ବିଶାଳ ଲଲାଟରେ ତିଳକବିନ୍ଦୁ, ଧ୍ୟାନ ସମୟରେ ମୁନି-ମାନଙ୍କ ମନକୁ ମୋହିତ କରନ୍ତି । ଶ୍ରୀରାମଙ୍କ ପୀତାମ୍ବର ଶୋଭାରେ ବିଦ୍ୟୁତ୍ ଲଜ୍ଜିତ ହୁଏ, ସୁନ୍ଦର କଟି ଦେଖି ସିଂହ ଲଜ୍ଜିତ ଓ ଲୋକ ଲୁହାଣି ମୁନିମନ ହରଣ କରେ । ଏପରି ସର୍ବ ଶୋଭାର ନିଧାନ ଶ୍ରୀରାମଙ୍କୁ ଦେଖି କାମ ଲଜ୍ଜିତ ହୁଏ ।

ଯେ ହରି କଥା ନ ଶୁଣେ ତାହା କାନ ଦୁଇଟି ସର୍ପର ବିଳ ପରି ଅନିଷ୍ଟକାରକ ଅଟେ ।

ଯାହାର ଆଖି ଈଶ୍ୱର ଦର୍ଶନ ନ କଲା, ସେ ଆଖି ଦୁଇଟି ମୟୂରଚନ୍ଦ୍ରିକା ପରି ନିଷ୍ଫଳ ।

ଯାହାର ଶିର ଭଗବାନଙ୍କ ଚରଣତଳେ ବା ପାଦପଦ୍ମରେ ନ ଲୋଟିଲା ସେ ମୁଣ୍ଡଟି ଲାଉତୁମ୍ବା ପରି ନିରର୍ଥକ ।

ଯାହାର ହୃଦୟରେ ହରିଭକ୍ତି ନାହିଁ ତାହାର ଦେହ ଶବ (ମଡ଼ା) ସଙ୍ଗେ ସମାନ । ଯାହାର ଜିହ୍ୱା ରାମ-ହରି ଗୁଣଗାନ ନ କରେ ତାହାର ଜିହ୍ୱା ଭେକ (ବେଙ୍ଗ) ଜିହ୍ୱାପରି ତୁଚ୍ଛ । ହରି-ଚରିତ ଶୁଣି ଯାହାର ଆନନ୍ଦ ନ ଜନ୍ମେ ତା'ଛାତି ବଜ୍ରପରି କଠୋର ଅଟେ ।

—ତୁଳସୀ ରାମାୟଣ—

Digitized by srujan ka@gmail.com

## ଈଶ୍ୱରବିମୁଖ ପ୍ରାଣୀ ସୁଖ ପାଇପାରେ ନାହିଁ

ବରଂ କମଠ (କଇଁଛ) ପିଠିରେ ଲୋମ ଜନ୍ମିପାରେ, ବନ୍ଧ୍ୟା ପୁତ୍ର ବରଂ କାହାକୁ ମାରିପାରେ, ଆକାଶରେ ବରଂ ବହୁବିଧ ଫୁଲ ଫୁଟିପାରେ, ବରଂ ମୃଗତୃଷ୍ଣା ଜଳରେ ତୃଷ୍ଣା ମେଣ୍ଟିପାରେ ବରଂ ଶଶକ ମସ୍ତକରେ ତୀକ୍ଷ୍ଣ ଶୃଙ୍ଗ ଜନ୍ମିପାରେ, ଅନ୍ଧକାର ବରଂ ସୂର୍ଯ୍ୟଙ୍କୁ ନାଶ କରିପାରେ, ବରଫ ଦେହରୁ ବରଂ ଅଗ୍ନି ଜନ୍ମି-ପାରେ, ପାଣି ମନ୍ଥନ କରି ବରଂ ଘୃତ ବାହାର କରାଯାଇପାରେ, ବାଲିରୁ ବରଂ ତେଲ ବାହାର କରାଯାଇପାରେ ଏ ସବୁ ଅସମ୍ଭବ ସମ୍ଭବ ହୋଇପାରେ, ମାତ୍ର ଈଶ୍ୱରବିମୁଖ ବା ପ୍ରତିକୂଳ ବା ହରିଭଜନ ବିନା ପ୍ରାଣୀ ସୁଖଶାନ୍ତି ପାଇପାରେ ନାହିଁ କି ସଂସାରରୁ ତରିବା ଅସମ୍ଭବ । ଏହା ସ୍ଥିର ସିଦ୍ଧାନ୍ତ, ଯେ ହରି ଭଜନ କରନ୍ତି ସେ ନିଶ୍ଚୟ ଦୁସ୍ତର ଭବ-ସମୁଦ୍ର ତରିଯାଆନ୍ତି । "

—ତୁଳସୀ ରାମାୟଣ—

ଯାହାର ମନ ମଧ୍ୟରେ ପରର ହିତ କାମନା ସର୍ବଦା ଜାଗରୂକ ଥାଏ, ଜଗତରେ ତା'ର ଦୁର୍ଲଭ ହୋଇ କିଛି ନାହିଁ ।

ପୁତ୍ର, ବିତ୍ତ ଓ ନାରୀ ଏ ତିନୋଟିର ସୁଖ ଆକାଶର ଘନଘଟା ପରି ଅସ୍ଥାୟୀ; ଏଥିରେ ପୁଣି ନିଜ ଜୀବନ ମେଘ ଦେହରେ ବିଜୁଳି ପରି ଅସ୍ଥିର, କ୍ଷଣେ ଦେଖାଦେଇ ପରକ୍ଷଣରେ ଉଭେଇଯାଏ ।

### କାହାକୁ କଅଣ ମିଳେ ନାହିଁ

ସେବକକୁ ସୁଖ କାହିଁ ମିଳେ କି ସୁନ୍ଦରୀ !

ସନମାନ କାହିଁ କେବେ ଲଭେ କି ଭିକାରି ?

Digitized by srujan ka@gmail.com

ଜୁଆଖରକୁ ଧନ କେବେ ହୁଏ କି ପ୍ରାପତ ?
ବ୍ୟଭିଚାରୀ ଶୁଭଗତି ଲଭେ କି କଦାପି ?
ଲୋଭୀ ଲୋକ ଯଶ ଲୋଡ଼ ପାଇଛୁ କି କାହିଁ ?
ଅଭିମାନୀ ପତିବ୍ରତା କେବେହେଁ ନ ଲଭଇ ।
ଏମନ୍ତ ଜନ ତେମନ୍ତ ପଦାର୍ଥ ଲୋଡ଼ିଲେ,
ଆକାଶୁଁ ଦୁଧ ଦୁହିଁବା ସରି ବୁଝ ଭଲେ ।
—ତୁଳସୀ ରାମାୟଣ (ଜଗବନ୍ଧୁ)

ଯେ ପରଧନ ଅପହରଣ କରେ, ତା'ର ବହୁଧନ ଦାନ କରିବା ନ କରିବା ସମାନ ।

ଯେ ସର୍ବଦା ପରଦାର ରତ ସେ ନାନା ତୀର୍ଥ ଭ୍ରମଣ କରିବା ନ କରିବା ସମାନ ।

ଯେ ସର୍ବଦା ପର ସୁବିଧାବାଦୀ ତା'ର ଧାର୍ମିକ ହେବା ନ ହେବା ସମାନ ।

ଯେ ମୁଖରେ ପରନିନ୍ଦା ପରଚର୍ଚ୍ଚା କରେ, ସେ ମୁଖରେ ବହୁବାର ଭଗବତ୍ ନାମ ଉଚ୍ଚାରଣ କରିବା ନ କରିବା ସମାନ । (ଏ ସବୁ କାର୍ଯ୍ୟ ଭଗବତ୍ ଭକ୍ତ ପକ୍ଷରେ ପରମ କଣ୍ଟକ)

## ପରହିତ

ସାଧୁଜନ, ବୃକ୍ଷ, ନଦୀ, ଗିରି, ବସୁନ୍ଧରା,
ପରହିତପାଇଁ ଏମାନଙ୍କ ସୃଷ୍ଟି ପରା ।
କବି କହେ ସାଧୁ ହୃଦ ଲବଣୀ ସମାନ,
କବି ନ ଜାଣିବା କଥା ଏହି ଜାଣେ ମନ ।
ଲହୁଣୀ ତ ନିଜେ ନିଜେ ତରଳ ମରଇ
ସାଧୁ ଯେ ପରର ଦୁଃଖ ଦେଖି ତରଳଇ ।
—ତୁଳସୀ ରାମାୟଣ, ଉତ୍ତରାକାଣ୍ଡ (ଜଗବନ୍ଧୁ)

Digitized by srujan ka@gmail.com

## ସଂସାରରେ କେଉଁମାନେ ଧନ୍ୟ

ଧନ୍ୟ ସେହି ନାରୀ ଯେହୁ ପତିସେବା ରତ
ଧନ୍ୟ ସେହି ଦେଶ ଯହିଁ ଗଙ୍ଗା ପ୍ରବାହିତ ।
ଧନ୍ୟ ସେ ନୃପତି ଯେହୁ ଆଚରଇ ନୀତି
ଧନ୍ୟ ସେ ବ୍ରାହ୍ମଣ ନିଜ ଧର୍ମେ ଯା'ର ମତି ।
ଧନ୍ୟ ସେହୁ ଧନ ଯେହୁ ଦାନରେ ଲଗଇ
ଧନ୍ୟ ସେହୁ ମତି ଯା'ର ପୁଣ୍ୟେ ରତ ଥାଇ ।
ଧନ୍ୟ ସେ ମୁହୂର୍ତ୍ତ ଯହିଁ ମିଳେ ସାଧୁ ସଙ୍ଗ
ଧନ୍ୟ ସେହୁ ପ୍ରାଣୀ ଦ୍ୱିଜେ ଯା ଭକ୍ତି ଅଭଙ୍ଗ ।
ଧନ୍ୟ ସେହୁ କୁଳ ଜଗତେ ସେ ପୂଜ୍ୟ
ଭୂମାସେ ପବିତ୍ର ଅତି
ଯେ କୁଳେ ଜନମ ଶ୍ରୀରାମ ଭକତ
ପବିତ୍ର ସାଧୁ ସନ୍ତତି ।

—ଜଗତ୍‌ବନ୍ଧୁ-ତୁଳସୀ ରାମାୟଣ—

## କେଉଁମାନଙ୍କ ସଙ୍ଗେ ବିବାଦ କରିବ ନାହିଁ

ଶୁଣ ମାନସ ହୃଦୟେ କରଇ ବିଚାର
ଶସ୍ତ୍ର ଧରିଥିବା ଜନେ ନୁହେଁ ବେଢ଼ିବାର ।
ମରମ ଯେ ଜାଣିଥିବ ତା'ରେ ଏଡ଼ ନୁହେ
ପ୍ରଭୁ, ଶଠ, ଧନୀ ତୁଲେ ବିବାଦ ନ ଶୋହେ ।
ବୈଦ୍ୟ, ଭାଟ, କବି, ଗୁଣୀ ଏମାନଙ୍କ ତୁଲେ
ବିପଦ ଅଛି ଏ ନିଅ ତୁଲେ ବାଦ କଲେ ।

—ଜଗତ୍‌ବନ୍ଧୁ ତୁଳସୀରାମାୟଣ—



Digitized by srujan ka@gmail.com

କେଉଁମାନେ ବଞ୍ଚିଥିଲେ ମୁଦ୍ଧା ମଲା ସଙ୍ଗେ ସମାନ

ପାଷାଣ୍ଡ, କାମୁକ, କୃପଣ, ମୂର୍ଖ, ଅତି ଦରିଦ୍ର, ଯାହାର ଦୁର୍ନାମ ଲୋକେ କରନ୍ତି, ବୃଦ୍ଧ, ଚିରରୋଗୀ, ସର୍ବଦା କ୍ରୋଧୀ, ଈଶ୍ୱରବିମୁଖ, ବେଦ ଓ ସାଧୁବିରୋଧୀ, ବିଶ୍ୱନିନ୍ଦୁକ, ମହାପାତକୀ, ଓ ପେଟବିକଳିଆ—ଏ ଚଉଦଟି ପ୍ରାଣୀ ବଞ୍ଚି ଥାଇଁ ଥାଇଁ ମଲାପରି ।

ନାରୀର ଚରିତ୍ର—

ମହାତ୍ମା ତୁଳସୀ ଦାସ ତାଙ୍କ ରଚିତ ପୁସ୍ତକରେ ଲେଖି-ଅଛନ୍ତି, "ନାରୀର ଚରିତ୍ର ଅଗାଧ, ଅଗମ୍ୟ ଓ ଦୁଷ୍ପ୍ରବେଶ୍ୟ ।" ନିଜର ପ୍ରତିବିମ୍ବ ଦର୍ପଣରେ ଦେଖିହୁଏ, ମାତ୍ର ନାରୀର ଚରିତ୍ର କୌଣସିମତେ ଜାଣି ହୁଏ ନାହିଁ ।

ଅଗ୍ନି କାହାକୁ ନ ପୋଡ଼େ ?
ସମୁଦ୍ର କାହାକୁ ନ ବୁଡ଼ାଏ ?
କାଳ କାହାକୁ ନ ଖାଏ ?
ନାରୀ ପ୍ରବଳା ହେଲେ କ'ଣ କରି ନ ପାରନ୍ତି ?

ରମଣୀର ଦିବ୍ୟମୁଖ ନ ଦେଖିବା ଯାଏ
ସୁତ, ପିତା ମାତାଠାରେ ଭକ୍ତି କରୁଥାଏ ।
ଶ୍ୱଶୁର-ମନ୍ଦିରେ ଯେବେ ମନ ଯାଏ ଲାଗି
ଶତ୍ରୁ ପାଳନ୍ତି ଗୃହ କୁଟୁମ୍ବ ଅଭାଗୀ ।

କଳିକାଳରେ ରମଣୀ-ଇଙ୍ଗିତରେ ଲୋକ ପରିଚାଳିତ ହେବେ । ଯେପରି ନଟ ମର୍କଟକୁ ନଚାଏ, ସେହିପରି ସ୍ତ୍ରୀମାନେ ପୁରୁଷକୁ ନଚାଇବେ ।

Digitized by srujan ka@gmail.com

କିଏ ମାୟାମୋହରେ ଅନ୍ଧ ନ ହୋଇଛି ?
ଜଗତରେ କାହାକୁ 'କାମ' ନ ନଚାଇ ଛାଡ଼ିଛି ?
ତୃଷ୍ଣା କାହାକୁ ବାଉଳା ନ କରିଛି ?
କାହାର ହୃଦୟ କ୍ରୋଧରେ ଜଳପୋଡ଼ି ନ ଯାଉଛି ?
ଯେତେବଡ଼ ଜ୍ଞାନୀ, ମାନୀ, କବି, ପଣ୍ଡିତ, ବୀର, ଗୁଣବାନ୍
ହେଲେ ମଧ୍ୟ କିଏ ଲୋଭର ବିଡ଼ମ୍ବନାରେ ନ ପଡ଼ିଛି ?
ସମ୍ପଦ କାହାକୁ ଟେର ନ କରିଛି ?
ପ୍ରଭୁତ୍ୱ କାହାକୁ ବଧିର ନ କରିଛି ?
କ୍ଷମତାଶାଳୀ ବ୍ୟକ୍ତିର କାନକୁ କାହାର ଦୁଃଖ ପ୍ରବେଶ କରିଛି କି ?
କିଏ ରମଣୀର ରୂପଲାବଣ୍ୟରେ ମୁଗ୍ଧ ନ ହେଉଛି ?
ଅଭିମାନ ଅହଙ୍କାର କାହାକୁ ଜୟ ନ କରିଛି ?
ଯୌବନ-ମାଦକରେ କିଏ ଘାରି ବା କବଳିତ ନ ହେଉଛି ?
ମମତା କାହାର ଯଶ ନାଶ ନ କରିଛି ?
ମାତ୍ସର୍ଯ୍ୟ କାହାକୁ କଳଙ୍କ ନ ଲଗାଇ ଛାଡ଼ିଛି ?
ଶୋକରେ କିଏ ବା ଅଧୀର ନ ହୋଇଛି ?
ଚିନ୍ତା କାହାକୁ ଦଂଶନ ନ କରି ଛାଡ଼ିଛି ?
ପୁତ୍ର, ପରିବାର ଓ ଧନବାଞ୍ଛା— ଏ ତିନୋଟି କାମନା କାହା ମନକୁ ମଳିନ ନ କରୁଛି ?

ଚେଉଁମାନେ ହେଳାର ପାତ୍ର ନୁହନ୍ତି—

ରିପୁ, ରୋଗ, ଅଗ୍ନି ବହ୍ନି, ପାପ, ପ୍ରଭୁ
ଏ ଷଡ଼ ପଦାର୍ଥେ ଭାଇ,
ଶ୍ରେଷ୍ଠ ମଣି ମନେ ହେଳା ନ କରିବ
ସାବଧାନେ ଥିବ ବନ୍ଧୁ ।

Digitized by srujan ka@gmail.com

## କେଉଁମାନେ ତାଡ଼ନା ଦରକାର କରନ୍ତି

ଯେତେ ଯତ୍ନକର କଦଳୀ ବୃକ୍ଷରେ
ନ କାଟିଲେ ନୁହେଁ ଫଳ,
ନୀଚଜନ ତେହ୍ନେ ବିନନ୍ତି ନ ବୁଝେ
ତାଡ଼ନା ବଶ କେବଳ ।
ଢୋଲ୍, ଜଡ଼ଜନ, ଶୂଦ୍ର, ପଶୁ ଆଉ ନାରୀ
ତାଡ଼ନା ବିନା ଏ ପଞ୍ଚ ନୁହନ୍ତି ସୁଧାରି ।

—ତୁଳସୀ ରାମାୟଣ—ଜଗଦ୍‌ବନ୍ଧୁ—

କାମବଶ ଲୋକ କ'ଣ ନିଷ୍କଳଙ୍କ ରହିପାରେ ?
ପରଦ୍ରୋହୀ କ'ଣ କେବେ ନିଃଶଙ୍କ ହୋଇପାରେ ?
ଯେ ପରସ୍ତ୍ରୀ ଗମନକରେ ତା'ର କ'ଣ ଶୁଭଗତି ହୋଇପାରେ
ହରି-ଚରିତ ଗାନ କଲେ କ'ଣ ପାପ ରହିପାରେ ?
ବ୍ରାହ୍ମଣର ଅହିତ କଲେ କ'ଣ କୁଳମୂଳ ରହେ ?
ଯେ ପରମାର୍ଥ ଜ୍ଞାନୀ ତାହାର କ'ଣ ଆଉ ସଂସାର ହୁଏ ?
ପୁଣ୍ୟ ବିନା କ'ଣ ନିର୍ମଳ ଯଶ ମିଳିପାରେ କି ?
ପାପ ନ ହେଲେ କ'ଣ ଅପଯଶ ହୁଏ ?
ପରର ନିନ୍ଦା କରି କାହାର ସୁଖ ହୁଏ କି ?
ନୀତିଜ୍ଞାନ ନ ଥିଲେ କି ରାଜ୍ୟ ରହିପାରେ ?
ଦୁଃସଙ୍ଗ କଲେ କ'ଣ ଭଲ ବୁଦ୍ଧି ରହିପାରେ ?
ଯେ ସମସ୍ତଙ୍କ ହିତକାମନା କରେ ତା'ର କ'ଣ ଦୁଃଖ ହୋଇପାରେ ?
ଯାହା ପାଖରେ ସ୍ପର୍ଶମଣି ଥାଏ ସେ କ'ଣ ଦରିଦ୍ର ହୋଇ ପାରେ ?

—ତୁଳସୀ ରାମାୟଣ—

Digitized by srujan ka@gmail.com

# ଦୟାନନ୍ଦ

(୧୮୨୪-୧୮୮୩)

ଇଞ୍ଜିନିୟର ଶ୍ରୀ ପ୍ରିୟବ୍ରତ ଦାସ

ସ୍ୱାମୀ ଦୟାନନ୍ଦଙ୍କ ସମ୍ବନ୍ଧରେ ଥିଓସୋଫିକେଲ ସୋସାଇଟିର ପ୍ରତିଷ୍ଠାତ୍ରୀ ମେଡ଼େମ୍ ବ୍ଲାଭେସ୍କି, ଲେଖିଛନ୍ତି—"ଶଙ୍କରଙ୍କ ପରଠାରୁ ଆଜି ପର୍ଯ୍ୟନ୍ତ ଭାରତବର୍ଷରେ ଏତେ ବଡ଼ ସଂସ୍କୃତଜ୍ଞ, ଅଧ୍ୟାତ୍ମବିତ୍ ବାଗ୍ମୀ ଓ ଅସତ୍ୟର କଠୋର ଖଣ୍ଡନକାରୀ ମହାପୁରୁଷ ଦୟାନନ୍ଦଙ୍କ ଛଡ଼ା ଆଉ କେହି ଜନ୍ମଲାଭ କରି ନାହାନ୍ତି।" ଭାରତର ପୂର୍ବତନ ରାଷ୍ଟ୍ରପତି ଡଃ ରାଧାକୃଷ୍ଣନ୍ ଦୟାନନ୍ଦଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରି କହିଛନ୍ତି—"ଗାନ୍ଧିଜୀ ଆଧୁନିକ ଭାରତୀୟ ରାଷ୍ଟ୍ରର ପିତା ଓ ଦୟାନନ୍ଦ ପିତାମହ। ଆମ ସମ୍ବିଧାନରେ ସମାଜ ସେବା, ସଂସ୍କାର ଓ ମୌଳିକ ଅଧିକାରର ଯେଉଁ ସବୁ ବ୍ୟାଖ୍ୟା କରାଯାଇଅଛି, ସେ ସବୁ ଦୟାନନ୍ଦଙ୍କ ବିଚାର ଓ ପ୍ରଚାରର ପ୍ରତିଫଳନ ଅଟେ।"

ସ୍ୱାମୀ ଦୟାନନ୍ଦ ସରସ୍ୱତୀ ୧୮୨୪ ଖ୍ରୀଷ୍ଟାବ୍ଦରେ ଗୁଜୁରାଟ ରାଜ୍ୟରେ ଜନ୍ମଗ୍ରହଣ କରିଥିଲେ। ୧୮୮୩ ରେ ଜଣେ ମତାନ୍ଧ ବ୍ୟକ୍ତି ଦ୍ୱାରା ବିଷପାନ କରି ମହାପ୍ରୟାଣ କରିବା ପୂର୍ବରୁ ସେ ସମଗ୍ର ଉତ୍ତର ଭାରତରେ ଏକ ମହାନ୍ ସାଂସ୍କୃତିକ ଜାଗରଣ ଆଣି ପାରିଥିଲେ। ଜାତୀୟ କଂଗ୍ରେସର ଜନ୍ମଲାଭ ପୂର୍ବରୁ ଚଳ ପ୍ରତିଷ୍ଠିତ 'ଆର୍ଯ୍ୟ ସମାଜ' ଭାରତରେ ସମାଜ ସଂସ୍କାର ପାଇଁ ବିସ୍ତୃତ କାର୍ଯ୍ୟ ଆରମ୍ଭ କରି ସାରିଥିଲା। ଅସ୍ପୃଶ୍ୟତା ନିବାରଣ, ରାଷ୍ଟ୍ରଭାଷାର ପ୍ରଚାର, ଗୁରୁକୁଳ ଶିକ୍ଷା ପ୍ରଣାଳୀ, ଯୁବତୀ ବିବାହ ପ୍ରଭୃତି କାର୍ଯ୍ୟରେ ଆର୍ଯ୍ୟ ସମାଜ ନବଯୁଗ ନିର୍ମାଣପାଇଁ ଆଧାର

Digitized by srujan ka@gmail.com

ସ୍ଥାପନା କରିଥିଲେ । ସନ୍ଧ୍ୟା ଉପାସନା, ଯୋଗ ଇତ୍ୟାଦି ଆଧ୍ୟାତ୍ମିକ ବଳ ସାଧନାର ଉପାୟ ପୁନଃ ପ୍ରତିଷ୍ଠା କରି ସ୍ୱାମୀ ଦୟାନନ୍ଦ ମୂର୍ତ୍ତି ପୂଜାର ପ୍ରବଳ ଖଣ୍ଡନ କରିଥିଲେ । ଗୁଣ-କର୍ମ-ସ୍ୱଭାବ ଅର୍ଥାତ୍ ପ୍ରବୃତ୍ତି ଭେଦରେ ବର୍ଣ୍ଣକୁ ସ୍ୱୀକାର କରି ଜନ୍ମଗତ ଜାତିଭେଦ ଓ ବିଦ୍ୱେଷର ତୀବ୍ର ବିରୋଧ କରିଥିଲେ । ଗୃହସ୍ଥାଶ୍ରମ ପରେ ପ୍ରତ୍ୟେକ ନର-ନାରୀଙ୍କୁ ବାନପ୍ରସ୍ଥ ବା ସମାଜ ସେବା ଜୀବନ ଯାପନ ପାଇଁ ସେ ଆହ୍ୱାନ ଦେଇଥିଲେ । ପ୍ରକୃତରେ କହିବାକୁ ଗଲେ ସ୍ୱାମୀ ଦୟାନନ୍ଦ ବେଦୋକ୍ତ ଧର୍ମର ପୁନରୁଦ୍ଧାର ପାଇଁ ଯାହା କରି ଯାଇଛନ୍ତି, ମହାଭାରତୋତ୍ତର କାଳରେ ତାହାର ପଟାନ୍ତର ନାହିଁ । ଶ୍ରୀ ଅରବିନ୍ଦଙ୍କ ଭାଷାରେ—ସ୍ୱାମୀ ଦୟାନନ୍ଦ ବେଦଭାଷ୍ୟର ଚାବିକାଠିକୁ ଆମ ହାତରେ ଦେଇ ଗଲେ । ତାହାଙ୍କ ବେଦଭାଷ୍ୟ ପଢ଼ି ଆମ୍ଭେ-ମାନେ ଉପଲବ୍ଧି କରୁଅଛୁଁ ଯେ, ବେଦ କେବଳ କର୍ମକାଣ୍ଡୀ ନିର୍ଦ୍ଦେଶକ ଗ୍ରନ୍ଥ ନୁହେଁ ଅଥବା ପାଶ୍ଚାତ୍ୟ ଲେଖକଙ୍କ ମନ୍ତବ୍ୟ ପ୍ରକାରେ ଅସଭ୍ୟ ଅଶିକ୍ଷିତ ଲୋକଙ୍କ ଗୀତମାଳିକା ନୁହେଁ । ତାହା ବିଦ୍ୟାର ଅନନ୍ତ ଭଣ୍ଡାର ।"

## ଦୟାନନ୍ଦଙ୍କ ବାଣୀ

"ସ୍ତ୍ରୀ ଓ ଶୂଦ୍ର ବେଦ ପଢ଼ିବେ ନାହିଁ । ଏହି ଉକ୍ତି ମୂର୍ଖ ଓ ସ୍ୱାର୍ଥିଙ୍କ ମନଗଢ଼ା କଥା । ପରମେଶ୍ୱରଙ୍କ ଉପଦେଶ ହେଉଛି— ସମସ୍ତ ମନୁଷ୍ୟଙ୍କ ଶିକ୍ଷା ପାଇଁ କଲ୍ୟାଣମୟୀ ବେଦବାଣୀ ପ୍ରକାଶ କରିଅଛି ।"

"ଆର୍ଯ୍ୟ କୌଣସି ଜାତିବିଶେଷର ନାମ ନୁହେଁ । ଧାର୍ମିକ, ସଦାଚାରୀ ଆପ୍ତ ପୁରୁଷଙ୍କୁ ଆର୍ଯ୍ୟ କୁହାଯାଏ ।"

"ମୁଁ ମନୁଷ୍ୟକୁ ବନ୍ଦୀ କରିବାପାଇଁ ଆସିନାହିଁ, ତାହାକୁ ମୁକ୍ତ କରିବାପାଇଁ ଆସିଅଛି । (ନିଜର ଆତତାୟୀ ଉଦ୍ଦେଶ୍ୟରେ ତାକୁ କ୍ଷମା ଦେଇ ) ।"

———

Digitized by srujan ka@gmail.com



# ଶ୍ରୀ ରାମକୃଷ୍ଣ ପରମହଂସ

କଳିଙ୍ଗ ସମ୍ପାଦକ—ଶ୍ରୀ ସୁରେନ୍ଦ୍ର ମହାନ୍ତି

—ଆପଣ ଭଗବାନଙ୍କୁ ଦେଖିଛନ୍ତି ?"—ଥରେ ବିବେକାନନ୍ଦ ପଚାରିଥିଲେ ଶ୍ରୀ ରାମକୃଷ୍ଣଙ୍କୁ ।

ରାମକୃଷ୍ଣ ଉତ୍ତର ଦେଇଥିଲେ—"ତାଙ୍କୁ ମୁଁ ଦେଖିଛି, ଠିକ୍ ଯେପରି ଦେଖି ପାରୁଛି ତମକୁ, କିନ୍ତୁ ଆଉରି ଖୁବ୍ ଅନ୍ତରଙ୍ଗ ଭାବରେ ।"

Digitized by srujan ka@gmail.com

ରାମକୃଷ୍ଣ ପରମହଂସ ଏଇପରି ଥିଲେ ଗଭୀର ଉପଲବ୍‌ଧିର ଏକ ସାଧକ । ଗୁହ୍ୟ ସାଧନା ପ୍ରଣାଳୀ ନୁହେଁ, କଠୋର ଯୋଗାଭ୍ୟାସ ନୁହେଁ, ନିଷ୍କାମ କର୍ମ ତପସ୍ୟା ବି ନୁହେଁ—କାବ୍ୟିକ ଆବେଗ ଓ ଭାବୋନ୍ମାଦ ମଧ୍ୟରେ ପାଷଣ୍ଡଠାରୁ ଧର୍ମବିନ୍ତ, ଶଠଠାରୁ ସନ୍ଥ ପୁରୁଷ—ସମସ୍ତଙ୍କଠାରେ ଐଶୀ ସତ୍ତାର ଉପଲବ୍‌ଧି ଓ ପ୍ରତ୍ୟକ୍ଷ ବ୍ରହ୍ମାସ୍ୱାଦ ରାମକୃଷ୍ଣଙ୍କ ଆଧ୍ୟାତ୍ମିକ ସାଧନାର ରହସ୍ୟ ଥିଲା । ଏପରି ଏକ ରୂପାତୀତ କାବ୍ୟିକ ଆବେଗକୁ, ଉପଲବ୍‌ଧିହୀନ, ବୁଦ୍ଧିବିମୋହିତ ହେତୁବାଦର ପ୍ରୟୋଗ କୌଶଳରେ, ଶବ୍ଦ ଓ ବାକ୍ୟଜାଲ ମଧ୍ୟରେ ରୂପାୟିତ କରିବା, ଏକ ଚରମ ଧୃଷ୍ଟତା—ସନ୍ଦେହ ନାହିଁ ।

କାମାରପୁକୁର ଗ୍ରାମରେ ଏକ ଦରିଦ୍ର ବ୍ରାହ୍ମଣ ପରିବାରରେ ରାମକୃଷ୍ଣ ଇଂ ୧୮୩୬ ମସିହା ଫେବୃୟାରି ୧୮ ତାରିଖ ଦିନ ଜନ୍ମ ଗ୍ରହଣ କରିଥିଲେ । ବାଲ୍ୟ କାଳରେ ତାଙ୍କର ନାମ ଥିଲା ଗଦାଧର । ଗଦାଧର ପିତାମାତାଙ୍କ ଦ୍ୱିତୀୟ ସନ୍ତାନ ଥିଲେ । ତାଙ୍କ ଜ୍ୟେଷ୍ଠ ଭ୍ରାତାଙ୍କ ନାମ ଥିଲା ରାମକୁମାର । ଗଦାଧରଙ୍କଠାରେ ଶୈଶବରୁ ଦିବ୍ୟୋନ୍ମାଦ ପରିଲକ୍ଷିତ ହେଉଥିଲା । ତାଙ୍କ ଜୀବନୀକାରମାନେ ଲେଖିଛନ୍ତି— ଛଅ ବର୍ଷ ବୟସ୍କ ଗଦାଧର ଗୋଟିଏ ଧାନବିଲ ଭିତରେ ଦିନେ ଯାଉଥିବା ବେଳେ, ତାଙ୍କ ଆଖିରେ ପଡ଼ିଲା ମେଘମେଦୁର ନୀଳ ଆକାଶରେ ଶୁଭ୍ର ବଳାକାରେଖା । ମେଘ ଦେହରେ ବଳାକାର ସୌନ୍ଦର୍ଯ୍ୟ ବାଳକ ଗଦାଧରଙ୍କୁ ହଠାତ୍ ଅପାର୍ଥିବ ଆନନ୍ଦର କେଉଁ ଏକ ଆନନ୍ଦମୟ ରାଜ୍ୟକୁ ନେଇଗଲା । ସେହିଠାରେ କେତେକ୍ଷଣ ସେ ମୂର୍ଚ୍ଛିତ ହୋଇ ପଡ଼ିଥିଲେ, ତାହା ତାଙ୍କୁ ଆଉ ଜଣା ନ ଥିଲା ! ରାମକୃଷ୍ଣଙ୍କ ନିଜ ଭାଷାରେ······"ମୁଁ ଚୈତନ୍ୟହୀନ ଅବସ୍ଥାରେ ତଳେ ପଡ଼ିଗଲି ! ମୋ ଅଣ୍ଡିରୁ ମୁଡ଼ି-

Digitized by srujan ka@gmail.com

ତକ ଏଣେ ତେଣେ ଭାଙ୍ଗି ହୋଇଗଲା···ଏକ ଅନିର୍ବଚନୀୟ ଆନନ୍ଦ ଓ ଆବେଗ ମୋତେ ସେତେବେଳେ ଅଭିଭୂତ କରି ଦେଇଥିଲା ।

ପ୍ରଥମ ଥର ପାଇଁ ସେ ପ୍ରକାର ଭାବୋନ୍ମାଦ ସେଦନ ମୁଁ ଅନୁଭବ କରିଥିଲି । "ଏହି ଦୃଷ୍ଟିରୁ ଶ୍ରୀ ଚୈତନ୍ୟଙ୍କ ସହିତ ଶ୍ରୀ ରାମକୃଷ୍ଣଙ୍କର ଯଥେଷ୍ଟ ସାମଞ୍ଜସ୍ୟ ରହିଥିଲା । ଶ୍ରୀ ଚୈତନ୍ୟ ରାମକୃଷ୍ଣଙ୍କୁ ଗଭୀରଭାବରେ ଅନୁପ୍ରେରିତ କରିଥିବା ଓ ରାମକୃଷ୍ଣ ପରବର୍ତ୍ତୀକାଳରେ ନିଜକୁ ଶ୍ରୀ ଚୈତନ୍ୟଙ୍କ ସହିତ ସମୀକୃତ କରିଥିବା ଶ୍ରୀ ରାମକୃଷ୍ଣଙ୍କର ଜଣେ ବଶିଷ୍ଟ ଶିଷ୍ୟ ମହେନ୍ଦ୍ର ନାଥ ଗୁପ୍ତ "ଦି ଗସ୍ପେଲ୍ ଅଫ୍ ଶ୍ରୀ ରାମକୃଷ୍ଣ" ପୁସ୍ତକରେ ଉଲ୍ଲେଖ କରିଅଛନ୍ତି ।

ଗଦାଧରଙ୍କ ସାତବର୍ଷ ବୟସରେ ତାଙ୍କ ପିତାଙ୍କ ପରଲୋକ ପରେ, ଜ୍ୟେଷ୍ଠଭ୍ରାତା ରାମକୁମାରଙ୍କ ଉପରେ ପଡ଼ିଲା ପରିବାର ଭରଣପୋଷଣର ଦାୟିତ୍ୱ । ମାତ୍ର କାମାରପୁକୁର ଗ୍ରାମରେ ସେଥି-ପାଇଁ କୌଣସି ଉପାୟ ନ ଦେଖି, ସେ କଲିକତା ଚାଲିଆସି, ସେଠାରେ ଏକ ପାଠଶାଳା ଆରମ୍ଭ କରିଥିଲେ । ଏହି ସମୟରେ ରାଣୀ ରାସମଣି ପ୍ରତିଷ୍ଠା କରନ୍ତି, କଲିକତାଠାରୁ ଚାରିମାଇଲ୍ ଦୂରରେ, ଗଙ୍ଗାକୂଳବର୍ତ୍ତୀ ଦକ୍ଷିଣେଶ୍ୱରଠାରେ, ପ୍ରସିଦ୍ଧ କାଳୀ ମନ୍ଦିର । ମାତ୍ର ରାଣୀ ରାସମଣି ଶୂଦ୍ରବଂଶୀୟା ଥିବାରୁ, ତାଙ୍କଦ୍ୱାରା ସ୍ଥାପିତ ମନ୍ଦିରରେ, ଦେବୀ ପୂଜାପାଇଁ କୌଣସି ପୁରୋହିତ ବା ଆଚାର୍ଯ୍ୟ ମିଳୁ ନ ଥିଲେ । ପେଠର ଦାୟରେ, ରାମକୁମାର ଏହି ମନ୍ଦିରରେ କାଳୀ-ପୂଜକରୂପେ ଯୋଗ ଦେଇଥିଲେ । ମାତ୍ର ବର୍ଷକ ପରେ ରାମକୁମାରଙ୍କ ମୃତ୍ୟୁ ହୋଇଗଲା । ଜ୍ୟେଷ୍ଠଭ୍ରାତାଙ୍କ ସ୍ଥାନରେ ରାମକୃଷ୍ଣ ମନ୍ଦିରର ପୂଜକରୂପେ ନିଯୁକ୍ତ ହେଲେ । ରାମକୃଷ୍ଣ ସେତେ-

Digitized by srujan ka@gmail.com

ବେଳେ ବିଂଶତି ବର୍ଷର ଯୁବକ । ଇଂ ୧୮୮୪ ମସିହାରେ ପରି-ନିର୍ବାଣ ପର୍ଯ୍ୟନ୍ତ ଏହି ଦକ୍ଷିଣେଶ୍ୱର ମନ୍ଦିର ରାମକୃଷ୍ଣଙ୍କର ସାଧନା-ପୀଠ ଓ ଆଦ୍ୟାଶକ୍ତି କାଳୀ ତାଙ୍କର ପ୍ରେରଣାଦାୟୀ ଇଷ୍ଟଦେବୀ ହୋଇ ରହିଥିଲେ ।

ମାତ୍ର ଏଇ ଇଷ୍ଟଦେବୀ କେବଳ କ'ଣ ଏକ ପାଷାଣ-ପ୍ରତିମା ? ରାମକୃଷ୍ଣ ଯଦି ତାଙ୍କର ପୂଜକରୂପେ ତାଙ୍କଠାରେ ନିଜକୁ ନିଃଶେଷିତଭାବରେ ନିବେଦନ କରି ସାରିଛନ୍ତି, ତା'ହେଲେ ଇଷ୍ଟ-ଦେବୀ ତାଙ୍କୁ ସାକ୍ଷାତ୍ ନ ଦେଇ ପାଷାଣର ଅନ୍ତରାଳରେ ରହିବେ କାହିଁକି ? ଭାରତୀୟ ସାଧକର ସାଧନା ପ୍ରଣାଳୀରେ ମୃଣ୍ମୟୀ ହୁଅନ୍ତି ଚିନ୍ମୟୀ ! ଜଡ଼ ଦେହରେ ଜୀବନ୍ୟାସ ହୁଏ । ପାଷାଣ ହୁଏ ଚୈତନ୍ୟମୟ ! ରାମକୃଷ୍ଣଙ୍କ ପ୍ରାଣରେ ପ୍ରକାଶ ପାଇଥିଲା, ମୃଣ୍ମୟୀକୁ ଚିନ୍ମୟୀ କରିବାର ସେହି ଦୁରନ୍ତ ଆକାଙ୍‌କ୍ଷା; ବ୍ରହ୍ମ-ରୂପା ଦେବୀଙ୍କ ଅଦ୍ୱୈତ-ସତ୍ତା ମଧ୍ୟରେ ବିଲୀନ ହୋଇ ଯିବାପାଇଁ ଅଶାନ୍ତ ଉଦ୍‌ବେଳନ । ଏହି ବ୍ୟାକୁଳତା ମଧ୍ୟରେ ରାମକୃଷ୍ଣ କ୍ରମେ ପାଗଳ ପରି ହୋଇ ଉଠିଲେ । ଦେହରେ ତାଙ୍କର ବସନ, ପରି-ଧାନ, ଏପରିକି ଉପବୀତ ସୁଦ୍ଧା ଆଉ ରହିଲା ନାହିଁ । ମନର ସବୁ ଅହମିକା ଓ ଅହଂଭାବର ସବୁ ଅଭିମାନ ବିସର୍ଜନ ନ ଦେଲେ, ଈଶ୍ୱର-ସତ୍ତାର ପରିଚୟ ମିଳେ ନାହିଁ । ଏକ ପରିତ୍ୟକ୍ତ ଶିଶୁପରି, ରାମକୃଷ୍ଣ ଅବୋଧ ଉଚ୍ଛ୍ୱାସରେ ଦକ୍ଷିଣେଶ୍ୱର କାଳୀ ମନ୍ଦିର ପ୍ରାଙ୍ଗ-ଣରେ ଲୋଟିବାକୁ ଲାଗିଲେ । ଭାବୋନ୍ମାଦର ସାଧନା ପ୍ରଣାଳୀ ତାଙ୍କୁ ଜଣା ନ ଥିଲା । କିନ୍ତୁ ପ୍ରାଣର ଆବେଗରେ କେବଳ, ସେ ଭାବୋ-ନ୍ମତ୍ତ ହୋଇ ଉଠିଥିଲେ । ତଥାପି ଦେବୀଙ୍କର ଦର୍ଶନ ନ ମିଳିବାରୁ ରାମକୃଷ୍ଣ ଦିନେ ବାତୁଳ ପରି, ମନ୍ଦିରରେ ଝୁଲୁଥିବା ପଟେ ଖଣ୍ଡା ଟାଣିଆଣି, ସେଥିରେ ନିଜ ଶିର ଛେଦନ ପାଇଁ ଖଣ୍ଡା ଉଠାଇ

Digitized by srujan ka@gmail.com

ଥିଲେ । ଏହି ସମୟରେ, ରାମକୃଷ୍ଣଙ୍କ ଭାଷାରେ···"ହଠାତ୍ ସେହି ମନ୍ଦିର ଓ ତାହାର ପରିବେଶ ମୋ ଦୃଷ୍ଟିରୁ କୁଆଡ଼େ ଉଭାଇ ଗଲା । କେବଳ ମନ୍ଦିର କାହିଁକି, ସମଗ୍ର ବିଶ୍ୱସତ୍ତା ସେତେବେଳେ କେଉଁ-ଆଡ଼େ ବିଲୀନ ହୋଇଗଲା । ମୋର ଚାରିଆଡ଼େ ନାଚି ଉଠିଲା ଆଲୋକ-ଦୀପ୍ତ ଅପାର୍ଥିବ ଆନନ୍ଦର ତରଙ୍ଗ । ତା'ରି ମଧ୍ୟରେ ଦେବୀଙ୍କର ସାନ୍ନିଧ୍ୟ ମୁଁ ସ୍ପଷ୍ଟ ଜୀବନ୍ତଭାବରେ ଅନୁଭବ କରି ପାରିଲି ।"

ଆନନ୍ଦ ଓ ଆଲୋକର ସେହି ଭାବତରଙ୍ଗ ମଧ୍ୟରେ ରାମକୃଷ୍ଣ ସଂଜ୍ଞାହୀନ ହୋଇ ପଡ଼ିଲେ ।

ମାନସିକ ସ୍ତରରେ ଭାବମଧ୍ୟରେ ଅନୁଭବ ବା ଉପଲବ୍‌ଧି ରାମକୃଷ୍ଣଙ୍କର ସାଧନା-ପ୍ରଣାଳୀ ଥିଲା । ଏହି ମାର୍ଗରେ ସେ ଅନ୍ୟ-ଠାରେ ଯେପରି ନିଜକୁ ଦେଖି ପାରୁଥିଲେ, ସମସ୍ତଙ୍କଠାରେ ସେହି-ପରି ବ୍ରହ୍ମସତ୍ତାର ପ୍ରତ୍ୟକ୍ଷ ଉପଲବ୍‌ଧି କରି ପାରୁଥିଲେ ।

ଥରେ ମଣି ମଲ୍ଲିକ ନାମରେ ଜଣେ ବୃଦ୍ଧ, ନିଜ ପୁଅର ମୃତ୍ୟୁରେ ଶୋକାକୁଳ ହୋଇ ରାମକୃଷ୍ଣଙ୍କ ପାଖକୁ ସାନ୍ତ୍ୱନା ପାଇବା ଆଶାରେ ଆସିଥିଲେ । ବୃଦ୍ଧଙ୍କୁ ଦେଖିବା ମାତ୍ରେ ରାମକୃଷ୍ଣ ତାଙ୍କର ପିତୃପ୍ରାଣ ସହିତ ନିଜକୁ ଏପରି ମିଶାଇ ଦେଲେ ଯେ, ରାମକୃଷ୍ଣଙ୍କର ଶୋକର ଉଚ୍ଛ୍ୱାସ ମଣି ମଲ୍ଲିକଙ୍କ ଶୋକର ଆବେଗକୁ ବଳି ପଡ଼ିଲା ।

ଏହାହିଁ ଥିଲା ରାମକୃଷ୍ଣଙ୍କର ସବିକଳ୍ପ-ସମାଧି । ସବିକଳ୍ପ ସମାଧି, ଅବଚେତନର ଏକ ଅନିର୍ବଚନୀୟା ଆନନ୍ଦମୟୀ ସତ୍ତା !

Digitized by srujan ka@gmail.com

ଏହାର ମଧ୍ୟରେ ଜୀବ, ଶିବଙ୍କ ସତ୍ତା ଉପଲବ୍ଧି କରିଥାଏ । ନିର୍ବିକଳ୍ପ-ସମାଧି ଏହାର ପରବର୍ତ୍ତୀ ଅବସ୍ଥା—ଯେଉଁଥିରେ ଜୀବ, ଶିବ ବା ବ୍ରହ୍ମ ମଧ୍ୟରେ ପୂରାପୂରି ବିଲୀନ ହୋଇଯାଏ ।

ରାମକୃଷ୍ଣ ଭାବମାର୍ଗରେ ଏହାକୁ ଆୟତ୍ତ କରି ପାରିଥିଲେ ସତ୍ୟ, ମାତ୍ର ଏହାର ସାଧନ ପ୍ରଣାଳୀ ତାଙ୍କୁ ଜଣା ନ ଥିଲା, ଭାବ-ରାଜ୍ୟ ର ଅଲୌକିକ ପ୍ରେରଣା ମଧ୍ୟରେ ଯାହାର ଉପଲବ୍ଧି ମିଳେ, ତାତ୍ତ୍ୱିକଭାବରେ ତାହାକୁ ବୁଝିବା ବା ବୁଝାଇବା ସମ୍ଭବ ହୁଏ ନାହିଁ । ରାମକୃଷ୍ଣଙ୍କ ସବିକଳ୍ପ ସମାଧି ପ୍ରସଙ୍ଗରେ ମଧ୍ୟ ସେଇଆ ହୋଇଥିଲା ।

ଏହି ସମୟରେ ଜଣେ ଭୈରବୀ ପରିବ୍ରାଜିକା, ଏକ ସନ୍ନ୍ୟାସିନୀଙ୍କ ସହିତ ଅତି ଆକସ୍ମିକ ଭାବରେ ରାମକୃଷ୍ଣଙ୍କର ସାକ୍ଷାତ ହୋଇଥିଲା; ରାମକୃଷ୍ଣ ଏହାଙ୍କୁ ଭୈରବୀବ୍ରାହ୍ମଣୀ ନାମରେ ସମ୍ବୋଧନ କରୁଥିଲେ । ଏହି ଭୈରବୀ ବ୍ରାହ୍ମଣୀ ଯୋଗତନ୍ତ୍ର ଓ ଭକ୍ତି ମାର୍ଗର ବିଭିନ୍ନ ସାଧନା ମଧ୍ୟରେ ରାମକୃଷ୍ଣଙ୍କୁ ସବିକଳ୍ପ ସମାଧିର ପ୍ରଣାଳୀ ଶିକ୍ଷା ଦେଇଥିଲେ । ରାମକୃଷ୍ଣଙ୍କ ସାଧନା ସମାପ୍ତ ହେବା ପରେ, ଦକ୍ଷିଣେଶ୍ୱର ମନ୍ଦିରରେ ଜଣେ ବ୍ରାହ୍ମଣ, ପଣ୍ଡିତ ଓ ସାଧକମାନଙ୍କର ଏକ ସମ୍ମିଳନୀ ଡକାଇ, ଭୈରବୀ ବ୍ରାହ୍ମଣୀ ରାମକୃଷ୍ଣଙ୍କୁ 'ଅବତାର' ରୂପେ ଅଭିଷିକ୍ତ କରିଦେଲେ ।

ସେହି ଦିନୁ ରାମକୃଷ୍ଣ ହୋଇ ଉଠିଲେ ପରମହଂସ ।

ଭୈରବୀ-ବ୍ରାହ୍ମଣୀଙ୍କଠାରୁ ତନ୍ତ୍ର ଓ ଯୋଗପ୍ରଭୃତି ଆୟତ୍ତ କରିବା ପରେ, ତୋତାପୁରୀ ନାମରେ ଜଣେ ସାଧୁଙ୍କଠାରୁ

Digitized by srujan ka@gmail.com

ରାମକୃଷ୍ଣ ବେଦାନ୍ତ ମଧ୍ୟ ଶିକ୍ଷା କରିଥିଲେ । ରାମକୃଷ୍ଣ ଏହିପରି ଭାବରେ ଜ୍ଞାନମାର୍ଗଠାରୁ ଆରମ୍ଭ କରି ଯୋଗ ଓ ତନ୍ତ୍ର ପର୍ଯ୍ୟନ୍ତ, ସାଧନାର ବିଭିନ୍ନ ପ୍ରଣାଳୀ ସହିତ ପରିଚିତ ଥିଲେହେଁ, ଭକ୍ତି ରାମକୃଷ୍ଣଙ୍କର ସାଧନା ମାର୍ଗ ଥିଲା ।

ନିର୍ବିକଳ୍ପ-ସମାଧି, ରାମକୃଷ୍ଣଙ୍କ ପକ୍ଷରେ କେବଳ ଏକ ଭାବୋଚ୍ଛ୍ୱାସ ଅଥବା ଆଧ୍ୟାତ୍ମିକ ବିଳାସ ନଥିଲା । ଶିବରୂପୀ ଜୀବର ସେବା, ଏ ସାଧନାର ମୂଳ ଲକ୍ଷ୍ୟ ଥିଲା । ବୋଧହୁଏ ରାମକୃଷ୍ଣଙ୍କ ବ୍ୟତୀତ, ଅନ୍ୟ କୌଣସି ସାଧକ, ସେବାକୁ ଆଧ୍ୟାତ୍ମିକ ସାଧନାରେ ପରିଣତ କରି ନ ଥିଲେ । କିମ୍ବା ଆଧ୍ୟାତ୍ମିକ ସାଧନାକୁ ସେବା ଉନ୍ମୁଖୀ କରି ନ ଥିଲେ । ରାମକୃଷ୍ଣଙ୍କ ଭାବଦୃଷ୍ଟିରେ ପୁଣି ଧର୍ମର କୌଣସି ସଂକୀର୍ଣ୍ଣ ବିଚାର ନ ଥିଲା । ପାଣିକୁ ଇଂରାଜୀରେ ଓ୍ୱାଟର, ହିନ୍ଦୁସ୍ଥାନୀରେ ପାନି, ସଂସ୍କୃତରେ ଜଳ, ଏହିପରି ଭିନ୍ନ ଭିନ୍ନ ଭାବରେ କୁହାଗଲେହେଁ, ପାଣିର ଚରିତ୍ର ଅପରିବର୍ତ୍ତିତ ରହିଥାଏ । ସେହିପରି ମନୁଷ୍ୟ ଯେଉଁ ଧର୍ମର ବା ଧର୍ମାନ୍ତରର ହେଉ ପଛେ, ବ୍ରହ୍ମସତ୍ତା ସମସ୍ତଙ୍କଠାରେ ସମାନ ପରିମାଣରେ ବିଦ୍ୟମାନ— ରାମକୃଷ୍ଣ ବୌଦ୍ଧିକ ସ୍ତରରେ ଏହା ଯେ କେବଳ ଅନୁଭବ କରିଥିଲେ, ତାହା ନୁହେଁ, ଆଧ୍ୟାତ୍ମିକ ସାଧନା ସ୍ତରରେ ଏହାକୁ ପ୍ରମାଣ କରିଦେଇ ପାରିଥିଲେ । ଥରେ ଗୋବିନ୍ଦ ରାୟ ନାମକ ଜଣେ ମୁସଲମାନଙ୍କୁ ଦେଖି ଭାବୋନ୍ମାଦରେ ରାମକୃଷ୍ଣ କେତେଦିନ ଧରି ହଠାତ୍ ମୁସଲମାନ ପରି ହୋଇ ପଡ଼ିଥିଲେ । ଆଉଥରେ ମାଡ଼ୋନାଙ୍କର ଗୋଟିଏ ଚିତ୍ରପଟ ଦେଖି, ଭାବାବେଗରେ ରାମକୃଷ୍ଣ ନିଜକୁ ଖ୍ରୀଷ୍ଟିଆନ୍ ପରି ଅନୁଭବ କରିପାରିଥିଲେ ।

ପୂର୍ବେ କୁହାଯାଇଅଛି, ରାମକୃଷ୍ଣଙ୍କ ନିର୍ବିକଳ୍ପ-ସମାଧି, ଆଧ୍ୟାତ୍ମିକ ବିଳାସ ନ ଥିଲା । ଏହା ଥିଲା ମାନବର କଲ୍ୟାଣସାଧନାର

Digitized by srujan ka@gmail.com

ଏକ ମହାବ୍ରତ । ସେଥିପାଇଁ ବିବେକାନନ୍ଦ ଥରେ ସବିକଳ୍ପ-ସମାଧିର ପ୍ରଣାଳୀ ଶିକ୍ଷା ଦେବାପାଇଁ ରାମକୃଷ୍ଣଙ୍କୁ ଅନୁରୋଧ କରିବାରୁ, ବିବେକାନନ୍ଦଙ୍କୁ ଭର୍ତ୍ସନା କରି ରାମକୃଷ୍ଣ କହିଥିଲେ, ନିଜର ଆତ୍ମକୈନ୍ଦ୍ରିକ ଆନନ୍ଦ ବା ଆଧ୍ୟାତ୍ମିକ ବିଳାସପାଇଁ ସବିକଳ୍ପ ସମାଧି ଉଦ୍ଦିଷ୍ଟ ନୁହେଁ । ଜୀବ ଯଦି ଶିବ, ତାହାହେଲେ ଜୀବପ୍ରତି ଦୟା ନୁହେଁ, ସେବା ମଧ୍ୟରେ ହିଁ ଶିବଙ୍କର ପ୍ରକୃତ ଆରାଧନା କରା-ଯାଇପାରିବ । ଶିବଙ୍କର ସେବା କରାଯାଇପାରେ, ମାତ୍ର ତାଙ୍କପ୍ରତି ଦୟା ପ୍ରଦର୍ଶନ କରିବା ଏକ ଆସ୍ପର୍ଦ୍ଧା । ବ୍ୟକ୍ତିତ୍ୱ ଆଉ କ'ଣ ହୋଇ-ପାରେ ! ସେଥିପାଇଁ ରାମକୃଷ୍ଣଙ୍କର ଆଧ୍ୟାତ୍ମିକ-ସାଧନାର ଏକ ବିରାଟ ସାମାଜିକ ଆଭିମୁଖ୍ୟ ରହିଥିଲା ।

ରାମକୃଷ୍ଣ ଥରେ ରାଣୀ ରାସମଣିଙ୍କ ଜାମାତା ମାଥୁର୍‌ବାବୁଙ୍କ ସହିତ ଦେଓଘର ପରିଭ୍ରମଣରେ ଆସିଥିବାବେଳେ, ସେ ଅଞ୍ଚଳରେ ଭୟଙ୍କର ଦୁର୍ଭିକ୍ଷ ପଡ଼ିଥିଲା । ସ୍ଥାନୀୟ ଦୁର୍ଭିକ୍ଷକ୍ଲିଷ୍ଟ, ନିରନ୍ନ, ଉଲଙ୍ଗ ସାନ୍ତାଳ ନରନାରୀଙ୍କୁ ଦେଖି, ରାମକୃଷ୍ଣ ଅତ୍ୟନ୍ତ ବ୍ୟଥିତ ହୋଇପଡ଼ିଲେ । ସଙ୍ଗେ ସଙ୍ଗେ ସେମାନଙ୍କ ଖାଦ୍ୟର ବ୍ୟବସ୍ଥା କରିବାପାଇଁ ମାଥୁର୍‌ବାବୁଙ୍କୁ ରାମକୃଷ୍ଣ ଅନୁରୋଧ କଲେ; ମାତ୍ର ମାଥୁର୍‌ବାବୁ ସେଥିପାଇଁ ନିଜର ଅକ୍ଷମତା ପ୍ରକାଶ କରିବାରୁ, ରାମକୃଷ୍ଣ ସେହି ନିରନ୍ନ ଦୁର୍ଭିକ୍ଷକ୍ଲିଷ୍ଟଙ୍କ ମଧ୍ୟରେ ବସି, ରୋଦନ କରିବାକୁ ଲାଗିଲେ—ଯେପରି ଦୁର୍ଭିକ୍ଷର କଷାଘାତ ଓ କ୍ଷୁଧାର ତାଡ଼ନା, ସେହି ଉଲଙ୍ଗ ସାନ୍ତାଳ ନରନାରୀଙ୍କ ପରି, ରାମକୃଷ୍ଣ ମଧ୍ୟ ନିଜେ ତୀବ୍ରଭାବରେ ଅନୁଭବ କରିପାରୁଥିଲେ ।

ଏହାପରେ ସେହି ଦୁର୍ଭିକ୍ଷକ୍ଲିଷ୍ଟ ନରନାରୀଙ୍କପାଇଁ ମାଥୁର୍ ବାବୁ ଅନ୍ନସଂସ୍ଥାନର ବ୍ୟବସ୍ଥା କରିଥିଲେ—ଏହା ଉଲ୍ଲେଖ

Digitized by srujan ka@gmail.com

କରିବା ନିଷ୍ପ୍ରୟୋଜନ । ରାମକୃଷ୍ଣଙ୍କ ଜୀବନରେ ଏହିପରି ଘଟଣାର ବହୁ ଉଦାହରଣ ମିଳିଥାଏ ।

ଜୀବ ମଧ୍ୟରେ ବ୍ରହ୍ମଙ୍କୁ ଦେଖିବା, ଭାରତୀୟ ଆଧ୍ୟାତ୍ମିକସାଧନା ଓ ତତ୍ତ୍ୱରେ ଗୋଟାଏ ନୂଆ କଥା ନୁହେଁ ; ମାତ୍ର ସାଧନା-ପ୍ରଣାଳୀରେ ଏହାର ସାମାଜିକ ପ୍ରୟୋଗ; ଭାରତୀୟ ଆଧ୍ୟାତ୍ମିକ-ସାଧନାରେ ନିଶ୍ଚୟ ଅଭୂତପୂର୍ବ ଥିଲା । ରାମକୃଷ୍ଣଙ୍କ ଭାବଦୃଷ୍ଟିରେ ମନୁଷ୍ୟ ଓ ଈଶ୍ୱର ସମୀକୃତ ଥିଲେ । ୧୮୮୪ ମସିହାରେ ମୃତ୍ୟୁର ଦୁଇବର୍ଷ ପୂର୍ବରୁ ରାମକୃଷ୍ଣ କହିଥିଲେ…"ନାରାୟଣ ସର୍ବବ୍ୟାପୀ; କେତେବେଳେ ସାଧୁ, କେତେବେଳେ ଶଠ, ଆଉ କେତେବେଳେ ବା ଦସ୍ୟୁ । ସେଥିପାଇଁ ମୁଁ କହେ, ସାଧୁ ସନ୍ଥଙ୍କ ମଧ୍ୟରେ ଯେପରି ନାରାୟଣ ଅଛନ୍ତି, ଦସ୍ୟୁ, ଦୁର୍ବୃତ୍ତ ଓ ସ୍ୱେଚ୍ଛାଚାରୀ ମଧ୍ୟରେ ନାରାୟଣ ମଧ୍ୟ ସେହିପରି ବିଦ୍ୟମାନ ରହିଛନ୍ତି ।"

ମାନବବାଦରେ ଏପରି ଉଦାତ୍ତ ଉଦ୍‌ଘୋଷଣ ବିଶ୍ୱ-ମାନବର ଆଧ୍ୟାତ୍ମିକ ଇତିହାସରେ, ପ୍ରଥମଥରପାଇଁ ଶୁଣାଯାଇଥିଲା, ବୋଧହୁଏ, ଦକ୍ଷିଣେଶ୍ୱର, ମନ୍ଦିରର ଶାସ୍ତ୍ର-ଜ୍ଞାନହୀନ ସେହି ପୂଜକଙ୍କଠାରୁ ।



---

( ରୋମା ରୋଲାଙ୍କ ଲିଖିତ "ଦ ଲାଇଫ୍ ଅଫ୍ ରାମକୃଷ୍ଣ" ପୁସ୍ତକର ଅବଲମ୍ବନରେ ଲିଖିତ ) ।

Digitized by srujan ka@gmail.com

## ଶ୍ରୀରାମକୃଷ୍ଣ ପରମହଂସଙ୍କ ବାଣୀ

### ସଂଗ୍ରାହକ—ଶ୍ରୀ ନିମାଇଁଚରଣ ଦାସ

ପାପୀ ମୁଁ—ମୁଁ ପାପୀ, ଏ କଥା କହିବ ନାହିଁ । ମୁଁ ତାଙ୍କର ନାମ କରୁଛି, ଈଶ୍ୱର, କି ରାମ, କି ହରିନାମ, କରୁଛି-ମୋର ପୁଣି ପାପ ! ଏପରି ବିଶ୍ୱାସ ଥିବା ଦରକାର, ନାମ ମାହାତ୍ମ୍ୟରେ ବିଶ୍ୱାସ ଥିବା ଦରକାର ।

ଯଦି ପାଗଳ ହେବାକୁ ହୁଏ, ସଂସାରର ବସ୍ତୁ ଯୋଗି ପାଗଳ ହେବ କାହିଁକି ?

ପାଗଳ ହେବ ତ ଈଶ୍ୱରଙ୍କ ଲାଗି ପାଗଳ ହୁଅ, ଏ ସଂସାରରେ କେହି ଧନପାଇଁ, କେହି ସ୍ତ୍ରୀ-ପୁତ୍ରଲାଗି, କେହି ବା ମାନ-ସମ୍ଭ୍ରମାଦି ନିମିତ୍ତ ପାଗଳ; କିନ୍ତୁ ସେହି ଧନ୍ୟ ଯେ ଈଶ୍ୱରଙ୍କ ସକାଶେ ପାଗଳ ।

ସେ (ଈଶ୍ୱର) ଅନ୍ତର୍ଯ୍ୟାମୀ, ତାହାଙ୍କୁ ସରଳ ଶୁଦ୍ଧ ମନରେ ପ୍ରାର୍ଥନା କର । ସେ ସବୁ ବୁଝାଇ ଦେବେ । ଅହଂକାର ତ୍ୟାଗକରି ତାହାଙ୍କର ଶରଣାଗତ ହୁଅ, ସବୁ ପାଇବ ।

### ଦୁଷ୍ଟ ଲୋକସଙ୍ଗେ କିପରି ବ୍ୟବହାର କରିବ

ଦୁଷ୍ଟ ଲୋକ ପାଖରେ ଫଁ ଫଁ ହେବା ଭଲ । କାଳେ ଅନିଷ୍ଟ କରିବ ସେଥିପାଇଁ ଭୟ ଦେଖାଇବାକୁ ହୁଏ, କିନ୍ତୁ ତାହା ଉପରେ ବିଷ ଢାଳିବା ଉଚିତ ନୁହେଁ କିମ୍ବା ଓଲଟି ତାହାର ଅନିଷ୍ଟ କରିବା ମଧ୍ଯ ଉଚିତ ନୁହେଁ ।

Digitized by srujan ka@gmail.com

## ବିଷୟାସକ୍ତି

ଚିଲ, ଶାଗୁଣା ଅନେକ ଉଚ୍ଚକୁ ଉଠନ୍ତି, କିନ୍ତୁ ସେମାନଙ୍କର ନଜର ମଶାଣି ଉପରେ । ସେହିପରି ଅନେକ ଲୋକ ଅଛନ୍ତି ସେମାନେ ଈଶ୍ୱରଙ୍କ ସମ୍ବନ୍ଧରେ ଲମ୍ବା ଲମ୍ବା କଥା କହନ୍ତି, ମାତ୍ର ସେମାନଙ୍କ ମନ ମଶାଣି ଉପରେ । ଅର୍ଥାତ୍, (ବିଷୟ) କାମିନୀ, କାଞ୍ଚନଠାରେ ଥାଏ । ସେମାନଙ୍କର ମନ ଟଙ୍କା, କଉଡ଼ି, ଜମିବାଡ଼ି, କୋଠା, ଯଶ, ଉପାଧି, ସମ୍ମାନଠାରେ ଥାଏ ।

## ବିଷୟୀ ଲୋକ

ହଜାର କଥା କହ, ବିଷୟୀ ଲୋକର କିଛି ଉପକାର କରି ପାରିବ ନାହିଁ । ପଥର ପାଚେରୀରେ କି କଣ୍ଟା ମରାଯାଏ ? କଣ୍ଟାର ମୁନ ଭାଙ୍ଗିଯିବ । ପାଚେରୀର କିଛି ହେବ ନାହିଁ । ଖଣ୍ଡାର ଆଘାତରେ କୁମ୍ଭୀରର କ'ଣ ହେବ ? ସାଧୁର କମଣ୍ଡଳୁ ଚାରିଧାମ ବୁଲି ଆସେ, କିନ୍ତୁ ତାହାର ସ୍ୱାଦ ଯେପରି ତିକ୍ତ ସେହିପରି ତିକ୍ତ ଥାଏ । ବିଷୟୀ ଲୋକର ମନ ସାଧୁ ସନ୍ଥମାନଙ୍କ କଥା ଗ୍ରହଣ କରି ପାରେ ନାହିଁ । ସେମାନଙ୍କର କଥା ତାହାର ଏ କାନରେ ପଶି ସେକାନ ଦେଇ ବାହାରି ଯାଏ । ମଳୟ ପବନ ବହିଲେ ନିମ୍ବ ବୃକ୍ଷ ଚନ୍ଦନ ବୃକ୍ଷରେ ପରିଣତ ହୁଏ । ମାତ୍ର ଅନ୍ୟ ବୃକ୍ଷର କିଛି ପରିବର୍ତ୍ତନ ହୁଏ ନାହିଁ । ସେହିପରି ବିଷୟୀବ୍ୟକ୍ତି ଯେତେ ଭଲ କଥା ଶୁଣିଲେ ମଧ୍ୟ ତାହାର ମାନସିକ ପରିବର୍ତ୍ତନ ଅସମ୍ଭବ । ବିଷୟୀ ଲୋକକୁ ଭଗବତ୍ କଥା କହିଲେ ସେ ତାହା ଧାରଣା କରିବା ଡେଣେ ଥାଉ ବରଂ ବିରକ୍ତ ହୁଏ ।

---

Digitized by srujan ka@gmail.com

# ଈଶ୍ୱର-ସମର୍ପଣ

ସମ୍ପୂର୍ଣ୍ଣରୂପେ ନିଜକୁ ମୁକ୍ତ ରଖ । ଖାଇ ସାରିଲା ପରେ ଲୋକ ଫୋପାଡ଼ି ଦେଇଥିବା ଖଲି-ପତ୍ରର ମୂଲ୍ୟ କ'ଣ ? କିଏ କାହିଁକି ତାକୁ ସଂଗ୍ରହ କରିବାକୁ ଯିବ ? ତାକୁ ଛୁଇଁବାକୁ ବା ଯିବ କିଏ ? ପବନ ତାକୁ ଏଠି ପକାଏ ସେଠି ପକାଏ । ଠିକ୍ ସେମିତି ତୁମେ ଆଜି ଏଠି ଅଛ; ବେଶ ଭଲକଥା; ସେଇଠି ରହ; କିନ୍ତୁ ଯେତେବେଳେ ଈଶ୍ୱର ତୁମକୁ ଏଠୁ ନେଇଯିବେ ଓ ଏଠାରୁ ଭଲ ଜାଗାରେ ରଖିବେ, ତଦ୍ଦ୍ୱାରା ଘର ବା ସଂସାର କିଛି ବି ହରାଇ ବସିବ ନି ।

ସଂସାରରେ ଥିଲାଯାଏ କିପରି ବ୍ୟବହାର କରିବ ? ସବୁ ତାଙ୍କର ହାତରେ ଛାଡ଼ି ଦିଅ । ତାଙ୍କଠାରେ ଶରଣାଗତ ହୁଅ । ତାହାହେଲେ ତମର କିଛି ଜଞ୍ଜାଳ ରହିବ ନାହିଁ । ସେତେବେଳେ ତମେ ଜାଣିବ ଯେ ସେହି ହିଁ ସବୁ କରାଉଛନ୍ତି ।

ଏ ସଂସାରରେ ରହିବା ବା ଏହାକୁ ଛାଡ଼ିବା, ଉଭୟ ତାଙ୍କର ଇଚ୍ଛା ଉପରେ ନିର୍ଭର କରେ । ତେଣୁ କେବଳ କାମ କରି ଚାଲ ଓ ଫଳାଫଳ ତାଙ୍କର ହାତରେ ଛାଡ଼ିଦିଅ । ତା' ଛଡ଼ା ତମେ ଅଧିକ କିଛି କରି ପାରିବ କି ?

Digitized by srujan ka@gmail.com

ସାଧକର କୌଣସି ପ୍ରକାର ଭେକ ଧାରଣ କରିବା କ'ଣ ଠିକ୍ ?

(ଉତ୍ତର) ଭେକ ଧାରଣ ଭଲ । ଗେରୁଆ ଲୁଗା ପିନ୍ଧିଲେ ଓ ଖୋଳ କରତାଳ ଧରିଲେ ମୁଖରେ ଖେୟାଲ ସ୍ୱର ଆସେ ନାହିଁ । କଳା ଧଡ଼ି ଧୋତି ପିନ୍ଧି ବଙ୍କା ସିଂଥା କାଟି, ହାତରେ ବାଡ଼ି ଧରି ବାହାରିଲେ ନିଧୁର ଟପ୍ପା ରାଗିଣୀ ଗାଇବାକୁ ଇଚ୍ଛା ହୁଏ ।

ସାଧୁଙ୍କ ନିକଟକୁ ଓ ଦେବତାଙ୍କ ନିକଟକୁ ଖାଲି ହାତରେ ଯିବା ଉଚିତ ନୁହେଁ; କିଛି ନ ହେଲେ ହରିଡ଼ାଟିଏ ହେଲେ, ହାତରେ ନେଇଯିବ ।

ପାଣିରେ ନୌକା ଥାଉ, କ୍ଷତି ନାହିଁ, କିନ୍ତୁ ନୌକାରେ ଯେପରି ପାଣି ନ ରହୁ । ସାଧକ ସଂସାର ଭିତରେ ଥାଉ; କିନ୍ତୁ ସାଧକଭିତରେ ଯେପରି ସଂସାର ନ ପଶେ ।

ଏକାବେଳେ ଗୃହ ତ୍ୟାଗ କରି ବାହାରି ଯିବାର ଦରକାର ନାହିଁ । ଯେତେବେଳେ ଅବସର ପାଇବ, କୌଣସି ନିର୍ଜ୍ଜନ ସ୍ଥାନକୁ ଯାଇ ଦିନେ ଦୁଇଦିନ ରହିବ, ଯେପରି ସଂସାର ସହିତ କୌଣସି ସମ୍ପର୍କ ନ ଥାଏ । ଯେପରି କୌଣସି ବିଷୟୀ ଲୋକମାନଙ୍କ ସହିତ ସାଂସାରିକ ବିଷୟରେ ଆଳାପ କରିବାକୁ ନ ହୁଏ । ନିର୍ଜ୍ଜନବାସ କିମ୍ବା ସାଧୁସଙ୍ଗ ସଂସାରୀ ଲୋକର ଉପାୟ । ଭରତ, ପ୍ରହ୍ଲାଦ, ଶୁକଦେବ, ବିଭୀଷଣ, ପରଶୁରାମ, ବଳି ଓ ଗୋପାଙ୍ଗନା ଈଶ୍ୱରଙ୍କ ପାଇଁ ଗୁରୁ ଆଜ୍ଞା ଲଙ୍ଘନ କରିଥିଲେ ।

ଧ୍ରୁବ ଓ ପ୍ରହ୍ଲାଦଙ୍କର ଭକ୍ତି ସକାଳୁ ବାହାରିଥିବା ଲହୁଣୀ ପରି । ବେଳ ଗଡ଼ିଗଲେ ଦହି ଯେତେ ବୁଲେଇଲେ ସୁଦ୍ଧା ଲହୁଣୀ

Digitized by srujan ka@gmail.com

ସେପରି ଭଲ ହୁଏ ନାହିଁ । ବେଶୀ ବୟସରେ ସାଧନା କଲେ ସେପରି ପକ୍ୱ ହୋଇ ହୁଏ ନାହିଁ ।

କଞ୍ଚା ବାଉଁଶ ସହଜରେ ନୁଆଇଁ ହୁଏ । ପାକଲ ବାଉଁଶ ନୁଆଇଁବାକୁ ଗଲେ ଭାଙ୍ଗିଯାଏ । ପିଲ୍ଲମାନଙ୍କ ମନ ସହଜରେ ଈଶ୍ୱରଙ୍କ ଆଡ଼କୁ ନେଇ ଯାଇ ହୁଏ, କିନ୍ତୁ ବୁଢ଼ା ବୟସରେ ଟାଣିବାକୁ ଗଲେ ଖସିପଳାଏ ।

ଜଣେ ସାରାଦିନ ଆଖୁ କିଆରୀରେ ପାଣି ମଡ଼େଇ ଶେଷରେ ଦେଖିଲା ଯେ କିଆରୀରେ ଟୋପାଏ ହେଲେ ଜଳ ନାହିଁ । ଦୂରରେ ଗାତଥିଲା, ସେଇବାଟେ ସବୁ ବାହାରି ଯାଇଛି । ସେହିପରି ଯିଏ ବିଷୟ ବାସନା, ସାଂସାରିକ ମାନସଂଭ୍ରମ ଓ ସୁଖ-ସ୍ୱଚ୍ଛନ୍ଦତା ଆଡ଼କୁ ମନ ରଖି ଉପାସନା କରୁଛନ୍ତି, ସାରା ଜୀବନ ଉପାସନା କରି କରି ଶେଷରେ ସେ ମଧ୍ୟ ଦେଖିବାକୁ ପାଇବେ ଯେ, ସେସବୁ ବାସନାରୂପକ କଣାଦେଇ ତା'ର ସମୁଦାୟ ଉପାସନା ବାହାରି ଯାଇଛି । ସେ ଯେପରି ମଣିଷ ଥିଲା ସେହିପରି ପଡ଼ିଛି, ଟିକିଏ ବି ଉନ୍ନତି କରି ପାରି ନାହିଁ ।

କର୍ମଯୋଗ ବଡ଼ କଠିନ । ସେଥିପାଇଁ ପ୍ରାର୍ଥନା କରିବାକୁ ହୁଏ, ହେ ଈଶ୍ୱର ! ମୋର କର୍ମ କମାଇ ଦିଅ । ଆଜି ଯେଉଁ କର୍ମ-ଟିକକ ରଖିଚ, ତାହା ଯେପରି ତୁମ୍ଭ କୃପାରୁ ଅନାସକ୍ତ ହୋଇ କରିପାରେଁ । ଆଉ ଯେପରି ଅଧିକ କର୍ମରେ ଜଡ଼ିତ ହେବାକୁ ଇଚ୍ଛା ନ ହୁଏ ।



Digitized by srujan ka@gmail.com



# ସ୍ୱାମୀ ବିବେକାନନ୍ଦ

## ଶ୍ରୀମତୀ ସରଳା ଦେବୀ

ସ୍ୱାମୀ ବିବେକାନନ୍ଦ ପୃଥିବୀର ଜଣେ ବିଶିଷ୍ଟ ନେତା । ସେ ପଶ୍ଚିମ ଭାରତର କଲିକତାରେ ଜନ୍ମିଥିଲେ, ତାଙ୍କର ଅଦ୍ଭୁତ ପ୍ରତିଭା ପୃଥିବୀକୁ ଆଲୋକିତ କରିଥିଲା । ସେ ଥିଲେ ଏକାଧାରରେ କବି, ଦେଶପ୍ରେମୀ, ଦାର୍ଶନିକ, ଭାବୁକ, ସଂସ୍କାରକ, ବୈଦାନ୍ତିକ ଓ ସନ୍ନ୍ୟାସୀ । ତାଙ୍କର ଜୀବନ ବେଦାନ୍ତ ନିହିତ ସତ୍ୟ ସାଧନାରେ ଭାସ୍ୱରିତ ହୋଇଥିଲା । ପରାଧୀନ ଭାରତ ଯେଉଁ ଊନବିଂଶ ଶତକରେ ପୃଥିବୀର ସୁସଭ୍ୟ ଗର୍ବିତ

Digitized by srujan ka@gmail.com

ପାଶ୍ଚାତ୍ୟ ଜାତିମାନଙ୍କର ଘୃଣା ଓ ଅବହେଳାର ପାତ୍ର ଥିଲା, ସେହି ଅନ୍ଧକାର ଯୁଗରେ ଭାରତର ଲୁପ୍ତ ଗୌରବ ପୁନଃ ପ୍ରତିଷ୍ଠା ଓ ଆମର ସାଂସ୍କୃତିକ ଋଷିମାନଙ୍କ ଅବଦାନକୁ ସେ ଜଗତର ଧର୍ମ ସଭାରେ ଉପସ୍ଥାପିତ କରି ହିନ୍ଦୁଧର୍ମ ଯେ ପୃଥିବୀର ଶ୍ରେଷ୍ଠତମ ଧର୍ମ ଓ ଶ୍ରେଷ୍ଠତମ ମାନବ ସଂସ୍କୃତିର ଆଧାର, ତାହାହିଁ ବଜ୍ରକଣ୍ଠରେ ଘୋଷଣା କରି ଦେଇଥିଲେ । ଭାରତବର୍ଷର ସଂସ୍କୃତି, ପରଂପରା ଓ ଧର୍ମ ସନାତନ । ଏ ଦେଶର ବେଦସମ୍ପଦ ମାନବର କୃଷ୍ଟି କେତେ ମହାନ । ଭାରତର ରେଣୁ, ନଦୀ, ପର୍ବତ କିପରି ଭାବରେ ଯୁଗ ଯୁଗାନ୍ତ ଆଲୋକିତ କରି ମାନବ ସଂସ୍କୃତିର ପରମ ତୀର୍ଥରୂପେ ପରିଗଣିତ ହୋଇ ଶତ ପରାଧୀନତାର ଶୃଙ୍ଖଳ ତଳେ ନିଷ୍ପେଷିତ ହୋଇପାରି ନାହିଁ, ତାହାକୁ ହିଁ ଜଗତରେ ପ୍ରକଟିତ କରିଥିଲେ ଭାରତର ଅମର ଋଷି ବିବେକାନନ୍ଦ । ଜଗତ, ଭାରତ-ମନ୍ତ୍ରମାରେ ସ୍ତମ୍ଭିତ, ମୁଗ୍ଧ-ହୋଇଥିଲା । ଏ ଦେଶକୁ, ପୃଥିବୀର ମହାନ୍ ଗୌରବମୟ ସ୍ଥଳୀ ବୋଲି ଯେ ପ୍ରମାଣିତ କରିଥିଲେ, ଭାରତର ପ୍ରଥମ ପୁରୁଷରୂପେ ପରିଗଣିତ ସେ ବିବେକାନନ୍ଦ ।

ବିବେକାନନ୍ଦଙ୍କ ମାଆ ବଡ଼ ଶିବଭକ୍ତ ଥିଲେ । ସେ ନିଃସନ୍ତାନ ଥିବାରୁ ତାଙ୍କର ଗାଢ଼ ଦୁଃଖ ଥିଲା । ସେ ନିତ୍ୟ ଶିବ ପୂଜାରେ ରତ ଥିଲେ ଏବଂ ପୁତ୍ର ସନ୍ତାନ ପାଇଁ ଶିବଙ୍କ ଚରଣରେ ଅଳି କରୁଥିଲେ । ଭଗବାନ୍ ଆଶୁତୋଷ ବିବେକାନନ୍ଦଙ୍କ ମାଆଙ୍କୁ ସ୍ୱପ୍ନରେ ପୁତ୍ରଜନ୍ମର ସଙ୍କେତ ଦେଇଥିଲେ ଏବଂ ଶିବଙ୍କର ଅଂଶାବତାର ଥିଲେ ନରେନ୍ଦ୍ରନାଥ ଦତ୍ତ । ନରେନ୍ଦ୍ରଙ୍କ ନାମହିଁ ପରେ ଶ୍ରୀ ପରମହଂସ ରାମକୃଷ୍ଣ, ବିବେକାନନ୍ଦ ଦେଇଥିଲେ । ବିବେକାନନ୍ଦ ବି. ଏ. ପାସ୍ କରି ଚାକିରିଟିଏ ଖୋଜିବାକୁ କାହା-ପାଖେ ଉମେଦୁଆରି କରି ନ ଥିଲେ । ପିଲାଦିନୁ ଅଧ୍ୟାତ୍ମିକତା ପ୍ରତି

Digitized by srujan ka@gmail.com

ତାଙ୍କର ଆକର୍ଷଣ ଥିଲା । ତେଣୁ ସେ ଯୁଗର ଶ୍ରେଷ୍ଠ ସିଦ୍ଧ ପୁରୁଷ, ଭଗବାନଙ୍କର ଅବତାର ଶ୍ରୀ ରାମକୃଷ୍ଣ ପରମହଂସଙ୍କର ନାମ ଶୁଣି ସେ ଦକ୍ଷିଣେଶ୍ୱରକୁ ତାଙ୍କ ନିକଟକୁ ଯିବା ଆସିବା କରୁଥିଲେ । ଶେଷରେ ସେ ପରମହଂସଙ୍କୁ ନିଜର ଗୁରୁ କରିଥିଲେ । ବିବେକା-ନନ୍ଦଙ୍କର ଅପୂର୍ବ ଗୁରୁଭକ୍ତି ଓ ଆତ୍ମସମର୍ପିତ ଏକାନ୍ତ ନିଷ୍ଠାପର ହୃଦୟ ଦେଖି ପରମହଂସ ତାଙ୍କର ସମଗ୍ର ଅଧ୍ୟାତ୍ମ ଦର୍ଶନ ଓ ସାଧନାତତ୍ତ୍ୱ ତଥା ମାନବସେବାର ଆଦର୍ଶରେ ବିବେକାନନ୍ଦଙ୍କୁ ଦୀକ୍ଷିତ କରିଥିଲେ । ବିବେକାନନ୍ଦ My master ବହିରେ ତାହା ଲେଖିଛନ୍ତି । ବିବେକାନନ୍ଦଙ୍କର ସମସ୍ତ ଜୀବନାଦର୍ଶ ଓ ସାଧନା ଗୁରୁଙ୍କ ଦୟାରୁ ସମ୍ଭବ ହୋଇଥିଲା ବୋଲି ସେ ଲେଖିଛନ୍ତି । ନିରକ୍ଷର ପରମହଂସ ରାମକୃଷ୍ଣଙ୍କର ସଂସ୍କୃତିବାଣୀ, ବିବେକାନନ୍ଦଙ୍କ ଦ୍ୱାରା ବିଗତ ଶତାବ୍ଦୀରେ ମାନବ ସମାଜରେ ପ୍ରଚାରିତ ହୋଇ-ଥିଲା । ଯେଉଁ କାଳରେ ଖ୍ରୀଷ୍ଟାନ ପାଦ୍ରୀମାନେ ବଙ୍ଗଦେଶର ଇଂରାଜୀ ଶିକ୍ଷିତଯୁବକଙ୍କୁ ହିନ୍ଦୁଧର୍ମର କୁସଂସ୍କାର ଓ କୁପ୍ରଥା କହି ଖ୍ରୀଷ୍ଟାନଧର୍ମରେ ଦୀକ୍ଷିତ କରି, ସେମାନଙ୍କ ଇଂରାଜୀ ଭାଷା ଓ ସଭ୍ୟତାର ମୂଳଦୁଆ ଭାରତରେ ପୋତିବାକୁ ପ୍ରାଣପଣେ ଚେଷ୍ଟା କରୁଥିଲେ ଓ ଭାରତର ଯୁବକମାନଙ୍କୁ ଖ୍ରୀଷ୍ଟାନ କରୁଥିଲେ; ସେଇ ଅସହାୟ ଅନ୍ଧକାରାଚ୍ଛନ୍ନ ଯୁଗରେ ବିବେକାନନ୍ଦଙ୍କ ପ୍ରଚାରିତ ଧର୍ମହିଁ ଭାରତର ଯୁବକମାନଙ୍କୁ ବୈଧର୍ମରୁ ରକ୍ଷା କଲା ଓ ହିନ୍ଦୁଧର୍ମ ତଥା ହିନ୍ଦୁସମାଜ ବଞ୍ଚିଯାଇଥିଲା । ରାମମୋହନ ରାୟ ମଧ୍ୟ ବ୍ରାହ୍ମଧର୍ମ ପ୍ରଚାର କରି ଭାରତକୁ ବଞ୍ଚାଇ-ଥିଲେ; କିନ୍ତୁ ସଂସ୍ଥା ଅଭାବରୁ ସେହି ଧର୍ମ ବେଶିଦିନ ହିନ୍ଦୁସମାଜରେ ବଞ୍ଚି ପାରିଲା ନାହିଁ । ରାମମୋହନ ହିନ୍ଦୁର ପୌତ୍ତଳିକପୂଜା ବିରୁଦ୍ଧରେ କହି ନିରାକାରବାଦ ବା ଅଦ୍ୱୈତବାଦ ପ୍ରଚାର କରିଥିଲେ, ମାତ୍ର ବିବେକାନନ୍ଦ ହିନ୍ଦୁର ଦ୍ୱୈତବାଦକୁ ବିଭିନ୍ନ ଦେବଦେବୀ ଓ

Digitized by srujan ka@gmail.com

ପିତୃଳାପୂଜା, ହିନ୍ଦୁର କ୍ରିୟା କର୍ମକାଣ୍ଡ ସବୁ ମାନି ଚଳିବାକୁ ପ୍ରଚାର କରିଥିଲେ । ପୁଣି ହିନ୍ଦୁନାରୀମାନଙ୍କୁ ସେ ନାରୀର ଆଦର୍ଶ ବୋଲି ପ୍ରଚାର କରିଥିଲେ । ନାରୀଶିକ୍ଷା ସପକ୍ଷରେ ସେ ଯେ କେବଳ ଥିଲେ ତାହା ନୁହେଁ, ମେମ୍‌ସାହେବ "ନିବେଦିତା"ଙ୍କୁ ବିଲାତରୁ ଆଣି ପ୍ରଥମେ ସେ କଲିକତାରେ ହିନ୍ଦୁବାଳିକା ସ୍କୁଲ ସ୍ଥାପନ କରି ବାଳିକାମାନଙ୍କୁ ଚରିତ୍ରବତୀ ସତୀ ସାଧ୍ୱୀ ହେବାପାଇଁ ଯେ ଶିକ୍ଷାଦର୍ଶ ଆବଶ୍ୟକ, ତାହାର ପ୍ରବର୍ତ୍ତନ କରିଥିଲେ । ତାଙ୍କର ମୂଳଧର୍ମ ହେଲା ମାନବସେବା— । ଦରିଦ୍ରକୁ ସେ ନାରାୟଣ ବୋଲି ମାନି ନେଲେ ଏବଂ ଦରିଦ୍ରଙ୍କୁ ପଢ଼ାଇବା, ଚିକିତ୍ସା କରାଇବା ଏବଂ ଅନ୍ନ ବସ୍ତ୍ର ଦେବାରେ ଯେ ଭଗବାନଙ୍କ ସେବା କରାଯାଏ, ତାହା ଉଚ୍ଚ କଣ୍ଠରେ ପ୍ରଚାର କଲେ । ଭାରତର ଏହି ପ୍ରାଚୀନ ଧର୍ମର ପ୍ରତିଷ୍ଠା କରିବାପାଇଁ ସେ ନାନା ଅନୁଷ୍ଠାନ ଭାରତରେ ଏବଂ ପୃଥିବୀର ନାନା ଦେଶରେ ଗଠନ କରିଥିଲେ । ତାହା ଏପର୍ଯ୍ୟନ୍ତ ବଞ୍ଚି ପୃଥିବୀକୁ ବର୍ବର ବସ୍ତୁବାଦୀ ଇନ୍ଦ୍ରିୟଭୋଗମୂଳକ ସଭ୍ୟତା ଭିତ୍ତି-ଭିତରେ ହିନ୍ଦୁଧର୍ମର ବାଣୀ ଓ ଆଦର୍ଶ ପ୍ରଚାର କରୁଛି । ଏଥିପାଇଁ ସେ ଦେଶରୁ ଶତଶତ ସାଧୁ ଯୁବକ ସନ୍ନ୍ୟାସୀ ବାଛି ସେମାନଙ୍କ ଦ୍ୱାରା ଏହି ମହତ୍ କର୍ମର ପ୍ରତିଷ୍ଠା କରିଥିଲେ । ସ୍ୱାମୀ ବିବେକାନନ୍ଦ ବ୍ୟକ୍ତିଗତ ଚରିତ୍ରର ବିକାଶ ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ, ତାଙ୍କ ମତରେ ବ୍ୟକ୍ତିଗତ ଚରିତ୍ରର ବିକାଶଦ୍ୱାରା ଜାତୀୟ ଚରିତ୍ରର ବିକାଶ ସ୍ୱତଃ ଘଟିବ । ସ୍ୱାମୀ ବିବେକାନନ୍ଦ ଧର୍ମର ଆଭିମୁଖ୍ୟ କାର୍ଯ୍ୟକ୍ଷେତ୍ରରେ ପ୍ରକଟିତ କରାଇବାର ଉଦ୍ୟମ କରିଥିଲେ । ସାଧାରଣ ଲୋକ ଧର୍ମର ତାତ୍ପର୍ଯ୍ୟ ଓ ମହତ୍ତ୍ୱ ଉପଲବ୍‌ଧି କରିବାକୁ ସେ ପରାମର୍ଶ ଦେଉଥିଲେ । ସ୍ୱାମୀ ବିବେକାନନ୍ଦ ପ୍ରଥମେ ଲୋକଙ୍କୁ ଅନ୍ନ ଓ କାମ ଯୋଗାଇ ଦେବା ଆବଶ୍ୟକ ବୋଲି ଉପଦେଶ

Digitized by srujan ka@gmail.com

ଦେଇଥିଲେ । ତା'ପରେ ତାଙ୍କ ଭିତରେ ଆଧ୍ୟାତ୍ମିକ ଭାବନାର ଜାଗରଣ ଅଣାଯାଇ ପାରିବ । କର୍ମହିଁ ଭଗବାନଙ୍କର ଶ୍ରେଷ୍ଠ ଆରାଧନା । ଫଳବାଞ୍ଛା ନ କରି ଆମେ କାମ କରିଯିବା ଉଚିତ । ଆଦର୍ଶରେ ଅନୁପ୍ରାଣିତ ହୋଇ କାମ ନ କଲେ ଆମେ କର୍ମବନ୍ଧନରେ ବାନ୍ଧି ହୋଇ ଦାସ ହୋଇ ପଡ଼ିବା । ସ୍ୱାମୀ ବିବେକାନନ୍ଦ ଲୋକଙ୍କ ସମସ୍ୟା କ୍ଷୁଧା, ଅଶିକ୍ଷା, ଦାରିଦ୍ର୍ୟ ଓ ଅସହାୟତା ପ୍ରତି ପ୍ରଥମ ଧ୍ୟାନ ଦେଇଥିଲେ । ମନୁଷ୍ୟର ଦୁଃଖ ଦୁର୍ଗତି ପ୍ରତି ଯାହାର ଧ୍ୟାନ ନାହିଁ ସେଭଳି ବ୍ୟକ୍ତି ବିଶ୍ୱାସଘାତକ ବୋଲି ସେ ବିଚାରୁଥିଲେ ।

ଭାରତ ଆଜି ବିବେକାନନ୍ଦ-ସଂସ୍କୃତିକୁ ଭୁଲି ଅଧୋଗତି ଲାଭ କରିଅଛି । ଭାରତରେ ରାଜନୀତି କିପରି ଆଦର୍ଶ ହେବ, ସମାଜ ନୀତି କିପରି ହେବ, ତାହାର ମସୁଧା ବିବେକାନନ୍ଦହିଁ ପ୍ରଥମେ ଲେଖିଥିଲେ ଓ ଭାରତବର୍ଷକୁ ବଞ୍ଚି ରହିବାକୁ ହେଲେ ହିନ୍ଦୁ ଧର୍ମ ଓ ତା'ର ସଂସ୍କାର ରକ୍ଷା କରିବା ଯେ ଏକ ଅନିବାର୍ଯ୍ୟ ପ୍ରଣାଳୀ ତାହାହିଁ ସେ ପ୍ରଚାର କରି ଯାଇଛନ୍ତି ।

୧୯୭୦ ସେପ୍ଟେମ୍ବର ମାସ ୨ ତାରିଖରେ ରାଷ୍ଟ୍ରପତି ଶ୍ରୀ ଭି· ଭି· ଗିରି କନ୍ୟାକୁମାରୀରେ ବିବେକାନନ୍ଦ ଶିଳାସ୍ମୃତି ଉଦ୍‌ଘାଟନ କରିଥିଲେ । ଏହି ଶିଳାସ୍ମୃତି ନିର୍ମାଣରେ ୯୦ (ନବେ) ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଛି ଓ ଏ ନିର୍ମାଣକାର୍ଯ୍ୟ ଶେଷ ହେବାକୁ ୬ (ଛ) ବର୍ଷ ଲାଗିଲା ।

ସ୍ୱାମୀଜୀଙ୍କ ପ୍ରତିଷ୍ଠିତ ରାମକୃଷ୍ଣ ମିସନ ପୃଥିବୀ ଓ ଭାରତ ପ୍ରତି ଏକ ମହତ୍ ଦାନ । ସଂକ୍ଷେପରେ କହିବାକୁ ଗଲେ ଋଷିମାନଙ୍କର ସମାଧି-ତୃଷ୍ଣା, ଶୁକଦେବଙ୍କର ମାୟାରହିତ୍ୟ, ଶଙ୍କରଙ୍କ ଜ୍ଞାନ ଓ ନାରଦଙ୍କର ଭକ୍ତି ଏ ସମସ୍ତ ବିବେକାନନ୍ଦଙ୍କ ମଧ୍ୟରେ ଏକତ୍ର

Digitized by srujan ka@gmail.com

ସମାବୃତ ହୋଇ ରହିଥିଲା ଓ ଶ୍ରୀରାମକୃଷ୍ଣ, ବିବେକାନନ୍ଦଙ୍କର ଏହି ମହାନ୍ ଆଧ୍ୟାତ୍ମିକଭାବ, ପ୍ରତିଭା, ଜ୍ଞାନ ଓ ନିଷ୍ଠା ଦେଖି ତାଙ୍କୁ ଆଶୀର୍ବାଦ ଦେଇଥିଲେ ଓ ଉପଯୁକ୍ତ ଗୁରୁର ଉପଯୁକ୍ତ ଶିଷ୍ୟରୂପେ ବିବେକାନନ୍ଦ ଏ ଜାତିକୁ ପୁନର୍ଜୀବନ ଦାନ କରି ଜାତି ଓ ଦେଶର ମାହାତ୍ମ୍ୟ ବୃଦ୍ଧି କରିଥିଲେ ।

ବିବେକାନନ୍ଦ କୌଣସି ଦେଶର, କୌଣସି ଜାତିର, କୌଣସି ସମ୍ପ୍ରଦାୟର ନିଜସ୍ୱ ଧର୍ମପ୍ରଦ ନୁହନ୍ତି; ସେ ସମଗ୍ର ବିଶ୍ୱବାସୀଙ୍କର; ସେଥି ନିମନ୍ତେ ଆଜି ବିଶ୍ୱଜଗତ ଶ୍ରୀ ରାମକୃଷ୍ଣ ଓ ବିବେକାନନ୍ଦଙ୍କୁ ଆରାଧନା କରୁଅଛି ।

## ସ୍ୱାମୀ ବିବେକାନନ୍ଦଙ୍କ ବାଣୀ

ଈଶ୍ୱର-ବିଶ୍ୱାସ—ଈଶ୍ୱରଙ୍କଠାରେ ବିଶ୍ୱାସ ସ୍ଥାପନ କର । ସବୁବେଳେ ତାଙ୍କ ଉପରେ ନିର୍ଭର କର । କେବଳ ଈଶ୍ୱରଙ୍କ ବ୍ୟତୀତ ଅନ୍ୟ କାହାରି ନିକଟରୁ ସାହାଯ୍ୟ ଭିକ୍ଷା କର ନାହିଁ ।

## ସ୍ୱାମୀ ବିବେକାନନ୍ଦଙ୍କ ଦୃଷ୍ଟିରେ ଶିକ୍ଷା

ଛାତ୍ରମାନଙ୍କ ସମ୍ପର୍କରେ କହିବାକୁ ଯାଇ ସ୍ୱାମୀଜୀ କହିଛନ୍ତି, ଛାତ୍ରର ଜ୍ଞାନ ଆହରଣପାଇଁ ପ୍ରବଳ ଆକାଂକ୍ଷା ଦରକାର । ବ୍ୟାକୁଳତା ସଙ୍ଗେ ସଙ୍ଗେ କଠୋର ପରିଶ୍ରମ, ପ୍ରଗାଢ଼ ମନୋନିବେଶ, ତା'ର ଜ୍ଞାନପଥରେ ସହାୟକ ହୁଏ । ଆଜିକାଲି ଶିକ୍ଷକ ଆଉ ଗୁରୁ ନ ହୋଇ କେବଳ ଜଣେ ବକ୍ତା ହୋଇ ଯାଉଥିବାରୁ ସେ କ୍ଷୋଭ ପ୍ରକାଶ କରିଥିଲେ । ଅର୍ଥ, କ୍ଷମତା ଓ ସମ୍ଭୋଗର ଲୋଭ ଏତେ ବାଢ଼ିଛି ଯେ, ମେଧାବୀ ଛାତ୍ରମାନେ ଶିକ୍ଷକତା କରିବାକୁ

Digitized by srujan ka@gmail.com

ଆଗଭର ହେଉ ନାହାନ୍ତି । କାରଣ ଶିକ୍ଷାବିଭାଗରେ ନାହିଁ ଧନ, ନାହିଁ କ୍ଷମତା, ନାହିଁ ସ୍ୱୋଗ । ଯେଉଁ କେତେଜଣ ଆଦର୍ଶବାଦୀ ନିଜର ଦୃଢ଼ବିଶ୍ୱାସ ଯୋଗୁଁ ଶିକ୍ଷାକ୍ଷେତ୍ରରେ ପ୍ରବେଶ କରୁଛନ୍ତି, ସେମାନେ ଅଧିକାଂଶ ଅଳ୍ପ ସମୟ ମଧ୍ୟରେ ଅସନ୍ତୁଷ୍ଟ, ନିରାଶ, ହତାଶ, ଭଗ୍ନମନୋରଥ ଓ ଅନୁତପ୍ତ ହୋଇ କାଳଯାପନ କରୁଛନ୍ତି । ଅର୍ଥାତ୍ ସାଧାରଣତଃ ମଧ୍ୟମ ଶ୍ରେଣୀର ଗୁରୁହିଁ ଶିକ୍ଷକତା କରୁଛନ୍ତି । ମଧ୍ୟମ ଶ୍ରେଣୀର ଶିକ୍ଷକ କିପରି ପ୍ରଥମ ଶ୍ରେଣୀର ବିଚକ୍ଷଣ ଗୁରୁ ସୃଷ୍ଟି କରିପାରିବେ, ତାହା ବିଂଶ ଶତାବ୍ଦୀର ଏକ ରହସ୍ୟ । ବିଚକ୍ଷଣ ଗୁରୁ ଆମର ଦରକାର; କିନ୍ତୁ କୌଣସି ବିଚକ୍ଷଣ ଗୁରୁ ଶିକ୍ଷକତା କରିବାକୁ ରାଜି ନୁହନ୍ତି । ଏହି ସାଂଘାତିକ ନୀତି ଅଧିକଦିନ ଅନୁସରଣ କରାଗଲେ ଆତ୍ମହତ୍ୟା ଅନିବାର୍ଯ୍ୟ । କାରଣ ଶେଷକୁ କେବଳ ଥାର୍ଡ଼ରେଟର୍ ହିଁ ଶିକ୍ଷାନୁଷ୍ଠାନମାନଙ୍କରୁ ବାହାରିବେ ।

ଶିକ୍ଷା ସମ୍ବନ୍ଧରେ, ଶାରୀରିକ ଶିକ୍ଷା ଉପରେ ସ୍ୱାମୀ ଖୁବ୍ ଗୁରୁତ୍ୱ ଦେଉଥିଲେ । ଶାରୀରିକ ବଳ ଆମର ମାନସିକ ବଳର ଭିତ୍ତି । ବଳହିଁ ଜୀବନ, ଦୁର୍ବଳତାହିଁ ମୃତ୍ୟୁ । ଆମର ଶାରୀରିକ ଦୁର୍ବଳତା, ଆମ ଆଳସ୍ୟର କାରଣ ।

## ଆମର କର୍ତ୍ତବ୍ୟଜ୍ଞାନ

ଆମର ପ୍ରଥମ କର୍ତ୍ତବ୍ୟ ହେଉଛି ନିଜକୁ ଘୃଣା ନ କରିବା । କେବେହେଲେ ନିଜକୁ ଘୃଣା କର ନାହିଁ । ନିଜକୁ ହୀନ ଓ ଦୁର୍ବଳ ମନେ କର ନାହିଁ । ତୁମ୍ଭେ ଯାହା ଚିନ୍ତା କରିବ, ତୁମ୍ଭେ ତାହାହିଁ ହେବ । ତୁମ୍ଭେ ଯଦି ନିଜକୁ ଦୁର୍ବଳ ବୋଲି ମନେ କର, ତେବେ ତୁମ୍ଭେ ଦୁର୍ବଳ ହେବ, ନିଜକୁ ତେଜସ୍ୱୀ ବୋଲି ଭାବିଲେ ତେଜସ୍ୱୀ ହେବ, ଯଦି ତୁମ୍ଭେ ନିଜକୁ ଅପବିତ୍ର ବୋଲି ଭାବିବ, ତେବେ

Digitized by srujan ka@gmail.com

ତୁମେ ଅପବିତ୍ର, ନିଜକୁ ବିଶୁଦ୍ଧ ଭାବିଲେ ବିଶୁଦ୍ଧ ହେବ । ନିଜର ଉନ୍ନତିପାଇଁ ପ୍ରଥମେ ନିଜ ଉପରେ ଓ ପରେ ଈଶ୍ୱରଙ୍କ ଉପରେ ବିଶ୍ୱାସ କରିବାକୁ ହେବ । ଯାହାର ନିଜ ଉପରେ ବିଶ୍ୱାସ ନାହିଁ, ତାହାର ଈଶ୍ୱରଙ୍କଠାରେ ନିର୍ଭର ବିଶ୍ୱାସ ଆସିବ କୁଆଡ଼ୁ । ଜଗତରେ ପ୍ରତ୍ୟେକ କର୍ମ ହିଁ ପବିତ୍ର । ତେଣୁ କର୍ତ୍ତବ୍ୟ ପ୍ରତି ଉଦ୍‌ଗତପ୍ରାଣତା ହେଉଛି ଶ୍ରେଷ୍ଠ ଈଶ୍ୱରୋପାସନା । ତମେ ଯେତେବେଳେ କୌଣସି କାମ କରୁଛ, ସେହି କାମ ଛଡ଼ା ଆଉ କିଛି ଭାବ ନାହିଁ । ସର୍ବଶ୍ରେଷ୍ଠ ଈଶ୍ୱରୋପାସନା ଭଳି ତାକୁ କରିଯାଅ ।

ଆହାର, ପୋଷାକ ଓ ଜାତିଗତ ଆଚାରର ବ୍ୟବହାର ପରି-ତ୍ୟାଗ କଲେହିଁ କ୍ରମେ ଜାତୀୟତାର ଲୋପ ହୋଇଥାଏ । ସମସ୍ତଙ୍କ ନିକଟରୁ ବିଦ୍ୟାଶିକ୍ଷା କରାଯାଏ; କିନ୍ତୁ ଯେଉଁ ବିଦ୍ୟାଲାଭରେ ଜାତୀୟତାର ଲୋପ ହୁଏ, ତଦ୍ୱାରା ଉନ୍ନତି ହୋଇପାରେ କି ? ବରଞ୍ଚ, ଏହା ଅଧଃପତନର ସୂଚନା । କାହାରି ଦୋଷ ଦେଖ ନାହିଁ କିମ୍ବା କାହାରି କୁତ୍ସା ରଟନା କରି, ନିଜର ଶକ୍ତି କ୍ଷୟ କର ନାହିଁ । ନିଜେ ଭଲ ହେବାକୁ ଯତ୍ନ କର । ଅପରର ଦୋଷ ଦେଖାଇବା ଦ୍ୱାରା ନିଜର କ୍ଷତି ହୁଏ ।

ଅପରକୁ ଘୃଣା କରିବାଠାରୁ ଆଉ ମନ୍ଦକାର୍ଯ୍ୟ କିଛି ନାହିଁ ।

ବାକ୍ୟବାଣ—ବିଷବାଣ

ଅନ୍ୟ ମନରେ କଟୁବାକ୍ୟଦ୍ୱାରା ଦୁଃଖ ଦେବା ଏକ ବଡ଼ ଧରଣର ପାପ—

Digitized by srujan ka@gmail.com

## ଦୁର୍ଲଭ କଅଣ ?

ତିନୋଟି ଜିନିଷ ଏ ପୃଥିବୀରେ ବଡ଼ ଦୁର୍ଲଭ । ପ୍ରଥମ ମନୁଷ୍ୟ ଦେହ । ମନୁଷ୍ୟ ମନରେ ହିଁ ଈଶ୍ୱରଙ୍କର ଉତ୍କୃଷ୍ଟ ପ୍ରତିବିମ୍ବ ବିଦ୍ୟମାନ । ବାଇବେଲ୍‌ରେ ଅଛି ମନୁଷ୍ୟ ଈଶ୍ୱରଙ୍କ ପ୍ରତିମୂର୍ତ୍ତି-ସ୍ୱରୂପ । ଦ୍ୱିତୀୟ—ମୁକ୍ତ ହେବାପାଇଁ ପ୍ରବଳ ଆକାଙ୍‌କ୍ଷା । ତୃତୀୟ ମହାପୁରୁଷଙ୍କ ଆଶ୍ରୟ ଲାଭ—ଯେ କି ସ୍ୱୟଂ ମାୟା-ମୋହ-ସମୁଦ୍ର ପାର ହୋଇ ଯାଇଛନ୍ତି; ଏପରି ମହାତ୍ମାଙ୍କୁ ଗୁରୁରୂପେ ଲାଭ । ଏହି ତିନୋଟି ଯଦି ପାଇଥାଅ ତା'ହେଲେ ଭଗବାନଙ୍କୁ ଧନ୍ୟବାଦ ଦିଅ, ତୁମ୍ଭେ ମୁକ୍ତ ହେବ ହିଁ ହେବ ।

ଇନ୍ଦ୍ରିୟ-ଲାଳସା—ଇନ୍ଦ୍ରିୟର ଭୋଗ କ୍ଷଣସ୍ଥାୟୀ, ଯେପରି ବିଜୁଳିର ଚକମକ ଆଲୋକ କ୍ଷଣସ୍ଥାୟୀ, ତା'ପରେ ପୁଣି ଘୋର ଅନ୍ଧକାର । ସେହିପରି ଇନ୍ଦ୍ରିୟଭୋଗସୁଖ ବା ବିଳାସସୁଖ କ୍ଷଣସ୍ଥାୟୀ ଓ ପରିଣାମ ଦୁଃଖ ବା ବିନାଶ । ଇନ୍ଦ୍ରିୟସୁଖର ବାସନା ତ୍ୟାଗ ନ କଲେ ଧର୍ମଲାଭ ହୁଏ ନାହିଁ ।

ତ୍ୟାଗ ଓ ସଂଯମ—ଆତ୍ମଜ୍ଞାନ ଲାଭ କରିବାକୁ ହେଲେ ତ୍ୟାଗର ପ୍ରୟୋଜନ । ତ୍ୟାଗ ବ୍ୟତୀତ ଈଶ୍ୱର-ଲାଭ ସୁଦୂର ପରାହତ । ବିଷୟଭୋଗ 'ବିଷବତ୍' ତ୍ୟାଗ କର । ସବୁ ଶାସ୍ତ୍ରରେ ଏହି ତ୍ୟାଗର ମହିମା ବର୍ଣ୍ଣିତ । ଦୁନିଆ ଦୁଇଦିନ ଲାଗି, ଏହା କୁହୁକ ଭଳି । ଜୀବନ ପାଣି-ଫୋଟକା ପରି କ୍ଷଣସ୍ଥାୟୀ । ଏହିପରି ଦୃଶ୍ୟମାନ ଜଗତ ପଛରେ ସେହି ଅନନ୍ତ ଅପାର ରାଜ୍ୟ । ଯାଅ, ସେଠାକୁ ଚାଲିଯାଅ ।

Digitized by srujan ka@gmail.com

ତ୍ୟାଗ ଭିନ୍ନ ଏହି ଗଭୀର ଜୀବନ-ସମସ୍ୟାର ରହସ୍ୟ ଭେଦ କରି ପାରିବ ନାହିଁ । ତ୍ୟାଗ, ତ୍ୟାଗ, ତ୍ୟାଗ,—ଏହାହିଁ ତୁମ୍ଭମାନଙ୍କ ଜୀବନର ମୂଳମନ୍ତ୍ର ହେଉ ।

ଉନ୍ନତ ହେବାକୁ ହେଲେ ସଂଯମର ବିଶେଷ ପ୍ରୟୋଜନ । ଦେହର ସଂଯମ, ମନର ସଂଯମ, ଇନ୍ଦ୍ରିୟର ସଂଯମ, ବାକ୍ୟର ସଂଯମ । ଚାଲିବାବେଳେ ଗୋଟିଏ ପାଦ ଭୂମିରେ ରଖି ଆଉ ଗୋଟିକୁ ଉଠାଇବାକୁ ହୁଏ । ଖାଇବା ପିଇବାରେ ଅସଂଯତ ହେଲେ ସ୍ୱାସ୍ଥ୍ୟହାନି ଘଟେ । ଇନ୍ଦ୍ରିୟାଦିର ସଂଯମ ନ ଥିଲେ ନାନା ପ୍ରକାର ବ୍ୟାଧି ଉପୁଜେ । ସଂଯମ ବିନା ଶୃଙ୍ଖଳ ଜୀବନ ଯାପନ ଅତି କଠିନ ।

ବିଷୟ ବିତୃଷ୍ଣା ନ ଆସିଲେ, କାକବିଷ୍ଠାପରି କାମିନୀ କାଞ୍ଚନ ତ୍ୟାଗ ନ କଲେ ବହ୍ମାଙ୍କ କୋଟି କଳ୍ପରେ ମଧ୍ୟ ଜୀବର ମୁକ୍ତି ନାହିଁ । ବିଷୟ-ଭୋଗ ତ୍ୟାଗ ନ କଲେ ଅନ୍ତରର ଐଶୀ ଶକ୍ତି କିପରି ଜାଗ୍ରତ ହେବ ! ଯାହାର ଏହି ତ୍ୟାଗଭାବ ଆସି ନାହିଁ, ସେ ଯେତେ ପୂଜା, ହୋମ, ତପସ୍ୟା କରୁ ପଛକେ ତାହାଠାରେ ଆତ୍ମ-ଜ୍ଞାନର ଉଦୟ ହେବା ଅସମ୍ଭବ । ଯେପରି ନଙ୍ଗର ପକାଇ ଡଙ୍ଗାର ମଙ୍ଗ ଧରି ଟାଣିବା ।

ବିବେକାନନ୍ଦ କହୁଥିଲେ ଆମ ଶାସ୍ତ୍ରରେ ଅଛି 'ମାତୃଦେବୋ ଭବ' 'ପିତୃଦେବୋ ଭବ' ଅର୍ଥାତ୍ ବାପ, ମା'ଙ୍କୁ ଦେବତା ପରି ମନେ କର; କିନ୍ତୁ ତା' ସାଙ୍ଗରେ ଆଉ ଦୁଇଟି କଥା ସେ ଯୋଡ଼ି ଥିଲେ ଯଥା 'ଦରିଦ୍ରଦେବୋ ଭବ' ଓ 'ମୂର୍ଖଦେବୋ ଭବ' । ଅର୍ଥାତ୍ ଦୁଃଖୀ ଦରିଦ୍ର ତଥା ନିରକ୍ଷରମାନଙ୍କୁ ଦେବତା ଜ୍ଞାନ କରି ସେମାନଙ୍କର ସେବା କର । କହିବାର ଉଦ୍ଦେଶ୍ୟ ହେଉଛି—ଈଶ୍ୱର ପୂଜାରେ ଯେଉଁ ଫଳ ମିଳେ, ଦେଶର ହତଭାଗ୍ୟ, ଦୁଃଖୀ, ଦରିଦ୍ର

Digitized by srujan ka@gmail.com

ନିରନ୍ନ, ନିରକ୍ଷରମାନଙ୍କର ସେବା କଲେ ସେହି ପୁଣ୍ୟ ଲାଭ ହୁଏ ।

ଦରିଦ୍ର-ନାରାୟଣ-ପୂଜା ସର୍ବାପେକ୍ଷା ଶ୍ରେଷ୍ଠ ପୂଜା—

"ବହୁରୂପେ ସମ୍ମୁଖେ ତୁମ୍ଭର-ଛାଡ଼ି କାହିଁ ଖୋଜୁଛ ଈଶ୍ୱର ?
ଜୀବେ ପ୍ରେମ କରେ ଯେଉଁ ଜନ, ସେହି ଜନ ସେବୁଛି ଈଶ୍ୱର ।"

ଜୀବସେବା ଅପେକ୍ଷା ଆଉ ଧର୍ମ ନାହିଁ । ମାନବଜାତିର ସେବାହିଁ ପରମଧର୍ମ । ସେବାରେ ସମସ୍ତଙ୍କର ଅଧିକାର ଅଛି । ଏଥିରେ ଉଚ୍ଚ ନୀଚ ଭେଦ ନାହିଁ । ସାମ୍ପ୍ରଦାୟିକତା ବା ସଂକୀର୍ଣ୍ଣତାର ସ୍ଥାନ ନାହିଁ । ଯେତେବେଳଯାଏ ଆମେ ଅନ୍ୟମାନଙ୍କ ସେବା ଗ୍ରହଣ କରୁଛୁ ସେତେବେଳଯାଏଁ ସେମାନଙ୍କର ସେବା କରିବାକୁ ବାଧ୍ୟ । କ୍ଷୁଧିତର କାତର କ୍ରନ୍ଦନ, ବ୍ୟାଧି-ପୀଡ଼ିତର ଅସହାୟ ହାହାକାର, ପଦଦଳିତର ଅକ୍ଷମ କାତରତା ଦେଖି ଶିହରି ଉଠ ନାହଁ । ଯାଅ, ଯେଉଁଠାରେ ଦୁର୍ଭିକ୍ଷ, ବ୍ୟାଧି, ମଡ଼କ-ମୃତ୍ୟୁକୁ ଅଗ୍ରାହ୍ୟକରି ଯାଅ ସେଠାକୁ ।

ଈଶ୍ୱର ଅନ୍ୱେଷଣରେ କେଉଁଠାକୁ ଯାଉଛ ? ଦରିଦ୍ର, ଦୁଃଖୀ, ଦୁର୍ବଳ, ସମସ୍ତେ କି ତୁମ୍ଭର ଈଶ୍ୱର ନୁହନ୍ତି ? ଆଗେ ସେମାନଙ୍କର ଉପାସନା କର ନାହିଁ କାହିଁକି ? ଗଙ୍ଗାକୂଳରେ ବାସ କରି କୂପ ଖନନ କରୁଛ କିମ୍ପାଇଁ ?

ଥରେ ଅଶ୍ରୁପ୍ଲାବିତ ନେତ୍ରରେ ସ୍ୱାମିଜୀ କହିଥିଲେ :— "ଜନନୀ ! ମୁଁ ମୁକ୍ତି ଚାହେଁନା, ତୁମ୍ଭର ସେବା ହିଁ ମୋ ଜୀବନର ଏକମାତ୍ର ଅବଶିଷ୍ଟ କର୍ମ । ସବୁ ଭେଦାଭେଦ ଉଠାଇ ଦିଅ, ଆଚଣ୍ଡାଳ ପ୍ରେମ କରି, ସ୍ତ୍ରୀ-ପୁରୁଷଭେଦ, ଧନୀ-ନିର୍ଦ୍ଧନର ଭେଦ,

Digitized by srujan ka@gmail.com

ପଣ୍ଡିତ-ମୂର୍ଖର ଭେଦ, ବ୍ରାହ୍ମଣ-ଚଣ୍ଡାଳର ଭେଦ ଦୂର କର । ହିନ୍ଦୁ-ମୁସଲମାନ ଭେଦ, ଖ୍ରୀଷ୍ଟିଆନ ହିନ୍ଦୁ ଇତ୍ୟାଦି ଭେଦ ଦୂର କର । "ବୀରଭୋଗ୍ୟା ବସୁନ୍ଧରା" ; ବୀର୍ଯ୍ୟ ପ୍ରକାଶ କର, ସାମ, ଦାନ, ଭେଦ, ଦଣ୍ଡନୀତି ପ୍ରକାଶ କର, ପୃଥିବୀ ଭୋଗ କର, ତେବେ ତୁମେ ଧାର୍ମିକ । ଚୂପ କରି ଘୃଣିତ ଜୀବନଯାପନ କଲେ ଇହଲୋକରେ ନରକଭୋଗ, ପରଲୋକରେ ମଧ୍ୟ ତାହାହିଁ । ଏହା ଶାସ୍ତ୍ରର ମତ । ସତ୍ୟ, ସତ୍ୟ, ପରମସତ୍ୟ, ସ୍ୱଧର୍ମ କର । ବାବୁ ! ଅନ୍ୟାୟ କର ନାହିଁ, ଅତ୍ୟାଚାର କର ନାହିଁ, ଯଥାସାଧ୍ୟ ପରୋପକାର କର; କିନ୍ତୁ ଅନ୍ୟାୟ ସହିବା ପାପ—ଗୃହସ୍ଥ ପକ୍ଷରେ । ସଙ୍ଗେ ସଙ୍ଗେ ପ୍ରତିବିଧାନର ଚେଷ୍ଟା କରିବ । ମହାଉତ୍ସାହରେ ଅର୍ଥ ଉପାର୍ଜନ କରି ସ୍ତ୍ରୀ ପରିବାର ଦଶଜଣଙ୍କୁ ପ୍ରତିପାଳନ, ଦଶଟା ହିତକର କାର୍ଯ୍ୟାନୁଷ୍ଠାନ କରିବାକୁ ହେବ । ତାହା କରି ନ ପାରିଲି ତ ତୁମେ କି ମଣିଷ ? ଠିକ୍ ଗୃହସ୍ଥହିଁ ନୁହଁ, ପୁଣି 'ମୋକ୍ଷ' !

ତୁମ୍ଭେ ଅନ୍ୟମାନଙ୍କୁ ଯେତେ ସାହାଯ୍ୟ କରିବ ତେତେ ତୁମ୍ଭ ନିଜର କଲ୍ୟାଣ ସାଧନ କରୁଅଛ ବୋଲି ବୁଝି ପାରିବ । ଯଦି ତୁମ୍ଭେ ଯଥାର୍ଥରେ ନିଜର ଧର୍ମକୁ ଭଲପାଅ, ଯଦି ତୁମ୍ଭେ ପ୍ରକୃତରେ ନିଜ ଦେଶକୁ ଭଲପାଅ, ତାହାହେଲେ ଏହି ସେବାବ୍ରତ ସାଧନରେ ମଗ୍ନ ହୋଇଯାଅ ।

ସବୁବେଳେ ଏହା ଜାଣିରଖିବା ଉଚିତ୍ ଯେ ପରୋପକାର କରିବା ମହାସୌଭାଗ୍ୟର ଫଳ । ବହୁ ସୁକୃତି ନ ଥିଲେ ପରାର୍ଥରେ ପ୍ରବୃତ୍ତି ଜନ୍ମେ ନାହିଁ । ପରାର୍ଥ କର୍ମହିଁ ଆତ୍ମ-ମାନଙ୍କୁ ପବିତ୍ର ଓ ସିଦ୍ଧ ହେବାକୁ ସହାୟତା କରିଥାଏ । ଜଗତର ଉପକାର କରିବି—ଏହି ଭାବ ସମ୍ପୂର୍ଣ୍ଣ ତ୍ୟାଗ କର । କାରଣ—

Digitized by srujan ka@gmail.com

ଜଗତ ତୁମ୍ଭ ଲାଗି ବା ଆମ୍ଭଲାଗି ବସି ନାହିଁ । ସେ ଆମ୍ଭମାନଙ୍କ ସାହାଯ୍ୟପାଇଁ ଅପେକ୍ଷା କରେ ନାହିଁ । ଜଗତ ତାହାର ସ୍ୱାଭାବିକ ଗତିରେ ଚାଲୁଛି । କୌଣସି ଦରିଦ୍ର ବା କାଙ୍ଗାଳ ବ୍ୟକ୍ତି ଆମ୍ଭ-ମାନଙ୍କଠାରେ ଋଣୀ ନୁହେଁ । ପରନ୍ତୁ, ଆମ୍ଭେମାନେ ତାଙ୍କଠାରେ ଋଣୀ । ଯେହେତୁ ସେ ଆମ୍ଭମାନଙ୍କ ଦୟା ଦାକ୍ଷିଣ୍ୟାଦି ଶକ୍ତିର ବିକାଶ କରିବାକୁ ସାହାଯ୍ୟ କଲା । ଆମ୍ଭମାନଙ୍କଠାରୁ ପଇସାଟିଏ ନେଇ ଆମ୍ଭମାନଙ୍କ ଚିତ୍ତଶୁଦ୍ଧିର ହେତୁ ହେଲା ।

ଦରିଦ୍ରଗଣଙ୍କୁ ତୁମ୍ଭେ ଯେ ଦାନ କିମ୍ବା ସେବା କରୁଅଛ ସେଥିଲାଗି ବାହାଦୁରି ବା ପ୍ରଶଂସା କିଅ ନାହିଁ ଅଥବା ସେମାନଙ୍କ-ଠାରୁ କୃତଜ୍ଞତାର ଆଶା ରଖ ନାହିଁ ବରଂ ସେମାନେ ଯେ ତୁମ୍ଭଙ୍କୁ ଦୟା ପ୍ରକାଶ କରିବ ପାଇଁ ସୁଯୋଗ ଦେଇଅଛନ୍ତି, ସେଥିଲାଗି ସେମାନଙ୍କ ପ୍ରତି ତୁମ୍ଭେ କୃତଜ୍ଞ ହୁଅ । ଆଦର୍ଶ ସନ୍ନ୍ୟାସୀ ହେବା ଅପେକ୍ଷା ଆଦର୍ଶ ଗୃହୀ ହେବା ଆହୁରି କଠିନ । ଯେଉଁ କର୍ମ ଆମ୍ଭମାନଙ୍କୁ ଭଗବାନ୍ ଆଡ଼କୁ ଘେନିଯାଏ ତାହାହିଁ ସତ୍‌କର୍ମ । ଯେଉଁ କର୍ମ ଅବନତି ଆଡ଼କୁ ନେଇଯାଏ ତାହାହିଁ ଅସତ୍ କର୍ମ ।

ଦେହ ତ ନିଶ୍ଚୟ ଯିବ, ତେବେ ଆଳସ୍ୟରେ କାହିଁକି ଯିବ ! କଳଙ୍କି ଲାଗି ମରିବା ଅପେକ୍ଷା କ୍ଷୟ ହୋଇ ମରିବା ଭଲ । ମୃତ୍ୟୁ ଯେତେବେଳେ ଅନିବାର୍ଯ୍ୟ ପୋକଜୋକ ପରି ମରିବା ଅପେକ୍ଷା ବୀରଙ୍କ ପରି ମରିବା ଶ୍ରେୟସ୍କର । ଏହି ଅନିତ୍ୟ ସଂସାରରେ ଦୁଇଦିନ ବେଶି ବଞ୍ଚିରହି କି ଲାଭ ? ଜରାଜୀର୍ଣ୍ଣ ହୋଇ ଟିକିଏ ଟିକିଏ କ୍ଷୟ ହୋଇ ମରିବା ଅପେକ୍ଷା ଅନ୍ୟଙ୍କ କଲ୍ୟାଣ ନିମନ୍ତେ ଲଢ଼େଇ କରି ବୀରଙ୍କ ପରି ଏକାଥରକେ ମରିବା ଭଲ ନୁହେଁ କି ? ଆମ୍ଭେମାନେ ଅଳ୍ପାଧିକ ସମୟପାଇଁ ଦେହଟାକୁ ବଞ୍ଚାଇ ରଖିପାରୁ ଓ ଅଳ୍ପାଧିକ ସ୍ୱାସ୍ଥ୍ୟ ସମ୍ଭୋଗ

Digitized by srujan ka@gmail.com

କରିପାରୁ; କିନ୍ତୁ ସେଥିରେ ବା କି ଫଳ ଅଛି ? ଦେହର ବିନାଶ ଅନିବାର୍ଯ୍ୟ, ଏହାର ନିଶ୍ଚୟତା ନାହିଁ । ଧନ୍ୟ ସେହିମାନେ, ଯେଉଁମାନଙ୍କ ଦେହ ଅପର ସେବାରେ ନଷ୍ଟ ହୁଏ ।

ଶେଷରେ ସ୍ୱାମୀଜୀ କହିଥିଲେ—

ହେ ଭାରତ ! ଭୁଲିଯାଅନା, ତୁମର ସ୍ତ୍ରୀ ଜାତିର ଆଦର୍ଶ ସୀତା, ସାବିତ୍ରୀ, ଦମୟନ୍ତୀ । ଭୁଲିଯାଅନା ତୁମର ଉପାସ୍ୟ । ଭୁଲିଯାଅନା ତୁମର ବିବାହ, ଧନ ଏବଂ ତୁମର ଜୀବନ, ଇନ୍ଦ୍ରିୟ ସୁଖ ପାଇଁ—ନିଜର ବ୍ୟକ୍ତିଗତ ସୁଖପାଇଁ—ଆଦୌ ଉଦ୍ଦିଷ୍ଟ ନୁହେଁ । ଭୁଲିଯାଅନା, ଜନ୍ମରୁ ହିଁ ତୁମେ ମା ନିମିତ୍ତ ବଳି ପ୍ରଦତ୍ତ ଭୁଲିଯାଅନା, ତୁମର ସମାଜ ସେହି ବିରାଟ ମହାମାୟାର ଛାୟା ମାତ୍ର । ଭୁଲିଯାଅନା, ନୀଚ, ଅଜ୍ଞାନୀ, ଦରିଦ୍ର, ଚମାର ଏବଂ ମେହେନ୍ତର ତୁମର ରକ୍ତ, ତୁମର ଭାଇ ।

ହେ ବୀର, ସାହସ ଅବଲମ୍ବନ କର । ଗର୍ବକରି କହ—ମୁଁ ଭାରତବାସୀ, ପ୍ରତ୍ୟେକ ଭାରତବାସୀ ମୋର ଭାଇ । କହ, ଅଜ୍ଞାନୀ ଭାରତବାସୀ, ଦରିଦ୍ର ଭାରତବାସୀ, ବ୍ରାହ୍ମଣ ଭାରତବାସୀ, ଚଣ୍ଡାଳ ଭାରତବାସୀ ସମସ୍ତେ ମୋର ଭାଇ, ତୁମେ ମଧ୍ୟ କଟିମାତ୍ର ବସ୍ତ୍ରାବୃତ ହୋଇ ଗର୍ବରେ ଚିତ୍କାର କରି କହ, ପ୍ରତ୍ୟେକ ଭାରତବାସୀ ମୋର ଭାଇ, ଭାରତବାସୀ ମୋର ପ୍ରାଣ, ଭାରତର ଦେବ ଦେବୀ ମୋର ଈଶ୍ୱର, ଭାରତର ସମାଜ ମୋର ଶୈଶବର ଶିଶୁଶଯ୍ୟା, ଯୌବନର ଉପବନ, ଏବଂ ବାର୍ଦ୍ଧକ୍ୟର ବାରଣସୀ ।

କହ ଭାଇ, ଭାରତ ମୃତ୍ତିକା ମୋର ସ୍ୱର୍ଗ, ଭାରତର କଲ୍ୟାଣରେ ମୋର କଲ୍ୟାଣ ଏବଂ ରାତ୍ରିଦିନ ସର୍ବଦା କହ—ହେ ଗୌରୀନାଥ ! ହେ ଜଗଦମ୍ବେ, ମୋତେ ମନୁଷ୍ୟତ୍ୱ ଦିଅ ମା । ମୋର ଦୁର୍ବଳତା ଏବଂ କାପୁରୁଷତା ଦୂର କର ! ମୋତେ ମନୁଷ୍ୟ କର ।

———

Digitized by srujan ka@gmail.com



# ମହାତ୍ମା ଗାନ୍ଧୀ

ଡକ୍ଟର ଶ୍ରୀ ରାମଚନ୍ଦ୍ର ଦାଶ,

ଏମ୍. ଏ., ଏଲ୍.ଏଲ୍. ବି. ଡି.ଫିଲ୍.

ମହାତ୍ମାଗାନ୍ଧୀ ବ୍ୟକ୍ତିଗତ ତଥା ଜାତୀୟ ଜୀବନରେ ଆଲୋକବର୍ତ୍ତିକାରୂପେ ଦେଦୀପ୍ୟମାନ ଥିଲେ । ସେ ମଧ୍ୟ ସମଗ୍ର ଭୂମଣ୍ଡଳର ଚିନ୍ତାଧାରା ଓ ଚିତ୍ତବୃତ୍ତିକୁ ପ୍ରଭାବିତ କରିଥିଲେ ।

ସେ ସତ୍ୟାଗ୍ରହନାମକ ଗୋଟିଏ ଅଭିନବ ପନ୍ଥା ଆବିଷ୍କାର କରିଥିଲେ । ଏଥିରେ ସେ ହେନେରି ଥୁରୋ, ଟଲଷ୍ଟୟ ଓ ସେନାପତି

Digitized by srujan ka@gmail.com

ବସ୍ତୁକଣ୍ଠଙ୍କ ଭାବଧାରାରେ ଅନୁପ୍ରାଣିତ ହୋଇଥିଲେ । ଜଣେ ନିରସ୍ତ୍ର ନାଗରିକ ହେଲେହେଁ ସେ ନିଜ ଚରିତ୍ରବଳ ଓ ମନସ୍ତାତ୍ତ୍ୱିକ ଦୃଢ଼ତା ଫଳରେ ଭାରତରୁ ଦୁର୍ଦ୍ଧର୍ଷ ଇଂରେଜ ସାମ୍ରାଜ୍ୟର ସତ୍ତା ଲୋପ କରିପାରିଥିଲେ ଏବଂ ସରକାରୀ କ୍ଷମତା ହାତରେ ନ ଥାଇ ମଧ୍ୟ ସେ ଭାରତର ମୁକୁଟବିହୀନ ସମ୍ରାଟରୂପେ କୋଟି କୋଟି ଜନତାର ହୃଦୟରେ ରାଜତ୍ୱ କରି ସେମାନଙ୍କୁ ନିଜ ଅନୁଜ୍ଞାର ବଶବର୍ତ୍ତୀ କରିପାରିଥିଲେ । ଏହାହିଁ ତାଙ୍କୁ ପ୍ରକୃତରେ ମହାତ୍ମା ବା ମହାପୁରୁଷରୂପେ ପ୍ରମାଣିତ କରିଥିଲା ।

ସେ ଜଣେ ଧାର୍ମିକ ଲୋକ ଥିଲେ । ସେ ଧର୍ମକୁ ସଂକୀର୍ଣ୍ଣ ଦୃଷ୍ଟିକୋଣରୁ ବିଚାର କରୁ ନ ଥିଲେ । ମନୁଷ୍ୟ ଗୋଟିଏ ନୈତିକ ଜୀବ; ତାହାର ମନନ ଓ ଚିନ୍ତନ ଶକ୍ତି ରହିଛି । ସେ ନିଜ ଚେଷ୍ଟାରେ ନିଜ ଆଚରଣକୁ ସଂଯତକରି ସାମାଜିକ ନୀତି-ନିୟମ ପାଳନ କଲେ କୌଣସି ଧର୍ମଗୁରୁଙ୍କ ସାହାଯ୍ୟ, ସହାନୁଭୂତି ଆବଶ୍ୟକ ମନେ କରିବ ନାହିଁ । ସେ କୌଣସି ନାଗରିକ ନୀତିମାନ୍ ହୋଇପାରେ । ନୈତିକତା ସମସ୍ତଙ୍କ ପାଇଁ ସମାନ, କାରଣ ଏହା ଚିରନ୍ତନ ଓ ଏହାର କାର୍ଯ୍ୟକାରିତା ଦେଶକାଳ ପାତ୍ରରେ ଅଭିନ୍ନ । ତେଣୁ ସେ କହିଥିଲେ "ସବୁ ଧର୍ମ ଏକ ପ୍ରକାର ନୈତିକତା ଉପରେ ପ୍ରତିଷ୍ଠିତ; ମୋ ଧର୍ମନୀତିରେ ପୃଥିବୀର ସବୁ ଧର୍ମାବଲମ୍ବୀ ଲୋକେ ଆବଦ୍ଧ ।" ଏହାହିଁ ଗାନ୍ଧିଜୀଙ୍କ ବିଶ୍ୱ ମାନବିକତାର ହେତୁ । ପ୍ରତ୍ୟେକ ମାନବ ଅନ୍ୟପ୍ରତି ସହାନୁଭୂତି ପ୍ରଦର୍ଶନ କରିବା ନ୍ୟାୟିକ ଧର୍ମ । ନୀତିମାନ୍ ମାନବର ପାଶବିକ ପ୍ରବୃତ୍ତି ଦମିତ ଓ ନିୟନ୍ତ୍ରିତ ହୋଇଥାଏ । ସେ ପାର୍ଥିବ, ଭୋଗବିଳାସ ପ୍ରତି ଆକୃଷ୍ଟ ହୁଏ ନାହିଁ । କର୍ମଯୋଗୀ ହିସାବରେ ନୀତିମାନ୍ ଭାବରେ ସେ ନିଜ କର୍ତ୍ତବ୍ୟ ସମ୍ପାଦନ

Digitized by srujan ka@gmail.com

କରେ । ଏହା ସତ୍ତ୍ୱେ ଈଶ୍ୱର-ଲିପ୍ସା ଦୁର୍ଦ୍ଦମନୀୟ । ତେଣୁ ଧର୍ମ-ହୀନତା ବା କୌଣସି ଧର୍ମର ବିଲୋପ ସାଧନ ଚେଷ୍ଟା କେବେହେଲେ ସଫଳ ହୋଇ ପାରିବ ନାହିଁ, ବରଂ "ସତ୍ୟାଶ୍ରୟୀତ୍ୱବରେ ସର୍ବଧର୍ମ-ସମନ୍ୱୟ ପ୍ରତିଷ୍ଠା କରିବା ଓ ପ୍ରତ୍ୟେକ ଧର୍ମର ମତ ନିର୍ଦ୍ଦେଶ ସମାନ ବୋଲି ଉପଲବ୍‌ଧି କରିବା ଯେ କୌଣସି ବ୍ୟକ୍ତିର କର୍ତ୍ତବ୍ୟ । ଏହାହିଁ ସର୍ବୋଦୟର ମୂଳତତ୍ତ୍ୱ ।

ଗାନ୍ଧିଜୀ ସତ୍ୟସନ୍ଧ ଥିଲେ । ତାଙ୍କ ଦୃଷ୍ଟିରେ "ସତ୍ୟ ହିଁ ଈଶ୍ୱର" । ହେତୁବାଦ ମାନବର ବିଶ୍ୱାସ ମୂଳରେ କୁଠାରଘାତ କରେ ବୋଲି ତାଙ୍କର ଧାରଣା ଥିଲା । ସେ ଜୈନ, ବୌଦ୍ଧ ଓ ଓ ବୈଷ୍ଣବ ମତ ଅନୁସାରେ ଅହିଂସା ପ୍ରତି ଆସ୍ଥାବାନ୍ ଥିଲେ, ସେ ହିଂସାର ନିରାକରଣକୁ ଅହିଂସାରୂପେ ବିଚାର କରୁ ନ ଥିଲେ କିମ୍ବା ତାଙ୍କ ଅହିଂସା ହେତୁବାଦୀ ନ ଥିଲା । ଏହା ଥିଲା ତାଙ୍କର ଅଭିଜ୍ଞତା-ପ୍ରସୂତ । ସେ କହୁଥିଲେ ଆତ୍ମସଂଯମ; ଚିତ୍ତବୃତ୍ତିରେ ଶୃଙ୍ଖଳା ଓ ସତ୍ୟପ୍ରତି ଆଗ୍ରହ-ପ୍ରକୃତ ଅହିଂସା । ଜଣେ ଜୀବହତ୍ୟା ନ କରି ମଧ୍ୟ ନିଜ ଇନ୍ଦ୍ରିୟ-ଲିପ୍ସା ବା ଧନ-ଲିପ୍ସାର ବଶବର୍ତ୍ତୀ ହୋଇ ମତବିରୋଧୀ ହେଲେ ତାକୁ ଅହିଂସାବାଦୀ କୁହାଯାଇ ପାରିବ ନାହିଁ । କାରଣ ସତ୍‌ପଥରୁ ବିଚ୍ୟୁତ ହେଲେ ବା ଖଳ ପ୍ରବୃତ୍ତିର ବଶବର୍ତ୍ତୀ ହେଲେ ଅସତ୍ୟର ଆଶ୍ରୟ ନେବାକୁ ପଡ଼ିବ । ହିଂସାରୁ ପ୍ରତିହିଂସା ଜାତ ହୋଇ ତାହା ଗୁରୁତର ହିଂସାରେ ପରିଣତ ହୁଏ । ଅସତ୍ୟ ସତ୍ୟକୁ ଘୋଡ଼ାଇ ପକାଏ ଏବଂ ଏହି ଅସତ୍ୟକୁ ପ୍ରତିଷ୍ଠିତ କରିବା ଲାଗି ହିଂସାର ଆଶ୍ରୟ ନେବାକୁ ହୁଏ । କୌଣସି ଲୋକ ଐଶୀସତ୍ତାକୁ ଉପଲବ୍‌ଧି କଲେ ସଚ୍ଚିଦାନନ୍ଦ ପ୍ରାପ୍ତ ହୁଏ ଏବଂ ଚତୁର୍ଦ୍ଦିଗରେ ନିଜର ଅସ୍ତିତ୍ୱ ଉପଲବ୍‌ଧି କରି ଅସତ୍ୟ ଓ ହିଂସାରୁ ନିବୃତ୍ତ ହୁଏ ।

Digitized by srujan ka@gmail.com

ନିର୍ଦ୍ଦିଷ୍ଟ କର୍ତ୍ତବ୍ୟ ସମ୍ପାଦନ ସ୍ୱଧର୍ମ ନାମରେ ଅଭିହିତ । ସ୍ୱଧର୍ମରେ ଅବହେଳା ଯୋଗୁଁ ସତ୍ୟ ଓ ଅହିଂସାର ବିରୁଦ୍ଧାଚରଣ ହୁଏ । ଗାନ୍ଧିଜୀଙ୍କ ଅର୍ଥନୀତି ଏହି ତତ୍ତ୍ୱ ଉପରେ ପ୍ରତିଷ୍ଠିତ । ମେ· ସିନ୍‌ରୀଙ୍କୁ ଓ ପୁଞ୍ଜିବାଦୀ ସଂଗଠନର ବିରୋଧୀ ନ ଥିଲେ; ସେ କେବଳ ଏହାର ସାମାଜିକ ପରିଣତି ସମ୍ବନ୍ଧରେ ସଚେତ ଥିଲେ । ସେ କହୁଥିଲେ ପୁଞ୍ଜିବାଦୀ ସଂଗଠନରେ ଅର୍ଥ ଓ ଆର୍ଥନୀତିକ କ୍ଷମତା କେନ୍ଦ୍ରୀଭୂତ ହୋଇଥାଏ । ଫଳରେ ଶ୍ରମିକ ପୁଞ୍ଜିପତିର ଶୋଷଣର ସମ୍ମୁଖୀନ ହୁଏ । ମାଲିକ ରାଷ୍ଟ୍ରଶକ୍ତିକୁ ଅଧିକାର କରି ତାହାକୁ ନିଜ କଲ୍ୟାଣ ଲାଗି ନିୟୋଜିତ କରେ, ଫଳରେ ସମାଜରେ ହିଂସାତ୍ମକ ମନୋବୃତ୍ତି ସୃଷ୍ଟି ହୁଏ । ଧନିକଶ୍ରେଣୀ ନିଜକୁ ନିର୍ଦ୍ଧନର ସନ୍ନ୍ୟାସୀରୂପେ ବିବେଚନା କଲେ ଅନ୍ୟଥା କଳହ ଓ ବିଦ୍ରୋହ ଦୂରହେବ ନାହିଁ । ୧୯୨୨ ରେ ସେ ଏହି ନୀତିକୁ ଅହମଦାବାଦ ଲୁଗାକଳ ଧର୍ମଘଟବେଳେ ପ୍ରୟୋଗ କରିଥିଲେ । ବିକେନ୍ଦ୍ରିତ ଅର୍ଥନୀତି ଓ ଗ୍ରାମ୍ୟ ଅର୍ଥନୀତି କେବଳ ସତ୍ୟ ଓ ଅହିଂସାଦୃଷ୍ଟିରୁ ତାଙ୍କ ସମର୍ଥନ ଲାଭ କରିଥିଲା ।

ଗାନ୍ଧିଜୀଙ୍କ ରାଜନୀତି ଅତି ଅଦ୍ଭୁତ ଥିଲା । ସେ କହୁଥିଲେ ସତ୍ୟାଗ୍ରହ ବ୍ୟକ୍ତିଙ୍କର ପରାକାଷ୍ଠା ଉପରେ ଆଧାରିତ । ବ୍ୟକ୍ତି ଆତ୍ମ-ଶକ୍ତିରେ ଦୃଢ଼ ଥିଲେ କେହି ତାକୁ ବଶୀଭୂତ କରି ପାରିବ ନାହିଁ । ସେ ନିର୍ଭୀକଭାବରେ ତାହାର ବିରୁଦ୍ଧାଚରଣ କରିପାରେ; ଆତ୍ମଶକ୍ତିରେ ବଳୀୟାନ୍ ସଂଗ୍ରାମୀ ମାନବ ଉନ୍ମୁକ୍ତ ବିଦ୍ରୋହ କରି ପାରେ, କାରଣ ହିଂସା କାପୁରୁଷତାର ଲକ୍ଷଣ ।

ସେ ଜଣେ ଜାତୀୟତାବାଦୀ ନେତା ଥିଲେହେଁ ସମଗ୍ର ମାନବସମାଜକୁ ଭ୍ରାତୃଭାବରେ ଦେଖୁଥିଲେ । ଆନ୍ତର୍ଜାତିକତା ତାଙ୍କ ଅହିଂସା-

Digitized by srujan ka@gmail.com

ମାତ୍ରର ଚରମ ବିକାଶ ଥିଲା । ସେ ଗଣତନ୍ତ୍ର ଶାସନକୁ ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ବିଚାର କରୁଥିଲେ । ସ୍ୱେଚ୍ଛିକ ଶୃଙ୍ଖଳା ହିଁ ଗଣତନ୍ତ୍ର ଶାସନର ମୌଳିକ ଉପାଦାନ । ବାଧ୍ୟତା, ବ୍ୟକ୍ତିଗତ ସ୍ୱାଧୀନତାର ରୂପାନ୍ତର । ଯେ ନିଜେ ଆଇନ୍ ମାନିବାକୁ ଶିଖିନାହିଁ ତାହାର ଅନ୍ୟ କାହାରିକୁ ବାଧ୍ୟ କରିବାର ଅଧିକାର ରହି ନ ପାରେ । ତେଣୁ ସେ କହୁଥିଲେ ବ୍ୟକ୍ତିଗତ ସ୍ୱରାଜ୍ୟର ସମଷ୍ଟିକୁ ହିଁ ଜାତିଗତ ସ୍ୱରାଜ୍ୟ କୁହାଯାଇ ପାରେ । ତାଙ୍କ ମତରେ ସମାଜର ଦୁଃସ୍ଥ, ଦୁର୍ବଳ ଓ ନିପେଷିତ ଜନତାର ସେବା କରିବା ଓ ତଦ୍ଦ୍ୱାରା ସାମାଜିକ ସଂହତି ପ୍ରତିଷ୍ଠା କରିବା ଗଣତନ୍ତ୍ର ଶାସନର ମୁଖ୍ୟ କର୍ତ୍ତବ୍ୟ ଏହାହିଁ ନ୍ୟାୟର ଶାସନ ।

ଗାନ୍ଧିଜୀ ଜଣେ ମହାନ୍ ବିପ୍ଳବୀ ଥିଲେ; କିନ୍ତୁ ତାଙ୍କ ବିପ୍ଳବର ପନ୍ଥା ଅତି ଅଭିନବ ଥିଲା । ଦୁଃଖର କଥା ଯେ ସେ ଆତ୍ମିକ ଓ ଆଧ୍ୟାତ୍ମିକ ଶକ୍ତି ଉପରେ ଗୁରୁତ୍ତ୍ୱ ଆରୋପ କରି ନିରସ୍ତ୍ର ଭାରତବାସୀଙ୍କୁ ସତ୍ୟ ଓ ଅହିଂସା ଉପରେ ପ୍ରତିଷ୍ଠିତ ଯେଉଁ ତୀକ୍ଷ୍ଣ ସତ୍ୟାଗ୍ରହ ଅସ୍ତ୍ରଟିଏ ଦେଇଗଲେ । ଆଧୁନିକ ଭାରତରେ ତାହାର ଅପବ୍ୟବହାର ଚାଲିଛି ।

# ମହାତ୍ମାଗାନ୍ଧୀଙ୍କ ବିଶେଷତ୍ୱ ଓ ବାଣୀ

ସଂଗ୍ରାହକ – **ନିମାଇଁଚରଣ ଦାସ**

ଆଧୁନିକ ଯୁଗ ବିଂଶ-ଶତାବ୍ଦୀର ସର୍ବଶ୍ରେଷ୍ଠ ସାଧକ, ତ୍ୟାଗୀ, ସତ୍ୟାନୁରାଗୀ, କର୍ମୀ, ବିଶ୍ୱପ୍ରେମୀ ତଥା ଦୀନ-ଦରିଦ୍ରର ବନ୍ଧୁ ମହାମାନବ ମହାତ୍ମାଗାନ୍ଧୀ ବିଶ୍ୱବନ୍ଦନୀୟ ମହାପୁରୁଷ-

Digitized by srujan ka@gmail.com

ଭାବରେ ସୁପରିଚିତ । ଜଡ଼ବାଦୀ ବିଜ୍ଞାନପ୍ରଭାବିତ ମାନବ-ସମାଜରେ ସେ ରାଜନୀତି ଓ ଆଧ୍ୟାତ୍ମିକ ଜ୍ଞାନକୁ ଏକାଧାରରେ ପରିପୋଷଣ କରି ଯେଉଁ ନୂତନପନ୍ଥା ଓ ଆଦର୍ଶ ପ୍ରତିଷ୍ଠା କରି ଯାଇଛନ୍ତି, ତାହା ଚିରକାଳ ଲାଗି ମୋହଗ୍ରସ୍ତ ଜନତାକୁ ଉଦ୍‌ବୁଦ୍ଧ କରାଉଥିବ । ତାଙ୍କ ଆଚରିତ କାର୍ଯ୍ୟାନୁଷ୍ଠାନ, ପ୍ରକଟିତ ବଳିଷ୍ଠ ବ୍ୟକ୍ତିତ୍ୱ ଓ ଅର୍ଜିତ ଗୁଣଗରିମା ଆଜି ଜାତିଧର୍ମ ଓ ବର୍ଣ୍ଣ-ନିର୍ବିଶେଷରେ କୋଟି କୋଟି ବାଳକ-ବାଳିକା, ଯୁବକ-ଯୁବତୀ, ପ୍ରୌଢ଼ ପ୍ରୌଢ଼ା ଓ ବୃଦ୍ଧ-ବୃଦ୍ଧାଙ୍କୁ ବିଶେଷଭାବରେ ପ୍ରଭାବିତ କରି ପାରିଛି । ତାଙ୍କର ଯେଉଁ ଅମରବାଣୀ ବିଭିନ୍ନ ଜାତି, ଧର୍ମ, ବର୍ଣ୍ଣ, ଗୋଷ୍ଠୀ ଓ ସମ୍ପ୍ରଦାୟ ମଧ୍ୟରେ ଏକତ୍ୱ, ବନ୍ଧୁତ୍ୱ, ଭ୍ରାତୃତ୍ୱ ଓ ଆତ୍ମୀୟତା ପ୍ରତିଷ୍ଠା କରିବାକୁ କ୍ଷମ ହୋଇଅଛି ତନ୍ମଧ୍ୟରୁ ମାତ୍ର କେତୋଟିର ଅବତାରଣା ନିମ୍ନରେ କରାଗଲା :—

ଅହିଂସା — ଶତ୍ରୁକୁ ମିତ୍ରରେ ପରିଣତ କରିବା ହେଉଛି ଅହିଂସାର ଏକ ଯାଦୁକରୀ ଶକ୍ତି ।

ସାହସୀ ବ୍ୟକ୍ତିହିଁ ଅହିଂସା ଆଚରଣ କରିବାକୁ କ୍ଷମ । ଭୀରୁପକ୍ଷରେ ତାହା ସମ୍ଭବ ନୁହେଁ ।

ଅସ୍ପୃଶ୍ୟତା—ଗୋଟିଏ ବୁନ୍ଦା ଗରଳ ଦୁଧଭଣ୍ଡିକୁ ବିଷାକ୍ତ କଲାଭଳି ଅସ୍ପୃଶ୍ୟତା ଆମ ହିନ୍ଦୁଧର୍ମକୁ ବିଷାକ୍ତ କରି ଦେଇଛି ।

ଗାଁରେ ବାସ କରି ହରିଜନମାନଙ୍କଠାରୁ ଅଲଗା ରହାଯାଇ ପାରେ ନା । କାରଣ ହରିଜନମାନେ ସମାଜର ମୂଳଦୁଆସ୍ୱରୂପ ।

ଆତ୍ମା—ଆତ୍ମା ଯେବେ ଅଛି, ତେବେ ପରମାତ୍ମା ବି ଅଛନ୍ତି ।

ଆଦର୍ଶ—ଆଦର୍ଶହୀନ ମନୁଷ୍ୟ ସୁକାନ୍ ନ ଥିବା ଜାହାଜ ପରି ।

Digitized by srujan ka@gmail.com

ଈଶ୍ୱର—ଭଗବତ୍ ବିଶ୍ୱାସର ଅଭାବ ଯୋଗୁଁ ଆମ୍ଭେ-ମାନେ ମଣିଷକୁ ଭୟ କରିଥାଉ ।

ଯାହାକୁ ଈଶ୍ୱର ବଞ୍ଚାଇବାକୁ ଚାହିଁବେ ତାକୁ କୌଣସି ଶକ୍ତି ମାରି ପାରିବ ନାହିଁ ।

ଯେଉଁ ପ୍ରଭୁ ଲକ୍ଷ ଲକ୍ଷ ଶରଣାର୍ଥୀଙ୍କୁ ସାହାଯ୍ୟ କରୁ-ଅଛନ୍ତି ସେ ପ୍ରଭୁ ତୁମ୍ଭକୁ କଦାପି ଛାଡ଼ି ପାରିବେ ନାହିଁ ।

ଉପକାର—ଉପକାର କଦାପି ବ୍ୟର୍ଥ ହୁଏ ନାହିଁ ।

ଉପକାରୀର ଧନ ସମ୍ପତ୍ତି କଦାପି ହ୍ରାସ ପାଏ ନାହିଁ ।

ଉପକାର କରି କୌଣସି ଆଶା ରଖିବା ନିଜର ସତ୍କର୍ମ ଉପରେ ଆଞ୍ଚ ଆଣିବା ଛଡ଼ା ଅନ୍ୟ କିଛି ନୁହେଁ ।

କର୍ତ୍ତବ୍ୟ—ସଫଳତା ବା ବିଫଳତା ଆମ ହାତର କଥା ନୁହେଁ, ଠିକ୍ ଭାବରେ କର୍ତ୍ତବ୍ୟ କରିବାପାଇଁ ଆମେ ଉଦ୍ଦିଷ୍ଟ ।

ସତ୍କର୍ମ—ସତ୍କର୍ମରେ ଜୀବନ ଅତିବାହିତ ହେଲେ ଅମୃତମୟ ମୃତ୍ୟୁର ସନ୍ଧାନ ମିଳିଥାଏ ।

କ୍ରୋଧ—କ୍ରୋଧ ହେଉଛି ପାପର ମୂଳ; କ୍ରୋଧର ପରିଣାମ ସର୍ବଦା ଭୟଙ୍କର । କ୍ରୋଧହୀନ ମନୁଷ୍ୟ ଦେବତା ସଙ୍ଗେ ସମାନ ।

ଗ୍ରାମ—ଶିକ୍ଷିତ ସଂପ୍ରଦାୟଙ୍କଠାରୁ ଗ୍ରାମଗୁଡ଼ିକ କୌଣସି ଉପାୟରେ ଉପକୃତ ହେଉନାହାନ୍ତି । କାରଣ ସେମାନେ ନଗର-ଜୀବନ ପ୍ରତି ଅଧିକ ଆକୃଷ୍ଟ ହେଉଅଛନ୍ତି ।

ଗ୍ରାମକୁ ଶ୍ରୀବୃଦ୍ଧି ସଂପନ୍ନ କରିବା ମୋ ଜୀବନର ଲକ୍ଷ୍ୟ । ଆମ ଗ୍ରାମ ପୂର୍ଣ୍ଣ ବିକାଶଲାଭ କରି ପାରିଲେ ଉଚ୍ଚକୋଟୀର କୁଶଳୀ ଓ କଳାପ୍ରତିଭାସମ୍ପନ୍ନ ବ୍ୟକ୍ତିଙ୍କ ଅଭାବ ରହିବ ନାହିଁ । ଗ୍ରାମରେ କବି, କଳାକାର, ସ୍ଥପତି, ଭାଷାବିତ୍ ଓ ଗବେଷକ ସବୁ ମିଳିବେ ।

Digitized by srujan ka@gmail.com

**ଘୃଣା**—ଆଜି ସମଗ୍ର ପୃଥିବୀରେ ଘୃଣା ସଂକ୍ରାମକ ରୋଗ ପରି ବ୍ୟାପି ଯାଇଛି । ଯେଉଁଠି ପ୍ରେମ, ସେଠାରେ ଜୀବନ ଘୃଣା; କେବଳ ଧ୍ୱଂସ ଆଡ଼କୁ ଟାଣିନିଏ ।

**ଦୋଷ**—ଯେ ଅନ୍ୟମାନଙ୍କ ଦୋଷ ଦେଖିବାରେ ଲାଗିଛି, ସେ ନିଜ ଦୋଷ ଦେଖି ପାରୁନାହିଁ ।

ଦୋଷ ସ୍ୱୀକାର—ଘର ଓଳାଇ ସଫା କଲାପରେ ତାହା ପୂର୍ବ ଅପେକ୍ଷା ଅଧିକ ପରିଷ୍କୃତ ହୋଇ ଗଲାଭଳି **ଦୋଷ** ସ୍ୱୀକାର କଲାପରେ ହୃଦୟ ଅଧିକ ପବିତ୍ର ହୋଇଯାଏ ।

ପ୍ରତ୍ୟେକ ଅପରାଧପାଇଁ ମାନବ-ସୃଜିତ ଦଣ୍ଡବିଧାନ ରହି-ଥାଏ; କିନ୍ତୁ ପ୍ରତ୍ୟେକ ପାପପାଇଁ ଭଗବାନହିଁ ଦଣ୍ଡ ଦେଇଥାଆନ୍ତି କିମ୍ବା ନିଜର ବିବେକ ଦଣ୍ଡ ଦିଏ ।

**କ୍ଷମା**—ଦଣ୍ଡଦେବା ଅପେକ୍ଷା କ୍ଷମା କରିବାରେ ଅଧିକ ମାନବିକତା ପରିସ୍ଫୁଟ ହୋଇଥାଏ ।

ପାରସ୍ପରିକ କ୍ଷମା ଓ ସହନଶୀଳତା ହେଉଛି ସୃଷ୍ଟିର ନିୟମ ।

**ଈର୍ଷା**—ଯେ ଈର୍ଷା କରେ, ଈର୍ଷା ତାକୁ ଖାଏ; କିନ୍ତୁ ଯାହାକୁ ଈର୍ଷା କରେ, ତା'ର କିଛି ହୁଏ ନାହିଁ ।

**ଶ୍ରେଣୀଯୁଦ୍ଧ**—ଶ୍ରେଣୀଯୁଦ୍ଧ ଭାରତକୁ ସୁହାଇବ ନାହିଁ । ରାମରାଜ୍ୟରେ ଉଭୟ—ରାଜା ଓ ପ୍ରଜା, ଧନୀ ଓ ଦରିଦ୍ରର ସମାନ ଅଧିକାର ।

**ଗୋମାତା**—ଗାଈ ପରି କରୁଣାମୟୀ ପ୍ରାୟ ଭୂମଣ୍ଡଳରେ କେହି ନାହାନ୍ତି ।

ଗୋସେବାରେ ଅବହେଳା ବିଷୟ ଭାବିଲେ ମୋ ଆଖିରେ ଲୁହ ଆସିଯାଏ ।

Digitized by srujan ka@gmail.com

ଉଦ୍ୟମ— ଉଦ୍ୟମ ସତ୍‌ମାର୍ଗରେ ହୋଇଥିଲେ ଈଶ୍ୱରଙ୍କ ଆଶୀର୍ବାଦ ସ୍ୱତଃ ମିଳିଥାଏ ।

ଚରିତ୍ର—ଚରିତ୍ର ଜୀବନରେ ସବୁଠାରୁ ମୂଲ୍ୟବାନ୍ ବସ୍ତୁ ।

ଚରିତ୍ରଗଠନ ଜ୍ଞାନର ଚରମ ଲକ୍ଷ୍ୟ ହେବା ଉଚିତ ।

ଚରିତ୍ରଗଠନପାଇଁ ସ୍କୁଲ୍ ଓ କଲେଜଗୁଡ଼ିକ କାରଖାନା-ସ୍ୱରୂପ । କେବଳ ପିତାମାତାଙ୍କର ଆକୃତି ନୁହେଁ ସେମାନଙ୍କର ଗୁଣ ମଧ୍ୟ ସନ୍ତାନ ସନ୍ତତିଙ୍କଠାରେ ପ୍ରତିଫଳିତ ହୋଇଥାଏ ।

ପରିସ୍ଥିତି ଶିଶୁ ମନରେ ଅନେକ ପ୍ରଭାବ ପକାଇଥାଏ, ମାତ୍ର ପିତାମାତାଙ୍କଠାରୁ ଗ୍ରହଣ କରିଥିବା ଗୁଣ ହେଉଛି ଶିଶୁର ମୂଳଦୁଆସ୍ୱରୂପ ।

ଚିନ୍ତା—ଚିନ୍ତାଉଡ଼ାଣୀ ଶରୀର ଖାଏ । ଚିନ୍ତା ମଣିଷକୁ ଶକ୍ତିହୀନ କରିଦିଏ ।

ଚୁଗୁଲି—ଚୁଗୁଲି ଶୁଣ ନାହିଁ, ଶୁଣିଲ ତ ମନକୁ ନିଅ ନାହିଁ ।

ଛାତ୍ର – ଛାତ୍ରମାନେ ହେଉଛନ୍ତି ଭବିଷ୍ୟତର ମୂର୍ତ୍ତିମନ୍ତ ଆଶା ।

ଛାତ୍ରମାନେ ଖଦୀ ପିନ୍ଧିବା ଅଭ୍ୟାସ କରିବା ଉଚିତ ।

ଭୋଗ-ବିଳାସରେ ଛାତ୍ର-ଜୀବନର ସମାପ୍ତି ଘଟିଥାଏ ।

ଛିଦ୍ରଦୋଷ—ନିଜର ଦୋଷକୁ ଭୁଲି, ଅନ୍ୟର ଦୋଷ ଦେଖିବା ସାଧାରଣ ମନୁଷ୍ୟର ପ୍ରକୃତି । ଏଥିଯୋଗୁଁ ସେ ଶେଷରେ ନୈରାଶ୍ୟର ଦୁଃଖ ଭୋଗେ ।

ମିଥ୍ୟା—ମିଥ୍ୟା ଆତ୍ମାକୁ ଖାଇଯାଏ; ସତ୍ୟ ଆତ୍ମାକୁ ପୁଷ୍ଟ କରେ ।

Digitized by srujan ka@gmail.com

ତ୍ୟାଗ – ତ୍ୟାଗ ହେଉଛି ଏକ ସାତ୍ତ୍ୱିକ ଆନନ୍ଦ । ତ୍ୟାଗ ବିନା ମଣିଷର ବିକାଶ ହୋଇ ପାରେ ନାହିଁ । ତ୍ୟାଗ ପରେ ପଶ୍ଚାତ୍ତାପ କରିବା ଅନୁଚିତ । ସ୍ୱାର୍ଥାନ୍ୱେଷୀ ହେଲେ ଧ୍ୱଂସ ଅନିବାର୍ଯ୍ୟ । ସ୍ୱାର୍ଥତ୍ୟାଗରେ ଅମରତ୍ୱ ପ୍ରାପ୍ତ ହୋଇଥାଏ ।

ଦୟା—ଦୟା ହେଉଛି ଧର୍ମର ମୂଳ ଓ ମାନବୀୟ ଗୁଣର ଶୃଙ୍ଗାରସ୍ୱରୂପ ।

ଦୟା ହେଉଛି ସଦ୍‌ଗୁଣମାନଙ୍କ ମଧ୍ୟରେ ଶ୍ରେଷ୍ଠତମ ।

ଦୟା ହେଉଛି ମାନବର କୋମଳତମ ଭାବନାର ପ୍ରତୀକ ।

ଧର୍ମ—ଧର୍ମର ଅଙ୍ଗ ବୈରାଗ୍ୟ, ବୈଭବ ନୁହେଁ ।

(ଖ) ସକଳ ଧର୍ମର ଆତ୍ମା ଏକ, ମୁଁ ପୃଥିବୀର ସକଳ ଧର୍ମର ମୌଳିକ ସତ୍ୟକୁ ବିଶ୍ୱାସ କରେ ।

(ଗ) ଧର୍ମକୁ ସମାଜରୁ ବହିଷ୍କାର କରିବା ବନ୍ଧ୍ୟାଗର୍ଭରୁ ପୁତ୍ରଜାତ କରିବା ପରି ଅସମ୍ଭବ ।

(ଘ) ସଂକଟ ସମୟରେ ଧର୍ମ ମନୁଷ୍ୟକୁ ରକ୍ଷା କରିଥାଏ ।

ନାରୀ—ନାରୀର ହୃଦୟ ଅନୁକମ୍ପାପ୍ରବଣ । ସେ ବେଦନା ଦେଖି ଦେଖି ବିଗଳିତ ହୋଇଯାଏ ।

ମୁଁ ମନେ କରେ ନାରୀ ହେଉଛି ଆତ୍ମୋତ୍ସର୍ଗର ପ୍ରତୀକ ।

ନାରୀ ପୁରୁଷର ସାଥି । ତାଙ୍କର ମଧ୍ୟ ପୁରୁଷଙ୍କ ପରି ସମାନ ବୁଦ୍ଧି ଓ ଚିନ୍ତାଶକ୍ତି ଅଛି ।

ସ୍ତ୍ରୀ ପୁରୁଷର କ୍ରୀତଦାସୀ ନୁହେଁ—ସହଧର୍ମିଣୀ, ଅର୍ଦ୍ଧାଙ୍ଗୀ ଓ ମିତ୍ର ।

ସାଂସାରିକ ଜୀବନକୁ ସ୍ତ୍ରୀମାନେ ସୁଖମୟ କରିଥାନ୍ତି ।

ସଦାଚାରିଣୀ ଓ ଆଜ୍ଞାକାରିଣୀ ସ୍ତ୍ରୀ ମିଳିବା ପୁରୁଷ ପକ୍ଷରେ କମ୍ ଭାଗ୍ୟର କଥା ନୁହେଁ ।

Digitized by srujan ka@gmail.com

ପତିର ଦୁରବସ୍ଥା ସମୟରେ ସାହାଯ୍ୟ କରିବା ହେଉଛି ସ୍ତ୍ରୀର ପ୍ରଧାନ କର୍ତ୍ତବ୍ୟ ।

ପରଶ୍ରମ—ଯେ ଶ୍ରମ ନ କରି ଖାଉଛି, ସେ ଚୋରି ମାଲ ଖାଉଛି ।

ନୈତିକତା—ନୈତିକ ଶିକ୍ଷା ସମସ୍ତଙ୍କୁ ଦିଆଯାଇ ପାରେ । ଏଥିପାଇଁ ବୟସର ବାଛବିଚାର ନାହିଁ ।

ପ୍ରାର୍ଥନା—ପ୍ରାର୍ଥନା ହେଉଛି ସକାଳର ଚାବି ଓ ସଂଧ୍ୟାର କିଳଣି ।

(ଖ) ଶରୀରପାଇଁ ଖାଦ୍ୟ ଦରକାର, ଆତ୍ମାପାଇଁ ଦରକାର ପ୍ରାର୍ଥନା ।

(ଗ) ପ୍ରାର୍ଥନା ଧର୍ମର ପ୍ରାଣସ୍ୱରୂପ ।

(ଘ) ପ୍ରାର୍ଥନା ବିନା ଆନ୍ତରିକ ଶାନ୍ତି ମିଳେ ନାହିଁ ।

(ଙ) ପ୍ରାର୍ଥନା ହେଉଛି ଈଶ୍ୱରଙ୍କ ସହିତ ସହଯୋଗ ।

(ଚ) ବିନା ପ୍ରାର୍ଥନାରେ କୌଣସି କାର୍ଯ୍ୟ ସଂପନ୍ନ ହୁଏ ନାହିଁ ।

ସବୁବେଳେ ଉଦ୍ୟମ କରୁଥିବ, ନିଜକୁ ପବିତ୍ର ରଖିବା-ପାଇଁ । ତାହାହେଲେ ଈଶ୍ୱରଙ୍କଠାରୁ ନିଶ୍ଚୟ ସାହାଯ୍ୟ ମିଳିବ; କିନ୍ତୁ ନିଜ ଅନ୍ତରରେ ଈଶ୍ୱରଙ୍କର ସତ୍ତା । ଯେ ଅନୁଭବ କରୁ ନଥିବ ତାହା ପକ୍ଷରେ ପ୍ରାର୍ଥନା ଅସମ୍ଭବ; କିନ୍ତୁ ଈଶ୍ୱର କେବେହେଲେ ଜଡ଼ିତ ଲୋକର ପ୍ରାର୍ଥନା ଶୁଣନ୍ତି ନାହିଁ ।

ପୂଜା—ପୂଜାର ଅର୍ଥ ମୂର୍ତ୍ତିପୂଜା ନୁହେଁ । ଏହା ହେଉଛି ମୂର୍ତ୍ତିରେ ନିହିତ ଈଶ୍ୱରସତ୍ତାର ଉପଲବ୍ଧି ।

ବନ୍ଧୁତା—ବନ୍ଧୁତା ଅର୍ଥ ସବୁ ବିଷୟରେ ସମ୍ମତି ନୁହେଁ ।

Digitized by srujan ka@gmail.com

ସତ୍‌ସଙ୍ଗ—ସତ୍‌ସଙ୍ଗ ବିନା ଆତ୍ମା ଶୁଖିଯାଏ ।

ବ୍ରହ୍ମଚର୍ଯ୍ୟ—ବୀର୍ଯ୍ୟରକ୍ଷା ବ୍ରହ୍ମଚର୍ଯ୍ୟ ନୁହେଁ ବରଂ ଏହା ହେଉଛି ବ୍ରହ୍ମଚର୍ଯ୍ୟର ପ୍ରଥମ ଲକ୍ଷଣ ।

ବ୍ୟକ୍ତିତ୍ୱ—ଯେ ନିଜର ବ୍ୟକ୍ତିତ୍ୱ ହରାଏ, ସେ ସବୁ କିଛି ହରାଏ ।

## ସାମାଜିକ ବ୍ୟାଧି

୧୯୨୫ ମସିହାରେ ମହାତ୍ମାଗାନ୍ଧୀ ଆମ ସମାଜର ସାତଟି ବ୍ୟାଧି ସମ୍ପର୍କରେ ଯାହା କହିଥିଲେ, ତାହା ଏଠାରେ ଉଲ୍ଲେଖ କରାଯାଇ ପାରେ । ସେହିସବୁ ବ୍ୟାଧି ହେଉଛି—ନୀତିହୀନ ରାଜନୀତି, ଅନୁପାର୍ଜିତ ସମ୍ପତ୍ତି, ବିବେକ-ବିହୀନ ଆମୋଦ, ଚରିତ୍ର ବିନା ଜ୍ଞାନାର୍ଜ୍ଜନ, ନୈତିକତାହୀନ ବ୍ୟବସାୟ, ମାନବିକତା-ବହିର୍ଭୂତ ବିଜ୍ଞାନ, ତ୍ୟାଗହୀନ ଉପାସନା । ବହୁ ଅଭାବ, ଅସୁବିଧା ଅଛି, ଜନସାଧାରଣଙ୍କର କେତେକ ଅପରିହାର୍ଯ୍ୟ, ମୌଳିକ ଦାବୀ, ଆଶା, ଆକାଙ୍‌କ୍ଷା ରହିଛି, ତାହା ଶୀଘ୍ର ପୂରଣ କରିବାକୁ ହେବ । ବିଳମ୍ବ ବା ବ୍ୟର୍ଥତା ପାଇଁ କେହି ଅପେକ୍ଷା କରି ପାରିବେ ନାହିଁ । ଆମର ଭବିଷ୍ୟତ ନିର୍ମାଣପାଇଁ ଆମକୁ ସମସ୍ତ ଶକ୍ତି ଦେଇ ଲାଗିବାକୁ ହେବ—

କୁରୁ ପୌରୁଷମାତ୍ମଶକ୍ତ୍ୟା ।

ବିବାହ (ଯୌତୁକ)—ଶିକ୍ଷିତ ଯୁବକ ବିବାହପାଇଁ ଯୌତୁକ ଦାବୀ କରିବା ଅର୍ଥ କେବଳ ଶିକ୍ଷାକୁ ଅବମାନନା କରିବା ନୁହେଁ, ସ୍ତ୍ରୀ ଜାତିର ମଧ୍ୟ ଅବମାନନା କରିବା । ଯେଉଁ ଯୁବକ ଯୌତୁକ ଦାବୀ କରୁଛି, ତାକୁ ସମାଜରୁ ବାସନ୍ଦ କରାଯିବା ଉଚିତ ।

Digitized by srujan ka@gmail.com

ବୈବାହିକ ସମ୍ବନ୍ଧ ସ୍ଥିର କଲାବେଳେ ଚାରୋଟି ବିଷୟ ପ୍ରତି ଦୃଷ୍ଟି ଦେବା ଉଚିତ ବୋଲି ମୁଁ ମନେକରେ । ପ୍ରଥମ ହେଉଛି ଆଧ୍ୟାତ୍ମିକ ବିକାଶ, ଦ୍ୱିତୀୟ ବା ଜୀବିକା ହେଉଛି ଦ୍ୱିତୀୟ, ପରିବାର ଓ ସାମାଜିକ ସ୍ୱାର୍ଥ ହେଉଛି ତୃତୀୟ ଏବଂ ପରସ୍ପର ପ୍ରତି ସ୍ନେହ ବା ପ୍ରେମ ହେଉଛି ଚତୁର୍ଥ ଓ ଶେଷ ।

ମଦ୍ୟପାନ—ମଦ୍ୟପାନରେ ପାପ ଯେତିକି ହୁଏ, ତା'ଠାରୁ ବେଶି ବେଗରେ ଯନ୍ତ୍ରଣା ଭୋଗିବାକୁ ପଡ଼େ । ଯେଉଁ ମହିଳାମାନଙ୍କର ସ୍ୱାମୀମାନେ ମଦ୍ୟପ, ସେହିମାନେ ହିଁ ଜାଣନ୍ତି—ସେମାନଙ୍କ ଶାନ୍ତ ଆସ୍ପଦ ଓ ସୁଶୃଙ୍ଖଳିତ ଗୃହ ବ୍ୟବସ୍ଥାରେ ନିଶା-ଦାନବ କି ପ୍ରଳୟ ଘଟାଏ ।

ମୃତ୍ୟୁ—ମୃତ୍ୟୁ ଆମ ଜୀବନର ସାଥି । ସେ ଆମ୍ଭମାନଙ୍କୁ ନବୀନ ଜୀବନ ଦେଇଥାଏ ।

ମୃତ୍ୟୁ ହେଉଛି ଜୀବନର ଜନନୀ । ମଣିଷର ବିକାଶପାଇଁ ଜୀବନରେ ମୃତ୍ୟୁର ପ୍ରୟୋଜନ ।

---

Digitized by srujan ka@gmail.com

# ଆଦର୍ଶଯୋଗୀ ଶିବାନନ୍ଦ


**ଶ୍ରୀ ଚିନ୍ତାମଣି ପତି**

ପ୍ରଧାନଶିକ୍ଷକ, ଉକ୍ରମଧୁ ବିଦ୍ୟାପୀଠ

ସାଧାରଣ ସମ୍ପାଦକ, ନିଖିଳ ଉତ୍କଳ ଦିବ୍ୟଜୀବନସଂଘ କେନ୍ଦ୍ରୀୟ ସମିତି


ଏ ଯୁଗର ଶ୍ରେଷ୍ଠ ମୁନିଋଷିମାନଙ୍କ ମଧ୍ୟରେ ଦିବ୍ୟଜୀବନ-ସଂଘ ପ୍ରତିଷ୍ଠାତା ପରମହଂସ ଶ୍ରୀ ସ୍ୱାମୀ ଶିବାନନ୍ଦ ସରସ୍ୱତୀଙ୍କର ସ୍ଥାନ ଅତି ଉଚ୍ଚରେ । ତାଙ୍କ ମୁଖନିଃସୃତ ଦିବ୍ୟଜୀବନର ବାଣୀ ଆଜି ପୃଥିବୀର କୋଣେ କୋଣେ ପ୍ରଚାରିତ । ତାଙ୍କର "ସେବା କର, ପ୍ରେମ କର, ଦାନ କର, ପବିତ୍ର ହୁଅ, ଧ୍ୟାନ କର ଏବଂ ଆତ୍ମାକୁ ଉପଲବ୍ଧି କର, ଭଲ ହୁଅ ଏବଂ ଭଲ କାର୍ଯ୍ୟ କର" ଏହି ଉଦାର ବଜ୍ରଗମ୍ଭୀର ମହାବାଣୀ ଆଜି କୋଟି ହୃତ୍‌କନ୍ଦରକୁ ମଧୁର ମୂର୍ଚ୍ଛନାରେ ଅଭିଭୂତ କରୁଛି ; ପ୍ରସ୍ଫୁଟନୋନ୍ମୁଖ କଳିକା ପରି କୋଟି ଆର୍ତ୍ତ ଓ ପିପାସୁ ହୃଦୟରେ ନବ ଆଶା, ଉଦ୍ଦୀପନା ଓ ପ୍ରାଣର ଆଲୋକ ସଞ୍ଚାର କରିବାରେ ସହାୟକ ହୋଇଛି । ଏ ଯୁଗର ବହୁ ମନୀଷୀ, ସିଦ୍ଧ, ସାଧକ ଆଜି ସ୍ୱାମୀ ଶିବାନନ୍ଦଙ୍କର ପ୍ରେରଣାର ମାଧୁରୀ ଆସ୍ୱାଦନ କରି କୃତକୃତ୍ୟ ହୋଇଅଛନ୍ତି ।

ସ୍ୱାମୀ ଶିବାନନ୍ଦ ଥିଲେ ଏକାଧାରରେ ଆଦର୍ଶ କର୍ମଯୋଗୀ, ଭକ୍ତିଯୋଗୀ ଏବଂ ଜ୍ଞାନଯୋଗୀ । ୧୮୮୭ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ୮ ତାରିଖରେ ଏହି ମହାପୁରୁଷ ଯୋଗୀଙ୍କର ଜନ୍ମ । ସ୍ୱାମୀଜୀ ଜଣେ

Digitized by srujan ka@gmail.com

ଶିଷ୍ୟମାନ ଗ୍ରହରୂପେ ପ୍ରତି ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ସେହି ସ୍ତ୍ରସଙ୍ଗୀବନରୁ ହିଁ ବିଚନାପଲ୍ଲୀ ଓ ତାନ୍‌ଜୋରସ୍ଥ ବହୁ ସେବା ଅନୁଷ୍ଠାନସହ ଜଡ଼ିତ ଥାଇ ସେବାବ୍ରତରେ ଦୀକ୍ଷିତ ହେବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ଅନ୍ତରରେ ସେଇ ଅନ୍ତର୍ଯାମୀଙ୍କର ଦର୍ଶନଲାଭର ସୁଯୋଗ ପାଇଥିଲେ ।

ସାଂଘାତିକ ରୋଗୀଟିଏ ଦେଖିଲେ କୁପସ୍ୱାମୀ ତା' ପାଖରେ ଦିନ ରାତି ନ ଖାଇ ନ ପିଇ ରହିଯାଉଥିଲେ । ଗରିବ ରୋଗୀଙ୍କ ପାଖକୁ ସେ ଅଧିକ ଯାଉଥିଲେ ଏବଂ ପରିଦର୍ଶନ ଓ ପରାମର୍ଶ ଖର୍ଚ୍ଚ ଆଦୌ ନେଉ ନ ଥିଲେ । ଗରିବ ରୋଗୀଙ୍କୁ ଡାକ୍ତରଖାନାରୁ ପରାମର୍ଶ ଦେଇ ବିଦାୟ ଦେଲାବେଳେ ସେ ସେମାନଙ୍କୁ ବାଟଖର୍ଚ୍ଚ, ଔଷଧ ଖର୍ଚ୍ଚ ଏବଂ ପଥ୍ୟ ଓ ଆହାର ଖର୍ଚ୍ଚ ମଧ୍ୟ ଦେଉଥିଲେ । ଡାକ୍ତର ହିସାବରେ ଯାହାକିଛି ଅର୍ଥ ଉପାର୍ଜନ କରୁଥିଲେ, ତାହା ସେ ରୋଗୀ, ଦୁଃସ୍ଥ, ଅନାଥ, ଆତୁର, ସାଧୁ, ସନ୍ନ୍ୟାସୀ ଆଗନ୍ତୁକ ଅତିଥିଙ୍କ ଉଦ୍ଦେଶ୍ୟରେ ସବୁ ଖର୍ଚ୍ଚ କରି ଦେଉଥିଲେ । କେତେକ ସମୟରେ ସର୍ବସ୍ୱ ଦାନ କରିଦେଇ ନିଜେ ଉପବାସରେ ମଧ୍ୟ ସମୟ କଟାଉଥିଲେ । ଜଣେ ବଦାନ୍ୟ ବ୍ୟକ୍ତିହିସାବରେ ତାଙ୍କର ବ୍ୟାପକ ସୁନାମ ଥିଲା ଏବଂ ସାହାଯ୍ୟପ୍ରାପ୍ତି ଉଦ୍ଦେଶ୍ୟରେ ବହୁ ଅତିଥି ଅଭ୍ୟାଗତ ତାଙ୍କର ଦ୍ୱାରସ୍ଥ ହେଉଥିଲେ । ତାଙ୍କ ପାଖରୁ କେହି କେବେ ଶୂନ୍ୟ ହସ୍ତରେ ବା ହତାଶ ହୋଇ ଫେରୁ ନ ଥିଲେ । ଏହାହିଁ ଥିଲା ସ୍ୱାମୀ ଶିବାନନ୍ଦଙ୍କର ଆଦର୍ଶ କର୍ମଯୋଗ ।

ଏହି ନିଷ୍କାମ କର୍ମଯୋଗମାଧ୍ୟମରେ ତାଙ୍କର ମନ ବିଭୁ ଦର୍ଶନପାଇଁ ଆକାଙ୍‌କ୍ଷିତ ହୋଇ ଉଠିଲା । ଧର୍ମଶାସ୍ତ୍ର ଦର୍ଶନ ସାହିତ୍ୟ ଉପରେ ନିତ୍ୟ ନବ ନବ ପୁସ୍ତକ ଅଧ୍ୟୟନ କରି ମଧ୍ୟ ତାଙ୍କର ଏହି ପିପାସା ମେଣ୍ଟିଲା ନାହିଁ । ୧୯୨୩ ମସିହାରେ ଦିନେ

Digitized by srujan ka@gmail.com

ହଠାତ୍ ସମସ୍ତ ପଦମର୍ଯ୍ୟାଦାକୁ ତୁଚ୍ଛ କରି ଦେଇ ନିଜର ସମସ୍ତ ମୂଲ୍ୟବାନ୍ ଜିନିଷ ନିଜର ବନ୍ଧୁମାନଙ୍କ ତଥା ଦୀନ ଦରିଦ୍ରଙ୍କ ମଧ୍ୟରେ ବାଣ୍ଟିଦେଇ ସେ ସନ୍ନ୍ୟାସୀ ବେଶରେ ସିଙ୍ଗାପୁର ଛାଡ଼ି ହିମାଳୟକୁ ପଳାଇ ଆସିଲେ । ବହୁ ସାଧୁସନ୍ଥଙ୍କ ସଂସ୍ପର୍ଶରେ ଆସି ଓ ବହୁ ତୀର୍ଥ ପର୍ଯ୍ୟଟନ କରି ସେ ଶେଷରେ ସ୍ୱାମୀ ବିଶ୍ୱାନନ୍ଦ ସରସ୍ୱତୀଙ୍କଠାରୁ ୧୯୨୪ ଖ୍ରୀଷ୍ଟାବ୍ଦ ଜୁନ୍ ପହିଲାରେ ସନ୍ନ୍ୟାସ ଦୀକ୍ଷା ଗ୍ରହଣ କରି ହିମାଳୟ ସ୍ୱର୍ଗାଶ୍ରମଠାରେ ସାଧନାରତ ଜୀବନଯାପନ କରିବାକୁ ଲାଗିଲେ । ବିଷାକ୍ତ ସରୀସୃପ ପରିବେଷ୍ଟିତ ଏକ କ୍ଷୁଦ୍ର ଅର୍ଦ୍ଧଭଗ୍ନ କୁଟୀରରେ ରହି ସେ ଅବିରତ ଯୋଗସାଧନାରେ ମଗ୍ନ ରହି ଶେଷରେ ନିର୍ବିକଳ୍ପ ସମାଧିସ୍ଥ ହୋଇ ଆତ୍ମସାକ୍ଷାତ୍କାର ଲାଭ କଲେ ।

ସ୍ୱର୍ଗାଶ୍ରମରେ ପ୍ରତ୍ୟହ ବାରଘଣ୍ଟାରୁ ଊର୍ଦ୍ଧ୍ୱ କାଳ ଧରି ଯୋଗନିବିଷ୍ଟ ରହିବାପରେ ସେ ରୁଗ୍‌ଣ, ଦୁଃସ୍ଥ, ସାଧୁ, ସନ୍ଥ, ସନ୍ନ୍ୟାସୀ ଓ ପଥିକମାନଙ୍କର ଚିକିତ୍ସା, ପଦସେବା ଓ ଅନ୍ୟ ପରିଚର୍ଯ୍ୟା ନିଜେ ସ୍ୱହସ୍ତରେ କରୁଥିଲେ । ବିଭୁ ସାକ୍ଷାତ୍କାର ପରେ ସେ ବିଶ୍ୱ-ପ୍ରେମରେ ଉଦ୍‌ବେଳିତ ହେବାକୁ ଲାଗିଲେ । ତତ୍କାଳୀନ ହିମାଳୟସ୍ଥ ସାଧୁ ସନ୍ନ୍ୟାସୀମାନଙ୍କର ଦୁଃସ୍ଥ ଓ ରୁଗ୍‌ଣ ଜୀବନ ଦେଖି ସେମାନଙ୍କର ତଥା କେଦାର ବଦ୍ରୀ ଯାତ୍ରୀଙ୍କର ନିଷ୍କାମ ସେବା ଉଦ୍ଦେଶ୍ୟରେ ଏକ ଚିକିତ୍ସାଳୟ ପ୍ରତିଷ୍ଠା କଲେ । ତାଙ୍କର ନିଷ୍କପଟ ବ୍ୟକ୍ତିତ୍ୱ, ସରଳତା ଓ ଅମାୟିକ ବ୍ୟବହାର ଏବଂ ଜ୍ଞାନ-ଗାମ୍ଭୀର୍ଯ୍ୟ ତଥା ସେବାପ୍ରାଣତାରେ ମନ୍ତ୍ରମୁଗ୍‌ଧବତ୍ ହୋଇ ବହୁ ସାଧୁ ସନ୍ଥ ତାଙ୍କ ନିକଟରେ ସେବାବ୍ରତୀ ହେବା ନିମିତ୍ତ ଇଚ୍ଛା ପ୍ରକାଶ କଲେ । ବିଶ୍ୱକଲ୍ୟାଣ ଉଦ୍ଦେଶ୍ୟରେ ସେ ୧୯୩୬ ଖ୍ରୀଷ୍ଟାବ୍ଦରେ ଏକ ଶୁଭ ମୁହୂର୍ତ୍ତରେ ହିମାଳୟସ୍ଥ ମୁନିକୀରେତି ଆଶ୍ରମଠାରେ ଗଙ୍ଗାତୀରରେ

Digitized by srujan ka@gmail.com

ଦିବ୍ୟଜୀବନ ସଂଘ ପ୍ରତିଷ୍ଠା କଲେ । ଏହି ସଂଘ ଆଜି ପୃଥିବୀର ସର୍ବତ୍ର ପରିବ୍ୟାପ୍ତ ହୋଇ କୋଟି ହୃଦୟରୁ ବିଷାଦକାଳିମା ତଥା ଅଜ୍ଞାନତମିର ଦୂର କରିବାରେ ସହାୟକ ହୋଇପାରିଛି । ସ୍ୱାମିଜୀ ନିଜ ଜୀବଦ୍ଦଶାରେ ତିନିଶରୁ ଊର୍ଦ୍ଧ୍ୱ ପୁସ୍ତକ ଲେଖି ଯାଇଛନ୍ତି ।

ଋଷୀକେଶସ୍ଥ ଶିବାନନ୍ଦ ଆଶ୍ରମରେ ସେ ବିଶ୍ୱ-ସାଧୁସଂଘ ପ୍ରତିଷ୍ଠା କରି ସାଧୁସନ୍ଥଙ୍କ ଦ୍ୱାରା ପୃଥିବୀରେ ଶାନ୍ତିପ୍ରତିଷ୍ଠାର ସ୍ୱପ୍ନ ଦେଖୁଥିଲେ । ବିଶ୍ୱ ଧର୍ମ ସମ୍ମେଳନ କରି ମଧ୍ୟ ସେ ସବୁ ଧର୍ମର ସମନ୍ୱୟ ପ୍ରତିଷ୍ଠା କରି ଯାଇଛନ୍ତି । ତାଙ୍କ ପ୍ରତିଷ୍ଠିତ ଶିବାନନ୍ଦ ଚକ୍ଷୁ-ଚିକିତ୍ସାଳୟ, ଆୟୁର୍ବେଦ ଫାର୍ମାସୀ, ଶିବାନନ୍ଦ ପବ୍ଲିକେଶନ ଲିଗ୍, ଯୋଗ-ବେଦାନ୍ତ ଆରଣ୍ୟ ବିଦ୍ୟାଳୟ ଆଜି ସେହି ବିଶ୍ୱକଲ୍ୟାଣ ଉଦ୍ଦେଶ୍ୟରେ ଉତ୍ସୃଷ୍ଟ । ଶିବାନନ୍ଦାଶ୍ରମରେ ଯୀଶୁଖ୍ରୀଷ୍ଟ, ମହାବୀର, ବୁଦ୍ଧ, କନଫ୍ୟୁସିୟସ, ରାମକୃଷ୍ଣ ଆଦିଙ୍କ ଜୟନ୍ତୀ ପାଳନ କରିବାର ବିଧି ପ୍ରଚଳନ କରି ସେ ବିଶ୍ୱଧର୍ମ ସମନ୍ୱୟର ମାର୍ଗ ପ୍ରଦର୍ଶନ କରି ଯାଇଛନ୍ତି । ତାଙ୍କଠାରେ କର୍ମଯୋଗ, ଜ୍ଞାନଯୋଗ ଓ ଭକ୍ତିଯୋଗର ଅପୂର୍ବ ସମନ୍ୱୟ ଘଟିଥିଲା । ତାଙ୍କର ପ୍ରଧାନ ମନ୍ତ୍ର ହେଉଛି— ନିଜେ ଭଲ ହୋଇ ଭଲ କାର୍ଯ୍ୟ କର ଓ ସେବା କର, ପ୍ରେମ କର, ଦାନ କର, ପବିତ୍ର ହୁଅ, ଧ୍ୟାନ କର ଓ ଆତ୍ମସାକ୍ଷାତ୍କାର ଲାଭ କର ।"

ବିଶ୍ୱବାସୀ ତାଙ୍କର ସେବାମନ୍ତ୍ର ତଥା ଆଦର୍ଶ କର୍ମଯୋଗ, ଭକ୍ତିଯୋଗ ଓ ଜ୍ଞାନଯୋଗ ମନ୍ତ୍ରରେ ଦୀକ୍ଷିତ ହୁଅନ୍ତୁ, ଏହାହିଁ କାମନା ।

## ସ୍ୱାମୀ ଶିବାନନ୍ଦଙ୍କ କତିପୟ ବାଣୀ

ଏ ଦେହ ପାଣି ଫୋଟକା । ଏହା ବିଜୁଳି ପରି । ଏ ସଂସାରର ଦୁଇଦିନର ଖେଳ । ଏହା ଆଜି ଅଛି, କାଲି ଯାଏ

Digitized by srujan ka@gmail.com

ରହିପାରେ, ଆଉ ବେଶୀ ନୁହେଁ; ଆଉ ବେଶୀ ନୁହେଁ ।
ସର୍ବଦା ସଂସାର ଓ ଶରୀରକୁ କାଳମୁଖରେ ରହୁଥିବାର ଦେଖୁଥିବ ।

ତୁମ୍ଭ ବକ୍ଷଣାରେ ପଡ଼ ୩ ଗୋଟି ହିକ୍କା ବା ଶେଷ ନିଃଶ୍ୱାସ ମାତ୍ର । ଶେଷ ହିକ୍କା ସଙ୍ଗେ ସଙ୍ଗେ ତୁମ୍ଭର ସମସ୍ତ ଧନ-ସମ୍ପତ୍ତି ତୁମ୍ଭର ପୁତ୍ର ଓ ଅଂଶୀଦାରମାନେ ଘେନିଯିବେ । କେହି ବ୍ୟାଙ୍କ ପାଶ୍‌ବହି, କେହି ଟଙ୍କା ସିନ୍ଦୂକ, କେହି ପ୍ରୋଭିଡେଣ୍ଟ ଫଣ୍ଡ-କାଗଜ, କେହି ଜୀବନବୀମା କାଗଜ, କେହି ତୁମ୍ଭ ଶରୀରରେ ଥିବା ଅଳଙ୍କାରପ୍ରଭୃତି ନେବା ନିମନ୍ତେ ବ୍ୟସ୍ତ ହୋଇ ପଡ଼ିବେ, ପାର୍ଥିବ ଜୀବନର ଗତି ଏହିପରି । ତେବେ ତୁମ୍ଭର ଆଧ୍ୟାତ୍ମିକ ଉନ୍ନତି ନିମନ୍ତେ ଦରିଦ୍ରନାରାୟଣ ସେବା ଓ ମହାତ୍ମାମାନଙ୍କ ସେବାଦ୍ୱାରା ତୁମ୍ଭର ସଞ୍ଚିତ ଅର୍ଥର ଯେପରି ସଦ୍‌ବ୍ୟବହାର କରାଯାଏ, ସେଥି-ପ୍ରତି ଦୃଷ୍ଟି ଦେଉନାହଁ କାହିଁକି ? ବନ୍ଧୁ, ଭକ୍ତି, ଧ୍ୟାନ, ପବିତ୍ରତା, ସେବା, ଜପ, ପ୍ରାର୍ଥନା ଓ ଈଶ୍ୱରଦ୍ୱାରା ଅମୃତତ୍ୱ ଲାଭ କରିବାପାଇଁ ଚେଷ୍ଟାକର । ସକଳ ଦୁଃଖ ଓ କଷ୍ଟ ଘୁଞ୍ଚିଯିବ ।

ଅଭାବ ହ୍ରାସ କରିଦିଅ । ଅଧିକ ସଙ୍ଗ କର ନାହିଁ । ଅଧିକ ବାକ୍ୟାଳାପ କର ନାହିଁ, କାହାରିକୁ ଘୃଣା କର ନାହିଁ । କାହାରିକୁ ପ୍ରତାରଣା କରନାହିଁ । ସମସ୍ତ ପ୍ରକାର ଭୋଗବିଳାସ ତ୍ୟାଗ କର । ଯେତେଦୂର ସମ୍ଭବ ଅନ୍ୟାୟପ୍ରତି ଆଗ୍ରହୀ ହୁଅନାହିଁ । ସତ୍‌ସଙ୍ଗ ତୁଲ୍ୟ ଆଉ କୌଣସି ମିତ୍ର ନାହିଁ । କୁସଙ୍ଗ ତୁଲ୍ୟ ଆଉ କୌଣସି ଶତ୍ରୁ ନାହିଁ । ଭଲ କାମକୁ ଖୁବ୍ ଶୀଘ୍ର ଶେଷ କରିବାକୁ ଚେଷ୍ଟା କରିବ, କାରଣ ନିଃଶ୍ୱାସକୁ ବିଶ୍ୱାସ ନାହିଁ । ଧନପ୍ରାପ୍ତି ନିଜର ଆୟତ୍ତ ନ ହେଲେ ସୁଦ୍ଧା ମନୁଷ୍ୟ ନିଜର ଶରୀର-ରକ୍ଷା ଲାଗି କର୍ତ୍ତବ୍ୟ ବୁଦ୍ଧି ଓ ନ୍ୟାୟମାର୍ଗରେ ଧନ ଉପାର୍ଜ୍ଜନ କରିବ ।

Digitized by srujan ka@gmail.com

ଅନ୍ୟକୁ ଦୁଃଖ ଦେବା ସମାନ କୌଣସି ପାପ ନାହିଁ ଏବଂ ସୁଖ ଦେବା ସମାନ କୌଣସି ସୁଖ ନାହିଁ, ତେଣୁ ସର୍ବଦା ଅନ୍ୟର ଉପକାର ଲାଗି ଯତ୍ନବାନ୍ ହେବ । କୌଣସି ସଂପର୍କୀୟ ଲୋକର ମୃତ୍ୟୁ ସୂଚନା ପାଇଲେ ସେଠାକୁ ଯିବାକୁ ଅତ୍ୟନ୍ତ ଆବଶ୍ୟକ ମନେ କରିବ । ନିଜ ଘରେ କେହି ମରିଗଲେ, ଦୂରରେ ଥିବା ଆତ୍ମୀୟସ୍ୱଜନମାନଙ୍କୁ ଯଥାବିଧି ମର୍ଯ୍ୟାଦା ରଖି ଅଣାଇବାକୁ ଯଥାସମ୍ଭବ ଚେଷ୍ଟା କରିବ ।

## ମନୁଷ୍ୟ ପକ୍ଷରେ ବିଷ ହେଉଛି ଅକୃତଜ୍ଞତା

ନିଜର ନିକଟସଂପର୍କୀୟ, ଲୋକର ଦୋଷ ସହସା କହି-ଦେବା ଉଚିତ ନୁହେଁ, କହିଲେ ତାଙ୍କର ଦୁଃଖ ହୋଇପାରେ । ଏତଦ୍ଦ୍ୱାରା ତାଙ୍କର ସଂଶୋଧନ କରିବା ସମ୍ଭବ ନୁହେଁ । ଯଦ୍ୟପି କାହାରିଠାରୁ କିଛି କାମ ହାସଲ କରିବାର କଥା, ତେବେ ତାଙ୍କୁ ପାଖକୁ ନ ଡକାଇ ବରଂ ତାଙ୍କ ପାଖକୁ ଯିବା ଉଚିତ । ନିଃସ୍ୱାର୍ଥ-ଭାବରେ ଅନ୍ୟର ଉପକାର ଲାଗି କିଛି କରିପାରିଲେ ନିଜର ମଙ୍ଗଳ ହୁଏ । ନିଜ ପ୍ରତି କରା ଯାଇଥିବା ଉପକାରକୁ ଆଜୀବନ ଭୁଲିବ ନାହିଁ । ଉପକାରୀର ବିଶେଷ ପ୍ରତ୍ୟୁପକାର କରି ସୁଦ୍ଧା ଉପକାରୀ ଲୋକର ଉପକାରକୁ ନିଜ ଅପେକ୍ଷା ଅଧିକ ମନେ କରିବା ଉଚିତ ।



Digitized by srujan ka@gmail.com

# ଯୁଗଗୁରୁ ପରମହଂସ
# ଶ୍ରୀ ଶ୍ରୀ ନିଗମାନନ୍ଦ ସରସ୍ୱତୀ

**ନିମାଇଁ ଚରଣ ଦାସ**

ଶ୍ରୀ ଶ୍ରୀ ଠାକୁର ନିଗମାନନ୍ଦ ସମଗ୍ର ଭାରତ ସାଧୁସମାଜରେ ସୁପରିଚିତ । ୧୮୬୮ ଖ୍ରୀଷ୍ଟାବ୍ଦରେ ନଦିୟା ଜିଲ୍ଲା କୁତବପୁର ଗ୍ରାମରେ ତାଙ୍କର ଶୁଭଜନ୍ମ । ପୂର୍ବାଶ୍ରମର ନାମ ଶ୍ରୀ ନଳିନୀକାନ୍ତ ଭଟ୍ଟାଚାର୍ଯ୍ୟ । ବିବାହର ଅତି ଅଳ୍ପଦିନ ପରେ ପ୍ରିୟତମା ପତ୍ନୀ ସୁଧାଂଶୁବାଳାଙ୍କ ବିୟୋଗ ତତ୍‌ପରବର୍ତ୍ତୀ କେତେକ ଘଟଣା ଯୁବକ ନଳିନୀକାନ୍ତଙ୍କ ମନରେ ସୃଷ୍ଟି ହୋଇଥିଲା, ପରଲୋକତତ୍ତ୍ୱ ଅନୁସନ୍ଧାନର ଅଦମ୍ୟ ପିପାସା ।

ଯୋଗରେ ଆଧ୍ୟାତ୍ମିକ ସାଧନପଥରେ ଯେତେପ୍ରକାର ସମାଧି ଅଛି, ନିର୍ବିକଳ୍ପ ସମାଧି ସେଥିରେ ଶେଷ ଅବସ୍ଥା ବା ସର୍ବୋଚ୍ଚ । କୌଣସି ସାଧକ ସେହି ଅବସ୍ଥା ଲାଭ କରି ପୁନର୍ବାର ଏହି ଜଗତକୁ ଆସିବା ଏକପ୍ରକାର ଅସମ୍ଭବ; କିନ୍ତୁ ଶ୍ରୀ ଶ୍ରୀ ଠାକୁର ଥିଲେ ଏହାର ବ୍ୟତିକ୍ରମ । ଶ୍ରୀ ଶ୍ରୀ ଠାକୁର ନିର୍ବିକଳ୍ପ ସମାଧି ଭୂମିରୁ (ଫେରି) ଅବତରଣ କରିଥିବାରୁ ସଦ୍‌ଗୁରୁ କାର୍ଣ୍ଣିକ, ଜଗଦ୍‌ଗୁରୁ ଆସନରେ ସେ ଅଧିଷ୍ଠିତ ହୋଇ ପାରିଛନ୍ତି । ଶ୍ରୀ ଶ୍ରୀ ଠାକୁର

Digitized by srujan ka@gmail.com

ହୋଇଛନ୍ତି ତାନ୍ତ୍ରିକଗୁରୁ, ଜ୍ଞାନୀ ଗୁରୁ, ଯୋଗୀ ଗୁରୁ ଏବଂ ପ୍ରେମିକ ଗୁରୁ ।

ସେ ଶଙ୍କରଙ୍କ ମତ ଏବଂ ଚୈତନ୍ୟଙ୍କ ପଥରେ ଜଗଦ୍‌ବାସୀଙ୍କୁ ପରିଚାଳିତ କରି ଦେଶରେ ଶାଶ୍ୱତ ସନାତନ ଧର୍ମ ରକ୍ଷା ନିମନ୍ତେ ଜଗଦ୍‌ବାସୀଙ୍କ ପଥ ପରିଷ୍କାର କରି ଦେଇଛନ୍ତି । ଯୋଗୀ, ଭୋଗୀ, ସଂସାରୀ ଓ ସନ୍ନ୍ୟାସୀଙ୍କୁ ସମପଥରେ ପରିଚାଳିତ କରି ସାର୍ବଭୌମ ଭକ୍ତସମ୍ମିଳନୀ, ସାରସ୍ୱତ ସଂଘ ସହ ଆସାମ, ବଙ୍ଗୀୟ ସାରସ୍ୱତ ମଠ ସ୍ଥାପନ କରି ଯାଇଛନ୍ତି ।

ତାଙ୍କର ପ୍ରଧାନ ଉଦ୍ଦେଶ୍ୟ ହେଲା ମୁଖ୍ୟତଃ ତିନୋଟି:— ସନାତନ ଧର୍ମପ୍ରଚାର, ସତ୍‌ଶିକ୍ଷା ବିସ୍ତାର ଏବଂ ଭଗବତ୍ ଜ୍ଞାନରେ ଜୀବସେବା । ଏହି ଉଦ୍ଦେଶ୍ୟରେ ସେ ଋଷି-ବିଦ୍ୟାଳୟମାନ ସ୍ଥାପନ ଓ ବ୍ରହ୍ମଚର୍ଯ୍ୟାଶ୍ରମ ପ୍ରତିଷ୍ଠା କରି ପ୍ରାଚୀନ ଗୁରୁକୁଳ ଶିକ୍ଷାପଦ୍ଧତିର ପୁନଃ ପ୍ରବର୍ତ୍ତନ କରିଛନ୍ତି । ସତ୍‌ଶିକ୍ଷା ବିସ୍ତାର ମାଧ୍ୟମରେ ଶିକ୍ଷାକୁ ଧର୍ମାଭିମୁଖୀ କରାଇ ପରମୁଖାପେକ୍ଷୀ ଭାରତବର୍ଷରେ ବ୍ୟାସ, ବଶିଷ୍ଠ, ଜନକ, ମନୁ ସଦୃଶ ମନୁଷ୍ୟ ଗଠନ କରିବା ଥିଲା ତାଙ୍କର ଅଭିପ୍ରାୟ ।

ପରମହଂସ ସ୍ୱାମୀ ଶ୍ରୀ ନିଗମାନନ୍ଦ ସରସ୍ୱତୀ ମହାରାଜଙ୍କ ସମ୍ବନ୍ଧରେ ଅତି ସଂକ୍ଷେପରେ ଏତିକି ମାତ୍ର କୁହାଯାଇ ପାରେ ଯେ, ଭାରତର ଉଚ୍ଚତମ ସୋପାନାରୂଢ଼ ସାଧୁମଣ୍ଡଳୀଙ୍କ ମଧ୍ୟରେ ସେ ଜଣେ ବିଶିଷ୍ଟ ସାଧୁ ଥିଲେ ଏବଂ ଆର୍ଯ୍ୟଋଷିମାନେ ମନୁଷ୍ୟର ପୂର୍ଣ୍ଣତା ଲାଭପାଇଁ ଦେବତ୍ୱ ଓ ବ୍ରହ୍ମତ୍ୱ ଲାଭ ପରେ ଭଗବନ୍ତ ପ୍ରାପ୍ତି ପାଇଁ ଯେତେପ୍ରକାର ସାଧନା ଉଦ୍‌ଘାଟିତ କରି ଯାଇଅଛନ୍ତି ଶ୍ରୀ ଶ୍ରୀ ଠାକୁର ନିଗମାନନ୍ଦ ସେ ସମସ୍ତ ସାଧନାରେ ସିଦ୍ଧିଲାଭ

Digitized by srujan ka@gmail.com

କରିଥିଲେ । ସେହି ଦେବଦୁର୍ଲଭ ମହାମାନବ ଭାରତଭୂମିରେ ବିଶେଷତଃ ଆସାମ, ବଙ୍ଗଳା, ବିହାର, ଓଡ଼ିଶା ଓ ମାନ୍ଦ୍ରାଜ ପ୍ରଦେଶର ଆଧ୍ୟାତ୍ମିକ ସାଧକସମାଜରେ ଅତି ସୁପରିଚିତ, ସମାଦୃତ ଓ ପୂଜିତ ଅଟନ୍ତି । ତାଙ୍କ ଇହଜୀବନର ଶେଷ ବାରବର୍ଷ ସେ ପୁରୀ ସ୍ୱର୍ଗଦ୍ୱାରସ୍ଥ ନୀଳାଚଳ କୁଟୀରରେ ଅବସ୍ଥାନପୂର୍ବକ ଓଡ଼ିଶାରେ ସାରସ୍ୱତ ଭାବଧାରା ପ୍ରଚାର ନିମିତ୍ତ ନୀଳାଚଳ ସାରସ୍ୱତ-ସଂଘର ପ୍ରତିଷ୍ଠା ସ୍ୱହସ୍ତରେ କରି ଯାଇଛନ୍ତି । ବର୍ତ୍ତମାନ ଆଜି ସେହି ମହାପୁରୁଷଙ୍କ କେତେକ ଉପଦେଶ ବାଣୀ ନିମ୍ନରେ ଦିଆଗଲା:—

"ଆଜିକାଲି ମନୁଷ୍ୟମାନେ ଏପରି ଇହକାଳସର୍ବସ୍ୱ ହୋଇ ପଡ଼ିଛନ୍ତି ଯେ, ପରକାଳର ଚିନ୍ତାପର୍ଯ୍ୟନ୍ତ ସେମାନେ କରନ୍ତି ନାହିଁ । ପରକାଳ ଯେ ଅଛି ଏ ବିଶ୍ୱାସ ଟିକକ ସୁଦ୍ଧା ସେମାନେ ହରାଇ ବସିଛନ୍ତି । ଜଣଜଣଙ୍କର ଆୟୁ ପଚାଶ, ଷାଠିଏବର୍ଷ ମାତ୍ର, ଖୁବ୍ ଅଧିକ ହେଲେ ଶହେବର୍ଷ । ତଥାପି ସେମାନେ ଏ ଜଗତକୁ ନିତ୍ୟ ବାସ କରିବାକୁ ଆସିଛନ୍ତି ବୋଲି ଭାବି ନୀତିହୀନ କର୍ମାଦିର ପ୍ରବର୍ତ୍ତନପୂର୍ବକ ଦୁର୍ବଳ ଉପରେ ଅତ୍ୟାଚାର କରି ଆପଣା ପ୍ରଭୁତ୍ୱ ସ୍ଥାପନର ଚେଷ୍ଟା କରୁଛନ୍ତି ଓ ମିଥ୍ୟାର ଆଶ୍ରୟ ଗ୍ରହଣ କରି ବିଷୟ-ସମ୍ପତ୍ତି ବୃଦ୍ଧି ଉଦ୍ୟମରେ ଲାଗି ରହିଛନ୍ତି; କିନ୍ତୁ ସେମାନେ ବୁଝୁନାହାନ୍ତି ଯେ, ଦିନେ ସମସ୍ତଙ୍କୁ ନିଃସମ୍ବଳ ହୋଇ ସବୁ ତ୍ୟାଗ କରି କୌଣସି ଗୋଟିଏ ଅଜଣାଦେଶକୁ ଚାଲିଯିବାକୁ ହେବ । ନିଜ ଚକ୍ଷୁ ସାମନାରେ କେତେ ଲୋକଙ୍କୁ ମରିବାର ଦେଖି ସୁଦ୍ଧା ସେମାନେ ମନେ କରନ୍ତି ଯେ ସେମାନେ ନିଜେ ଏଠାରେ ସ୍ଥାୟୀ ଅଧିବାସୀ ।

ଅନ୍ୟର ଦୋଷ ଦେଖିବ ନାହିଁ, ଦେଖିବ ଗୁଣ ଅଛି କି ନାହିଁ । ଗୋଟିଏ ଦୋଷ ଦେଖିଲାକ୍ଷଣି ତାଙ୍କ ପ୍ରତି ବିଦ୍ୱେଷଭାବ

Digitized by srujan ka@gmail.com

ପୋଷଣ କରିବ ନାହିଁ, ଏହାହିଁ ସାଧୁତ୍ୱ । ଅପରର ଦୋଷ କୀର୍ତ୍ତନ କରିବ ନାହିଁ । ଆତ୍ମୋନ୍ନତି ଆଡ଼କୁ ସର୍ବଦା ଲକ୍ଷ୍ୟ କରିବ । ସତ୍ୟକୁ ଅଙ୍ଗର ଭୂଷଣ କର । ସଂଯମକୁ ପ୍ରାଣର ସହଚର କରିନିଅ । ସରଳତାକୁ ମନର ସ୍ୱାଭାବିକ ଅବସ୍ଥାରେ ପରିଣତ କରିବାକୁ ଚେଷ୍ଟା କର । ଯଦି ବିଘ୍ନ ଆସେ, ବାଧା ଆସେ ଜୟଗୁରୁ ମହାନାମ ଉଚ୍ଚାରଣ କର ଆକୁଳ ପ୍ରାଣରେ ପ୍ରାଣରେ ବଳ ପାଇବ । ହୃଦୟରେ ଶାନ୍ତିର ଆବିର୍ଭାବ ହେବ ।

ପ୍ରତ୍ୟେକ ଜୀବ ଭଗବାନଙ୍କର । ପାପୀ, ପୁଣ୍ୟବାନ୍, ଧନୀ, ଦରିଦ୍ର ସମସ୍ତେ ତୁମ୍ଭର ଆପଣାର । ସୁତରାଂ, ସମସ୍ତଙ୍କର ମଙ୍ଗଳ ହେଉ, ଏହା ଭିନ୍ନ କାହାରି ଅନିଷ୍ଟ ଚିନ୍ତା କର ନାହିଁ । ସମସ୍ତଙ୍କୁ ଭଲ ପାଅ । ପ୍ରତ୍ୟେକଙ୍କୁ ଦେଖି ଆନନ୍ଦିତ ହୁଅ । ସନ୍ଧି ଓ ସୁବିଧା-ଅନୁସାରେ ପ୍ରତ୍ୟେକଙ୍କର ଉପକାର କର । ପୀଡ଼ିତର ଅଶ୍ରୁ ପୋଛି ଦିଅ । ଅପକାରୀକୁ ଉପକାରଦ୍ୱାରା ଜୟ କର । ଶତ୍ରୁକୁ ପ୍ରେମରେ ବଶୀଭୂତ କର । ଦୁର୍ଜ୍ଜନକୁ କ୍ଷମାଦ୍ୱାରା ପରାସ୍ତ କର ।

ରୋଗୀର ଶୁଶ୍ରୂଷା କର । ଶୋକଗ୍ରସ୍ତକୁ ସାନ୍ତ୍ୱନା ଦିଅ । ଦୁଃଖୀର ଅଶ୍ରୁ ମୋଚନ କର । ତାପିତକୁ ହୃଦୟରେ ଜାକି ଧର । ସ୍ୱାର୍ଥପର ସଇତାନକୁ ହୃଦୟରୁ ବିତାଡ଼ିତ କରି ସେଠାରେ ପ୍ରେମମୟ ଭଗବାନଙ୍କୁ ଆସନ ଦିଅ । ଏହାହିଁ ଧର୍ମ, ନଚେତ୍ ବା ଆଖି, କାନ ବୁଜି କେବଳ ଜପ ତପ କଲେ ଭଗବାନଙ୍କ କୃପା ହୁଏ ନାହିଁ । ତାହା ଜଡ଼ର ସାଧନା ମାତ୍ର ।

ଯେ ଜୀବକୁ କୃପା କରି ଶିଖି ନାହିଁ ସେ ଭଗବାନଙ୍କ କୃପା ପାଇବ କିପରି ? ଯେ ଅନ୍ୟକୁ କ୍ଷମା କରି ପାରେ ନାହିଁ ସେ ଭଗବାନଙ୍କ ନିକଟରେ କ୍ଷମା ପାଇବାକୁ ଅଯୋଗ୍ୟ । ଯେ ଜଗତକୁ

Digitized by srujan ka@gmail.com

ଭଲ ପାଇ ପାରେ ନାହିଁ ସେ ଭଗବାନଙ୍କର ପ୍ରେମ ପାଇବାକୁ ଆଶା କରିବା ବୃଥା ।

ଯାହାଙ୍କୁ ଭଲ ପାଇବ, ତାଙ୍କଠାରୁ ପ୍ରତିଦାନ ଖୋଜିବ ନାହିଁ । ଭଲ ପାଇବାକୁ ସ୍ୱଭାବରେ ପରିଣତ କର । ପାପୀ, ତାପୀ, ଦୁଃଖୀ, ଦରିଦ୍ରଙ୍କୁ ଭଲ ପାଅ । ନିଜକୁ ଭୁଲି ପରର ସେବା କର । ତାହାହେଲେ ଭଗବାନ୍ ତୁମ୍ଭଙ୍କୁ କୋଳକୁ ଟାଣିନେବେ ।

ଏ ଜଗତରେ ସ୍ୱାର୍ଥପରତା ହିଁ ଭୀଷଣ ନରକ ସୃଷ୍ଟି କରିଅଛି । ସ୍ୱାର୍ଥରେ ଆଘାତ ଲଗିଲେ କେହି ଆପଣାର ହୁଅନ୍ତି ନାହିଁ । ଜଗତର ଉପକାର କରିବେ ବୋଲି ଯେଉଁମାନେ ବାସନା ରଖନ୍ତି ସେମାନେ କେବେହେଲେ ଉପକାର କରି ପାରନ୍ତି ନାହିଁ । ଏ ସବୁ କାର୍ଯ୍ୟ ଭଗବାନଙ୍କର । ସେ ଯାହାଦ୍ୱାରା ଯାହା କରାଇବାର ତା' କରାଇବେ ।

ସମ୍ପଦ ବିପଦ, ସୁଖ ଦୁଃଖ ସବୁ ତାଙ୍କର, ଦାନ ବୋଲି ଭାବି ମୁଣ୍ଡପୋତି ବହନ କରିବାକୁ ହେବ । ତାଙ୍କଠାରେ ନିର୍ଭର କରି ନିର୍ଭୟ ଓ ନିଶ୍ଚିନ୍ତ ହୁଅ ।

ଏ ସଂସାରଟା ଅଭାବ ଅଶାନ୍ତିରେ ଗଢ଼ା । ଏଠାରେ ସୁଖ ଶାନ୍ତିର ଆଶା ବିଡ଼ମ୍ବନା ମାତ୍ର । ସୁଖ ବା ଆନନ୍ଦସ୍ୱରୂପ ଭଗବାନଙ୍କ ବ୍ୟତୀତ ସୁଖ ଆଉ କେଉଁଠାରେ ନାହିଁ ।

ଦୁଃଖ ମାନବର ସହନଶକ୍ତି ବଢ଼ାଇ ଦେଇଥାଏ । ଦୁଃଖ ସହ୍ୟ କରି ପାରିଲେ ହିଁ ଦୁଃଖର ଜୟ କରି ହୁଏ ।

ଦୁଃଖ-କଷ୍ଟରେ ଧୈର୍ଯ୍ୟ ହରାଅ ନାହିଁ । ସୁଖ ଅପେକ୍ଷା ଦୁଃଖରେ ଜୀବର ମଙ୍ଗଳ ବେଶି ହୁଏ । ଦୁଃଖସମୟରେ ଦୈନିକ

Digitized by srujan ka@gmail.com

ବଳ-ସାମର୍ଥ୍ୟ ବା ବିଦ୍ୟାବୁଦ୍ଧିର ଅଭିମାନ ନଷ୍ଟ ହୋଇ ନିର୍ଭରଭାବ ଦୃଢ଼ ହୁଏ । ସବୁ ଅବସ୍ଥାରେ ଆନନ୍ଦରେ ରହିବାକୁ ଚେଷ୍ଟା କର । ସୁଖ ବାହାରେ ନାହିଁ, ସୁଖ ଅନ୍ତରରେ । ସୁଖ ଭୋଗରେ ନାହିଁ — ସୁଖ ତ୍ୟାଗରେ । ବାହ୍ୟ ବିଷୟ ସଂଯୋଗରେ ଯେଉଁ ସୁଖ ହୁଏ, ତାହା ଅନିତ୍ୟ ଓ ଆସକ୍ତିପରିପୂର୍ଣ୍ଣ ପାପରେ କଳୁଷିତ, ମନନଦ୍ୱାରା ଭଗବାନଙ୍କର ସ୍ୱରୂପ ଉପଲବ୍‌ଧିହିଁ ପ୍ରକୃତ ନିର୍ମଳ ସୁଖ ।

ଆମେ ସମସ୍ତେ ସୁଖର କାଙ୍ଗାଳ, ପୃଥିବୀରେ ସମସ୍ତେ ସୁଖ-ପାଇଁ ଲାଳାୟିତ । ରାଜା-ପ୍ରଜା, ଧନ-ଦୁଃଖୀ, ବୃଦ୍ଧ-ବାଳକ ସମସ୍ତେ ସୁଖପାଇଁ ଧାଇଁଛନ୍ତି; କିନ୍ତୁ ସୁଖ ପାଉଛନ୍ତି କି ? କେହି-ହେଲେ ସୁଖ ପାଆନ୍ତି ନାହିଁ । ତା'ର କାରଣ ଆମ ମନ ଯେଉଁ ଯେଉଁ ବିଷୟରୁ ସୁଖ ପାଇବ ବୋଲି ଆଶା କରି ଧାଏଁ, ସେଥିରେ ପୂର୍ଣ୍ଣ ସୁଖ ନାହିଁ । ସୁଖର ଜଣା ମାତ୍ର ଅଛି, ଭଗବାନ୍ ପୂର୍ଣ୍ଣ ସୁଖ-ସ୍ୱରୂପ ।

———

Digitized by srujan ka@gmail.com

# କାଳିଦାସ

ଶ୍ରୀ ରାଧାମୋହନ ମହାପାତ୍ର

କାଳିଦାସ ଭାରତବର୍ଷର ସର୍ବଶ୍ରେଷ୍ଠ କବି । ସେ ଖ୍ରୀଷ୍ଟୀୟ ପ୍ରଥମ ଶତକରୁ ୪ର୍ଥ ଶତକର କବି ବୋଲି ଗବେଷକମାନଙ୍କ ମତ । ଉତ୍ତର ଭାରତର ଗୁପ୍ତବଂଶୀୟ ରାଜତ୍ୱ କାଳରେ ତାଙ୍କର ଆବିର୍ଭାବ ବୋଲି ଅଧିକାଂଶ ଏକମତ ହୁଅନ୍ତି । ସଂସ୍କୃତ ଭାଷାରେ ସେ ରଘୁବଂଶ, କୁମାରସମ୍ଭବ, ଋତୁସଂହାର ଓ ମେଘଦୂତ ନାମରେ କାବ୍ୟ ଏବଂ ଅଭିଜ୍ଞାନ ଶକୁନ୍ତଳା, ବିକ୍ରମୋର୍ବଶୀ, ମାଳବିକାଗ୍ନି-ମିତ୍ର ନାମକ ନାଟକତ୍ରୟ ରଚନା କରି ଯାଇ ଅଛନ୍ତି । ବୌଦ୍ଧଧର୍ମର ଅବସାନପରେ ଯେତେବେଳେ ହିନ୍ଦୁଧର୍ମର ପୁନର୍ଜାଗରଣ ହେଲା ସେତେବେଳେ ତାଙ୍କର ଅଭ୍ୟୁଦୟ । ତାଙ୍କର ଶକୁନ୍ତଳା ନାଟକକୁ ଭାରତରେ ଆସିଆଟିକ୍ ସମାଜର ପ୍ରତିଷ୍ଠାତା ଓ ସୁପ୍ରିମ୍‌କୋର୍ଟର ବିଚାରପତି ପ୍ରବୀଣ ପଣ୍ଡିତସାର୍ ଉଇଲିୟମ୍ ଜୋନସ୍ ୧୭୮୯ ଖ୍ରୀଷ୍ଟାବ୍ଦରେ ଯେତେବେଳେ ଇଂରେଜୀ ଭାଷାରେ ରୂପାନ୍ତରିତ କଲେ ସେତେବେଳେ ତାହା ସମସ୍ତ ପାଶ୍ଚାତ୍ୟ ଜଗତ୍‌କୁ ବିମୋହିତ ଓ ଚମତ୍କୃତ କରିଦେଲା ଏବଂ ତାହା ସମସ୍ତ ଇଉରୋପୀୟ ଭାଷାରେ ଅନୂଦିତ ହେଲା । ଇଉରୋପର ସୁନାମଧନ୍ୟ ଜର୍ମାନ୍ କବି ଗେଟେ ତାଙ୍କ ପ୍ରଧାନ ନାଟକ ଶକୁନ୍ତଳା ଉପରେ ଯେଉଁ ମର୍ମସ୍ପର୍ଶୀ ମନ୍ତବ୍ୟ ପ୍ରକାଶ କଲେ, ତାହା କାଳିଦାସଙ୍କୁ ପାଶ୍ଚାତ୍ୟଜଗତରେ ସମଧିକ

Digitized by srujan ka@gmail.com

ପ୍ରଖ୍ୟାତ କରାଇଲା । ଈଶଷ୍ଟ ଫରାସୀପଣ୍ଡିତ ସିଲ୍‌ଭାନଲେଭି କାଳିଦାସଙ୍କୁ ପୃଥିବୀର ସର୍ବଶ୍ରେଷ୍ଠ କବିରୂପେ ବର୍ଣ୍ଣନା କରି ଅଛନ୍ତି । ଅନେକେ କହନ୍ତି କାଳିଦାସ ଭାରତର ସେକ୍‌ସପିୟର । କାଳିଦାସଙ୍କ ବାରଶତ ବର୍ଷପରେ ଇଙ୍ଗଲାଣ୍ଡ ସେକ୍‌ସପିୟରଙ୍କୁ ପାଇଲା । ଏଣୁ କହିବାକୁ ହେବ ସେକ୍‌ସପିୟର ଇଙ୍ଗଲାଣ୍ଡର କାଳିଦାସ ।

ଋତୁସଂହାରରେ ବିଭିନ୍ନ ଋତୁ ଓ ପ୍ରାକୃତିକ ଦୃଶ୍ୟର ବର୍ଣ୍ଣନା ଅଛି । କାଳିଦାସ ପ୍ରକୃତିର ଉପାସକଥିବା ଏଥିରୁ ପ୍ରମାଣିତ ହୁଏ । ରଘୁବଂଶ ମହାକାବ୍ୟଙ୍କର ଶ୍ରେଷ୍ଠକୃତି । ଏଥିରେ ସମଗ୍ର ଭାରତର ରୂପରେଖ ନିର୍ଦ୍ଧାରଣ କରିବାରେ କାଳିଦାସ ସତେ ଯେପରି ସ୍ୱତନ୍ତ୍ର ମମତା ଦେଖାଇଥିବା ଜଣାପଡ଼ୁଥାଏ । ରଘୁବଂଶରେ ରଘୁଙ୍କର ଦିଗ୍‌ବିଜୟ ପ୍ରସଙ୍ଗରେ ସମଗ୍ର ଭାରତର ସୀମାରେଖା ଅଙ୍କନ କରିଛନ୍ତି । ପୁନଶ୍ଚ ସେହି ମହାକାବ୍ୟରେ ଲଙ୍କାରୁ ଅଯୋଧ୍ୟା ପ୍ରତି ରାମଙ୍କର ପ୍ରତିଗମନ ପ୍ରସଙ୍ଗରେ ଭାରତ-ଭୂଖଣ୍ଡର ଚିତ୍ରାଙ୍କନରେ ତାଙ୍କର ଲେଖନୀ ଝଂକୃତ ହୋଇଥିବା ପାଠକମାନଙ୍କୁ ଜଣା । ଆହୁରି ମଧ୍ୟ ଉକ୍ତ କାବ୍ୟରେ ଇନ୍ଦୁମତୀ ସ୍ୱୟମ୍ବର ପ୍ରସଙ୍ଗରେ ତତ୍‌କାଳୀନ ଭାରତୀୟ ରାଜ୍ୟ ତଥା ରାଜନ୍ୟବୃନ୍ଦଙ୍କ ସମ୍ପର୍କରେ ଯେଉଁ ନିଖୁଣଚିତ୍ର ଅଙ୍କନ କରିବାରେ ପ୍ରୟାସୀ ହୋଇଛନ୍ତି ସେଥିରୁ ତାଙ୍କର ମହାଭାରତୀୟତା ସ୍ପଷ୍ଟ ପ୍ରମାଣିତ ହେଉଛି । ମେଘଦୂତରେ ଜଣେ ବିରହୀ ଶାପଗ୍ରସ୍ତ ଯକ୍ଷ ତା'ର ସ୍ତ୍ରୀ ପାଖକୁ ମେଘଦ୍ୱାରା ବାର୍ତ୍ତା ପଠାଉଅଛି । ସେଥିରେ ମାନବର ବିରହ•••ଯନ୍ତ୍ରଣା, ସମ୍ଭୋଗ ଲାଳସା ଓ ମିଳନ ଆଶାର ଅଦ୍ଭୁତ ବର୍ଣ୍ଣନା ପାଠକଙ୍କୁ ମୁଗ୍‌ଧ କରିଦିଏ ।

ରଘୁବଂଶରେ ରାମଚନ୍ଦ୍ରଙ୍କ ପୂର୍ବପୁରୁଷ ରାଜାମାନଙ୍କ ଚରିତ ବର୍ଣ୍ଣିତ । ଦିଲୀପଙ୍କଠାରୁ ଆରମ୍ଭ କରି ଅଗ୍ନିବର୍ଣ୍ଣଙ୍କ ପର୍ଯ୍ୟନ୍ତ ରଘୁ-

Digitized by srujan ka@gmail.com

ବଂଶର କାହାଣୀ ବିଶଦଭାବେ ବର୍ଣ୍ଣିତ ହୋଇଅଛି । ରଘୁଙ୍କର ଦିଗ୍-ବିଜୟ ଓ ଇନ୍ଦୁମତୀ ପରିଣୟ ପ୍ରସଙ୍ଗରେ ଆମ୍ଭମାନଙ୍କ ଉତ୍କଳ ଓ କଳିଙ୍ଗର ପ୍ରାଞ୍ଜଳ ବର୍ଣ୍ଣନା ରହିଛି ।

ତାଙ୍କ ବର୍ଣ୍ଣନାରୁ ଜଣାଯାଏ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ମେଦିନୀପୁର ଜିଲ୍ଲାର ଖଡ଼ଗପୁର ପାଖେ ପ୍ରବାହିତ ହେଉଥିବା କପିଷା (କଂସାଇ) ନଦୀ ଉତ୍କଳର ଉତ୍ତର ସୀମାଥିଲ ଓ ପରବର୍ତ୍ତୀ ପଦରେ ସେ ଗଞ୍ଜାମଜିଲ୍ଲା ମଞ୍ଜୁଷା ସୀମା ଅନ୍ତର୍ଗତ ମହେନ୍ଦ୍ରଗିରି ପର୍ବତ ନିକଟରେ କଳିଙ୍ଗ ରାଜପ୍ରାସାଦର ବର୍ଣ୍ଣନା କରିଅଛନ୍ତି । ତେଣୁ କଳିଙ୍ଗର ସୀମା ମହାନଦୀଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିବା ଅନେକେ ଅର୍ଥ କରନ୍ତି । ରାମଚନ୍ଦ୍ର, ସୀତା, ଲକ୍ଷ୍ମଣପ୍ରଭୃତିଙ୍କ ଚରିତ୍ର ବର୍ଣ୍ଣନା ପୃଥିବୀର ସାହିତ୍ୟରେ ବିରଳ ।

ଏହି ପ୍ରେମମୂଳକ କାବ୍ୟରେ ମଧ୍ୟ ରାମଗିରିଠାରୁ କୈଳାସ ପର୍ଯ୍ୟନ୍ତ ଭାରତ ଭୂଗୋଳ ଯେପରି ନିପୁଣତାର ସହ ଚିତ୍ରିତ ହୋଇଛି, ତାହା ସୁଧୀ ପାଠକମାନଙ୍କୁ ଜଣା ।

ଯାହାଙ୍କ ନାମରେ ଆମଦେଶ ଭାରତବର୍ଷ ପରିଚିତ, ସେହି ଭରତଙ୍କ ପିତା ଦୁଷ୍ମନ୍ତ କିପରି କଣ୍ୱମୁନିଙ୍କ ଆଶ୍ରମରେ ବିଶ୍ୱାମିତ୍ରଙ୍କ କନ୍ୟା ଶକୁନ୍ତଳାଙ୍କ ପ୍ରେମରେ ପଡ଼ି ତାଙ୍କୁ ଗାନ୍ଧର୍ବମତରେ ବିବାହ କଲେ ଓ ତା'ର ପରିଣତି କିପରି ବିଚିତ୍ର ହୋଇଛି ତାହା ଶକୁନ୍ତଳା ନାଟକର ପ୍ରଧାନ ପ୍ରତିପାଦ୍ୟ ବିଷୟ ।

"କୁମାରସମ୍ଭବ" ହେଉଛି କାର୍ତ୍ତିକେୟଙ୍କ ଜନ୍ମ ବିବରଣୀ । କିପରି ମହାଦେବ ଶିବଙ୍କୁ ହିମାଳୟଙ୍କ କନ୍ୟା ପାର୍ବତୀ ତପସ୍ୟା-ବଳରେ ବଶୀଭୂତ କରି ତାଙ୍କୁ ବିବାହ କରିବାରୁ କୁମାର ବା କାର୍ତ୍ତିକେୟଙ୍କ ଜନ୍ମ ସମ୍ଭବ ହେଲା, ତାହା ଉକ୍ତକାବ୍ୟର ପ୍ରଧାନ ବିଷୟବସ୍ତୁ ।

Digitized by srujan ka@gmail.com

"ବିକ୍ରମୋର୍ବଶୀ" ନାଟକରେ ଉର୍ବଶୀ ଓ ପୁରୁରବାଙ୍କର ମନୋଜ୍ଞ ପ୍ରଣୟ-ପ୍ରବାହ ଭିତରେ ମନର ଆବେଦନ ଓ ସଂବେଦନ ଏକ ଅପୂର୍ବ ସମାବେଶ ଲାଭ କରିଛି ।

ପଣ୍ଡିତ ଜବାହରଲାଲ ନେହରୁ ତାଙ୍କ ଭାରତ ଆବିଷ୍କାର ପୁସ୍ତକରେ ପ୍ରସିଦ୍ଧ ଆମେରିକାବାସୀ ରାଇଡ଼ର ସାହେବଙ୍କ ମନ୍ତବ୍ୟ ପ୍ରକାଶ କରିଅଛନ୍ତି । ରାଇଡ଼ର କହନ୍ତି "ମେଘଦୂତରେ" ପ୍ରକୃତିର ବାହ୍ୟସୌନ୍ଦର୍ଯ୍ୟ ଓ ମାନବର ମାନସିକଭାବ, ହୃଦୟର ଚିତ୍ର ଏପରି ବର୍ଣ୍ଣିତ ହୋଇଅଛି ଯେ ଯାହା ଭାରତ ଚତୁର୍ଥ ଶତାବ୍ଦୀରେ ଭାବିଥିଲା ତାହା ଇଉରୋପ ଊନବିଂଶ ଶତାବ୍ଦୀରେ ଭାବିଲା । କବିତାର୍କ୍ତଭୂଷା, ଭାବପ୍ରବଣତା ଓ ମେଧାର ସମନ୍ୱୟ ତାଙ୍କ କବିତାରେ ରହିଅଛି । କାଳିଦାସଙ୍କ ଭାଷାରେ ସଂସ୍କୃତ ଓ ପ୍ରାକୃତ ଭାଷାର ମଧୁର ମିଳନ ହୋଇଅଛି ।

ମହାଯୋଗୀ ଅରବିନ୍ଦ "ଭାରତୀୟ ସଭ୍ୟତାର ମୂଳଦୁଆ" ନାମକ ପୁସ୍ତକରେ କାଳିଦାସଙ୍କ କବିତା ଓ କବି ପ୍ରତିଭା ସମ୍ବନ୍ଧରେ ଏକ ସନ୍ଦର୍ଭ ଲେଖିଛନ୍ତି । ସେ କହନ୍ତି କାଳିଦାସଙ୍କ ଲେଖାରେ କବିତା ତା'ର ଶୀର୍ଷସୀମାକୁ ଯାଇଅଛି । ସେ ଭାବ, ଭାଷା ଅନ୍ୟ କୁହାପି ଦେଖାଯାଏ ନାହିଁ । ଭାରତୀୟ ସଭ୍ୟତାର ବାଲ୍ୟାବସ୍ଥା, କୈଶୋରାବସ୍ଥା, ଯୌବନ ଓ ପୌଢ଼ାବସ୍ଥାର ସମ୍ୟକ୍‌ଚିତ୍ର ଏଥିରୁ ମିଳେ । ପ୍ରକୃତି ସଙ୍ଗେ ମାନବର ସମ୍ପର୍କ ଓ ଆଦର୍ଶ ଯୌନ ନିୟନ୍ତ୍ରଣ ଦାମ୍ପତ୍ୟ ଜୀବନ, ଜୀବନର ଆନନ୍ଦ, ଈଶ୍ୱରଭକ୍ତି ଓ ହୃଦୟର ଭାବ, ଭାଷାରେ ପ୍ରକାଶ କରାଯାଇଅଛି । ସେ କାଳର ରାଜନୀତି, ମୁନି ଆଶ୍ରମ, ସାଧାରଣ ଜୀବନ ଓ ରାଜନୀତିକ ଆକାଂକ୍ଷା ନୈତିକ ଜୀବନର ପ୍ରଗତିର ଚିତ୍ରରୁ ଆମ୍ଭେମାନେ ଦେଖିପାରୁଁ ସେକାଳର ଭାରତ ସଭ୍ୟତାର ସୋପାନରେ ଅତି ଉଚ୍ଚ ସ୍ତରକୁ ଉଠି ଯାଇ ଥିଲା ।

Digitized by srujan ka@gmail.com

ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କର "ସଂକଳନ" ନାମକ ଏକ ପୁସ୍ତକରେ କାଳିଦାସଙ୍କ ଶକୁନ୍ତଳା ନାଟକ ସମ୍ବନ୍ଧରେ ଏକ ପ୍ରବନ୍ଧ ଅଛି । ସେଥିରେ ସେକ୍‌ସପିୟରଙ୍କ ରଚିତ "ଟେମ୍ପେଷ୍ଟ" ନାଟକର କଥାବସ୍ତୁ ସଙ୍ଗେ ସେ ଏହାର ଏକ ତୁଳନାତ୍ମକ ଚର୍ଚ୍ଚା କରି ଯାଇଅଛନ୍ତି । ଯେଉଁଥିରେ ସେ ଶକୁନ୍ତଳା ନାଟକକୁ ଉଚ୍ଚତର ସ୍ଥାନ ଦେଇଛନ୍ତି । ସେ ଗତ ଶତାବ୍ଦୀର ଇଉରୋପୀୟ ମହାକବି ଗେଟେଙ୍କ ଏକ ମନ୍ତବ୍ୟ ଉଦ୍ଧାର କରିଛନ୍ତି । ତାହା ହେଉଛି ତରୁଣ ବୟସର ଫୁଲ, ପରିଣତ ବୟସର ଫଳ ମର୍ତ୍ତ୍ୟ ଓ ସ୍ୱର୍ଗକୁ ଏକତ୍ର ଦେଖିବାକୁ ଇଚ୍ଛାକଲେ ତାହା ଶକୁନ୍ତଳାରେ ପାଇବ ।" କବିଗୁରୁ କହିଛନ୍ତି "ବାହାରର ଶାନ୍ତ ଓ ସୌନ୍ଦର୍ଯ୍ୟକୁ କ୍ଷୁବ୍ଧ ନ କରି କାଳିଦାସ ତାଙ୍କର କାବ୍ୟରେ ଆଭ୍ୟନ୍ତରିଣ ଶାନ୍ତିକୁ ନିସ୍ତବ୍ଧତା ମଧ୍ୟରେ ସର୍ବଦା ସଜ୍ଜିତ କରି ରଖିଅଛନ୍ତି, ସ୍ୱର୍ଗୀୟ ଭାବଧାରା ଖେଳାଇ ଦେଇଅଛନ୍ତି ।"

କାଳିଦାସଙ୍କ ସମ୍ବନ୍ଧରେ ଅନେକ କିମ୍ବଦନ୍ତୀ ଶୁଣାଯାଏ । ସେଥିର ସତ୍ୟାସତ୍ୟ ଯାହା ହେଉ ପଛକେ ବାଲ୍ମୀକି ରାମାୟଣ ଲେଖିଗଲେ, ବ୍ୟାସ ମହାଭାରତ ଲେଖିଗଲେ ସତ୍ୟ; କିନ୍ତୁ କାଳିଦାସ ସେ ଲେଖାରୁ ପ୍ରକୃତ ରସ ଗ୍ରହଣ କରି ତାହାକୁ ଭାରତବାସୀଙ୍କ ଆଗରେ ପ୍ରାଞ୍ଜଳ ମନୋମୁଗ୍ଧକର ଭାବରେ ଥୋଇ ଦେଇଛନ୍ତି ଏବଂ ଏଥିପାଇଁ ଭାରତ ଯଥାର୍ଥରେ ତାଙ୍କପାଇଁ ଗୌରବ ଅନୁଭବ କରୁଅଛି । କାଳିଦାସ ଭାରତର ସମସାମୟିକ ସମାଜର ଜୀବନ୍ତ ଓ ବାସ୍ତବ ତଥ୍ୟମାନ ବର୍ଣ୍ଣନା କରି ସାହିତ୍ୟର ବିକାଶଧାରା ମଧ୍ୟରେ ମାନବ-ଜୀବନର ଚିରନ୍ତନ ସତ୍ୟ ଉଦ୍‌ଘାଟନ କରିଛନ୍ତି ।

ଇତି ମଧ୍ୟରେ କାଳିଦାସଙ୍କ ଜନ୍ମ ସ୍ଥାନ କେଉଁଠି ଓ ସେ କେଉଁ ପ୍ରଦେଶର ଲୋକ ବୋଲି ଅନେକ ଐତିହାସିକ ଚର୍ଚ୍ଚା

Digitized by srujan ka@gmail.com

କରୁଅଛନ୍ତି । କେତେକ କହନ୍ତି ସେ ମଧ୍ୟପ୍ରଦେଶର ଉଜ୍ଜୟିନୀ ନଗରବାସୀ । ଜଣେ ଓଡ଼ିଆ ଐତିହାସିକ କହନ୍ତି କାଳିଦାସଙ୍କ ଜନ୍ମସ୍ଥାନ ଓଡ଼ିଶାରେ । ମୋଟ ଉପରେ କାଳିଦାସ ଉତ୍କଳବାସୀ ହୋଇଥାନ୍ତୁ, ମଧ୍ୟଭାରତବାସୀ ହୋଇଥାନ୍ତୁ ବା ବଙ୍ଗବାସୀ ହୁଅନ୍ତୁ ସେ ଜଣେ ପ୍ରଧାନ ଭାରତବାସୀ ବୋଲି କହିଲେ ଯଥାର୍ଥ ହେବ । ସେ ସମଗ୍ର ଭାରତର ବର୍ଣ୍ଣନା କରି ଅଛନ୍ତି । ସେ ହିମାଳୟ ଓ ସାଗର-ହୃଦୟକୁ ଅତି ଉଚ୍ଚ ସ୍ଥାନ ଦେଇ ଅଛନ୍ତି ।

"ଅସ୍ତ୍ୟୁତ୍ତରସ୍ୟାଂ ଦିଶି ଦେବତାତ୍ମା
ହିମାଳୟୋ ନାମ ନଗାଧିରାଜଃ ।
ପୂର୍ବାପରୌ ତୋୟନିଧୀ ବଗାହ୍ୟ
ସ୍ଥିତଃ ପୃଥିବ୍ୟା ଇବ ମାନଦଣ୍ଡଃ ।

କୁମାର—୧ମ ଶ୍ଳୋକ

ହିମାଳୟକୁ ପୃଥିବୀର ମାନଦଣ୍ଡରୂପେ କାଳିଦାସ ବର୍ଣ୍ଣନା କରି ଭାରତୀୟ ଜାତୀୟ ଐକ୍ୟ ଉପରେ ଜୋର ଦେଇଛନ୍ତି । ତାଙ୍କ ରଚିତ ଭାରତୀୟ ଇତିହାସ ଓ ଧରମାଶ୍ରୟସମର୍ଥନୀୟ କାବ୍ୟରୁ ଭାରତୀୟମାନେ ପ୍ରେରଣା ପାଇବେ । ବଶିଷ୍ଠ ଉତ୍କଳୀୟ ମଧୁବାବୁ ଗାଇଛନ୍ତି । :—

ଜାତି ଇତିହାସ ଜାତିର ଦର୍ପଣ
ଚକ୍ଷୁ ସଦା ବହେ ଜାତି ପ୍ରାଣଧାର ।
କଳ କଳ ନାଦେ ଧାଇଁଛି ସେ ଧାର,
ଜାତୀୟ କୀରତି ଗାଇ ନିରନ୍ତର ।
ଶୁଣ କୀର୍ତ୍ତିର ଉଦୟେ ନାଚଇ
ଯେସନ୍ତେ ନନ୍ଦ ଦେଖି ନାଚେ ରତ୍ନାକର ।

Digitized by srujan ka@gmail.com

ତାଙ୍କ କାବ୍ୟ ସମ୍ପଦରେ ମୁଗ୍‌ଧ ହୋଇ କୌଣସି ପଣ୍ଡିତ ଗାଇଥିବା ନିମ୍ନୋକ୍ତ ଶ୍ଳୋକଟି ଯଥାର୍ଥ ପର ମନେହୁଏ ।

ପୁରା କବୀନାଂ ଗଣନା ପ୍ରସଙ୍ଗେ
କନିଷ୍ଠିକାଧିଷ୍ଠିତ—କାଳିଦାସାଃ
ଅଦ୍ୟାପି ତତ୍ତୁଲ୍ୟ କବେରଭାବାତ୍
ଅନାମିକା ସାର୍ଥବତୀ ବଭୁବ ।

ଏ ଶ୍ଳୋକର ତାତ୍ପର୍ଯ୍ୟ ଏହି ପୁରାତନ କବିମାନଙ୍କର ଗଣନା ପ୍ରସଙ୍ଗରେ କାଳିଦାସଙ୍କ ନାମ ପ୍ରଥମେ କାଣି ଆଙ୍ଗୁଳିରେ ରହିଲା । ଆଜି ସୁଦ୍ଧା ତାଙ୍କପରି କବିଙ୍କ ଅଭାବରୁ ଅନାମିକା ଅଙ୍ଗୁଳିର ନାମ ସାର୍ଥକ ହେଲା ।

## ତାଙ୍କର କତିପୟ ବାଣୀ

କେଉଁ ସବୁ ବିଷୟ ମହାସୁଖକର

ଉତ୍ତମ ସ୍ୱାସ୍ଥ୍ୟ, ମନୋମତ ସ୍ତ୍ରୀ, ଔରସଜାତ ଗୁଣବାନ୍ ପୁତ୍ର, ସୁନାମଧନ୍ୟ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ବନ୍ଧୁତା ବା ମିତ୍ରତା, ଉପଯୁକ୍ତ ସ୍ଥାନରେ ବାସ, ଅନ୍ନ ବସ୍ତ୍ରର ପ୍ରଚୁରତା, ନିତ୍ୟ ଆୟ, ଅଭିଳଷିତ ବିଷୟ ପ୍ରାପ୍ତି, ଋଣ ନ ଥିବା ଓ ସଭାରେ ସମ୍ମାନ ଲାଭ ଏ ସବୁ ମହାସୁଖକର ।

—କାଳିଦାସ

କେଉଁମାନେ ସଂସାରରେ ସମସ୍ତଙ୍କଠାରୁ
ଭକ୍ତି ଓ ଆଦର ପାଆନ୍ତି

ଯେଉଁମାନେ ମିଠା କଥା କହି ଦାନ ଦେଉଥିବେ,
ଜ୍ଞାନୀ ହୋଇ ନମ୍ର ହୋଇଥିବେ ।

Digitized by srujan ka@gmail.com

ଧନବନ୍ତ ହୋଇ ବିଷୟ୍ସ ବାସନାପ୍ରତି ମମତା ରଖି ନ ଥିବେ ।
ବୀର ହୋଇ ପରାଜିତ ଶତ୍ରୁ ପ୍ରତି କ୍ଷମା ଆଚରଣ କରୁଥିବେ,
ଏହିପରି ଲୋକମାନେ ଭକ୍ତି ଓ ସ୍ନେହ ଲାଭ କରିଥାଆନ୍ତି ।

—କାଳିଦାସ

## ଦରିଦ୍ର ହୋଇ ମଧ୍ୟ କେଉଁମାନେ ଦୁଃଖିତ ନୁହନ୍ତି

ସର୍ବଶାସ୍ତ୍ର-ବିଶାରଦ, ଉଚ୍ଚ ବଂଶଜ, ସ୍ୱାସ୍ଥ୍ୟବାନ୍ ବ୍ୟକ୍ତି, ମହତ୍ ଲୋକ ସହିତ ସମ୍ପର୍କ ରଖିଥିବା ଲୋକ, ପରାଧୀନ ନ ହୋଇ ନିଜର କୃତ୍ୟ ଚଳାଇ ପାରୁଥିବା ଲୋକ ଧନୀ ନ ହୋଇ ଥାଇ ମଧ୍ୟ ସୁଖରେ ଦିନ କଟାଇ ଥାଆନ୍ତି ।

—କାଳିଦାସ

## କେଉଁ କେଉଁ ବିଷୟରେ ବୃଦ୍ଧର ଉପଦେଶ ଗ୍ରହଣୀୟ ଏବଂ କେଉଁ କେଉଁ ବିଷୟରେ ନୁହେଁ

ବିପଦ କାଳରେ ବୃଦ୍ଧର ଉପଦେଶ ଗ୍ରହଣ କରିବ ଏବଂ ବିଗ୍ରହ କାଳରେ ବୃଦ୍ଧର ମତ ଗ୍ରହଣ କରିବ; କିନ୍ତୁ ଭୋଜନ ଓ ମୈଥୁନ ବିଷୟରେ ବୃଦ୍ଧର ଉପଦେଶ ଗ୍ରହଣ କରିବ ନାହିଁ । କାରଣ, ସ୍ୱୀୟ ପରିପାକ ଓ କାମ ଶକ୍ତିର ଅଳ୍ପତା ହେତୁ ବୃଦ୍ଧ ସମସ୍ତଙ୍କୁ ଭୋଜନ ଓ ରମଣରୁ ନିବୃତ୍ତ ହେବାକୁ ଉପଦେଶ ଦେଇଥାଆନ୍ତି ।

—କାଳିଦାସ

## କିଏ କାହାକୁ ଶତ୍ରୁଭାବରେ ଦେଖେ

ବେଶ୍ୟା ପୁତ୍ରକୁ, ଭ୍ରଷ୍ଟା ନାରୀ ପତିକୁ, ଲୋଭୀ ଭିକ୍ଷୁକକୁ, ମୂର୍ଖ ଜ୍ଞାନୀକୁ, ଅକର୍ମା ଭୂ-ସମ୍ପତ୍ତିକୁ, ଚୋର ଚନ୍ଦ୍ରମାକୁ ଓ ରୋଗୀ ଜଳକୁ ଶତ୍ରୁଭାବରେ ଦେଖେ ।

—କାଳିଦାସ

Digitized by srujan ka@gmail.com

### କବିଚନ୍ଦ୍ରଶ୍ରେଷ୍ଠ କାଳିଦାସ କହନ୍ତି

ଦୁଷ୍ଟ ଲୋକମାନଙ୍କର କିଏ ଅବା ବନ୍ଧୁ ଅଛନ୍ତି ?
ବାରମ୍ବାର ମାଗିଲେ କିଏ ଅବା ନ ରାଗେ ?
ମଧୁର ବଚନ କହୁଥିବା ଲୋକର କିଏ ଅବା ଶତ୍ରୁ ହେବ ?
ବିଦ୍ୱାନ୍ ଲୋକର ବିଦେଶ ଭ୍ରମଣରେ ଅସୁବିଧା କଅଣ ?
ବ୍ୟବସାୟୀର ଦୂର ବା ନିକଟରେ ଯାଏ ଆସେ କେତେ ?
କେଉଁ ବିଷୟାସକ୍ତ ଲୋକର ଆପଦ ଅବା ନ ଥାଏ ?
ସଂସାରରେ ଏପରି କେଉଁ ଲୋକ ଅଛି ଯେ କି ସ୍ତ୍ରୀଙ୍କ ପାଲରେ ନ ପଡ଼େ ?
କେଉଁ ଲୋକ ଅବା ଶାସନକର୍ତ୍ତା ବା ହାକିମଙ୍କର ପ୍ରିୟ ହୋଇ ସବୁବେଳେ ରହିଥାଏ ?
କାଳର କବଳରେ କିଏ ଅବା ନ ପଡ଼ି ରହିଅଛି ?
ଦୁର୍ଜନମାନଙ୍କରି କୁଟଚକ୍ରରେ ପଡ଼ି ସହଜରେ କିଏ ଅବା ଉଧୁରି ଯାଉଛି ?

### କେଉଁମାନଙ୍କୁ ବିଶ୍ୱାସ କରିବ ନାହିଁ

ଘୂରନ୍ତା ନଈ, ଶାସନକର୍ତ୍ତାଙ୍କର ଆଦର, ବ୍ୟବସାୟୀର ସ୍ନେହ ଓ ସ୍ତ୍ରୀର ଚରିତ୍ର ଏମାନଙ୍କୁ ବିଶ୍ୱାସ କରିବ ନାହିଁ ।

—କାଳିଦାସ

### କାହାର କଅଣ ନ ଥାଏ

ସ୍ୱେରର ଧର୍ମ ଅଧର୍ମର ଜ୍ଞାନ ନ ଥାଏ ।
ଅର୍ଥଲୋଭୀ ଲୋକର ଗୁରୁ ବା ବନ୍ଧୁ ବିଚାର ନ ଥାଏ ।
କାମାତୁର ଲୋକର ଭୟ ବା ଲଜ୍ଜା ନ ଥାଏ ।
କ୍ଷୁଧାତୁର ଲୋକର ସିଦ୍ଧ ଅସିଦ୍ଧ, ରୁଚି ଅରୁଚି କିଛି ବିଚାର ନ ଥାଏ ।
ବିଦ୍ୟାର୍ଥୀ ଲୋକର ସୁଖ ନ ଥାଏ କି ନିଦ୍ରା ନ ଥାଏ ।

Digitized by srujan ka@gmail.com

ଚୋରଠାରେ ଦୟା ମାୟା ନ ଥାଏ ।
ବେଶ୍ୟାର ପ୍ରକୃତ ସ୍ନେହ ନ ଥାଏ ।
ପତିବ୍ରତା ନାରୀର ସ୍ୱାମୀଠାରେ ଅଭିମାନ ନ ଥାଏ ।
ବିଟପୀ ନାରୀର ପତିଭକ୍ତି ନ ଥାଏ ।
ଲୋଭୀଲୋକର କାହାପ୍ରତି ଚକ୍ଷୁଲଜ୍ଜା ନ ଥାଏ ।
ମୂର୍ଖମାନଙ୍କର ବିବେଚନା ନ ଥାଏ ।
ବ୍ୟବସାୟୀର ଗ୍ରାହକ ପ୍ରତି ସ୍ନେହ ନ ଥାଏ ।
ଦୁର୍ଜନର କ୍ଷମାଗୁଣ ନ ଥାଏ ।
ଖଳ ଲୋକର କାହାଠାରେ ମିତ୍ରତା ନ ଥାଏ ।
ସମ୍ପଦର ସ୍ଥାୟିତ୍ୱ ନ ଥାଏ ।
କୃତକର୍ମର ଭୋଗ ବିନା ବିନାଶ ନ ଥାଏ ।

—କାଳିଦାସ

## କାହା ଠାରୁ ବଳି ଆଉ କଅଣ ନାହିଁ

ବିଦ୍ୟାଠାରୁ ବଳି ଆଉ ଧନ ନାହିଁ ।
ଲୋଭଠାରୁ ବଳି ଆଉ ଶତ୍ରୁ ନାହିଁ ।
ନିଜ ସ୍ତ୍ରୀ ଠାରୁ ବଳି ଆଉ କେହି ପ୍ରିୟପାତ୍ର ନାହିଁ ।
ପୁତ୍ର ସ୍ନେହଠାରୁ ବଳି ଆଉ ସ୍ନେହ ନାହିଁ ।
ସତ୍ୟ କହିବାଠାରୁ ଆଉ ତପସ୍ୟା ନାହିଁ ।

## କାହାପାଇଁ କାହାର ପ୍ରୟୋଜନ

ଗୃହପାଇଁ ଭାର୍ଯ୍ୟାର ପ୍ରୟୋଜନ । ବୃଦ୍ଧକାଳରେ ଭରଣ-ପୋଷଣ ଓ ମୃତ୍ୟୁପରେ ପିଣ୍ଡଦାନପାଇଁ ପୁତ୍ରର ପ୍ରୟୋଜନ । ମାଙ୍ଗଲ୍ୟ କର୍ମ କରିବାବେଳେ ମିତ୍ରର ପ୍ରୟୋଜନ । ସକଳ କାର୍ଯ୍ୟ ସମ୍ପାଦନରେ ଧନର ପ୍ରୟୋଜନ ।

—କାଳିଦାସ

Digitized by srujan ka@gmail.com

ସମୁଦ୍ରରେ ଓ ଗଙ୍ଗାରେ ସ୍ନାନ କଲେ ବ୍ରହ୍ମହତ୍ୟା ପାପ କ୍ଷୟ ହୋଇପାରେ; କିନ୍ତୁ ମିତ୍ରଦ୍ରୋହୀର ପାପ କ୍ଷୟ ହୁଏନାହିଁ ।

—କାଳିଦାସ

ମିତ୍ରଦ୍ରୋହୀ, କୃତଘ୍ନ ଓ ବିଶ୍ୱାସଘାତକ—ଏମାନେ ଚନ୍ଦ୍ରସୂର୍ଯ୍ୟ ଥିବାଯାଏ ନର୍କଭୋଗ କରନ୍ତି ।

—କାଳିଦାସ

ସୁମେରୁ ପର୍ବତ ପରି ଧନବାନ୍ ହୋଇ
ଦାନ ନ କଲେଟି କିବା ଫଳ ଅଛି ତହିଁ ।
କୁଶ ଅଗ୍ର ପରି ସୂକ୍ଷ୍ମ ବୁଦ୍ଧି ଅଛି ଯା'ର
ପଢ଼ାଶୁଣା ନ କଲେ କି ପ୍ରୟୋଜନ ତା'ର ।
କର୍ମଫଳେ ଦେହ ଧରି ଜନମ ଲଭିଣ
ଧର୍ମ ଅର୍ଥ ନ କଲେଟି କିବା ପ୍ରୟୋଜନ ?
ନାନାବିଧ କଥାକ୍ଷିଆ ଯେ ଲୋକ କରଇ
କାର୍ଯ୍ୟ ସେବେ ନ କରଇ କିବା ଫଳ ତହିଁ ।

—କାଳିଦାସ

ଗଜପୃଷ୍ଠେ ପୃଥିବୀରେ ସୁଖକୁ ଲଭନ୍ତି;
କିନ୍ତୁ ସ୍ୱର୍ଗ ସୁଖ ଜାଣ ବଞ୍ଚିତ ହୁଅନ୍ତି ।
ମୂଢ଼ଜନ ସବୁ ସୁଖ ସ୍ୱର୍ଗରେ ଲଭଇ;
କିନ୍ତୁ ଦୁଃଖେ ଭୂତଳରେ ସମସ୍ତ କାଟଇ ।
ସାଧୁମାନେ ମର୍ତ୍ତ୍ୟ ଲୋକେ ଅବା ସ୍ୱର୍ଗ ଧାମେ
ସୁଖ ଭୋଗ କରନ୍ତି ସେ ଆନନ୍ଦିତ ମନେ ।
କିନ୍ତୁ ଭିକ୍ଷୁକର ସୁଖ ନାହିଁ କେଉଁଠାରେ
କାଳିଦାସ କହିଛନ୍ତି ସଂସାର ବେଦୀରେ ।

—କାଳିଦାସ

— — —

Digitized by srujan ka@gmail.com

# ଭକ୍ତକବି ଜୟଦେବ

## କବିଚନ୍ଦ୍ର ଶ୍ରୀ କାଳୀଚରଣ ପଟ୍ଟନାୟକ

ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରର ଅନତିଦୂରସ୍ଥ ପ୍ରାଚୀନଙ୍କ ତଟଭାଗରେ କେନ୍ଦୁବିଲ୍ୱ ଶାସନ ଅବସ୍ଥିତ । ଗ୍ରାମଟିରେ ପ୍ରଚୁର ପରିମାଣ କେନ୍ଦୁ ଓ ବେଲଗଛ ଦେଖିବାକୁ ମିଳେ । ତେଣୁ ଏହା କେନ୍ଦୁବିଲ୍ୱ ବୋଲାଉଥିବା ଅସ୍ୱାଭାବିକ ନୁହେ । ଚଳନ୍ତି କଥାରେ ଲୋକେ କେନ୍ଦୁବିଲ୍ୱ ଶାସନକୁ କେନ୍ଦୁଲି ଶାସନ କହନ୍ତି ।

ପୁରାଣପ୍ରସିଦ୍ଧ ପୁଣ୍ୟତୋୟା ପ୍ରାଚୀ, କୁଶଭଦ୍ରା ଓ ଧନୁଆଁ ନାମକ ତିନିଗୋଟି ନଦୀର ମିଳନସ୍ଥଳୀରେ ସ୍ଥିତ କେନ୍ଦୁଲି ଏକ ବହୁ ପୁରାତନ ଗ୍ରାମ । ତିନିଗୋଟି ନଦୀର ଏହି ମିଳନସ୍ଥଳ ତ୍ରିବେଣୀ ସଙ୍ଗମ ନାମରେ ଅଭିହିତ । ପ୍ରାଚୀ ମାହାତ୍ମ୍ୟରେ ପ୍ରାଚୀ ନଦୀର ପବିତ୍ରତା ସମ୍ବନ୍ଧେ ବିଶେଷ ବର୍ଣ୍ଣନା ଦୃଷ୍ଟହୁଏ । ତ୍ରିବେଣୀ ସ୍ନାନରେ ପୁଣ୍ୟାର୍ଜନ ଉତ୍କଳର ପରମ୍ପରା ପ୍ରସିଦ୍ଧ ।

କେନ୍ଦୁଲି ବର୍ତ୍ତମାନ ପିପିଲି ଥାନା ଅନ୍ତର୍ଗତ ନ ୪୮୫ ନମ୍ବର ଗ୍ରାମ; ଏହି କେନ୍ଦୁଲି ଶାସନରେ ନବମ, ଦଶମ ଶତାବ୍ଦୀରେ ବିଖ୍ୟାତ ମାଧବ ମଠର ନିର୍ମିତ ହୋଇଥିଲା । ଏହାଛଡ଼ା ପ୍ରାୟ ୧୨ ଗୋଟି ବୃହତ୍ ମାଧବ ମୂର୍ତ୍ତି ଏହି ଗ୍ରାମରେ ବିରାଜିତ । ପ୍ରାଚୀ କୂଳେ କୂଳେ ମଧ୍ୟ ଅନ୍ୟାନ୍ୟ ଗ୍ରାମମାନଙ୍କରେ ବହୁ ମାଧବ ମୂର୍ତ୍ତି ସମ୍ପୂଜିତ । ଏହି

Digitized by srujan ka@gmail.com

ମାଧବପ୍ରାଚୁର୍ଯ୍ୟ ସ୍ଥଳୀ କେନ୍ଦୁଲି ଶାସନରେ ଜନ୍ମଗ୍ରହଣ କରିଥିଲେ ମହାକବି ଜୟଦେବ । ତେଣୁ ସେ ମାଧବ-ଭକ୍ତ ହେବା ସ୍ୱାଭାବିକ । ତାଙ୍କ ଅମର ଲେଖନୀର କୃତି ଶ୍ରୀ ଗୀତଗୋବିନ୍ଦର ପ୍ରଥମ ଶ୍ଳୋକ ପାଠରୁ ମଧ୍ୟ ଏକଥା ସ୍ପଷ୍ଟ ଜଣାପଡ଼େ । ମହାକବି "ରାଧାମାଧବୟୋର୍ଜୟନ୍ତି" ବୋଲି ଲେଖି ଗୀତି କାବ୍ୟଟି ଆରମ୍ଭ କରିଛନ୍ତି ।

କବି ଚନ୍ଦ୍ରଦତ୍ତ ଜୟଦେବଙ୍କ ଜୀବନୀ ଆଲୋଚକଙ୍କ ମଧ୍ୟରେ ପ୍ରାଚୀନତମ ସେ ଲେଖିଛନ୍ତି:—

"ଜଗନ୍ନାଥ ପୁରୀ ପ୍ରାନ୍ତେ ଦେଶେ ଚୈବୋତ୍କଳାଭିଧଃ
କେନ୍ଦୁବିଲ୍ୱ ଇତିଖ୍ୟାତୋ ଗ୍ରାମୋ ବ୍ରାହ୍ମଣସଂକୁଳଃ
ତତ୍ରୋତ୍କଳେ ଅଭୂତ୍ ଦ୍ୱିଜୋ ଜୟଦେବ ଇତିଶ୍ରୁତଃ
ବିଦ୍ୟାଭ୍ୟାସରତଃ ଶାନ୍ତଃ ପୁରୁଷୋତ୍ତମପୂଜକଃ ।"

କେନ୍ଦୁଲି ସୁନ୍ଦର କସ୍ତାଲାଗି ପ୍ରସିଦ୍ଧ । ଏହି ଗ୍ରାମରେ ପ୍ରସ୍ତୁତ 'ଫେଟା' ବା ଓଢ଼ଣୀ ଅତି ଚମତ୍କାର । ଶ୍ରୀ ଜଗନ୍ନାଥଙ୍କ ଶ୍ରୀ ଅଙ୍ଗରେ ଏହା ଲାଗି କରିବାର ପ୍ରସିଦ୍ଧି ଅଛି । ମାଦଳା ପାଞ୍ଜିର 'ଫେଟା' ଲାଗି କଥାକୁ ଲିପିବଦ୍ଧ କରି ରଖିଛି ।

ସାଧୁପ୍ରବର ଜୟଦେବ ନିମ୍ବାର୍କ ପନ୍ଥାବଲମ୍ବୀ, ତେଣୁ ସେ ରାଧାବାଦର ବିଶିଷ୍ଟ ପ୍ରଚାରକ । ଶ୍ରୀ ଗୀତଗୋବିନ୍ଦ ଏହି ରାଧା-ମାଧବଙ୍କ ବିରହ ମିଳନକୁ ଭିତ୍ତିକରି ରଚିତ ହୋଇଅଛି ।

ଶ୍ରୀ ପୁରୁଷୋତ୍ତମ ଧାମରେ ଦେବୀ ପଦ୍ମାବତୀଙ୍କ ସହିତ ତାଙ୍କର ଶୁଭପରିଣୟ ସଙ୍ଘଟିତ ହୋଇଥିଲା । ଶ୍ରୀ ମନ୍ଦିରରେ କବି ନିଜେ ତାଙ୍କ ରଚିତ ଗୀତଗୋବିନ୍ଦ ଗୀତିନାଟ୍ୟର ଗୀତମାନ ସୁସ୍ୱରରେ ଗାୟନ କରୁଥିଲେ ଏବଂ ପଦ୍ମାବତୀ ଜଗନ୍ନାଥ ଦେବଙ୍କ ସମ୍ମୁଖରେ ଗୀତତାଳରେ ଛନ୍ଦେ ଛନ୍ଦେ ଅପୂର୍ବ ନୃତ୍ୟ ପ୍ରଦର୍ଶନ କରୁଥିଲେ ।

Digitized by srujan ka@gmail.com

ଭକ୍ତମାଳା ଗ୍ରନ୍ଥାକାର ଏ ସମ୍ବନ୍ଧରେ ଲେଖିଛନ୍ତି—

"ଜଗୌ ତୌ ଦମ୍ପତୀ ତତ୍ର ଏକପ୍ରାଣୌ ବଭୂବତୁଃ
ନୃତ୍ୟନ୍ତୌ ଗୃପିଗୋପ୍ୟାନ୍ତୌ ଶ୍ରୀକୃଷ୍ଣାର୍ଚ୍ଚନ ତତ୍ପରୌ ।"

ଶ୍ରୀ ଗୀତଗୋବିନ୍ଦ ଭାରତର ପ୍ରଥମ ସଙ୍ଗୀତ ରଚନା । ପରବର୍ତ୍ତୀ ଓଡ଼ିଶାର ଛନ୍ଦ ଓ ସଙ୍ଗୀତକାର କବିମାନେ ଶ୍ରୀ ଗୀତ-ଗୋବିନ୍ଦର ରାଗ, ତାଳ, ଭାଷା ଓ ଅଳଙ୍କାର ଇତ୍ୟାଦି ଅନୁ-ସରଣରେ ବହୁଗୀତ ଓ ଗୀତିକାବ୍ୟ ରଚନା କରିଛନ୍ତି ।

ରାଧାଭାବରେ ମୁଗ୍ଧ ସାଧୁପ୍ରବର ଜୟଦେବଙ୍କୁ ବାସ୍ତବରେ ପ୍ରେରଣା ଦେଉଥିଲେ ଭକ୍ତିମତୀ ଦେବୀ ପଦ୍ମାବତୀ । ମହାକବି ଶ୍ରୀ ଗୀତଗୋବିନ୍ଦରେ ସ୍ୱୟଂ ଲେଖିଛନ୍ତି :—

"ବାକ୍‌ଦେବତା ଚରିତ ଚିତ୍ରିତ ଚିତ୍ତସଦ୍ମା
ପଦ୍ମାବତୀଚରଣଚାରଣ-ଚକ୍ରବର୍ତ୍ତୀ
ଶ୍ରୀ ବାସୁଦେବରତିକେଳି କଥା-ସମେତ
ମେତଂ କରୋତି ଜୟଦେବକବିଃ ପ୍ରବନ୍ଧଂ ।"

ଅର୍ଥାତ୍ ଶ୍ରୀ ଗୀତଗୋବିନ୍ଦ ଗୀତିକାବ୍ୟରେ ମହାକବି ଶ୍ରୀକୃଷ୍ଣଙ୍କ ଚରିତ ବର୍ଣ୍ଣନା କରିଛନ୍ତି । ସେ ପଦ୍ମାବତୀଙ୍କର ନୃତ୍ୟଗୁରୁ ।

ଜୟଦେବଙ୍କ ସଂଗୀ ଥିଲେ ପରାଶର । ସେ ଗୀତଗୋବିନ୍ଦ ଗାୟନ କରୁଥିବା କଥା ମହାକବି ଶ୍ରୀ ଗୀତଗୋବିନ୍ଦରେ ଉଲ୍ଲେଖ କରି କହିଛନ୍ତି :—

"ପରାଶରାଦି ପ୍ରିୟବନ୍ଧୁକଣ୍ଠେ
ଶ୍ରୀ ଗୀତଗୋବିନ୍ଦ କବିତ୍ୱମସ୍ତୁ ।"

Digitized by srujan ka@gmail.com

ଭାରତର ବିଭିନ୍ନ ଅଞ୍ଚଳରୁ ଅଗଣିତ ଯାତ୍ରୀ ଜଗନ୍ନାଥ ଦର୍ଶନ ଲାଗି ପ୍ରତ୍ୟହ ନୀଳାଚଳ-ଧାମକୁ ଆସନ୍ତି । ଶ୍ରୀ ଗୀତଗୋବିନ୍ଦର ସରଳ ତରଳ ମଧୁର କାନ୍ତପଦାବଳୀ ମଣ୍ଡିତ ସଂଗୀତ ସେମାନଙ୍କୁ ମୁଗ୍ଧ କରେ ଏବଂ ତାହା ସହଜରେ ସେମାନଙ୍କର ସ୍ମରଣ ରହିଯାଏ । ଶ୍ରୀ ଗୀତଗୋବିନ୍ଦ ଏହିପରି ଭିନ୍ନ ସମୟରେ ବିଭିନ୍ନ ପ୍ରାନ୍ତବାସୀ ଭକ୍ତମାନଙ୍କଦ୍ୱାରା ପ୍ରଚୁର ପ୍ରସାର ଲାଭ କରିପାରି ଅଛି ।

ଅମର କବି ଜୟଦେବଙ୍କ ରଚନା ଆଜି ମଧ୍ୟ ଜଗନ୍ନାଥଙ୍କ ନୀତିରୂପେ ଶ୍ରୀ ମନ୍ଦିରରେ ଗୀତ ହେଉଅଛି । ଶ୍ରୀ ଜଗନ୍ନାଥଦେବଙ୍କ ଶ୍ରୀ ଚରଣର ପଞ୍ଚସେବକ ଜୟଦେବଙ୍କ ଗୀତିକାବ୍ୟ ପାଠ କଲେ ଏକଥା ପୂର୍ଣ୍ଣବିଶ୍ୱାସ ହୁଏ ଯେ, ତାଙ୍କର ଲୀଳାପ୍ରଚାର ଓ ପ୍ରସାର-କଳ୍ପେ ସତେ ଅବା ଶ୍ରୀ ଗୀତଗୋବିନ୍ଦକାର ମହାକବି ଉତ୍କଳ ପ୍ରାନ୍ତରେ ଜନ୍ମଗ୍ରହଣ କରିଥିଲେ ।

ବାସ୍ତବରେ ତାଙ୍କ ସମସର ଭକ୍ତପ୍ରାଣ କବିବର "ନଭୂତୋ, ନ ଭବିଷ୍ୟତି ।"

———

Digitized by srujan ka@gmail.com



# ସେକ୍‌ସପିୟରଙ୍କ ପ୍ରତିଭା

ବ୍ୟୁତ୍‌କେଶ ତ୍ରିପାଠୀ

ସେକ୍‌ସପିୟର ବିଶ୍ୱବିଖ୍ୟାତ ଇଂରେଜ କବି ଓ ନାଟ୍ୟକାର । ଷୋଡ଼ଶ ଶତାବ୍ଦୀର ଶେଷଭାଗ ଓ ସପ୍ତଦଶ ଶତାବ୍ଦୀର ପ୍ରଥମଭାଗ ହେଉଛି ତାଙ୍କର ରଚନାକାଳ । ମଧ୍ୟଯୁଗରେ ଇଂଲଣ୍ଡ ଏକ ଅନୁନ୍ନତ ରାଜ୍ୟ ଥିଲା । କ୍ରମେ କ୍ରମେ ୟୁରୋପୀୟ ସଭ୍ୟତା, ସଂସ୍କୃତି ଓ ସଂପଦର ଉନ୍ନତି ହେଲା । ସେମାନେ ସାରା ପୃଥିବୀରେ ବାଣିଜ୍ୟ

Digitized by srujan ka@gmail.com

ବିସ୍ତାର କଲେ । ୧୪୯୮ରେ ଭାସ୍କୋଡାଗାମା ଭାରତ ଆସିବାପାଇଁ ଜଳପଥ ଆବିଷ୍କାର କଲେ । ସେହିପରି କଲମ୍ବସ୍ ଆମେରିକା ଆବିଷ୍କାର କଲେ । ୟୁରୋପ ସମୃଦ୍ଧ ହେଲା । ଏଥିମଧ୍ୟରେ ଗ୍ରୀକ୍‌ସଭ୍ୟତାର ପୀଠ କନଷ୍ଟାଣ୍ଟିନୋପ୍‌ଲ୍‌ର ତୁର୍କି ଆକ୍ରମଣରେ ପତନ ପରେ ବିଦ୍ୱାନ ଗ୍ରୀକ୍ ପଣ୍ଡିତମାନେ ୟୁରୋପକୁ ଚାଲିଗଲେ । ଫଳରେ ୟୁରୋପ ଗ୍ରୀକସଭ୍ୟତାର ନୂତନ ଆଲୋକରେ ଉଦ୍‌ଭାସିତ ହୋଇଗଲା ଓ ସାରା ମହାଦେଶରେ ସାଂସ୍କୃତିକ ଜାଗରଣ ଦେଖାଦେଲା । ଷୋଡ଼ଶ ଶତାବ୍ଦୀର ଶେଷ ଭାଗରେ ଇଂଲଣ୍ଡରେ ଏ ନବଯୁଗର ଅଭ୍ୟୁଦୟ ହେଲା । ରାଣୀ ଏଲିଜାବେଥ (ପ୍ରଥମ) ଙ୍କର ରାଜତ୍ୱ କାଳରେ ଐଶ୍ୱର୍ଯ୍ୟ ଓ ସଂସ୍କୃତିର ଅଭ୍ୟୁତ୍ଥାନ ଯୋଗୁଁ ଇଂଲଣ୍ଡ ସମୃଦ୍ଧି ଲାଭ କଲା । କଳା, ସାହିତ୍ୟ, ବିଜ୍ଞାନ ଓ ବାଣିଜ୍ୟର ଆଧୁନିକ ଯୁଗର ଆରମ୍ଭ ଏହି ସମୟରୁ, ଏହି ନବଜାଗରଣ ସମୟରେ ସେକ୍‌ସପିୟରଙ୍କ ଜନ୍ମ । ତାଙ୍କ ଜୀବନ ବିଷୟରେ ବିଶଦ ବିବରଣୀ ଏପର୍ଯ୍ୟନ୍ତ ଜଣା ପଡ଼ିନାହିଁ । ତେବେ ସେ ଏକ ମଧ୍ୟବିତ୍ତ ପରିବାର-ର ଜନ୍ମ ଗ୍ରହଣ କରିଥିଲେ । କିମ୍ବଦନ୍ତୀ ଅଛି ସେ ସେ ପିଲାଦିନେ ଦୁଷ୍ଟ ଥିଲେ ଓ ପାଠଶାଠ ପଢ଼ି ନ ଥିଲେ; କିନ୍ତୁ ତାଙ୍କର ଜ୍ଞାନଦୃଷ୍ଟିରୁ ଏହା ସମୀଚୀନ ନୁହେଁ । ସେ ପାଠ ପଢ଼ିଥିଲେ ଓ ନାଟ୍ୟଜଗତକୁ ଆସିବା ପୂର୍ବରୁ ଦୁଏତ ଶିକ୍ଷକତା କରୁଥିଲେ । ସେକ୍‌ହପିୟରଙ୍କ ବାଲ୍ୟଜୀବନ ବା ଯୌବନାବସ୍ଥା ସମ୍ବନ୍ଧରେ ଚର୍ଚ୍ଚା କରିବାରେ କୌଣସି ଆବଶ୍ୟକତା ନାହିଁ; କିନ୍ତୁ ସେ କ'ଣ ଲେଖି ଯାଇଛନ୍ତି ତାହା ଦେଖିବାର କଥା । ତାଙ୍କର ଲିଖିତ ଛତିଶଟି ନାଟକ ଓ ଅନେକ କବିତା ଅମର ଆଲେଖ୍ୟ । ନାଟକମାନଙ୍କ ମଧ୍ୟରେ ଟ୍ରାଜେଡ଼ି, କମେଡ଼ି, ଐତିହାସିକ ନାଟକ ରୋମାନସ୍ ଇତ୍ୟାଦି ସବୁପ୍ରକାର ନାଟକ ସେ ଲେଖିଥିଲେ । ସେ ତାଙ୍କ ନାଟକ

Digitized by srujan ka@gmail.com

ମାଧ୍ୟମରେ ସମଗ୍ର ଇଂରେଜ ଭାଷାଭାଷୀ ରାଜ୍ୟକୁ ଏକ ସୂତ୍ରରେ ବାନ୍ଧି ଅଛନ୍ତି । ବର୍ତ୍ତମାନ ଯୁଗରେ ଇଂରେଜୀ ଭାଷା ପୃଥିବୀର ଶ୍ରେଷ୍ଠତମ ଓ ସର୍ବବ୍ୟାପୀ ଭାଷା ହୋଇଥିବାରୁ ତାଙ୍କ ରଚନାଦ୍ୱାରା ସମଗ୍ର ପୃଥିବୀରେ ମାନବଜାତି ସମ୍ମାନ ଲାଭ କରିଅଛି ।

ଖ୍ୟାତିସମ୍ପନ୍ନ ଇଂରେଜ ଐତିହାସିକ ଓ ଏକ ସମୟରେ ଭାରତ-ବର୍ଷର ଆଇନ ମନ୍ତ୍ରୀଥିବା ଲର୍ଡ ମାକଲେ କହିଛନ୍ତି ଯେ ସେକ୍‌ସ-ପିୟରଙ୍କ ସମକକ୍ଷ କବି ଏପର୍ଯ୍ୟନ୍ତ କେହି ଜାତ ହୋଇ ନାହାନ୍ତି । ଅଧିକନ୍ତୁ ତାଙ୍କ ପଛକୁ ଦ୍ୱିତୀୟ କିଏ ଏପର୍ଯ୍ୟନ୍ତ ବାହାରି ନାହାନ୍ତି ।

ବେନଜନସନ କହିଛନ୍ତି "ସେକସପିୟର କେବଳ ଗୋଟାଏ ଯୁଗର କବି ନ ଥିଲେ । ସେ ସର୍ବକାଳର କବି ।"

ବିଶ୍ୱଶ୍ରେଷ୍ଠ କବି ମିଲ୍‌ଟନ୍ କହିଛନ୍ତି "ସେକ୍‌ସପିୟର କଳ୍ପନାର ସନ୍ତାନ ।"

କବି ଡ୍ରାଇଡେନ କହିଛନ୍ତି ସେକ୍‌ସପିୟରଙ୍କ ଐନ୍ଦ୍ରଜାଲିକ କୁହୁକମନ୍ତ୍ର ଲେଖାକୁ କେହି ଅନୁସରଣ କରି ପାରିବେ ନାହିଁ ।

କବିବରବର୍ଟ ବ୍ରାଉନିଙ୍ଗ କହିଛନ୍ତି ସେକ୍‌ସପିୟରଙ୍କ ନାମ ଉଚ୍ଚାରଣ କଲା ପରେ ନମ୍ରବଧିତା ଆସେ । କାରଣ ସେ କ'ଣ ନ କହିଛନ୍ତି, କ'ଣ ଗାଇ ନାହାନ୍ତି, ଓ ବାକି କ'ଣ ଅଛି ? ଏହା ଭାବି ଚୁପ ରହିବାକୁ ହୁଏ ।

ସୁଖ୍ୟାତ ଇଂରେଜ ଦାର୍ଶନିକ କାରଲାଇଲ୍ କହିଛନ୍ତି "ଯେବେ ଆମକୁ କିଏ ପଚାରେ ବୃଟିସ୍ ଭାରତ ଅଧିକାର ଓ ସେକ୍‌ସପିୟର ଏହି ଦୁଇଟି ଭିତରୁ ଗୋଟିଏ ଘେନ, ତେବେ ଆମେ କହିବୁ ଆମର ଭାରତ ଦରକାର ନାହିଁ । ଆମେ ସେକ୍‌ସପିୟରଙ୍କୁ ଛାଡ଼ି ପାରିବୁ

Digitized by srujan ka@gmail.com

ନାହିଁ । ପୃଥିବୀ ସୃଷ୍ଟିହେବାଠାରୁ ଏପରି ମହତ୍ ନିର୍ମଳ ଓ ଜାଜ୍ଜ୍ୱଲ୍ୟ-ମାନ ମେଧାଶକ୍ତିଥିବାବ୍ୟକ୍ତି ଜାତ ହୋଇନାହାନ୍ତି ।

ଆଧୁନିକ ଯୁଗର ବିଶ୍ୱବିଖ୍ୟାତ ଇଂରେଜ ଲେଖକ ଜର୍ଜ ବାର୍ଣ୍ଣାର୍ଡ୍ ଶ ଲେଖିଛନ୍ତି ଯେ "ସେକ୍‌ସପିୟର ମାନବଜୀବନର ସମସ୍ତ ବିଶ୍ୱ ବ୍ରହ୍ମାଣ୍ଡ ଆଗରେ ଥୋଇଦେଇଛନ୍ତି । ଚୋର, ଡକାୟତ, କପଟାଚାରୀ, ମଦ୍ୟପ, ଭିକ୍ଷୁ, ଷଡ଼ଯନ୍ତ୍ରକାରୀ, ଯୋଦ୍ଧା, ପ୍ରଣୟୀ, ଦେଶହିତୈଷୀ, ଦାର୍ଶନିକ, ରାଜା ଓ ରାଜପୁତ୍ର ସମସ୍ତଙ୍କୁ ଚିତ୍ର କରି ତାଙ୍କର ମିଳନାତ୍ମକ ଓ ବିରହାତ୍ମକ ନାଟକମାନଙ୍କରେ ବିଶ୍ୱବ୍ରହ୍ମାଣ୍ଡ ପାଇଁ ଓ ଚିରକାଳପାଇଁ ବିଶ୍ୱବାସୀଙ୍କ ଆଗରେ ସଜାଇ ଦେଇଛନ୍ତି ।"

ସେକ୍‌ସପିୟରଙ୍କ ନାଟକ ମଧ୍ୟରେ ହେନେରୀ ଦି ଫୋର୍ଥ ରିଚାର୍ଡ୍ ଥାର୍ଡ୍, ମର୍ଚ୍ଚେଣ୍ଟ ଅଫ ଭେନିସ୍, ଟ୍ୱେଲ୍‌ଫଥ୍ ନାଇଟ, ଅଜ୍‌ସ୍ ଲାଇକ୍ ଇଟ୍, ହାମଲେଟ୍, ମ୍ୟାକବେଥ, ଅଥେଲୋ, କିଙ୍ଗଲିଅର, ଜୁଲିଅସ ସିଜର, ଆଣ୍ଟୋନି ଆଣ୍ଡ କ୍ଲିଓପାଟ୍ରା ଓ ଟେମ୍ପେଷ୍ଟ ଆଦି ପ୍ରଧାନ । ତାଙ୍କ ରଚନାଗୁଡ଼ିକ ୟୁରୋପର ସମସ୍ତ ଦେଶମାନଙ୍କର ଐତିହାସିକ ଘଟଣା ଓ କିମ୍ବଦନ୍ତୀନେଇ ରଚିତ । ଗତ ୧୯୬୪ରେ ସେକ୍‌ସପିୟରଙ୍କ ଚାରିଶତ ଜନ୍ମଜୟନ୍ତୀ ହୋଇଥିଲା; ସମଗ୍ର ବିଶ୍ୱରେ ପୃଥିବୀର ସମସ୍ତ ବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟମାନଙ୍କ ପାଠ୍ୟକ୍ରମରେ ନିଶ୍ଚୟ ନା ନିଶ୍ଚୟ ସେକ୍‌ସପିୟରଙ୍କର ଗୋଟାଏ ନାଟକ ପାଠ୍ୟ ବସ୍ତୁରୂପେ ରହି ଆସୁଅଛି ।

ସେକ୍‌ସପିୟର ଇଂରାଜୀ ଭାଷାକୁ ଏକ ଗ୍ରନ୍ଥରେ ପକାଇ ଦେଇ ଅଛନ୍ତି । ନାଟକ ଛଡ଼ା ସେକ୍‌ସପିୟର ଅନେକଗୁଡ଼ିଏ ସନେଟ (ଚତୁର୍ଦ୍ଦଶପଦୀ) ଓ କେତେକ କବିତା ଲେଖି ଅଛନ୍ତି ।

Digitized by srujan ka@gmail.com

ସାହିତ୍ୟ ହେଉଛି ସଭ୍ୟତାର ପ୍ରତୀକ । ସେକ୍‌ସପିୟରଙ୍କ ସାହିତ୍ୟ ଇଉରୋପୀୟ ସଭ୍ୟତାକୁ ଗତ ତିନିଶତ ବର୍ଷ ଭିତରେ ବିଶେଷ ଅଗ୍ରସର କରାଇଅଛି । ସାହିତ୍ୟର ବିଶେଷ ଅଙ୍ଗ ହେଉଛି ନାଟକ । ଏହା ଦୃଶ୍ୟ କାବ୍ୟ, ମାନବଜାତିର ଭାବ ଓ ଆକାଙ୍‌କ୍ଷା-ନିରୂପଣ ଓ ବିଶ୍ଳେଷଣ କରିବାରେ ଏକ ବିଶେଷ ମାଧ୍ୟମ । ଏହି ମାଧ୍ୟମରେ ମନୁଷ୍ୟର ଅବତାରଣା କରିଛନ୍ତି ନାନା ଭାବରେ । ଫଳତଃ ତାଙ୍କର ନାଟକରେ ସେକ୍‌ସପିୟର ଗୋଟିଏ ନୂତନ ଜଗତ ଗଢ଼ିଛନ୍ତି । ତାଙ୍କର ରଚନାବଳୀ ସମଗ୍ର ପୃଥିବୀରେ ଚିର-କାଳପାଇଁ ଆଦର୍ଶ ସାହିତ୍ୟରୂପେ ସ୍ଥାନ ପାଇବ । ସେ ସଂସ୍କୃତ କବି କାଳିଦାସଙ୍କ ପରି କୌଣସି ଗୋଟିଏ ଯୁଗର ନୁହନ୍ତି । ତାଙ୍କ ବର୍ଣ୍ଣନା-ଭଙ୍ଗୀ, ଚରିତ୍ର-ଚିତ୍ରଣ, ବଳିଷ୍ଠ ଭାଷା ଓ ହାସ୍ୟରସର ଅବତାରଣା ଏତେ ଉଚ୍ଚକୋଟୀର ଯେ, ତାଙ୍କୁ ମହାକବି ଆଖ୍ୟା ଦିଆଯାଇଥାଏ ।

°

ସେକ୍‌ସପିୟରଙ୍କର ରଚନାବଳୀ ଓ ଆଲୋଚନାମାନ ଇଂରାଜୀରୁ ପୃଥିବୀର ବିଭିନ୍ନ ଭାଷାକୁ ଭାଷାନ୍ତରିତ ହୋଇଅଛି । ଏ ପର୍ଯ୍ୟନ୍ତ ପୃଥିବୀରେ ଯେଉଁ ବହି ସବୁ ବିକ୍ରି ହୋଇଅଛି ତହିଁ ମଧ୍ୟରେ ବାଇବେଲ୍ ପ୍ରଥମସ୍ଥାନ ଓ ସେକ୍‌ସପିୟରଙ୍କ ରଚନାବଳୀ ଦ୍ୱିତୀୟସ୍ଥାନ ଅଧିକାର କରିଅଛି । ଗାନ୍ଧୀ କହନ୍ତି "ବାଇବେଲ୍ ବିନା ଇଂରେଜୀଭାଷା ଅନ୍ତଃସାରଶୂନ୍ୟ । ଇଂରେଜଭାଷାର ବାର-ପଣ ବାଇବେଲ୍ ଓ ଚାରିପଣ ସେକ୍‌ସପିୟର ରଚନାବଳୀ । ମହାତ୍ମାଗାନ୍ଧୀ କହନ୍ତି, "ଇଂରେଜୀ ଭାଷା ଆନ୍ତର୍ଜାତୀୟ ବାଣିଜ୍ୟର ଭାଷା, ଏହା କୂଟନୀତିର ଭାଷା । ଏ ଭାଷାରେ ବହୁ ସାହିତ୍ୟିକ ସଂପଦ ପୂରି ରହିଛି । ଏହା ପାଶ୍ଚାତ୍ୟ ଚିନ୍ତା ଓ ସଂସ୍କୃତିର ଝରକା ।"

Digitized by srujan ka@gmail.com

ଜହରଲାଲ କହନ୍ତି—"ଆଧୁନିକ ପୃଥିବୀରେ ଇଂରାଜୀ ଭାଷା-ଭବନର ଜଣକଦ୍ୱାର ଭଳି ବିବେଚିତ ହୋଇଅଛି । ଏ ଝରକାକୁ ବନ୍ଦ କରିଦେବାର ସାହସ ଆମର ହୋଇନାହିଁ । ଯଦି ଏହା ଆମେ ବନ୍ଦ କରିଦେବା, ତେବେ ଆମର ବହୁତ କ୍ଷତି ଘଟିବ । ଆମର ଭବିଷ୍ୟତ କ୍ଷୁଣ୍ଣ ହେବ ।

ଭାରତର ବଶିଷ୍ଟ ଭାଷାବିତ୍ ଡକ୍ଟର ସୁନୀତିକୁମାର ଚାଟାର୍ଜୀ କହନ୍ତି "Engilsh is the language through which we receive air and light from the out side world." ପୃଥିବୀରେ ଏପରି କୌଣସି ଦେଶ ନାହିଁ ଯେଉଁ ଦେଶରେ ଇଂରେଜୀ ଭାଷା କଥିତ ହୁଏ ନାହିଁ । ପୃଥିବୀର ପ୍ରତି ପାଞ୍ଚ ଜଣରୁ ଜଣେ ବା ୬୦ (ଷାଠିଏ) କୋଟି ଲୋକ ଇଂରେଜୀ ଭାଷା କହନ୍ତି ।

———

Digitized by srujan ka@gmail.com

# ଭଞ୍ଜ-ପ୍ରତିଭା

## ଅଧ୍ୟାପକ ଗୌରୀକୁମାର ବ୍ରହ୍ମା

ସମଗ୍ର ଭାରତୀୟ—ସାହିତ୍ୟମଧ୍ୟରେ ଭଞ୍ଜ ଭାରତୀ ବିଲକ୍ଷଣ ପ୍ରତିଭା-ବିଳସିତ । ଭଞ୍ଜ ସାହିତ୍ୟରେ ପାଣ୍ଡିତ୍ୟ ଓ ପ୍ରତିଭାର ସମନ୍ୱୟ ଅଦ୍ଭୁତ ଭାବରେ ପରିସ୍ଫୁଟ । ବ୍ୟାପକତା, ଗଭୀରତା, ବିଦଗ୍ଧତା, ଓ ବିଲକ୍ଷଣତା, ଏହି ସମସ୍ତ ଗୁଣମାଧ୍ୟମରେ ଭଞ୍ଜ ସାହିତ୍ୟର ଉତ୍କୃଷ୍ଟ ପରିଚୟ ପ୍ରଦାନ କରାଯାଇପାରେ । ଉତ୍କଳରେ ଭଞ୍ଜଙ୍କର ଆବିର୍ଭାବ କାଳପର୍ଯ୍ୟନ୍ତ ଭାରତୀୟ ପ୍ରାଦେଶିକ ସାହିତ୍ୟ-ମାନଙ୍କରେ ଏବଂ ସଂସ୍କୃତ ସାହିତ୍ୟରେ ଏଭଳି କୌଣସି ବିଶେଷତ୍ୱ ପ୍ରକଟିତ ହୋଇନାହିଁ, ଯାହା ଭଞ୍ଜ ସାହିତ୍ୟରେ ଅନୁପଲବ୍ଧ ।

ସପ୍ତଦଶଶତକର ତୃତୀୟ ପାଦରେ ଭଞ୍ଜଙ୍କର ଆବିର୍ଭାବ । ସେତେବେଳକୁ ସଂସ୍କୃତ ପଣ୍ଡିତମାନଙ୍କର ସାହିତ୍ୟିକ ଆଧିପତ୍ୟ-ଥିଲା ଦୁରତିକ୍ରମ୍ୟ । ପୁଣି, ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟ ମଧ୍ୟ ପ୍ରବୀଣ ବାଣୀ ସାଧକମାନଙ୍କର ବଳିଷ୍ଠ ଲେଖନୀ ଚାଳନା ବଳରେ ସମୃଦ୍ଧ ହୋଇ ଉଠିଥିଲା । ରସାଳ ସଂସ୍କୃତ ସାହିତ୍ୟ-ସରୋବରର ତୀରର ରସିକ ଉତ୍କଳୀୟ ପଣ୍ଡିତମାନଙ୍କର ଓଡ଼ିଆ ସାହିତ୍ୟପ୍ରତି ଅତ୍ୟଳ୍ପ ମାତ୍ର ଆଗ୍ରହ ଥିଲା । ସୁରଭାରତୀୟ ସହିତ ଉତ୍କଳ ଭାରତୀଙ୍କର ତୁଳନାତ୍ମକ ଅପକର୍ଷତାହିଁ ଥିଲା ସେମାନଙ୍କର

Digitized by srujan ka@gmail.com

ସାତନ୍ତ୍ରିକତାର ପ୍ରଧାନ କାରଣ । ସ୍ୱଜନ୍ମ-ଭୂମିରେ ଉତ୍କଳ ଭାଷାର ସାହିତ୍ୟ ପ୍ରତି ଗୋଷ୍ଠୀ-ବିଶେଷର ଆଗ୍ରହ-ବିହୀନତା ସ୍ୱଦେଶବତ୍ସଳ ଉପେନ୍ଦ୍ରଭଞ୍ଜଙ୍କ ମନରେ ପ୍ରତିକ୍ରିୟା ସୃଷ୍ଟି କରିଥିଲା । ସେତେବେଳର ସଂସ୍କୃତ ସାହିତ୍ୟ ଥିଲା ସର୍ବଭାରତୀୟ ସାହିତ୍ୟର ନାମାନ୍ତର । ସ୍ୱମାତୃଭାଷାର ସାହିତ୍ୟକୁ ସର୍ବଭାରତୀୟ ସଂସ୍କୃତ ସାହିତ୍ୟର ସମ-ଆସନରେ ପ୍ରତିଷ୍ଠା କରିବା ଲକ୍ଷ୍ୟରେ ଉପେନ୍ଦ୍ରଭଞ୍ଜ ବଦ୍ଧପରିକର ହୋଇଥିଲେ । ସେହି ପ୍ରତିଜ୍ଞାବଦ୍ଧତାର ପରିଣାମ ସ୍ୱରୂପ ବୈଦେହୀଶ ବିଳାସ, 'କୋଟି ବ୍ରହ୍ମାଣ୍ଡସୁନ୍ଦରୀ' 'ସୁଭଦ୍ରାପରିଣୟ' ପ୍ରଭୃତି ଯେଉଁ-ସବୁ ରସ ଉଦ୍ଭାସିତ, ଭାବ ଭାସ୍ୱର, କଳ୍ପନା କଳିତ ଏବଂ ଚିତ୍ରାଚର୍ଚ୍ଚିତ କାବ୍ୟ କବିତାବଳୀ ଜାଣିପୂର୍ବାଧ ଉତ୍କଳର ପ୍ରାଣ-ପୀଠରେ ସେ ପ୍ରତିଷ୍ଠା କରିଗଲେ, ତାହା ତାଙ୍କୁ କାଳ କାଳ ଧରି ମହିମାମୟ କରି ରଖିଅଛି ।

ପ୍ରତିଦେଶରେ କବିମାନଙ୍କର ମାତୃଭାଷା ବିରଚିତ ସାହିତ୍ୟ ସମଗ୍ର ମାନବସମାଜକୁ ଅନୁପ୍ରାଣିତ କରୁ"—ଏହି ମହୋଦାର ବାସନା କବିଙ୍କୁ ସାଧନାମାର୍ଗର ଚରମସୀମାରେ ଉପନୀତ କରି-ପାରିଥିଲା । ଫଳରେ, ଗତ ଦୁଇ ସହସ୍ର ବର୍ଷ ମଧ୍ୟରେ ଭାରତୀୟ ସାହିତ୍ୟର ଯେଉଁମାନେ ସ୍ୱନାମଧନ୍ୟ ମହାକବି, ଉପେନ୍ଦ୍ରଭଞ୍ଜ ସେମାନଙ୍କର କେବଳ ଅନୁସରଣ କରି ନ ଥିଲେ—ସ୍ଥଳ ବିଶେଷରେ, ଅତିକ୍ରମଣ ମଧ୍ୟ କରିଥିଲେ ।

କବି ସମ୍ରାଟ୍ ଉପେନ୍ଦ୍ରଭଞ୍ଜ ତିନିଶ୍ରେଣୀର ପାଠକଙ୍କ ଉଦ୍ଦେଶ୍ୟରେ ସାହିତ୍ୟ ସୃଷ୍ଟି କରିଥିଲେ । ସେମାନେ ହେଉଛନ୍ତି— ଦେଶର ଜନସାଧାରଣ, ପ୍ରବୀଣ ପଣ୍ଡିତସମାଜ ଏବଂ ଉଚ୍ଚପରିଚିନ୍ତ ବିବେଚନାପଟୁ ଦାର୍ଶନିକମଣ୍ଡଳୀ । ପ୍ରଥମ ଶ୍ରେଣୀ ନିମନ୍ତେ

Digitized by srujan ka@gmail.com

ସୁମଧୁର ଛନ୍ଦ ଓ ସହଜବୋଧ୍ୟ ଶୃଙ୍ଗାରରସ, ଧ୍ୱନିସୃଷ୍ଟି ଶ୍ରେଣୀ ନିମନ୍ତେ ଶାବ୍ଦିକତା, ଆଲଙ୍କାରିକତା, ଶାସ୍ତ୍ରୀୟତା, ପୌରାଣିକତା ଓ ବିବିଧ କବନ-କୌଶଳ ଏବଂ ନୃତ୍ୟ ଶ୍ରେଣୀ ନିମନ୍ତେ କର୍ମମାର୍ଗ, ଭକ୍ତି ମାର୍ଗ, ଯୋଗ ମାର୍ଗ ଏବଂ ଜ୍ଞାନମାର୍ଗର ନାନା ସୂଚନା ଓ ନାନା ବ୍ୟଞ୍ଜନା ପ୍ରଦାନ କରି ଯାଇଛନ୍ତି ।

ନୀତିଶାସ୍ତ୍ରରେ କୁହାଯାଇଛି—

'ଯା ଲୋକଦ୍ୱୟସାଧନୀ ତନୁଭୃତାଂ
ସା ଚାତୁରୀ ଚାତୁରୀ ।

ଇହଲୋକ ଓ ପରଲୋକ, ଦେହ ଓ ଆତ୍ମା, ଜଡ଼ଜଗତ ଓ ଅଧ୍ୟାତ୍ମଜଗତ, ଜୀବନ-ସମ୍ଭୋଗ ଓ ସଂସାର ବିରାଗ, କର୍ମ-ପ୍ରେରଣା, କର୍ମ—ପ୍ରତ୍ୟେଦନା ଓ ଧର୍ମଧାରଣା,—ଏହି ବିବିଧଲକ୍ଷ୍ୟ ଏବଂ ଆଦର୍ଶରେ ଅନୁଧାବନରେ ଭଞ୍ଜ ସାହିତ୍ୟର ଭୂମି ଯେପରି ଅବଧାରଣୀୟ; ଏ ସମସ୍ତର ଅନୁଶୀଳନରେ ହିଁ ତାହାର ଋଦ୍ଧି ଅନୁସନ୍ଧେୟ ।

ମାନବମନର ଯେପରି ଚେତନ ଅଚେତନ, ଏବଂ ଅବଚେତନ ଅବସ୍ଥା ରହିଅଛି, ମାନବର ମନୋବୃତ୍ତିରେ ଯେପରି ନାରକୀୟତା, ମାନବୀୟତା ଏବଂ ସ୍ୱର୍ଗୀୟତା ରହିଅଛି; ଭଞ୍ଜ ସାହିତ୍ୟରେ ମାନବମାତ୍ର ସୁଲଭ ରୂପଜ—ପ୍ରେମପ୍ରବଣତା, ଦେଶ କାଳ ପାତ୍ରାନୁଯାୟୀ କର୍ମପ୍ରବଣତା ଏବଂ ସ୍ୱର୍ଗୀୟ ଦ୍ୱିକାୟା ପ୍ରୀତି-ମୂଳକ, ଗାର୍ହସ୍ଥ୍ୟ ଧର୍ମ ସମ୍ବଳିତ ଭବ୍ୟ—ଅନାବିଳ—ପ୍ରଣୟ-ମୂଳକତା, ସେହିପରି ପ୍ରତିଫଳିତ ହୋଇଅଛି । ଭଞ୍ଜ ଶରଣ ଧର୍ମାର୍ଥ କାମମୋକ୍ଷ, ଏହି 'ପରମ—ପୁରୁଷାର୍ଥ' ଚତୁଷ୍ଟୟର ଏକ

Digitized by srujan ka@gmail.com

ସମୃଦ୍ଧ ଭଣ୍ଡାର । ପାଠକର ଯୋଗ୍ୟତା ଅନୁସାରେ ତାହାର ବିଭିନ୍ନ-ଅଂଶ ଉପଭୋଗ୍ୟ ହୋଇଥାଏ ।

ଭକ୍ତ ସାହିତ୍ୟ ମହୋଦଧିସବୃ ଗମ୍ଭୀର, ଦୁସ୍ତର ହିମାଚଳ ପରି ଗ୍ରାଙ୍ଗଲ । ମହୋଦଧି ଭୀଷଣ, ଅତିକାୟ ଜୀବଜନ୍ତୁ ମାନଙ୍କର ନିବାସ ସ୍ଥଳ; ମଧ୍ୟେ ମଧ୍ୟେ ପର୍ବତ ଏବଂ ଆବର୍ତ୍ତମାନଙ୍କ-ଦ୍ୱାରା ଦୁରତିକ୍ରମ୍ୟ ଏବଂ ସତତ ଗର୍ଜନ—ମୁଖର; ତାହାସତ୍ତ୍ୱେ ମହୋଦଧିର ଦର୍ଶନରେ ପ୍ରାଣ ପୁଲକିତ ହୋଇଉଠେ, ମହୋଦଧିର ନୀଳିମା ଏବଂ ଗମ୍ଭୀରତା ଜନମନଲୋଭନୀୟ । ସର୍ବୋପରି, ମହୋ-ଦଧିର ଅତଳଗର୍ଭରେ, ସ୍ଥାନେ ସ୍ଥାନେ, ମହାର୍ଘ ରତ୍ନଖଣ୍ଡମାନ ଉପଲଭ୍ୟ । ମୁକ୍ତା—ପ୍ରବାଳର ଜନ୍ମସ୍ଥାନରୂପେ ସମୁଦ୍ରର ଲୋଭନୀୟତା ଅଳ୍ପ ନୁହେ । ଭକ୍ତସାହିତ୍ୟ ସେହିପରି ଆଲଙ୍କାରିକ—ପାଣ୍ଡିତ୍ୟ, ଶାବ୍ଦିକତା ଏବଂ ବିତର୍କଧିତା—ବିଳାସର ପ୍ରାଚୁର୍ଯ୍ୟ ହେତୁ ସାଧାରଣ ପାଠକ ପକ୍ଷରେ ବହୁ ସ୍ଥଳରେ ଅନଧିଗମ୍ୟ; କିନ୍ତୁ ତହିଁରେ ବିଶ୍ୱଜନନୀର ହିତ ସାଧନ ତଥା ବିଶ୍ୱଜନ କଲ୍ୟାଣ ବିଧାୟକ ହୃଦୟର ଆବେଗର କେବଳ ଯେ ଅଭାବ ନାହିଁ ତାହା-ନୁହେଁ, ବରଂ ଶକ୍ତିଶାଳୀ ଓ ସମର୍ଥ ପାଠକ ପକ୍ଷରେ ବହୁ ସ୍ଥଳରେ ସେ ସମସ୍ତ ବହୁଳ ଭାବରେ ଉପଲଭ୍ୟ ଓ ଉପଭୋଗ୍ୟ । ହିମାଳୟରେ ଭୀଷଣ ଗିରି—ଦରୀ, ହିଂସ୍ରଜନ୍ତୁ-ସମାକୁଳ ମହାକାନ୍ତାର, ଅତିକାୟ-ବୃକ୍ଷର ପ୍ରଭୃତିର ଅଭାବନାହିଁ; କିନ୍ତୁ ହିମାଳୟରେ ହିଁ ଜନମନ ଲୋଭନୀୟ ମାନସସରୋବରର ଅବସ୍ଥିତି, ହିମାଳୟରୁ ହିଁ ଅଳକାନନ୍ଦା ଏବଂ ମନ୍ଦାକିନୀ ଭଳି ମଧୁରନୀରା ତଟିନୀମାନଙ୍କର ଉଦ୍ଭବ, ହିମାଳୟର ଅଭ୍ୟନ୍ତର ନାନା ଧନ ରତ୍ନରେ ପରିପୂର୍ଣ୍ଣ—ଏକଥା ମଧ୍ୟ ଅସ୍ୱୀକାର କରି ହେବ ନାହିଁ । ଠିକ୍ ସେହିପରି, ଭକ୍ତ ସାହିତ୍ୟ

Digitized by srujan ka@gmail.com

ଏକାଧାରରେ ହୃଦ୍ୟ ସୁନ୍ଦର, ଶ୍ରମକମନୀୟ । ବିଶ୍ୱଜନତାର ରସଗ୍ରାହକତା ଏବଂ ଭାରତୀୟ ସାହିତ୍ୟକ ପରମ୍ପରାର କବନ-କୌଶଳ—ଏ ଦୁଇଟିର ସମନ୍ୱିତ—ନର୍ମଣଯୋ୍ୟ ଉପରେ ଭଞ୍ଜ ସାହିତ୍ୟର ପ୍ରବଳ ପ୍ଲାବନ ପରିଦୃଷ୍ଟ ହୁଏ ।

କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଭାଷା ବିଷୟରେ ଓଡ଼ିଆ, ପ୍ରକାଶଭଙ୍ଗୀ ବିଷୟରେ ଭାରତୀୟ, କିନ୍ତୁ ରସ, ଭାବ ଚିନ୍ତା ଓ ଅନୁଭବ ବିଷୟରେ ସମଗ୍ର ମାନବସମାଜର ଜଣେ ବରେଣ୍ୟ କବି । ସେ ଥିଲେ ଏକାଧାରରେ କବି ଆଲଙ୍କାରିକ, ଦାର୍ଶନିକ, ଭକ୍ତ, ସାଧକ ସ୍ୱଦେଶ ବତ୍ସଳ, ଜନତାର ମନୋରଞ୍ଜକ, ମାନବମନର ଚିତ୍ରକର, ଅନ୍ତବାଦୀ, ସମାଜ—ସଂସ୍କାରକ, ସଙ୍ଗୀତଜ୍ଞ ନିଶାରଦ ଏବଂ ଭକ୍ତି ମାଧ୍ୟମରେ ଭକ୍ତିମାର୍ଗର ପଥପ୍ରଦର୍ଶକ । ତାଙ୍କର ସାହିତ୍ୟ ନାରିକେଳସଦୃଶ ରସପୂର୍ଣ୍ଣ; କିନ୍ତୁ ଆବରଣର କଠୋରତା ବହୁ-ସ୍ଥଳରେ ଅଗ୍ରଣୀ ପାଠକ ପକ୍ଷରେ ଏକ ପରୀକ୍ଷା-ପୀଠ । ଦୂରରୁ ତାଙ୍କର ଭାରତୀ 'ଗଗନବିହାରୀ ଉଲ୍‌କାଖଣ୍ଡ' ପରି ପ୍ରତିଭାତ ହୁଏ, ମାତ୍ର ସମର୍ଥ ପାଠକ ପକ୍ଷରେ କରଗତ ମହୋଜ୍ଜ୍ୱଳ ରତ୍ନଖଣ୍ଡ ପରି ସେ ହୋଇ ଥାଏ ପ୍ରୀତିପ୍ରଦ । ଭଞ୍ଜ ଭାରତୀର ମହତ୍ତ୍ୱ କଳନା କଲା-ବେଳେ ତାଙ୍କର ପ୍ରବୀଣ ଅନୁଗାମୀ କବିପ୍ରବର ଅଭିମନ୍ୟୁଙ୍କର ନିମ୍ନୋଦ୍ଧୃତ ନିବେଦନ ମନେ ପଡ଼ିଯାଏ "ଭାବେ ବୈଶ୍ୟ ସରିପ୍ରାୟ ମୁଁ ମେଳିଛି ପସରା, ଭାବ ସବୁ ଦ୍ରବ୍ୟକୁ ଗ୍ରାହକ ଲୋଡ଼ାପରା" ।

———

Digitized by srujan ka@gmail.com

# ରବୀନ୍ଦ୍ରନାଥ ଠାକୁର

## ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ

ରବୀନ୍ଦ୍ରନାଥ ଠାକୁରଙ୍କୁ କବୀନ୍ଦ୍ର ଓ ବିଶ୍ୱକବି କୁହାଯାଏ । ସେ କଲିକତାବାସୀ ବଙ୍ଗାଳୀ । ତାଙ୍କ ପୂର୍ବ ପୁରୁଷ ବିଖ୍ୟାତ ଜମିଦାର ଥାଇ ଅନେକ ଦେଶ-ହିତକର କାର୍ଯ୍ୟ କରିଅଛନ୍ତି । ତାଙ୍କର ପିତା ମହର୍ଷି ଦେବେନ୍ଦ୍ରନାଥ ଠାକୁର ଜଣେ ବିଖ୍ୟାତ ଧର୍ମ-ପରାୟଣ ବ୍ୟକ୍ତି ଥିଲେ ଏବଂ ସମାଜ-ସଂସ୍କାର କାର୍ଯ୍ୟରେ ମନ ବଳାଇ ଥିଲେ ଓ ବ୍ରାହ୍ମ ସମାଜ ପ୍ରତିଷ୍ଠା କରିଥିଲେ । ରବୀନ୍ଦ୍ର ଧନାଢ୍ୟ ଘରର ପିଲା ଥିଲେ ଏବଂ ପ୍ରଚୁର ଭୋଗ-ବିଳାସରେ ବଢ଼ିଥିଲେ । ସେ ଯେଉଁ ପରମ୍ପରା, ବୈଭବ ଓ ବାତାବରଣ ମଧ୍ୟରେ ବଢ଼ିଥିଲେ ତାହା ପୃଥିବୀର କମ୍ ଲୋକଙ୍କ ଭାଗ୍ୟରେ ଘଟେ । ସେ ଯାହାହେଉ ବାଲ୍ୟ କାଳରୁ ସେ ସାହିତ୍ୟ ଚର୍ଚ୍ଚାରେ ମନ ଦେଇଥିଲେ । ବଙ୍ଗଳା ଭାଷାରେ ସେ ଯେଉଁ କାବ୍ୟ, ନାଟକ ଗଳ୍ପ, ପ୍ରବନ୍ଧ ଲେଖିଛନ୍ତି; ତା'ର ସମକକ୍ଷ ହେବାଭଳି କୌଣସି ଆଧୁନିକ ଭାରତୀୟ ଭାଷାରେ ଲେଖା ପ୍ରକାଶ ପାଇ ନାହିଁ । ସେ ଜଣେ ଉଚ୍ଚ କୋଟିର ଶିକ୍ଷାବିତ୍ ଥିଲେ । ବୋଲପୁରରେ 'ଶାନ୍ତି-ନିକେତନ' ପ୍ରତିଷ୍ଠା କରି ତାହାକୁ ଏକ ଆନ୍ତର୍ଜାତୀୟ ସାଂସ୍କୃତିକ କେନ୍ଦ୍ରରେ ପରିଣତ କରିଥିଲେ । ଆଜି ତାହା "ବିଶ୍ୱ ଭାରତୀ"

Digitized by srujan ka@gmail.com

ବିଦ୍ୟାଳୟ ନାମରେ କଥିତ ଓ ଭାରତର ପ୍ରଧାନମନ୍ତ୍ରୀ ତା'ର ଅଧ୍ୟକ୍ଷ ଅଟନ୍ତି । ତାଙ୍କ ନାମରେ ତାଙ୍କ ଜନ୍ମସ୍ଥାନ କଲିକତା ସହର ଯୋଡ଼ା-ବାଗାନରେ "ରବୀନ୍ଦ୍ର ଭାରତୀ" ନାମକ ଏକ ବିଶ୍ୱବିଦ୍ୟାଳୟ ମଧ୍ୟ ପ୍ରତିଷ୍ଠିତ ହୋଇଛି । ଭାରତସରକାର ଭାରତର ସମସ୍ତ ରାଜ୍ୟ-ମାନଙ୍କରେ ରବୀନ୍ଦ୍ର ସ୍ମୃତି ଉପଲକ୍ଷେ ସ୍ମାରକ ସୌଧମାନ ନିର୍ମାଣ କରିଛନ୍ତି ଓ କଲିକତାରେ ବହୁ ଅନୁଷ୍ଠାନ ତାଙ୍କ ନାମରେ ନାମିତ ହୋଇଛି ।

ରବୀନ୍ଦ୍ର-ସଙ୍ଗୀତ ପ୍ରତିଦିନ କଲିକତା ଆକାଶବାଣୀରୁ ପ୍ରଚାରିତ ହୁଏ । ସେ ସଙ୍ଗୀତର ଭାବ, ଭାଷା, ଶୈଳୀ, ସ୍ୱର, ଛନ୍ଦ ଓ ରାଗ-ରାଗିଣୀ ଅତି ଶୀର୍ଷ ସ୍ଥାନ ଅଧିକାର କରିଅଛି । ରବୀନ୍ଦ୍ର ଯୌବନରେ ପୃଥିବୀର ସମସ୍ତ ଦେଶମାନ ପର୍ଯ୍ୟଟନ କରି ଭାରତୀୟ ଭାବ ଓ ଆନ୍ତର୍ଜାତୀୟ ଭାବର ଆଦାନ ପ୍ରଦାନ ଓ ସମ୍ମିଳନ ଦିଗରେ ଯେଉଁ ପଦକ୍ଷେପ ଗ୍ରହଣ କରିଥିଲେ ତଦ୍ୱାରା ଭାରତକୁ ବିଶ୍ୱ ଭଲ ରୂପେ ଚିହ୍ନି ପାରିଲା; ମହାତ୍ମାଗାନ୍ଧୀ ରବୀନ୍ଦ୍ରଙ୍କୁ ଗୁରୁଦେବ ବୋଲି ଡାକୁଥିଲେ ।

୧୯୧୩ ମସିହାରେ ସେ ତାଙ୍କ "ଗୀତାଞ୍ଜଳି" କାବ୍ୟ ସଙ୍କଳନପାଇଁ ସ୍ୱିଡେନ ଦେଶର ବିଶ୍ୱବିଖ୍ୟାତ ନୋବେଲ ପୁରସ୍କାର ଲାଭ କରିଥିଲେ । ଏପର୍ଯ୍ୟନ୍ତ ତାଙ୍କ ବ୍ୟତୀତ ଅନ୍ୟ କୌଣସି ଭାରତୀୟ ସାହିତ୍ୟିକ ସେ ପୁରସ୍କାର ପାଇ ନାହାନ୍ତି । ସେ ବ୍ରିଟିଶ ଗଭର୍ଣ୍ମେଣ୍ଟଙ୍କଠାରୁ Knight (ନାଇଟ୍) ଉପାଧି ପାଇ ଥିବାରୁ ଲୋକେ ତାଙ୍କୁ ସାର୍ ରବୀନ୍ଦ୍ରନାଥ ଠାକୁର କହୁଥିଲେ । ପ୍ରଥମ୍ ଇଉରୋପୀୟ ମହାସମର ପରେ ବ୍ରିଟିଶ ଶାସକଙ୍କଦ୍ୱାରା ପଞ୍ଜାବର ଜାଲିଆନାବାଗଠାରେ ଯେଉଁ ବର୍ବର ହତ୍ୟାଲୀଳା ସଂଘଟିତ ହୋଇଥିଲା, ତହିଁର ଦୃଢ଼ ପ୍ରତିବାଦସ୍ୱରୂପ ସେ ତାଙ୍କ ସାର୍ ଉପାଧି ପ୍ରତ୍ୟାଖ୍ୟାନ କରିଥିଲେ ।

Digitized by srujan ka@gmail.com

ସେ ଅନେକ ବିଶ୍ୱବିଦ୍ୟାଳୟରୁ ସମ୍ମାନସୂଚକ Doctorate ଡକ୍ଟରର ଉପାଧି ପାଇଥିଲେ । ତାଙ୍କ କବିତାରେ ଈଶ୍ୱର ପ୍ରେମ, ଈଶ୍ୱର ଭକ୍ତି ପୂର୍ଣ୍ଣମାତ୍ରାରେ ଜାଜ୍ଜ୍ୱଲ୍ୟମାନ । ତାଙ୍କ ଗଦ୍ୟ, ପ୍ରବନ୍ଧ ଓ ନାଟକରେ ସେ ସାମାଜିକ ଚିନ୍ତ ଦେଇ ସମାଜସଂସ୍କାର ଦିଗରେ ବ୍ରତୀ ହୋଇଥିଲେ । ଗୀତାଞ୍ଜଳିର ପ୍ରଥମ ପଦ ଏହା:—

"ଆମାର ମାଥା ନତକରେ ଦାଓ ହେ ତୋମାର
ଚରଣଧୂଲାର ତଲେ ।
ସକଲ ଅହଂକାର ହେ ଆମାର
ଡୁବାଓ ଚୋଖେର ଜଲେ ।
ଆମାରେ ନା ଯେନ କରି ପ୍ରଚାର
ଆମାର ନିଜେର କାଜେ ।
ତୋମାର ଇଚ୍ଛା ହୋକ୍‌ହେ ପୂର୍ଣ୍ଣ
ଆମାର ଜୀବନ ମାଝେ !"

ଏହାଠାରୁ ବଳି ଭଗବାନଙ୍କ ନିକଟରେ ନିଜର ନମ୍ରତା ପ୍ରକାଶ ଓ ଆତ୍ମସମର୍ପଣଭାବ ଅନ୍ୟତ୍ର ଦୁର୍ଲଭ । ବଙ୍ଗ ସାହିତ୍ୟକୁ ଈଶ୍ୱରଚନ୍ଦ୍ରଙ୍କ ଟେଙ୍ଗାଳିକାପ୍ରବାହରୁ ରକ୍ଷାକରି ସେ ଏକ ନୂତନ ପ୍ରାଣ-ସ୍ପର୍ଶୀ ଭାବ, ଭାଷା ଓ ଆଙ୍ଗିକ ପ୍ରୟୋଗ କରି ଯାଇଛନ୍ତି । ସାହିତ୍ୟିକ ଭାଷାକୁ କଥିତ ଭାଷାର ନିକଟବର୍ତ୍ତୀ କରିବା ଦିଗରେ ରବୀନ୍ଦ୍ରନାଥ ନୂତନ ମାର୍ଗ ଦର୍ଶନ ଦେଇ ଯାଇଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । 'ବୈଦିକ ଶୈଳୀ' କହିଲେ ଏକ ସଜୀବ ପ୍ରାଣବନ୍ତ ତଥା ଦୈନନ୍ଦିନ ଜୀବନପ୍ରବାହର ଭାବ ପ୍ରକାଶକ ଶୈଳୀକୁ ହିଁ ବୁଝାଏ ।

ତାଙ୍କ ପ୍ରଣୀତ ପୁସ୍ତକସଂଖ୍ୟା ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ତାଙ୍କର କବିତାବହି ସଂଖ୍ୟା ୫୮, ନାଟକ ୪୫, ପ୍ରବନ୍ଧ ପୁସ୍ତକ୫୪, ପାଠ୍ୟ ପୁସ୍ତକ ୧୨, କ୍ଷୁଦ୍ର ଗଳ୍ପ ୧୭୯, ସଙ୍ଗୀତ ୨୨୦୯, ଉପନ୍ୟାସ

Digitized by srujan ka@gmail.com

ସଂଖ୍ୟା ପ୍ରାୟ ଦଶରୁ ଊର୍ଦ୍ଧ୍ୱ । ଜଣେ ଲେଖକ ଏକାଧାରରେ ଏତେଗୁଡ଼ିଏ ରଚନାର ପ୍ରଣେତା ହେବା ସାହିତ୍ୟର ଇତିହାସରେ କ୍ୱଚିତ୍ ଦେଖାଯାଏ ।

ସେହିପରି ରବୀନ୍ଦ୍ର ସଙ୍ଗୀତ ଧ୍ରୁପଦୀର କଠୋର ଶୃଙ୍ଖଳା ଓ ଯାନ୍ତ୍ରିକତାର ପରିସର ବାହାରେ ଏକ ପ୍ରାଣ ଉଚ୍ଛଳ ସଂକୋଚନ ସଂପ୍ରସାରଣ-କ୍ଷମ (Elastic) ସଙ୍ଗୀତ ବୋଲି ସମାଦୃତ ହୋଇଛି ।

ରବୀନ୍ଦ୍ର ନାଥ ଭାରତର ଶାଶ୍ୱତ ଆତ୍ମାର ବାଙ୍ମୟ ପ୍ରତିନିଧି । ସେ ବୈଦିକ ଭାରତ ସଙ୍ଗେ ଇଂରେଜୀ ଭାରତର ଏକ ପ୍ରକାର ସମନ୍ୱୟର ସେତୁ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର ଅପରିମିତ ସାହିତ୍ୟ କୃତି ମଧ୍ୟରେ ବୈଦିକ ଓ ବୌଦ୍ଧ ସଂସ୍କୃତିଠାରୁ ଆରମ୍ଭ କରି ଆଧୁନିକ ସଭ୍ୟତାର ଋମପରିଣତିର ମର୍ମଧ୍ୱନି ତଥା ପ୍ରାଣସ୍ପନ୍ଦନ ଯେପରି ନିଖୁଣ ଭାବରେ ମିଳେ ସେପରି ନିଦର୍ଶନ ଅନ୍ୟ କୌଣସି ଏକ କବି ପାଖରୁ ମିଳିନାହିଁ ।

ବିଶିଷ୍ଟ ଇଉରୋପୀୟ ସାହିତ୍ୟିକ କବି ଓ ଲେଖକ ଯଥା:— ରୋମାଁ ରୋଲାଁ, ବାର୍ଣ୍ଣାଡ଼ସ୍, ଏଜର୍ ବ ଜଏଲସ ପ୍ରଭୃତି ରବୀନ୍ଦ୍ରଙ୍କୁ ବିଶ୍ୱ ସାହିତ୍ୟରେ ପ୍ରଧାନ ସ୍ଥାନ ଦେଇ ଅଛନ୍ତି । ରବୀନ୍ଦ୍ର ଜଣେ ନାଟ୍ୟକାର ଥିଲେ ଓ ଚିତ୍ରକାର ଥିଲେ ମଧ୍ୟ । ତାଙ୍କର ଓଡ଼ିଶାର କଟକ ଜିଲ୍ଲାରେ ପଣ୍ଡୁଆ ଜମିଦାରୀ ଥିଲା । ସେଠାକୁ ସେ ଆସି ବେଳେ ବେଳେ ରହି ସେଠାରେ ଅନେକ କବିତା ଲେଖିଥିଲେ । ସେ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗ ଦେଇଥିଲେ ଓ ବଙ୍ଗଭଙ୍ଗ ବିରୋଧରେ ଯେଉଁ ରାଜନୈତିକ ଆନ୍ଦୋଳନ ହୋଇଥିଲା ତାହାର ସେ ଜଣେ ଅଗ୍ରଣୀ ଥିଲେ । ସେ ଅନେକ ସ୍ୱଦେଶ-ଭାବୋଦ୍ଦୀପକ କବିତା ଲେଖିଥିଲେ, ଯେଉଁଥିରୁ ଗୋଟିଏ ଆଜି ଭାରତରେ

Digitized by srujan ka@gmail.com

ଜାତୀୟ ସଂଗୀତରୂପେ ବୋଲି ଯାଉଅଛି । ତା ସେ ୧୯୧୧ ମସିହାରେ ନିମ୍ନଲିଖିତଗୀତଟିର ରଚନା କରିଥିଲେ ।

"ଜନଗଣ ମନ ଅଧିନାୟକ ଜୟ ହେ
ଭାରତ ଭାଗ୍ୟ ବିଧାତା ।
ପଞ୍ଜାବ, ସିନ୍ଧୁ, ଗୁଜରାଟ ମରାଠା,
ଦ୍ରାବିଡ଼, ଉତ୍କଳ, ବଙ୍ଗ
ବିନ୍ଧ୍ୟ ହିମାଚଳ ଯମୁନା ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ ।
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାଏ ତବ ଜୟଗାଥା ।"

ଭାରତ ସ୍ୱାଧୀନତା ପାଇବା ପରେ ଯେତେବେଳେ ସମ୍ବିଧାନ ନିର୍ମାତା ସଭା ବସିଥିଲା ସେତେବେଳେ ପଣ୍ଡିତ ଜବାହରଲାଲଙ୍କ ପ୍ରସ୍ତାବକ୍ରମେ ଏହା ଭାରତର ଜାତୀୟ ସଙ୍ଗୀତରୂପେ ଗୃହୀତ ହେଲା ।

୧୯୩୮ ମସିହାରେ ରବୀନ୍ଦ୍ରନାଥ ଠାକୁରଙ୍କୁ ପୁରୀ ସହରରେ ଏକ ଅଭ୍ୟର୍ଥନା କରାଯାଇ ତାଙ୍କୁ ବିଶ୍ୱ ବନ୍ଦନୀୟ ବୋଲି ଅଭିହିତ କରାଯାଇଥିଲା ।

"ଜବାହରଲାଲ ନେହରୁ ତାଙ୍କ "ଭାରତ ଆବିଷ୍କାର" ପୁସ୍ତକରେ ଗାନ୍ଧୀ ଓ ରବୀନ୍ଦ୍ରନାଥଙ୍କୁ ତୁଳନା କରି କହିଛନ୍ତି, ଏ ଦୁହେଁ ଭାରତର ଦୁଇ ପ୍ରଧାନ ବ୍ୟକ୍ତି । ଗାନ୍ଧିଜୀ ଆନ୍ଦୋଳନକୁ କାର୍ଯ୍ୟରେ ଦେଖାଇ ଦେଲେ । ରବୀନ୍ଦ୍ର ଚିନ୍ତା ଓ ଭାବନା କ୍ଷେତ୍ରରେ ଭାରତୀୟ ଜାତୀୟତା ଓ ଗଣ ଆନ୍ଦୋଳନକୁ ପ୍ରେରଣା ଦେଲେ ।

Digitized by srujan ka@gmail.com

ରବି ଠାକୁର "ମାନବର ଧର୍ମ" ନାମକ ଏକ ପୁସ୍ତକ ଲେଖି ନିଖିଳ ବିଶ୍ୱର ସଂହତି ଦୃଷ୍ଟିରେ ଏକମାତ୍ର "ବିଶ୍ୱ ବିଧାତା" ଏବଂ ମାନବ ଜାତି ବୋଲି ଅଭିବ୍ୟକ୍ତ କରି ଆଧ୍ୟାତ୍ମିକ ସ୍ତରକୁ ଭାରତକୁ ଉଠାଇଅଛନ୍ତି । ଆନ୍ତର୍ଜାତିକ କ୍ଷେତ୍ରରେ ସେ ଏକ ମହାମାନବ-ଭାବେ ଆଦର୍ଶ ହୋଇ ରହିବେ !

ମ୍ୟାକ୍ ନିକେଲ ନାମରେ ଜଣେ ମହାପଣ୍ଡିତ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ ସମଗ୍ର ପୃଥିବୀର ତୁଳନାତ୍ମକ ଧର୍ମ ସମ୍ବନ୍ଧରେ ବକ୍ତୃତା ଦେଇ କହିଛନ୍ତି ଯେ ରବୀନ୍ଦ୍ରଙ୍କ ଠାରେ ଭକ୍ତିମାର୍ଗ ଓ ବେଦାନ୍ତର ମତ ଉଭୟର ଏକ ମଧୁର ସମ୍ମିଶ୍ରଣ ହୋଇଅଛି । ହିନ୍ଦୁ ଧର୍ମର ସନାତନତତ୍ତ୍ୱ ଓ ଆଧୁନିକ ସମାଜର ଗତିବାଦର ସମ୍ମିଳନ ରବୀନ୍ଦ୍ର ସାହିତ୍ୟର ବିଶେଷତ୍ୱ । ଅତୀତରୁ ପ୍ରେରଣା ପାଇ ବର୍ତ୍ତମାନକୁ ଏପରି ନିୟନ୍ତ୍ରଣ କରିବାକୁ ହେବ ଯଦ୍ଦ୍ୱାରା ଭବିଷ୍ୟତରେ ମାନବସମାଜରେ ଆଧ୍ୟାତ୍ମିକ ଭାବର ଗୌରବ ବୃଦ୍ଧି ପାଇବ । ଗ୍ରୀସ୍ ଦେଶର ହୋମର, ଇଟାଲୀ ଦେଶର ଭର୍ଜିଲ, ଓ ଦାନ୍ତେ ଇଂଲଣ୍ଡରେ ସେକ୍ସପିୟର ଓ ମିଲ୍ଟନ, ଜର୍ମାନୀର ଗେଟେ, ଆମେରିକାର ଇମର୍ସନ ଓ ଥୋରୋ, ରୁଷିଆର ଟଲଷ୍ଟୟ, ଫ୍ରାନ୍ସର ଭିକ୍ଟର ହ୍ୟୁଗୋ ପ୍ରଭୃତିଙ୍କ ସଙ୍ଗେ ପୃଥିବୀର ସାହିତ୍ୟିକ ସିଂହାସନରେ ଭାରତର ରବୀନ୍ଦ୍ରନାଥ ଉପଯୁକ୍ତ ଆସନ ଅଳଂକୃତ କରିବାକୁ ଯୋଗ୍ୟ ।

ସେ ଏକାଧାରରେ କବି, ଗାଳ୍ପିକ; ଔପନ୍ୟାସିକ, ନାଟ୍ୟକାର, ସୁରକାର; ଚିତ୍ରୀ ଓ ଶିକ୍ଷାବିତ୍ ତଥା ସମାଜ-ସଂସ୍କାରକ ଥିଲେ । ତାଙ୍କର ବହୁମୁଖୀ ପ୍ରତିଭା ନିକଟରେ ଭାରତବର୍ଷ ଚିରକାଳ ଶ୍ରଦ୍ଧା-ବନତ ରହିବ ।

Digitized by srujan ka@gmail.com

# ବିଶ୍ୱକବି ରବୀନ୍ଦ୍ରନାଥଙ୍କ ବାଣୀ

## ସଙ୍କଳୟିତ୍ରୀ—ସରଳା ଦେବୀ

ଭାରତବର୍ଷ ଚିତ୍ତବୃତ୍ତିରେ ଯେ ଉଦାର ଧର୍ମ ନିହିତ, ତନ୍ମଧ୍ୟରେ ଏକ ସର୍ବଜନୀନ ବିଶ୍ୱଭାବ ରହିଥିବାରୁ ଏହି ଦେଶବାସୀ ପୃଥିବୀର କୌଣସି ଜାତି ଧର୍ମକୁ ଦୂରେଇ ଦେଇ ନାହିଁ । ଐକ୍ୟବୋଧ ବିଶ୍ୱାତ୍ମା ମଧ୍ୟରେ ନିଜର ଏକତ୍ୱ ବୋଧ କରିବା ଭାରତବର୍ଷର ବୈଶିଷ୍ଟ୍ୟ । ଭାରତ ସମସ୍ତଙ୍କୁ ଗ୍ରହଣ କରିଛି, ଆଦର ଆତିଥ୍ୟ କରିଛି । ନିଜ ସଙ୍ଗେ ମିଶାଇ ପାରିଛି । ସହଯୋଗିତା, ମିଳନ ପ୍ରୀତି, ସଂଯମ ଓ ସତ୍ୟ ଭିତରେ ଭାରତର ଅଭିବୃଦ୍ଧି । ତେଣୁ ଭାରତ ଧନରେ ଗରିବ ହେଲେ ମଧ୍ୟ ମନରେ ଆତ୍ମିକ ଆଧ୍ୟାତ୍ମିକ ଭାବରେ ଧନୀ ବୋଲି ସେ ବିଶ୍ୱର ଗୁରୁସ୍ଥାନୀୟ । ସମସ୍ତଙ୍କୁ ପ୍ରୀତି ଓ ସହାନୁଭୂତି କରି ବିଶ୍ୱଜଗତକୁ ନିଜର ଭାବିବାପାଇଁ ଯେଉଁ ମହାମନ୍ତ୍ର ଚରିତ୍ର ତାହା ଭାରତର ନିଜସ୍ୱ । ଏହି ସତ୍ୟ ଆବିଷ୍କୃତ ହୋଇଥିଲା ଭାରତରେ ତାପସ ଋଷିମାନଙ୍କଠାରୁ-ବନ ଜଙ୍ଗଲରେ । ତେଣୁ ଭାରତ କେବେ ପରଧନ ପରରାଜ୍ୟ ଲୁଟିବାର ଅଭିଳାଷ କରି ନାହିଁ । ତାର ବୃତ୍ତି ବଣିକ ବୃତ୍ତିଠାରୁ ଉଚ୍ଚ । ସେ ଦେବାରେ ଆନନ୍ଦ ଓ ଆତ୍ମୋତ୍ସର୍ଗରେ ହିଁ ତୃପ୍ତି ପାଇଛି । ଜୀବେ ଦୟା, ଅହିଂସା ତାର ଲକ୍ଷ୍ୟ ଥିବାରୁ ମହାବୀର ବୁଦ୍ଧଦେବ ଏହି ଧର୍ମ ପ୍ରଚାର କରିଥିଲେ । ପରେ ଚୈତନ୍ୟ, କବୀର, ନାନକ ଓ ବୃନ୍ଦାବନ ପ୍ରଭୃତି ଭାରତର ଅନ୍ତର୍ନିହିତ ବାଣୀ ବିଶ୍ୱରେ ପ୍ରଚାର କଲେ । ଶଙ୍କର ଅଦ୍ୱୈତତତ୍ତ୍ୱ ଜ୍ଞାନତତ୍ତ୍ୱ ପ୍ରଚାର କଲେ । ସେ କହିଲେ କୌପିନବନ୍ତଃ ଖଳୁ ଭାଗ୍ୟବନ୍ତଃ ।

ଏ ଦେଶରେ ଏପରି ସାଧନାର ସିଦ୍ଧି ଶକ୍ତି ଅଛି ଯେ ବୌଦ୍ଧ, ଖ୍ରୀଷ୍ଟାନ୍, ଜୈନ, ମୁସଲମାନ, ହିନ୍ଦୁ, ଇଂରେଜ, ପାର୍ସି, ସମସ୍ତେ

Digitized by srujan ka@gmail.com

ମିଳମିଶି ରହିପାରୁଛନ୍ତି । ବିଶ୍ୱପ୍ରାଣତା ବିଶ୍ୱଜନୀନତା ହିଁ ଭାରତର ସାଧନା ଓ ଭାରତର ପ୍ରକୃତି । ଖଣ୍ଡତା, କ୍ଷୁଦ୍ରତା, କଳହ, ଲୋଭ ହିଂସାର ଉପରେ ଭାରତର ଶତାବ୍ଦୀନ ପରିଦ୍ୟୁତ୍ର । ନିଖିଳ ଚରାଚରର ତା'ର ଆତ୍ମାର ସୋଦର । ଭାରତର ବ୍ରହ୍ମଚର୍ଯ୍ୟ, ସନ୍ତୋଷ, ବ୍ରହ୍ମଜ୍ଞାନ, ଜୀବସେବା ତାକୁ ବଡ଼ ଉଚ୍ଚ ସ୍ଥାନରେ ରଖିଛି-ଯାହା କେହି ଅସ୍ୱୀକାର କରିବେ ନାହିଁ । ଏ ସତ୍ୟ ଜଗତକୁ ଭାରତ ଖୋଜିଛି ଉପଲବ୍ଧି କରିଛି । ଯେବେ ଯେଉଁ କାଳେ ଏହି ଆତ୍ମିକ ସ୍ୱଭାବଜ ସତ୍ୟକୁ ସେ ଭୁଲିବ ତା'ର ଦୁର୍ଦ୍ଦଶାର ଅନ୍ତ ରହିବ ନାହିଁ । ଭାରତ ଭୂମି ଭିତରେ ଆମର ଆତ୍ମାକୁ ଦେଖିବାକୁ ହେବ । ତେବେ ଯାଇ ଆମେ ସ୍ୱାଧୀନ ହୋଇ ପାରିବୁ । କୌଣସି ବହିଃଶତ୍ରୁ ଆମର ସ୍ୱାଧୀନତା ଓ ଐକ୍ୟବୁଦ୍ଧି ନାଶ କରିବାକୁ ସମର୍ଥ ହେବ ନାହିଁ ।

ୟୁରୋପୀୟ ଜଡ଼ବାଦ-ପ୍ରସୂତ ପ୍ରବଳ ପ୍ରଚଣ୍ଡତାକୁ ଭାରତ ଆଦର୍ଶ ମାନେ ନାହିଁ । ପରିପୂର୍ଣ୍ଣ ମାନବଜାତିର ମିଳନ ହିଁ ତା'ର କାମ୍ୟ । ପରିପୂର୍ଣ୍ଣ ଅଖଣ୍ଡ ଜୀବନର ଆନନ୍ଦ ସେ ଚାହିଁଛି । ବିଶ୍ୱ-ତନ୍ତ୍ରୀ ସହିତ ନିଜର ଆତ୍ମାକୁ ମିଳିତ କରି ଦେଖିବାକୁ, ଉପଲବ୍ଧି କରିବାକୁ ସେ ଇଚ୍ଛା କରେ । ଏହା ଭାରତର ସାଧନାଲବ୍ଧ ପ୍ରାକୃତିକ ସତ୍ୟ । ତେଣୁ ନମ୍ରତାଭାବରେ ସାତ୍ତ୍ୱିକ ଭାବର ସାଧନା ଆମକୁ କରିବାକୁ ହେବ । ନିଜକୁ ବିନମ୍ର ନ କଲେ ବିଶ୍ୱ ଜୀବନ ସଙ୍ଗରେ ମିଳନ ହେବ ନାହିଁ । ସମସ୍ତଙ୍କୁ ଆପଣାର କରିବାରେ ଭାରତୀୟ ସଭ୍ୟତା ଓ କୃଷ୍ଟିର ସାର୍ଥକତା—ତାହା ଜାତି ବିଭେଦରେ ସ୍ୱାର୍ଥ ସାଧନରେ ହୁଏ ନାହିଁ । ମୃତ୍ୟୁକୁ ଆମେ ଭୟ କରୁଁ । କାରଣ ଆମେ ଦୁଇ ସ୍ଥାନରେ ରହୁ । ଏକ ପଖେ ଅନନ୍ତ, ଅନ୍ୟ ପାଖେ ଶାନ୍ତ । ଗୋଟିଏ ପାଖ ଈଶ୍ୱରଙ୍କ ପାଖରେ ଅନ୍ୟ ପାଖ ସଂସାରରେ । ଆମେ ଦୁଇପାଖ ଗୋଟିଏ କରିବାକୁ ଚାହୁଁ ।

Digitized by srujan ka@gmail.com

ଗୀତାରେ ଏହି ଭାବପ୍ରଣାଳୀ ରହିଛି । ଭାରତୀୟ ଜୀବନ ଏହି ପରମାତ୍ମାଙ୍କ ସହିତ ନିଜକୁ ସମର୍ପଣ କରିବାରେ ସାର୍ଥକ ହୁଏ । ମନୁଷ୍ୟ ବିଳାସ ବ୍ୟସନରେ ରହିଲେ ବି ତା'ର ଦୁଃଖ କଷ୍ଟ ରୋଗ ବିପଦରୁ ରକ୍ଷା ନାହିଁ । ସେ ସର୍ବଦା ଦୁଃଖ ପାଏ, କିନ୍ତୁ ସେ ତା'ର ନିଜର ବଡ଼ ଆତ୍ମଶକ୍ତିକୁ ଅନୁଭବ କଲେ ଏବଂ ଛୋଟ ଛୋଟ ସମସ୍ୟା; ଘଟଣା ଓ ବ୍ୟପାରମାନଙ୍କରୁ ନିଜକୁ ବିଚ୍ଛିନ୍ନ କରି ପରମାତ୍ମାଙ୍କ ଶରଣ ନ ନେଲେ ଦୁଃଖ ବିପଦରୁ ଶାନ୍ତି ପାଇବନାହିଁ । ତେଣୁ ସେ ଦୁଃଖରେ ଜର୍ଜରିତ ହୋଇ ଭଗବାନଙ୍କୁ ପ୍ରାର୍ଥନା କରିବ ।

ବଞ୍ଚାଅ ମୋତେ ବଞ୍ଚାଅ, ମୋତେ ସ୍ୱାର୍ଥ-ମୃତ୍ୟୁ ହାତରୁ ବଞ୍ଚାଅ । ତୁମ ନିକଟକୁ ନେଇଯାଅ ହେ ପରମାତ୍ମା; ମୁଁ ତୁମର ପ୍ରେମ ନିକଟରେ ଏ ଜୀବନ ସମର୍ପଣ କରିବାକୁ ଚାହେଁ । ମୋର କ୍ଷୁଦ୍ର ଅହଂକାର 'ମୁଁ' କାରରୁ ଊର୍ଦ୍ଧ୍ୱ'କୁ ନେଇ ବଞ୍ଚାଅ । ନିଜକୁ ଦୈନିକ ଜୀବନର ଛୋଟ କଥା ଖଣ୍ଡିତ ଜୀବନ ଧରି ବୁଲି ବୁଲି ମୁଁ ଆନନ୍ଦ ପାଇନାହିଁ । ମୋତେ ବୃହତ୍ତ ଜୀବନର ସ୍ୱାଦ ଦିଅ, ମୋତେ ବଞ୍ଚାଅ ।

ଏ ସଂସାରରେ ପ୍ରେମ-ମନ୍ତ୍ରମାରୁ ନିଜକୁ ଯଥାର୍ଥ ସତ୍ୟ ମିଳେ । ସଚରାଚର ସବୁ ମନୁଷ୍ୟଙ୍କ ସହିତ ସତ୍ୟ ସମ୍ବନ୍ଧ ସ୍ଥାପିତ ହୁଏ । ସେହି ପ୍ରେମ ଲାଭ ନ କଲେ ମନୁଷ୍ୟର ଦୁଃଖ ବିପତ୍ତି ଯିବ ନାହିଁ । ତାଙ୍କୁ ନ ଚାହିଁଲେ, ନ ପାଇଲେ ମନୁଷ୍ୟର ଆନନ୍ଦ ସୁଖଶାନ୍ତି ନାହିଁ । ମନୁଷ୍ୟ କ୍ଷୁଦ୍ରତା; ନୀଚତା; ମିଥ୍ୟା, ଅହଂକାର ନେଇ ଜଳି ପୋଡ଼ି ମରୁଥିବ । ତା'ର ଶାନ୍ତି ନାହିଁ । ତେଣୁ ସର୍ବ ମାନବାତ୍ମା-ଭିତରେ ନିଜକୁ ଆବିଷ୍କାର କରି ସମସ୍ତଙ୍କୁ ଭଗବାନଙ୍କ ପ୍ରତୀକ ମଣି ସମସ୍ତଙ୍କ ସହିତ ମିଳିତ ହେବାରେ ମୁକ୍ତିରୁ ଆନନ୍ଦ ମନୁଷ୍ୟ

Digitized by srujan ka@gmail.com

ପାଇବ । ଭେଦ, ଖଣ୍ଡତା, ଅସତ୍ୟ; ସଙ୍କୀର୍ଣ୍ଣତା, ଲୋଭ, ହିଂସା, ପାଶବତା, ଦମ୍ଭ, ଗର୍ବ, ଭିତରେ ମନୁଷ୍ୟ ନିଜର ନିଜତ୍ୱ ହରାଇ ଅନ୍ଧ ହୁଏ । ସେ ବିଶ୍ୱର ବିଶ୍ୱ ଜୀବନର ସଂସ୍ପର୍ଶ ପାଇ ନ ପାରି ସୁଖୀ ହୁଏ ନାହିଁ । ନିଜର ଆତ୍ମାକୁ ଜାଣିବାହିଁ ଦୁନିଆକୁ ଜାଣିବା । ମନୁଷ୍ୟର ଏହି ସାଧନାହିଁ ସତ୍ୟ ସାଧନା—ଏହା ଭାରତର ଋଷି ମାନଙ୍କର ସାଧନାର ପଥ ଏବଂ ଭାରତର ଏକମାତ୍ର ପଥ ଅଟେ । ବିଶ୍ୱ ଭିତରେ ନିଜକୁ ଦେଖିବାହିଁ ଆମର ସାଧନା । ଏ ଶତାବ୍ଦୀରେ ରବୀନ୍ଦ୍ରନାଥ ଭାରତୀୟ ସଂସ୍କୃତିର ପ୍ରଚାରକ ଥିଲେ । ଗାନ୍ଧୀଙ୍କ ପରି ଅରବିନ୍ଦଙ୍କ ପରି ରବୀନ୍ଦ୍ର ଭାରତର ଗୁରୁ ରବୀନ୍ଦ୍ର-ନାଥ କେବଳ କୌଣସି ଧର୍ମର ଲୋକ ନ ଥିଲେ । ସ୍ୱର୍ଗ ଓ ମର୍ତ୍ତ୍ୟ ଦୁଇ ଲୋକରେ ତାଙ୍କର କାବ୍ୟ ଜଗତ ଓ ସେ ସେହି ସୌନ୍ଦର୍ଯ୍ୟ ସାଗରର ଡୁବୁରି ହୋଇ ନିତ୍ୟ ସ୍ୱର୍ଗରୁ ମର୍ତ୍ତ୍ୟମାଟିକୁ ଅବତରଣ କରନ୍ତି; ପୁଣି ମହାଜୀବନର ଆସ୍ୱାଦନପାଇଁ ସ୍ୱର୍ଗ ଲୋକକୁ ଆରୋ-ହଣ କରନ୍ତି । ସେ ଋଷି ତପସ୍ୱୀ କି କେବଳ ଧାର୍ମିକ ନୁହନ୍ତି-ସେ କବିଧର୍ମୀ ହେଲେ ମଧ୍ୟ ତାଙ୍କର ଦୃଷ୍ଟି ଭାରତର ଅଧ୍ୟାତ୍ମ ଲୋକରେ ବିହରଣ କରିଛି । ସେ ଜୀବନକୁ କୃଚ୍ଛ୍ର ସାଧନ ମାଧ୍ୟମରେ ବିଶ୍ୱଜୀବନ— ଭଗବାନଙ୍କ ଠାରୁ ବିଚ୍ଛିନ୍ନ କରି ରଖି ନ ଥିଲେ । ସମସ୍ତ ରସ ସୌନ୍ଦର୍ଯ୍ୟ ସତ୍ୟ ଶିବ, ସୁନ୍ଦରର ଆକର ଭଗବାନ । ତାଙ୍କ ଦତ୍ତ ଜୀବନର ରୂପ, ରସ ଗନ୍ଧ ଶବ୍ଦ ସ୍ପର୍ଶ ମାଧ୍ୟମରେ ଆନନ୍ଦ ମାଧ୍ୟମରେ ତାଙ୍କୁ ଓ ତାଙ୍କ ବିଭୂତିକୁ ଅନୁଭବ କରିବାକୁ ରବୀନ୍ଦ୍ରନାଥ ଚେଷ୍ଟା କରିଛନ୍ତି—ତାଙ୍କର କବିତ୍ୱ ଓ କାବ୍ୟରେ ରସ ଦୃଷ୍ଟି ଥିଲା । ସେ ଥିଲେ ସତ୍ୟ ଓ ସୌନ୍ଦର୍ଯ୍ୟର ପ୍ରେମର ପୂଜାରୀ ।

---

Digitized by srujan ka@gmail.com

# ଆମର ପୂର୍ବ ପୁରୁଷ

## ରବୀନ୍ଦ୍ରନାଥ, ଶାନ୍ତିନିକେତନ, ବ୍ରହ୍ମଚର୍ଯ୍ୟାଶ୍ରମ

ଯଥାର୍ଥ ବଡ଼ କାହାକୁ କୁହାଯାଏ ?

ଆମର ପୂର୍ବ ପୁରୁଷମାନେ କ'ଣ ହେଲେ ନିଜକୁ 'ବଡ଼' ମନେ କରୁଥିଲେ ?

ବର୍ତ୍ତମାନ ଆମ୍ଭମାନଙ୍କ ମନରେ ସେମାନଙ୍କର ସେହି 'ବଡ଼'ର ଧାରଣା ନାହିଁ ବୋଲି 'ଧନ'କୁ ହିଁ ଆମ୍ଭେମାନେ ବଡ଼ ହେବାର ଉପାୟ ମନେ କରୁଁ ଏବଂ ଧନୀ ଲୋକଙ୍କୁ ହିଁ ଆମେ କହୁ 'ବଡ଼ଲୋକ'। ଆମର ପୂର୍ବପୁରୁଷେ ଏପରି ଲୋକଙ୍କୁ 'ବଡ଼ଲୋକ' ଆଖ୍ୟା ଦେଉ ନ ଥିଲେ।

ସେମାନଙ୍କ ଭିତରେ ଯେଉଁମାନେ 'ବଡ଼ଲୋକ' ଥିଲେ, ସେହି ବ୍ରାହ୍ମଣମାନେ, ଧନକୁ ତୁଚ୍ଛ ମନେ କରୁଥିଲେ। ସେମାନଙ୍କର ବେଶଭୂଷାର ବିଳାସିତା କିଛି ନ ଥିଲା; ଅଥଚ ରାଜା ମହାରାଜାମାନେ ସେମାନଙ୍କ ନିକଟରେ ମୁଣ୍ଡ ନୁଆଁଉ ଥିଲେ। ସେମାନେ 'ବଡ଼' ବୋଲାଉଥିଲେ କେଉଁ ଗୁଣ ଯୋଗୁଁ ? ସେମାନେ ସତ୍ୟକୁ ହିଁ ସବୁଠାରୁ ବଡ଼ ମନେ କରୁଥିଲେ। ମିଥ୍ୟା ନିକଟରେ ସେମାନେ ମୁଣ୍ଡ ନୁଆଁଉ ନ ଥିଲେ। ସତ୍ୟ କ'ଣ, ତାହା ଜାଣିବା ପାଇଁ ସେମାନେ ସାରା ଜୀବନ କଠିନ ତପସ୍ୟା କରୁଥିଲେ,— କେବଳ ଆମୋଦ-ପ୍ରମୋଦରେ ହିଁ, ଜୀବନଟା କଟାଇ ଦେବା ସେମାନଙ୍କର ଲକ୍ଷ୍ୟ ନ ଥିଲା।

ଯାହା ଯୋଗୁ ସତ୍ୟ ଜାଣିବାରେ ବ୍ୟାଘାତ ଘଟୁଥିଲା, ତାହାକୁ ସେମାନେ ଅନାୟାସରେ ପରିତ୍ୟାଗ କରୁଥିଲେ। ମନରେ ସତ୍ୟକୁ ଉପଲବ୍ଧି କରିବାପାଇଁ ସେମାନେ ଅବିଶ୍ରାମ ଚେଷ୍ଟା

Digitized by srujan ka@gmail.com

କରୁଥିଲେ । ମୂର୍ଖରେ ସତ୍ୟନିଷ୍ଠ କହୁଥିଲେ, ଏବଂ ଯାହା ସତ୍ୟ ବୋଲି ଜାଣୁଥିଲେ, ତାହାକୁ କାର୍ଯ୍ୟରେ ପାଳୁଥିଲେ । ସେଥିପାଇଁ କାହାକୁ ଭୟ କରୁ ନ ଥିଲେ । ଆଜି ଆମେ ଟଙ୍କା, କଉଡ଼ି ଓ ଜୋଚା ଛଡା ପାଇବା ପାଇଁ ଯେପରି ପ୍ରାଣପଣେ ଖଟି ମରୁଛୁ, ସେମାନେ ସତ୍ୟକୁ ପାଇବା ପାଇଁ ତାଠାରୁ ଅନେକ ବେଶୀ କଷ୍ଟ-ବରଣ କରୁଥିଲେ ଏବଂ ସେହି କାରଣରୁ ହିଁ ସେମାନେ ଆମ ଅପେକ୍ଷା ଏତେ ବେଶୀ ବଡ଼ ଥିଲେ । ପୁଣି ସେମାନେ ଅଭୟ ଥିଲେ । ଧର୍ମଛଡ଼ା ଆଉ କାହାକୁ ହିଁ ଭୟ କରୁ ନ ଥିଲେ । ସେମାନଙ୍କ ମନ ଭିତରେ ଏପରି ଏକ ତେଜ ଥିଲା, ସର୍ବଦା ଏପରି ଏକ ଆନନ୍ଦ ସେମାନେ ଅନୁଭବ କରୁଥିଲେ, ଯାହା ଯୋଗୁଁ ସେମାନେ କୌଣସି ରଜା-ମହାରଜାର ଅନ୍ୟାୟ ଶାସନକୁ ଗ୍ରାହ୍ୟ କରୁ ନ ଥିଲେ । ଏପରିକି ମୃତ୍ୟୁକୁ ମଧ୍ୟ ସେମାନେ ଭୟ କରୁ ନ ଥିଲେ । ସେମାନେ ଏଥା ଭଲରୂପେ ଜାଣିଥିଲେ ଯେ ସେମାନଙ୍କଠାରୁ ଛଡ଼ାଇ ନେବାର କିଛି ନ ଥିଲା, କାରଣ, ସେମାନଙ୍କର ପ୍ରକୃତ ସମ୍ପଦ ଥିଲା ମନ ଭିତରେ । × × ×

ସେମାନେ ସମସ୍ତଙ୍କର ମଙ୍ଗଳ ଚିନ୍ତା କରୁଥିଲେ, କିପରି ସମସ୍ତଙ୍କର ଭଲ ହେବ, ଏହାହିଁ ସେମାନଙ୍କର ଧ୍ୟାନର ବସ୍ତୁ ଥିଲା ଏବଂ ସେହି ଅନୁସାରେ ସେମାନେ ବ୍ୟବସ୍ଥା ମଧ୍ୟ ଦେଉଥିଲେ । କାହାର କ'ଣ କରିବା ଉଚିତ୍ ତାହା ଜାଣିବାପାଇଁ ସମସ୍ତେ ତାଙ୍କ ପାଖକୁ ଆସୁଥିଲେ । ପ୍ରଜାମାନଙ୍କର କିପରି ଭଲ ହେବ, ତାହା ଜାଣିବାପାଇଁ ରଜାମାନେ ମଧ୍ୟ ତାଙ୍କ ପାଖକୁ ଆସୁଥିଲେ । ସମସ୍ତ-ଙ୍କର ଭଲପାଇଁ, ସେମାନେ ସମସ୍ତ ବିଳାସିତା ସମସ୍ତ ଆମୋଦ ପ୍ରମୋଦ ତ୍ୟାଗ କରି ଚିନ୍ତା କରୁଥିଲେ ।

———

Digitized by srujan ka@gmail.com

# ଜ୍ୟୋତିର୍ବିଦ୍ ଚନ୍ଦ୍ରଶେଖର

## ବସନ୍ତପ୍ରଭା ଦେବୀ

ଯା ସୁଷମା ଖେଳେ ତରୁଲତା-କୋଳେ
ସୁଶ୍ୟାମଳ ଶସ୍ୟକେଦାରେ,
ଯା ମହିମା ଫୁଟେ ସ୍ୱଦେଶେ ବିଦେଶେ
କାରୁକଳାଯୁତ ମନ୍ଦିରେ,
ଯା'ଅଙ୍କେ ଜନମି ଶତ ଶତ କବି
ଧରଣୀ ମନ୍ଦିରେ ରଚି ଗଲେ ଛବି
ମଣ୍ଡି ତା'ର କୋଳ ହେ ଚନ୍ଦ୍ରଶେଖର !
ମିଶିଲ ତାହାର ଦେହରେ ।

ରତନ-ଖଚିତ ସିଂହାସନ ତେଜି
ଭାରତ-'ହିନ୍ଦୁ ତପନ',
ବାଉଁଶ ନଳୀରେ ଦେଖିଲ ନଭରେ
ତାରା-ଗ୍ରହଙ୍କର ସଦନ;
ଧରାତଳେ ରଖିଗଲ ଯେ କୀର୍ତ୍ତି
ତା ନିକଟେ ତୁଚ୍ଛ କଣ୍ଠ-ବିଭୂତି
ଦେଶବାସୀ ହାତେ ଦେଲ ତବ ଯେଉଁ
ଅମୂଲ୍ୟ "ସିଦ୍ଧାନ୍ତ ଦର୍ପଣ ।"

Digitized by srujan ka@gmail.com

ଧନ୍ୟ ଉତ୍କଳର        ଅସ୍ତମିତ ରବି
ଧନ୍ୟ ହେ ତୁମର ଜନମ,
ଚିରଦିନ ପାଇଁ        କରିଲ ଅମର,
ମହିମିତ ତବ କରମ
ଦେଶେ ଦେଶେ ବାଜି ତବପୁଣ୍ୟ କୀର୍ତ୍ତି
ପ୍ରକାଶିଲ ଦିନୁଁ ଦିନ ଦିବ୍ୟ ଜ୍ୟୋତି
ଧନ୍ୟ ମା ଉତ୍କଳ        ତୁମପରି ସୁତେ
କୋଳେ କରି ତା'ର ମଣ୍ଡନ ।
ଯଶ-ଅଭିଳାଷୀ        ନ ଥିଲେ ହେ ଋଷି !
ମହତ ଆଦର୍ଶ ତୁମର
ସଙ୍ଗେ ଆଣିଥିବା ଅଦ୍ଭୁତ ପ୍ରତିଭା
କରିଛି ଜୀବନେ ଅମର;
ତାଙ୍କ କୋଳେ ସ୍ୱର୍ଣ୍ଣ ପଙ୍କଜ ପରାୟେ,
ଉତ୍କଳ ଭୂଖଣ୍ଡେ ଜନ୍ମ ତବ ସ୍ୱୟେ
କରିଲ ଯା ତୁମେ        ଅଜ୍ଞାନାନ୍ଧକାରେ
ଜ୍ଞାନର ଆଲୋକ ସଞ୍ଚାର ।
ଚିର ଦାରିଦ୍ର୍ୟର        କଷାଘାତୁଁ ତୁମେ
ଲଭି ତ ନ ଥିଲ ମୁକତି
ସାରା ନିଶି ବସି        ଯୋଗାସନେ ଋଷି !
କ୍ଷୟ କରି ଦେହ ଶକତି
"କରମ ସାଧନ-ଶରୀର ପାତନ"
ଏହି ମୂଳମନ୍ତ୍ର ଜପି ନିଶିଦିନ
ରଖିଗଲ ତୁମେ        କୋହିନୂର ସମ
ସ୍ୱଦେଶେ ଅକ୍ଷୟ କୀରତି ।

Digitized by srujan ka@gmail.com

ପରଶ ପଥରେ  ବୁଝି ହୁଏ ଖରେ
କାନ୍ତି ଯେସନ ହେମର
'ଯୋଗେଶ'ଙ୍କ ପାଇଁ  ଏ ନଖିଳ ମହୀ
ବୁଝିଲ ମହତ୍ତ୍ୱ ତୁମର
ମାଜଲ ତୁମର ପ୍ରଗାଢ଼ ସାଧନା
ଦୂର ଗୋଲକର ଜ୍ୟୋତିଷ ଗଣନା
ତୁମ କୃତି-ରତ୍ନ  ଗୁନ୍ଥା ଚରଦନ
ସ୍ମୃତି-ସ୍ତମ୍ଭେ କାଳ ଦାମର ।

କେଉଁ ଦୂରଦେଶେ  ଗଲ ଚାଲି ଆହା
ଭାସ୍ୱର ଜ୍ୟୋତିଷ ଭାସ୍କର !
ସ୍ୱଦେଶ-ଗୌରବ  ଉତ୍କଳ-କଣ୍ଠ
ସାଧନା-ସରସୀ-ପୁଷ୍କର !
କିଏ ଜାଣେ କେବେ ବିଭୁ କୃପା ଫଳେ
ଦେହ ଧରି ପୁଣି ଏ ସାନ ଉତ୍କଳେ
ଆସିବ ହେ ଦେବ !  ସ୍ୱପ୍ନ ସତ୍ୟ ହେବ
ହେ ମନୀଷୀ ଚନ୍ଦ୍ରଶେଖର !

———

Digitized by srujan ka@gmail.com

# ସି. ଭି. ରମଣ

## ଅଧ୍ୟାପକ ଡକ୍ଟର ଗୋକୁଳାନନ୍ଦ ମହାପାତ୍ର

୧୮୮୮ ମସିହା ନଭେମ୍ବର ମାସ ତା ୭ରିଖରେ ମାନ୍ଦ୍ରାଜ ରାଜ୍ୟର ତ୍ରିଚିନାପଲ୍ଲୀଠାରେ ଭାରତର କୃତି ସନ୍ତାନ ଚନ୍ଦ୍ରଶେଖର ଭେଙ୍କଟରମଣ ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ହେଲା ଚନ୍ଦ୍ରଶେଖର ଅୟ୍ୟାର ଓ ମାତାଙ୍କ ନାମ ପ୍ରଭାତି ଦେବୀ । ଚନ୍ଦ୍ରଶେଖର ଆୟ୍ୟାର ଭାଇଜାଗପଟନମ୍ ହିନ୍ଦୁ କଲେଜରେ ପଦାର୍ଥ ବିଜ୍ଞାନ ଅଧ୍ୟାପକ ଥିଲେ । ରମଣ ପିଲାଦିନୁ ହିନ୍ଦୁଶାସ୍ତ୍ର ଓ ଧର୍ମପୁସ୍ତକ ଅଧ୍ୟୟନ ପ୍ରତି ବିଶେଷଭାବରେ ଆକୃଷ୍ଟ ହୋଇ ପଡ଼ିଥିଲେ । ନିଜ ଅଧ୍ୟବସାୟ ବଳରେ ସେ ଅଳ୍ପ ସମୟ ମଧ୍ୟରେ ହିନ୍ଦୁଧର୍ମଶାସ୍ତ୍ରରେ ବିଶେଷ ବ୍ୟୁତ୍ପତ୍ତି ଅର୍ଜନ କରିପାରିଥିଲେ । ରମଣଙ୍କ ବାଲ୍ୟଶିକ୍ଷା ଆନ୍ଧ୍ରପ୍ରଦେଶର ଓ୍ୱାଲଟିଅର ସହରରେ ଆରମ୍ଭ ହୋଇଥିଲା । ଯଦିଓ ରମଣ ପିଲାଦିନୁ ହିନ୍ଦୁଶାସ୍ତ୍ରାନୁରାଗୀ ଥିଲେ, ବିଜ୍ଞାନବିଷୟକ ପୁସ୍ତକ ତାଙ୍କୁ କମ୍ ଆକୃଷ୍ଟ କରୁ ନ ଥିଲା । ୧୯୦୧ ମସିହାରେ ସେ ଓ୍ୱାଲଟିଅରରୁ ଆଇ.ଏ. ପାସ୍ କରି ମାନ୍ଦ୍ରାଜ ପ୍ରେସିଡେନ୍ସି କଲେଜରେ ବି.ଏ ଶ୍ରେଣୀରେ ଯୋଗ ଦେଲେ ।

Digitized by srujan ka@gmail.com

ମାତ୍ର ୧୩ ବର୍ଷ ବୟସରେ ବି.ଏ କ୍ଲାସରେ ଅଧ୍ୟୟନ କରି ସେ କଲେଜର ଅଧ୍ୟାପକମାନଙ୍କୁ ନିଜ ଅଲୌକିକ ବୁଦ୍ଧିମତ୍ତାରେ ଚକିତ କଲେ । ଖାଲି ସେତିକି ନୁହେଁ ସେ ଶ୍ରେଣୀର ସମସ୍ତଙ୍କୁ ନିଜ ଜ୍ଞାନରେ ପରାସ୍ତ କରୁଥିଲେ । ପଦାର୍ଥବିଜ୍ଞାନ ଓ ଗଣିତଶାସ୍ତ୍ରରେ ସେ ଏତେ ଧୂରନ୍ଧର ଥିଲେ ଯେ ବେଳେ ବେଳେ ଯେଉଁ ପ୍ରଶ୍ନର ସମାଧାନ ଶିକ୍ଷକମାନେ କରି ପାରୁ ନ ଥିଲେ, ରମଣ ଅକ୍ଳେଶରେ ତାହା କରି ଦେଉଥିଲେ ।

୧୯୦୫ ମସିହାରେ ପଦାର୍ଥବିଜ୍ଞାନରେ ପ୍ରଥମଶ୍ରେଣୀରେ ପ୍ରଥମ ହୋଇ ଏମ୍.ଏ ପାସ୍‌କରି ବିଶ୍ୱବିଦ୍ୟାଳୟର ସ୍ୱର୍ଣ୍ଣପଦକ ପ୍ରାପ୍ତ ହୋଇଥିଲେ । ସେତେବେଳକୁ ତାଙ୍କୁ ମାତ୍ର ସତରବର୍ଷ ବୟସ । ନିଜବନ୍ଧୁ ଓ ଶୁଭାକାଙ୍କ୍ଷୀମାନଙ୍କ ପରାମର୍ଶକ୍ରମେ ସେ ଇଣ୍ଡିଆନ୍ ଫାଇନାନ୍‌ସ ସର୍ଭିସରେ ପରୀକ୍ଷା ଦେଇ ସର୍ବଭାରତୀୟ ଭୃକରିପାଇଁ ଉତ୍ତୀର୍ଣ୍ଣ ହେଲେ । ତାଙ୍କୁ ସେତେବେଳେ ମାତ୍ର ଅଠରବର୍ଷ ବୟସ, ସେତେବେଳେ ସେ ସର୍ବଭାରତୀୟ ଚାକିରିରେ ଯୋଗଦେଇ ଡେପୁଟି ଆକାଉଣ୍ଟାଣ୍ଟ ଜେନେରାଲ ପଦରେ ୧୯୦୭ ମସିହାରେ ଯୋଗ ଦେଲେ ।

ରମଣ ପ୍ରଥମେ କଲିକତାରେ ଅବସ୍ଥାପିତ ହେଲେ । ଏହି ସମୟରେ କଲିକତାରେ ବିଶିଷ୍ଟ ଡାକ୍ତର ମହେନ୍ଦ୍ର ଲାଲ ସରକାର ଇଣ୍ଡିଆନ ଆସୋସିଏସନ for the cultivation of science ନାମକ ଏକ ଅନୁଷ୍ଠାନ ପ୍ରତିଷ୍ଠା କଲେ । ଏହି ଅନୁଷ୍ଠାନର ଗବେଷଣାଗାରରେ ଗବେଷଣା କରିବାପାଇଁ ରମଣ ଅନୁମତି ମାଗିଲେ । ଅନୁମତି ପାଇବା ପରେ ନିଜ ଫୁରସତ ବେଳେ, ସକାଳ, ସନ୍ଧ୍ୟାରେ ସେଠି ପଦାର୍ଥବିଜ୍ଞାନରେ ଗବେଷଣା କଲେ ।

Digitized by srujan ka@gmail.com

ନିଜେ ଅର୍ଥବିଭାଗ ଚାକିରିରେ ଥାଇ ସେ ଏଠି ଗବେଷଣା କରି ୧୯୧୭ ମସିହାରେ ଏକ ଅତି ଉଚ୍ଚ କୋଟୀର ଗବେଷଣାତ୍ମକ ପ୍ରବନ୍ଧ ଲେଖି ବିଲାତର ସୁବିଖ୍ୟାତ Philosophical ସୋସାଇଟି ପତ୍ରିକାରେ ପ୍ରକାଶ କଲେ । ଏହି ପ୍ରବନ୍ଧ ଯୋଗୁ ରମଣଙ୍କ ଖ୍ୟାତି ଚାରିଆଡ଼େ ପ୍ରସାରିତ ହୋଇଗଲା । ପୃଥିବୀର ଜଣେ ବିଶିଷ୍ଟ ପଦାର୍ଥ-ବିଜ୍ଞାନବିତ୍ ଭାବରେ ସମ୍ମାନ ପାଇଲେ । ୧୯୧୭ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରେ ଯେତେବେଳେ ପଦାର୍ଥ-ବିଜ୍ଞାନ ବିଭାଗ ଖୋଲାଗଲା ସେଠୁ ସେ ସରକାରୀ ଚାକିରି ଛାଡ଼ିଦେଇ ପଦାର୍ଥ ବିଜ୍ଞାନବିଭାଗରେ ପ୍ରଧାନ ଅଧ୍ୟାପକ ଭାବରେ ଯୋଗଦେଲେ । ନିଜର ଏତେବଡ଼ ଚାକିରି ଓ ଚାକିରିର ଲୋଭନୀୟ ଉଜ୍ଜ୍ୱଳ ଭବିଷ୍ୟତକୁ ଛାଡ଼ିଦେଇ ଅଧ୍ୟାପକ ଜୀବନ ଗ୍ରହଣ କରିବା ଏଭଳି ଦୃଷ୍ଟାନ୍ତ ବିରଳ; ଯାହାଙ୍କର ବିଜ୍ଞାନ-ପ୍ରତିଭା ଦିନେ ସାରା ବିଶ୍ୱକୁ ଉଜ୍ଜ୍ୱଳ କରିବ ତାଙ୍କୁ ସରକାରୀ ଚାକିରିମୋହ କେତେଦିନ ବା ବାନ୍ଧି ରଖିବ ?

କଲିକତା ବିଶ୍ୱବିଦ୍ୟାଳୟରେ ଯୋଗଦାନ କରି ରମଣ ପ୍ରବଳ ବେଗରେ ପଦାର୍ଥ ବିଜ୍ଞାନରେ ଗବେଷଣା କରିବାକୁ ଲାଗିଲେ । ତାଙ୍କର ଗବେଷଣା ଓ ବିଜ୍ଞାନଚର୍ଚ୍ଚା ତାଙ୍କ ପାଇଁ ପୃଥିବୀର ବିଭିନ୍ନ କେନ୍ଦ୍ରରୁ ବହୁ ସମ୍ମାନ ବୋହି ଆଣିଲା । ୧୯୨୧ ମସିହାରେ ସେ କଲିକତା ବିଶ୍ୱବିଦ୍ୟାଳୟଦ୍ୱାରା ମନୋନୀତ ହୋଇ ବିଲାତ ଯାତ୍ରା କଲେ । ଯେଉଁଠାରେ ସେ ବହୁ କଲେଜ ଓ ବିଶ୍ୱ-ବିଦ୍ୟାଳୟ ପରିଦର୍ଶନ କରି ବିଜ୍ଞାନ ବିଷୟରେ ବକ୍ତୃତାମାନ ଦେଇ-ଥିଲେ । ଏହାପରେ ୧୯୨୪ ମସିହାରେ ସେ ଇଂରେଜ ସାମ୍ରାଜ୍ୟର ବିଜ୍ଞାନ କଂଗ୍ରେସରେ ଯୋଗଦେବା ପାଇଁ କାନାଡ଼ା ଯାଇଥିଲେ । ସେତେବେଳେ ସେ କାନାଡ଼ା ଓ ଯୁକ୍ତରାଷ୍ଟ୍ରର ବଡ଼ ବଡ଼ ବିଜ୍ଞାନାଗାର

Digitized by srujan ka@gmail.com

ବର୍ତ୍ତନ କରିବାର ସୌଭାଗ୍ୟ ଅର୍ଜନ କରିଥିଲେ । ବିଦେଶରୁ ପ୍ରତ୍ୟାବର୍ତ୍ତନ କରି କଲିକତାରେ ରମଣ ନିଜ ଗବେଷଣା କ୍ଷିପ୍ର ବେଗରେ ଚଳାଇଲେ । ଫଳରେ ୧୯୨୮ ମସିହାରେ ସର୍ବଜନ-ବିଦିତ ରମଣରଶ୍ମି ଅବିଷ୍କାର କଲେ । ତାଙ୍କର ଏହି ଆବିଷ୍କାର ଏକ ଅତି ପ୍ରସିଦ୍ଧ ଆବିଷ୍କାରରୂପରେ ସାରା ପୃଥିବୀରେ ପରିଚିତ ହେଲା ।

୧୯୩୦ ମସିହାରେ ରମଣ ତାଙ୍କର ଏହି ଆବିଷ୍କାରପାଇଁ ପୃଥିବୀ-ପ୍ରସିଦ୍ଧ ନୋବେଲ ପୁରସ୍କାର ପାଇଲେ । ବୈଜ୍ଞାନିକ ଭାବରେ ନୋବେଲ ପୁରସ୍କାର ପାଇବାରେ ରମଣ ହେଉଛନ୍ତି ସର୍ବପ୍ରଥମ ଭାରତୀୟ, ପୃଥିବୀର ଶ୍ରେଷ୍ଠ ବୈଜ୍ଞାନିକମାନଙ୍କୁ ସମ୍ମାନ ଦେଖାଇବା-ପାଇଁ ଏହା ହେଉଛି ପୃଥିବୀର ମଧ୍ୟରୁ ବଡ ପୁରସ୍କାର । ରମଣ ଏହି ପୁରସ୍କାର ଆଣିବାପାଇଁ ୧୯୩୦ ମସିହା ଡିସେମ୍ବର ମାସ ଦଶ ତାରିଖ ଦିନ ସୁଇଡେନରେ ପହଞ୍ଚିଲେ । କଲିକତା ବିଶ୍ୱ-ବିଦ୍ୟାଳୟରେ ପଦାର୍ଥ ବିଜ୍ଞାନର ଅଧ୍ୟାପକ ଥିବାବେଳେ ଏହି ପୁରସ୍କାର ଲାଭ କରିଥିଲେ । ସୁଇଡେନରୁ ଫେରି ରମଣ ବେଶିଦିନ କଲିକତାରେ ରହି ନ ଥିଲେ । ୧୯୩୨ ମସିହାରେ ସେ କଲିକତା ବିଶ୍ୱବିଦ୍ୟାଳୟରୁ ବିଦାୟ ନେଇ ବାଙ୍ଗାଲୋରସ୍ଥିତ ଭାରତୀୟ ବିଜ୍ଞାନ ଅନୁଷ୍ଠାନରେ ଯୋଗଦେଲେ । ସେଠାରେ ସେ କିଛିଦିନ ଗବେଷଣା କରିବା ପରେ ବାଙ୍ଗାଲୋରରେ ନିଜର ଏକ ଗବେଷଣା ଅନୁଷ୍ଠାନ ପ୍ରତିଷ୍ଠା କରି ଗବେଷଣାରେ ରତ ଥିଲେ । ସେହି ଗବେଷଣା ଅନୁଷ୍ଠାନର ନାମ ହେଉଛି Raman Research Institute.

ନୋବେଲ ପୁରସ୍କାର ବ୍ୟତୀତ ରମଣ ପୃଥିବୀର ବହୁ ଦେଶରୁ ସମ୍ମାନଜନକ ପଦକ ଓ ପଦବୀ ପାଇଛନ୍ତି । ବୃଦ୍ଧ ବିଜ୍ଞାନୋନ୍ନତ

Digitized by srujan ka@gmail.com

ଦେଶରେ ବିଜ୍ଞାନ ଅନୁଷ୍ଠାନର ସମ୍ମାନାସ୍ପଦ ସଭ୍ୟଭାବରେ ମନୋନୀତ ହୋଇଥିଲେ । ୧୯୫୮ ମସିହାରେ ସେ ସୋଭିଏଟ ସରକାରଙ୍କ ଦ୍ୱାରା ଲେନିନ୍ ଶାନ୍ତି ପୁରସ୍କାର ତାଙ୍କୁ ପ୍ରଦତ୍ତ ହୋଇଥିଲା ।

ରମଣ ଭାରତର ଖାଲି କେବଳ କୃତି ସନ୍ତାନ ନୁହନ୍ତି— ସାରା ବିଶ୍ୱରେ ଏକ କୃତିସନ୍ତାନ ଭାବରେ ଖ୍ୟାତ । ତାଙ୍କ ଆବିଷ୍କାର ଫଳରେ ସାରା ପୃଥିବୀର ବିଜ୍ଞାନୀ ସମାଜ ଯେପରି ଭାବରେ ଉପକୃତ ହୋଇଛି—ତାହା ଭାଷାରେ ବର୍ଣ୍ଣନା କରିବା କଷ୍ଟକର ।

୧୯୭୦ ମସିହା ନଭେମ୍ବର ମାସ ୨୧ତାରିଖ ଦିନ ବୈଜ୍ଞାନିକ ରମଣ ୮୨ ବର୍ଷ ବୟସରେ ହୃଦରୋଗରେ ଆକ୍ରାନ୍ତ ହୋଇ ବାଙ୍ଗାଲୋରଠାରେ ଇହଲୀଳା ସମ୍ବରଣ କଲେ ।

---

Digitized by srujan ka@gmail.com

# ଭଗବାନ ଶ୍ରୀ ସତ୍ୟସାଇ

## ଡକ୍ଟର ବି. ଏନ୍. ମହାନ୍ତି

ଭଗବାନ ଶ୍ରୀ ଶ୍ରୀ ସତ୍ୟସାଇ ବାବା ଆନ୍ଧ୍ରପ୍ରଦେଶର ଅନନ୍ତ-ପୁର ଜିଲା ଅନ୍ତର୍ଗତ ପୁଟ୍ଟପାର୍ତ୍ତି ଗ୍ରାମରେ ୧୯୨୬ ମସିହା ନଭେମ୍ବର ତା୨୩ରିଖରେ ମାନବ ଶରୀରରେ ଜନ୍ମଲାଭ କରିଛନ୍ତି । ଜନ୍ମ ହେବା ପୂର୍ବରୁ ମଧ୍ୟ-ରାତ୍ରରେ ଜନନୀ ପାହାନ୍ତିଆରେ ତାଙ୍କ ଉପର ଘରୁ ତାନପୁରା ଓ ତଳ ଘରୁ ମର୍ଦ୍ଦଳ ଧ୍ୱନି ଆପେ ଆପେ ବାଜିବା ଶୁଣାଯାଉଥାଏ । ଏହା ଦୈବୀ ଶକ୍ତିର ଆଗମନ ବାର୍ତ୍ତାର ସୂଚନା ଦେଉଥିଲା । ତାଙ୍କର ଭୂମିଷ୍ଠ ହେବା ସମୟରେ ପ୍ରସୂତି ଗୃହରେ ଗୋଟିଏ ନାଗ ସାପ ସବୁରି ଅଲକ୍ଷରେ ରହିଥିଲା । ନବଜାତକର ଶଯ୍ୟା ତଳେ ଗୋଟିଏ କିଛି ହଲଚଲ ହେଉଥିବା ଦେଖି ସେ ବିଛଣା ଅଳ୍ପ ଉଞ୍ଚାଇ ଦେବାରୁ ତନ୍ମଧ୍ୟରୁ ନାଗସାପଟି ଚାଲିଗଲା । ଏହାଥିଲା ଶେଷଶାୟୀଙ୍କ ପାଇଁ ଶେଷନାଗ ।

ପିଲାଦିନେ ସେହି ଶିଶୁର ନାଁ ଥିଲା ସତ୍ୟନାରାୟଣ । ଛଅବର୍ଷର ବୟସ ବେଳରୁ ସେ ଦୟାର ଅବତାର ହୋଇଥିଲେ । ଘରର ବଡ଼ମାନେ ଭିକାରୀକୁ ଭିକ୍ଷା ନ ଦେଇ ତଡ଼ିଦେଲେ ସତ୍ୟ କାନ୍ଦି-ପକାଏ ଏବଂ ନିଜର ଖାଦ୍ୟ ଦେଇ ଦିଏ । ଘରେ ଖାଉ ନ ଥିବା ଦେଖି ମାଆ ଈଶ୍ୱରାମ୍ମା ପଚାରି ବସିଲେ, "ଏକ ଆଗନ୍ତୁକ ଆସି

Digitized by srujan ka@gmail.com

ତାକୁ ଅଦୃଶ୍ୟ ଭାବରେ ଖାଇବାକୁ ଦେଉଥିବା" ସେ କହେ ଓ ଖାଇଥିବାର ପ୍ରମାଣ ସ୍ୱରୂପ ଡାହାଣ ହାତ ପାପୁଲିରୁ ବାହାରୁଥିବା ଘିଅ, ଦୁଧ ଓ ଦହିର ଅପୂର୍ବ ଦ୍ରବ୍ୟ ସୁଗନ୍ଧ ଶୁଙ୍ଘାଇଦିଏ ।

ପାଞ୍ଚବର୍ଷ ବୟସବେଳେ ରାମନବମୀ ଯାତ୍ରାରେ ଗ୍ରାମର ଠାକୁର ରାମଚନ୍ଦ୍ରଙ୍କ ଚିତ୍ରପଟ ଶଗଡରେ ସଜ୍ଜିତ ହୋଇ ଗଲା ବେଳେ ଦେଖାଗଲା—ରାମଚନ୍ଦ୍ରଙ୍କ ଫଟୋ ବଦଳେ ସତ୍ୟ ବେଶ ଭୂଷା ହୋଇ ଶଗଡ ଉପରେ । ଏହାର କାରଣ ପଚାରିବାରୁ ଉତ୍ତର ମିଳିଲା, ସେ ସବୁ ଆମର ଗୁରୁ । ସେ ପିଲା ଦିନୁ ଏହିପରି ଗୁରୁର ଭୂମିକା ଗ୍ରହଣ କରିଛନ୍ତି ।

ଶିଶୁ ସତ୍ୟନାରାୟଣଙ୍କ ବାଲ୍ୟଶିକ୍ଷା ପୁଟପାର୍ତ୍ତି ନିକଟବର୍ତ୍ତୀ ସ୍କୁଲରେ ଆରମ୍ଭ ହେଲା । ସେ ସ୍କୁଲରେ ପଢୁଥିବା ସମୟରେ ଯେଉଁମାନେ ଶିକ୍ଷା ଦେବାକୁ ଆସୁଥିଲେ, ସେମାନେ ଶିଶୁର ମତପଙ୍କ ଜ୍ଞାନ ଦେଖି ବିସ୍ମିତ ହେଉଥିଲେ । ସେ ସମସ୍ତଙ୍କୁ ସତ୍ ମାର୍ଗରେ ଯିବା ପାଇଁ କହୁଥିଲେ ଓ ନିଜେ ସର୍ବଦା ସେହିପରି ଅନୁସରଣ କରୁଥିଲେ । ବାଲ୍ୟକାଳରେ ବହୁତ ଅଦ୍ଭୁତ ଘଟଣା ଘଟିଥିଲା । ଶୂନ୍ୟରୁ ହାତ ହଲାଇ ଫୁଲ, ଫଳ, ମିଠେଇ, ପିପରମେଣ୍ଟ ଓ ପେନ୍ସିଲ ଆଦି ବାହାର କରି ସମସ୍ତଙ୍କୁ ବିତରଣ କରୁଥିଲେ । ସେ ବର୍ତ୍ତମାନ ଜଗତରେ ଜଣେ ଅଦ୍ଭୁତକର୍ମା; ଜନ୍ମରୁ ଯୋଗସିଦ୍ଧ । ତାଙ୍କର ଅଲୌକିକ ମହିମା କେବଳ ଭାରତ କାହିଁକି ଦେଶ-ଦେଶାନ୍ତର ପରିବ୍ୟାପ୍ତ । ବହୁ ଜର୍ମାନୀ ୟୁରୋପ, ଆମେରିକା ପ୍ରଭୃତିରୁ ଲୋକ ଆସି ତାଙ୍କ ପାଖରୁ କୃପାଲାଭ କରି ଭାରତର ଅଧ୍ୟାତ୍ମ ମହିମା, ସଂସ୍କୃତି ଓ ଶାନ୍ତିର ଆଶୀଷ ଲାଭ କରି ଧନ୍ୟ ହେଉଛନ୍ତି । ସେ କହନ୍ତି ଦୁନିଆରେ ସିଦ୍ଧି, ସାଧକ, ମୁନି, ଋଷି ଓ ଭକ୍ତଙ୍କ ପ୍ରାର୍ଥନା କ୍ରମେ ଶାନ୍ତିସ୍ଥାପନ ପାଇଁ ବୈକୁଣ୍ଠରୁ ଧରାଧାମକୁ

Digitized by srujan ka@gmail.com

ଅବତରଣ କରିଛନ୍ତି । ପାପୀ, ତାପୀ, ସ୍ୱଧର୍ମ ତ୍ୟାଗୀ ଓ ପତିତଙ୍କୁ ଉଦ୍ଧାର କରିବା ମଧ୍ୟ ତାଙ୍କର କାର୍ଯ୍ୟ । ତାହାଙ୍କ ବ୍ୟତିରେକେ ସେମାନେ ଆଜି କୁଆଡ଼େ ଯିବେ ? ତାଙ୍କର ଜୀବନ ବିଚିତ୍ର ଓ କଳ୍ପନାତୀତ; ରମଣମହର୍ଷି ଯେପରି ଜ୍ଞାନଯୋଗ ସାଧନାକରି ଅମର ଆତ୍ମା ସ୍ୱରୂପଉପଲବ୍ଧି କରିଥିଲେ ଓ ଆଧୁନିକ ଯୁଗରେ ଈଶ୍ୱର ଏକ ପ୍ରଧାନ ଗୁରୁ ହୋଇଥିଲେ ସତ୍ୟସାଇ ବାବା ମଧ୍ୟ ସେହିପରି ସାଧାରଣଙ୍କୁ ଶିକ୍ଷା ଦେବାପାଇଁ ପ୍ରେମବାହିନୀ, ଧ୍ୟାନବାହିନୀ, ପ୍ରଶାନ୍ତି ବାହିନୀ ଓ ସନ୍ଦେହ ନିବାରଣୀ ଇତ୍ୟାଦି ବହୁଗ୍ରନ୍ଥ ବାବା ତେଲୁଗୁ ଭାଷାରେ ରଚନା କରିଛନ୍ତି । ଏଗୁଡ଼ିକ ବର୍ତ୍ତମାନ ଇଂରେଜି ଓ ଅନ୍ୟାନ୍ୟ ଭାଷାରେ ଅନୁବାଦ ହେଲାଣି, ଉକ୍ତ ପୁସ୍ତକଗୁଡ଼ିକ ପଢ଼ିଲେ ବାବାଙ୍କର ଜ୍ଞାନ ଓ ବିଚକ୍ଷଣ ବୁଦ୍ଧିର ପରିଚୟ ମିଳେ; ସେ ଜନ୍ମକାଳରୁ ମହାପୁରୁଷ, ତାଙ୍କର ବାଣୀ ଋଷିବାଣୀ, ସେ ଦୂର ବସ୍ତୁଦର୍ଶନ ଓ ଦୂର ଦେଶ ଅନ୍ତରୀକ୍ଷରୁ ଶ୍ରବଣ କରିଥାନ୍ତି ଓ ଅପ୍ରାପ୍ତବସ୍ତୁ ତତ୍‌କ୍ଷଣାତ୍ ଆଣିଦେଇଥାନ୍ତି ।

ଏ ଯୁଗରେ ଶୂନ୍ୟରୁ ବିଭୂତି ଇତ୍ୟାଦି ଉତ୍ପନ୍ନ କରିବା, ସୋମନାଥ ମନ୍ଦିର ସରକାର ତିଆରି କରି ପ୍ରତିଷ୍ଠା କଲାବେଳେ ସେହି ମନ୍ଦିରରୁ ଅନ୍ତର୍ହିତ ହୋଇଥିବା ( ମୁସଲମାନ କବଳରେ ମନ୍ଦିର ପଡ଼ିଲାବେଳେ ) ଶିବଲିଙ୍ଗଙ୍କୁ ହାତର ସଙ୍କେତରେ ଉଦ୍ଧାର କରି ଶତସ୍ୱର୍ଣ୍ଣ ବେଲପତ୍ର ଓ ଶତସୁବର୍ଣ୍ଣ କମଳରେ ତାଙ୍କର ପୂଜା କରିବା, ଦ୍ୱାରକାରେ ବାଲିତଳେ ପୋତିହୋଇ ପଡ଼ିଥିବା କୃଷ୍ଣ-ମନ୍ଦିରକୁ ସଙ୍କେତରେ ବାଲିତଳୁ ଉଠାଇବା, ପୋତା ହୋଇ ରହିଥିବା କୃଷ୍ଣମୂର୍ତ୍ତିକୁ ଉଦ୍ଧାରକରି ପୂଜା କରାଇବା ଆଦି ଅଲୌକିକ କାର୍ଯ୍ୟ ସେ ସମ୍ପୂର୍ଣ୍ଣ କରିଅଛନ୍ତି ।

Digitized by srujan ka@gmail.com

ସେ କହିଛନ୍ତି:—ସତ୍ୟ ହେଉଛି ମୋର ପ୍ରଚାର, ଧର୍ମ ହେଉଛି ମୋର ଆଚାର, ଶାନ୍ତି ହେଉଛି ମୋର ସ୍ୱଭାବ; ପ୍ରେମ ହେଉଛି ମୋର ସ୍ୱରୂପ; ଏଥିରୁ ଯେ କୌଣସି ଗୋଟିକୁ ଗ୍ରହଣ କର; ତୁମେ ମୋର ହେବ ଓ ମୁଁ ତୁମର ହେବି।

ବର୍ତ୍ତମାନ ପୁଟପାର୍ତ୍ତିରେ ଯେଉଁ ଆଶ୍ରମ ହୋଇଛି ତାହାର ନାମ "ପ୍ରଶାନ୍ତି ନିଲୟମ"। ବାବା ସେଠାରେ ଭକ୍ତମାନଙ୍କୁ ଦର୍ଶନ ଦିଅନ୍ତି। ଏହା ବ୍ୟତୀତ ଭାରତର ବିଭିନ୍ନ ସ୍ଥାନରେ ବାବାଙ୍କର ଆଶ୍ରମ ରହିଛି। ବାଙ୍ଗାଲୋର, ବୃନ୍ଦାବନ, ବମ୍ବେ ଓ ପୁନାରେ ମଧ୍ୟ ବାବାଙ୍କର ଆଶ୍ରମ ରହିଛି।

ମହୀଶୂର ଇଞ୍ଜିନିୟରିଂ କଲେଜରୁ ଅବସର ନେଇଥିବା ଅଧ୍ୟାପକ ଏନ୍. କସ୍ତୁରୀ ନାମକ ଜଣେ ବିଦ୍ୱାନ ଓ କର୍ଣ୍ଣାଟ ଭାଷାର କବି ସତ୍ୟସାଇ ବାବାଙ୍କ ନିକଟରେ ସେକ୍ରେଟାରୀ ରୂପେ ପ୍ରଶାନ୍ତି ନିଲୟମ ଆଶ୍ରମରେ ବାବାଙ୍କ ପାଖରେ କାମ କରନ୍ତି। ବାବାଙ୍କ ଜୀବନୀ ଇଂରାଜୀ ଓ ତେଲୁଗୁରେ ଲେଖିଛନ୍ତି। ଆମର ରାଜ୍ୟସଭା ମେମ୍ବର ଶ୍ରୀ ବ୍ରହ୍ମାନନ୍ଦ ପଣ୍ଡା ବାବାଙ୍କ ଜୀବନୀ ଉତ୍କଳାନୁବାଦ କରିଛନ୍ତି। ଏ ବହିର ନାମ 'ସତ୍ୟଂ ଶିବଂ ସୁନ୍ଦରମ୍' ଏହି ବିଶାଳଗ୍ରନ୍ଥରେ ସତ୍ୟସାଇ ବାବାଙ୍କର ପରିଚୟଦେଇ, ଏନ୍ କସ୍ତୁରୀ ଲେଖିଛନ୍ତି—ସେ ଭାରତର ବହୁ ଯୋଗୀ ମହାତ୍ମାଙ୍କୁ ଦେଖିଛନ୍ତି।

ଶ୍ରୀ ଅରବିନ୍ଦ, ମେହେର ବାବା ଓ ରାମକୃଷ୍ଣ ମିସନର ସିଦ୍ଧ ଯୋଗୀ ସନ୍ନ୍ୟାସୀମାନଙ୍କ ସଂସ୍ପର୍ଶରେ ଆସିଛନ୍ତି। ସେ ନିଜେ ବୋହୂଏ ବର୍ଷ ମୌନ ଓ ଚାଳିଶବର୍ଷ ଯୋଗସାଧନା କରିବାପରେ ଶେଷରେ ସତ୍ୟସାଇ ବାବାଙ୍କ ନିକଟକୁ ଆସିଅଛନ୍ତି।

Digitized by srujan ka@gmail.com

## ତାଙ୍କ ବାଣୀ

ମୋତେ ମାପିବାପାଇଁ ଚେଷ୍ଟା କରନାହିଁ । ତୁମେ ପାରିବ ନାହିଁ; ବରଂ ନିଜକୁ ଆବିଷ୍କାର କରିବାପାଇଁ ଚେଷ୍ଟାକର । ତା' ହେଲେ ତୁମେ ମୋତେ ଆବିଷ୍କାର କରିବାରେ ସଫଳ ହେବ ।

ମୁଁ କୌଣସି ଜପ, ଧ୍ୟାନ ବା ଅଧ୍ୟୟନ କରେନାହିଁ । ମୁଁ କୌଣସି ଯୋଗୀ, ସିଦ୍ଧ କିମ୍ବା ସାଧକ ନୁହେଁ । ମୁଁ ସମସ୍ତ ସାଧକଙ୍କୁ ବାଟ ଦେଖାଇବା ପାଇଁ ଓ ଆଶୀର୍ବାଦ କରିବା ପାଇଁ ଆସିଛି ।

ମୁଁ ସ୍ତ୍ରୀ ନୁହେଁ କି ପୁରୁଷ ନୁହେଁ, ବୃଦ୍ଧ ନୁହେଁ କି ଯୁବକ ନୁହେଁ । ମୁଁ ଏସବୁ ମୋତେ ପ୍ରଶଂସା କର ନାହିଁ । ମୁଁ ଚାହେଁ, ନିର୍ଭୟରେ ତୁମେ ମୋ ପାଖକୁ ଆସ; କାରଣ ତାହା ତୁମର ଅଧିକାର, ତୁମେ ତୁମର ପିତାଙ୍କୁ ପ୍ରଶଂସା କର କି ? ତୁମର ଦାବୀ ସ୍ୱରୂପ ତୁମେ ତାଙ୍କୁ କିଛି ମାଗି ଆଦାୟ କର, ନୁହେଁ ?

ଖାଇ ପିଇ ମଜଳ ମଜଲିସରେ ଦିନ କାଟିବା ନିମନ୍ତେ ଜୀବନ ଅଭିପ୍ରେତ ନୁହେଁ । ତୁମେ ଜୀବନର ଅଧିକାରୀ ହୋଇଛ; ପରମେଶ୍ୱରଙ୍କୁ ଲାଭ କରିବା ପାଇଁ ଆଜି ସମସ୍ତଙ୍କ ମଧ୍ୟରେ ଅସହିଷ୍ଣୁତା ଓ ସ୍ୱାର୍ଥପରତା ଅତି ପ୍ରବଳ ହୋଇ ଉଠିଛି —ଜନପ୍ରିୟ ଏବଂ ଜୀବନରୁ ସମଭାବ ଅନ୍ତର୍ହିତ ହୋଇ ଗଲାଣି । ପ୍ରତ୍ୟେକେ କ୍ଷମତା, ପ୍ରତିପତ୍ତି ଏବଂ ସମ୍ପତ୍ତି ଲାଭକରିବା ନିମନ୍ତେ ବ୍ୟାକୁଳ । ସେଥିପାଇଁ ପ୍ରତିଦିନ ନାନା ରାଜନୈତିକ ଦଳ ଗଢ଼ା ଚାଲିଛି । ବାମ-ପନ୍ଥୀ, ଦକ୍ଷିଣପନ୍ଥୀ, ମଧ୍ୟମପନ୍ଥୀ, ପୁଣି ମଧ୍ୟମପନ୍ଥୀଙ୍କ ଭିତରେ ବାମ-ଦକ୍ଷିଣ; ପୁଣି ସେମାନଙ୍କ ଭିତରେ ଉଗ୍ରପନ୍ଥୀ, ନରମପନ୍ଥୀ ଆଦି ଅସଂଖ୍ୟ ଗୋଷ୍ଠୀ ପ୍ରତିଦିନ ଗଢ଼ା ହେଉଛି ଏବଂ ଭାଙ୍ଗୁଛି । ଏସମସ୍ତର କାରଣ ମଣିଷର ଅତୃପ୍ତ ଏବଂ ଅଦମ୍ୟ କାମନାର ପିପାସା, ମାତ୍ର

Digitized by srujan ka@gmail.com

ଏସମସ୍ତର ଜନକ ବୁଦ୍ଧି ସବୁବେଳେ ଗୋଟିଏ—ଗଛର ଶାଖା ପ୍ରଶାଖା ପରି ବୁଦ୍ଧିକୁ ବିଭିନ୍ନ ବାଟରେ ବିଭିନ୍ନ ଉଦ୍ଦେଶ୍ୟରେ ପରିଚାଳିତ କରାଯାଉଛି ମାତ୍ର; ତେଣୁ ମଣିଷ ନିଜ ସହ ଅନ୍ୟମାନଙ୍କ ଏକତ୍ୱ ଭୁଲିଗଲଣି ।

× × ×

ସେବା ହିଁ ଧର୍ମର ପଥ । ଦୁଃସ୍ଥ, ପୀଡ଼ିତ, ଦୁଃଖୀ ଏବଂ ଅସହାୟ ମଣିଷ ସେବାଠାରୁ ଆଉ ବଡ଼ ଧର୍ମ ନାହିଁ । ଏହି ସେବା ଦ୍ୱାରା ଯେଉଁ ଆନନ୍ଦ ମିଳେ ତାହା ଅପାର୍ଥିବ, ତାହା ସ୍ୱର୍ଗୀୟ; ମାତ୍ର ତୁମେ ସବୁ ତାହା ଭୁଲି ଗଲଣି ।

× × ×

ତ୍ୟାଗରେ ହିଁ ପ୍ରକୃତ ଆନନ୍ଦ ମିଳେ । ତ୍ୟାଗ ନ ଥିଲେ ଆନନ୍ଦ ବା କାହୁଁ ଆସିବ ।

× × ×

ଚିତ୍ତ ଶୁଦ୍ଧି ନ ଥିଲେ ଖଣ୍ଡିଏ ଅଦରକାରୀ ବାଜେ କାଗଜ ଟୁକୁରା ସହ ତୁମର ମୂଲ୍ୟ ସମାନ ।

× × ×

ଏକାଗ୍ରତା ନ ଥିଲେ ଶହ ଶହ ବର୍ଷ ଧରି ଧ୍ୟାନ କଲେ ମଧ୍ୟ ତାହା ନିଷ୍ଫଳ; ଯଦି ତୁମେ ୧୨ ସେକେଣ୍ଡ ପାଇଁ ମନକୁ ଏକାଗ୍ର କରିପାରିବ, ତେବେ ତୁମେ ଧାରଣା ଲାଭ କରି ପାରିବ ।



Digitized by srujan ka@gmail.com

# କଲ୍ଲୋଳକବି ଦୀନକୃଷ୍ଣ

ଅଧ୍ୟାପକ ଶ୍ରୀ ଦେବରାଜ ପାଠୀ

ଓଡ଼ିଆ ସାହିତ୍ୟର ଭକ୍ତି ଯୁଗପରେ ରୀତିଯୁଗ ବା କମନୀୟ କାବ୍ୟଯୁଗର ପ୍ରତିଷ୍ଠାତାଭାବେ ଯେଉଁ କେତେକ ମହନୀୟ କୃତୀ ବାଣୀ ବରପୁତ୍ରଙ୍କର ସାଦର ନାମୋଲ୍ଲେଖ ଆବଶ୍ୟକ ହୁଏ ସେହି-ମାନଙ୍କ ମଧ୍ୟରେ ରସକଲ୍ଲୋଳକାର ଦୀନକୃଷ୍ଣ ଦାସ ଅବଶ୍ୟ-ସ୍ମରଣୀୟ । ତେବେ ଏ ସାହିତ୍ୟ ସମାଲୋଚକ ସମୀକ୍ଷାରେ ଦୀନକୃଷ୍ଣଦାସ ଜଣେ କମ୍ବା ଦୁଇଜଣ ଅଦ୍ୟାବଧି ମୀମାଂସିତ ହୋଇ ପାରିଲା ନାହିଁ । ପ୍ରତ୍ୟେକେ ନିଜ ନିଜ ଯୁକ୍ତିରେ ଅଟଳ । ଯାହାହେଉ ଏହି ସାହିତ୍ୟ ସମାଲୋଚକମାନଙ୍କ ମଧ୍ୟରୁ ଓଡ଼ିଆ ସାହିତ୍ୟ ଇତିହାସର ସର୍ବପ୍ରଥମ ସଂସ୍ଥାପକାଗ୍ର ୰ ତାରିଣୀ ଚରଣ ରଥ, ଶ୍ୟାମସୁନ୍ଦର ରାଜଗୁରୁ, ପଣ୍ଡିତ ବିନାୟକ ମିଶ୍ର, ଡ: ହରେକୃଷ୍ଣ ମହତାବ, ଶ୍ରୀ ଯୁକ୍ତ କେଦାରନାଥ ମହାପାତ୍ର ତଥା ଗୌରୀକୁମାର ବ୍ରହ୍ମାଙ୍କ ସିଦ୍ଧାନ୍ତରେ—ରସକଲ୍ଲୋଳ, ଆର୍ତ୍ତତ୍ରାଣ ଚଉତିଶା ଏବଂ ବର୍ତ୍ତମାନ ଉପଲବ୍‌ଧ—ଜଗମୋହନ ଛାନ୍ଦ ପ୍ରଭୃତିର ରଚୟିତା ଦୀନକୃଷ୍ଣ ଦାସ ପୁରୁଷୋତ୍ତମବାସୀ ଉତ୍କଳୀୟ କାୟସ୍ଥ ପରିବାରର । କିନ୍ତୁ-ରସବିନୋଦ, ଦ୍ରୁତାବସିନ୍ଧୁ, ଗୁଣସାଗର, ନାମରତ୍ନଗୀତା ପ୍ରଭୃତିର ରଚୟିତା ଦୀନକୃଷ୍ଣ ହେଉଛନ୍ତି ଜଳେଶ୍ୱର ନିବାସୀ

Digitized by srujan ka@gmail.com

ରାଜପୁତ କ୍ଷତ୍ରିୟ ଜାତୀୟ ଏବଂ ତାଙ୍କ ପିତାଙ୍କ ନାମ ମଧୁସୂଦନ । ସେ ମଧ୍ୟ ରସକଲ୍ଲୋଳକାରଙ୍କ ପରି ଥିଲେ ବିଦ୍ୱାନ୍ ଓ ଭକ୍ତ । କିନ୍ତୁ ଭ୍ରାତୃବିବାଦରୁ ଗୃହ ପରିତ୍ୟାଗକରି ତତ୍କାଳୀନ ଶ୍ରୀମନଗର ଦଣ୍ଡପାଟ (ଢେଙ୍କାନାଳ)ର ଅଧୀଶ୍ୱର ବଳରାମ ସାମନ୍ତ ସିଂହାରଙ୍କ ଆଶ୍ରୟରେ ରହିଥିଲେ । ତାଙ୍କର ବାସସ୍ଥାନ ହୋଇଥିଲା ବ୍ରାହ୍ମଣୀ କୂଳସ୍ଥ ଏକ-ଘରିଆ ଗ୍ରାମ । ଏହି ଗ୍ରାମ ତଥା କବିଙ୍କ ମୃତ୍ତ ସମ୍ବନ୍ଧରେ ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର ପ୍ରତ୍ୟକ୍ଷ ଅନୁସନ୍ଧାନ କରିଥିବା ପ୍ରାବନ୍ଧିକଙ୍କୁ କହିଛନ୍ତି । ସେହି ଢେଙ୍କାନାଳ ରାଜାଙ୍କ ଆଶ୍ରୟରେ କବି ଭକ୍ତିମୂଳକ ବିଭିନ୍ନ ପୌରାଣିକ ସିଦ୍ଧାନ୍ତର ଏହି ସମସ୍ତ ରଚନା କରି ଯାଇଛନ୍ତି; କିନ୍ତୁ ବିଜୟଚନ୍ଦ୍ର ମଜୁମଦାର, ଡ଼ା: ଆର୍ତ୍ତବଲ୍ଲଭ ମହାନ୍ତି, ବିଚ୍ଛନ୍ଦ ଚରଣ ପଟ୍ଟନାୟକ ତଥା ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ପ୍ରଭୃତି ଓଡ଼ିଆ ସାହିତ୍ୟରେ ଦୀନକୃଷ୍ଣ ଦାସ ଜଣେମାତ୍ର—ଏହି ସିଦ୍ଧାନ୍ତରେ ଉପନୀତ । ଆଜିର ଉପଲବ୍ଧ ଜଗମୋହନ ଛାନ୍ଦ ଏହି ମାନଙ୍କର ସିଦ୍ଧାନ୍ତର ପୂର୍ଣ୍ଣ ସମର୍ଥନ କରେ । କାରଣ ରସବିନୋଦ-କାର ତାଙ୍କ ରଚିତ ଗ୍ରନ୍ଥମାନଙ୍କର ଯେଉଁ ତାଲିକା ଦେଇଛନ୍ତି ତନ୍ମଧ୍ୟରେ ଜଗମୋହନ ଛାନ୍ଦ ପରିଗଣିତ । ପୁନଶ୍ଚ ଜଗମୋହନ ଛାନ୍ଦର ବର୍ଣ୍ଣନଶୈଳୀ, ଭାବଧାରା, ଅଳଙ୍କାର ସନ୍ନିବେଶ ତଥା ବିଷୟ ବିନ୍ୟାସର ବହୁଳ ସାମଞ୍ଜସ୍ୟ ରସକଲ୍ଲୋଳରେ ଅବଶ୍ୟ ସନ୍ନିହିତ । ରସକଲ୍ଲୋଳର ପ୍ରଭାତ ବର୍ଣ୍ଣନା:—

"କେଉଁ ରସିକ ଧୂପ ମଶକ ପଟଳେ ଚଳାଇଲା
କାତର ଚକୋର ବେନି ପାଶରେ କଟାକ୍ଷ ଖେଳାଇଲା—ଇତ୍ୟାଦି"

ଜଗମୋହନ ଛାନ୍ଦର:—

ଉପପତି ମାନେ ଧୂପ ମଶକ ପଟଳ
ପଳାଇ ପଶିଲେ ଯାଇ ଆପଣା ନିଳୟେ—ଇତ୍ୟାଦି ସହ

Digitized by srujan ka@gmail.com

ପୁର୍ଣ୍ଣଐକ୍ୟବୋଧ କରାଏ । ଈନ୍ଦୁଶବହୁଳ ବର୍ଣ୍ଣନାଗତ ସାମ୍ୟ; ଓଡ଼ିଆ ସାହିତ୍ୟରେ ଘନକୃଷ୍ଣ ଦାସ 'ଏକ'—ଏହି ସିଦ୍ଧାନ୍ତକୁ ସଯୁକ୍ତିକ ସମର୍ଥନ କରେ । ତଥାପି ଘନକୃଷ୍ଣ ଦୁଇଜଣ ଏହି ସିଦ୍ଧାନ୍ତବାଦୀ କହନ୍ତି ରସକଲ୍ଲୋଳକାରଙ୍କ ଜଗମୋହନ ଗ୍ରନ୍ଥ ପରି ରସବିନୋଦ-କାରଙ୍କର ମଧ୍ୟ ଅନ୍ୟ ଗୋଟିଏ ଜଗମୋହନ ଗ୍ରନ୍ଥ ଅବଶ୍ୟ ରହିଛି । ତାହା ଯଦି ଆବିଷ୍କୃତ ହୋଇ ଗବେଷଣାକାରୀଙ୍କ ଶ୍ରମ ନିଶ୍ଚୟ ସାର୍ଥକ କରିବ ।

ଯାହାହେଉ, ଏ ସମସ୍ତ ବାଦ ବିସମ୍ବାଦ ସତ୍ତ୍ୱେ ରସ-କଲ୍ଲୋଳକାର ଘନକୃଷ୍ଣ ଦାସ ହିଁ ଖିଦ୍ର ମୁକୁନ୍ଦ ଦେବ (ଖ୍ରୀ. ୧୬୫୧-୧୬୮୭) ଏବଂ ଦିବ୍ୟସିଂହଦେବ (ଖ୍ରୀ. ୧୬୮୭-୧୭୧୩)ଙ୍କ ଶାସନ କାଳରେ ଜୀବିତ ଥିଲେ । ସେ ପୁରୁଷୋତ୍ତମ କ୍ଷେତ୍ରରେ ବାସ କରି ଥିଲେ ଏବଂ ଜଗନ୍ନାଥଙ୍କର ଥିଲେ ପରମ ଭକ୍ତ । ଅନୁମିତ ହୁଏ— ଦିବ୍ୟସିଂହ ଦେବ ଘନକୃଷ୍ଣଙ୍କ କମନୀୟ କାବ୍ୟକୃତିରେ ଚମତ୍କୃତ ହୋଇ ରାଜ ପ୍ରଶସ୍ତି ଗାନପୂର୍ବକ ତାଙ୍କ ରଚନାବଳୀକୁ ନିଜ (ଦିବ୍ୟସିଂହ ଦେବଙ୍କ) ନାମରେ ଭଣିତ କରିବାକୁ ଅନୁରୋଧ କରିଥିଲେ । ଏଥିପାଇଁ ଯାବତୀୟ ରାଜପ୍ରାସାଦର ପ୍ରଲୋଭନ ଦିଆଯାଇଥିଲା, ତଥାପି ଭକ୍ତିପ୍ରାଣ ଘନକୃଷ୍ଣ ଜଗନ୍ନାଥଙ୍କ ବ୍ୟତୀତ ଅନ୍ୟ କାହାରି ନାମରେ ଭଣିତ କରିବାକୁ ସମ୍ମତ ହୋଇ ନ ଥିଲେ । ତେଣୁ ତାଙ୍କ ରଚନାରେ ମିଳେ—

ଜଗତ ସୃଷ୍ଟି ଆନ ହେଲେ,
ଗୀତ ମୁଁ ଆନକୁ ନ ବୋଲେ ।

ଫଳରେ କବିଙ୍କୁ ନିଜ ପ୍ରାଣପ୍ରିୟ ପୁରୁଷୋତ୍ତମକ୍ଷେତ୍ର ପରିତ୍ୟାଗ କରିବାକୁ ପଡ଼ିଥିଲା । ବହୁ ଅଭାବ ଅନାଟନ ଓ

Digitized by srujan ka@gmail.com

ନିଃସହାୟତାର ମର୍ମଭେଦୀ ଗାଥା କବିଙ୍କ ଜୀବନରେ ସମ୍ଭବ ହୋଇଛି । ସେ ଲେଖିଲେ—

"କେତେବେଳେ ବୋଲୁ ତ ଗର୍ଭ କରଇ,
କେତେବେଳେ ପଇଡ଼ ଖୋଳା ମର୍କଟ ହେ" ।

ପୁଣି—

କାହିଁକି ମୋତେ ସଂସାର ଲଟ, ମଧ୍ୟରେ ପ୍ରଭୁ କଲ ସଂଘଟ × ×
ଏବେ ଅନେକ ରୂପ କଲଣି ଏ ପୋଡ଼ା ପେଟ ହେ" ।

ଏ ସମସ୍ତ ସାଂସାରିକ ଜଞ୍ଜାଳ, ପେଟର ଦାଉ ଜୀବନର ଜଟିଳତାଦି ସତ୍ତ୍ୱେ ସାଧୁପ୍ରାଣ ଦୀନକୃଷ୍ଣ କଦାପି ଲକ୍ଷ୍ୟପଥରୁ ବିଚ୍ୟୁତ ହୋଇନାହାନ୍ତି, ବରଂ ଘୋଷଣା କରିଛନ୍ତି—

କବି ଯା' କରେ ମୂର୍ଖକୁ ସ୍ତୁତି ଏଥିରୁ ବଳି ନାହିଁ ବିପତ୍ତି ।
ଏଥିକି ପ୍ରତି ଗ୍ରୀବାରେ କାତି ମାରିବା ଭଲ ହେ ।—ଇତ୍ୟାଦି

ପୁଣି ଦୀନକୃଷ୍ଣ ତାଙ୍କ ରସକଲ୍ଲୋଳରେ ଜଗନ୍ନାଥଙ୍କର ଅପାର ମହିମାଗାନ ମୁଖର, ତଥାପି ବ୍ରଜେନ୍ଦ୍ରନନ୍ଦନ କୃଷ୍ଣଙ୍କ ପ୍ରତି ତାଙ୍କର ଅଗାଧ ଭକ୍ତି କବିଙ୍କୁ ଶୁଦ୍ଧଭକ୍ତିବାଦୀ କିମ୍ବା ଜ୍ଞାନମିଶ୍ର ଭକ୍ତିବାଦୀ ରୂପେ ନିର୍ଣ୍ଣୟ କରିବାରେ ବହୁ ସଂଶୟ ସୃଷ୍ଟି କରେ । ଅଦ୍ୟାବଧି ଏହା ମଧ୍ୟ ଅମୀମାଂସିତ ସମସ୍ୟାରୂପେ ତାଙ୍କ ସମ୍ବନ୍ଧରେ ରହିଛି । ବିଜୟଚନ୍ଦ୍ର ମଜୁମଦାରଙ୍କ ସିଦ୍ଧାନ୍ତରେ ରସ କଲ୍ଲୋଳକାର ଦୀନକୃଷ୍ଣ ଶୁଦ୍ଧଭକ୍ତିବାଦୀ ଏବଂ ରସବିନୋଦକାର ହେଉଛନ୍ତି ଜ୍ଞାନମିଶ୍ର । ଭକ୍ତିବାଦୀ ୮ ଆର୍ତ୍ତବଲ୍ଲଭ ମହାନ୍ତି କହନ୍ତି— ଦୀନକୃଷ୍ଣ ଅତିବଡ଼ୀ ବୈଷ୍ଣବ ଥିଲେ । ଡଃ କୃଷ୍ଣଚରଣ ମିଶ୍ର କବିଙ୍କ ଉତ୍କଳ ପ୍ରୀଣତା, ଗୋପୀଜନବଲ୍ଲଭ କୃଷ୍ଣ ଉପାସନା ଏବଂ ଦିବାକର ଦାସଙ୍କ ଜଗନ୍ନାଥ ଚରିତାମୃତର ବିବରଧାରକୁ ପ୍ରାମାଣିକ

Digitized by srujan ka@gmail.com

ମନେ କରି ଧ୍ୟାନକୃଷ୍ଣ ଜ୍ଞାନଯୋଗମିଶ୍ର ଭକ୍ତିବାଦ—ଏ ବିଷୟରେ ଦୃଢ଼ଯୁକ୍ତି ଉପସ୍ଥାପନ କରିଛନ୍ତି; ଅଥଚ ଗୌରିକୁମାର ବ୍ରହ୍ମା ଧ୍ୟାନକୃଷ୍ଣଙ୍କୁ ଉଭୟମତର ସମନ୍ୱୟବାଦୀ ରୂପେ ପ୍ରମାଣିତ କରନ୍ତି। କିନ୍ତୁ ସ୍ମରଣ ରଖିବାକୁ ହେବ ଅଚିନ୍ତ୍ୟ ଭେଦାଭେଦ ତତ୍ତ୍ୱସମ୍ବଳିତ ଭାଗବତ ପ୍ରମାଣିତ ଶୁଦ୍ଧ-ଭକ୍ତିବାଦ ସହଜିୟାଧର୍ମ ସହିତ ତୁଳିତ ହୋଇ ନ ପାରେ। ଶୁଦ୍ଧଭକ୍ତିବାଦୀଙ୍କ ଉପାସ୍ୟ କୃଷ୍ଣମନ୍ତ୍ରରେ ରାଧାବଲ୍ଲଭ' ବଦଳରେ 'ଗୋପୀଜନବଲ୍ଲଭାୟ' ହିଁ ସନ୍ନିବିଷ୍ଟ, ଚୈତନ୍ୟଙ୍କ ସିଦ୍ଧାନ୍ତ ହେଉଛି—"ରମ୍ୟା କାଚି ଦୁପାସନା ବ୍ରଜବଧୂ-ବର୍ଗେଣ ଯା କଳ୍ପିତା", ଅର୍ଥାତ୍ ଗୋପୀଜନ ବିହିତ ମାଧୁର୍ଯ୍ୟ ଉପାସନା କେବଳ ରମ୍ୟା ରୂପରେ ସ୍ୱୀକୃତ, ରାଧା ସ୍ୱୟଂ ମହାଭାବମୟୀ ଭଗବତ୍ ଅନ୍ତରଙ୍ଗା ଯୋଗମାୟାରୂପିଣୀ ଶକ୍ତି। କୃଷ୍ଣ କଳେବରଠାରୁ ତାହା ପୃଥକ୍ କଳ୍ପିତ ନୁହେ। ତେଣୁ ରାଧାକୃଷ୍ଣ ଅପ୍ରାକୃତ ପ୍ରେମମୂର୍ତ୍ତି ଅଟେ। ପୁନଶ୍ଚ କୌଣସି ଶୁଦ୍ଧଭକ୍ତି-ବାଦୀ ଗ୍ରନ୍ଥରେ ଜଗନ୍ନାଥ ତତ୍ତ୍ୱର ନ୍ୟୂନତା ପ୍ରତିପାଦିତ ହୋଇନାହିଁ। ରାୟ ରାମାନନ୍ଦଙ୍କ ଜଗନ୍ନାଥବଲ୍ଲଭ ନାଟକ ଚୈତନ୍ୟଙ୍କ—'ଜଗନ୍ନାଥ ଦେଖେ ସାକ୍ଷାତ୍ ବ୍ରଜେନ୍ଦ୍ରନନ୍ଦନ' ଉକ୍ତି ଏବଂ ପୁରୁଷୋତ୍ତମକ୍ଷେତ୍ରକୁ ତାଙ୍କ ପ୍ରେମତତ୍ତ୍ୱ ପ୍ରଚାରର ପରମ ପୁଣ୍ୟ ପୀଠ ରୂପେ ଗ୍ରହଣ କରି ଦୀର୍ଘ ୨୪।୨୫ ବର୍ଷ ସେଠାରେ ସ୍ୱଲୀଳା ପ୍ରକଟ ଇତ୍ୟାଦିରୁ ଶୁଦ୍ଧ-ଭକ୍ତିବାଦୀ ସିଦ୍ଧାନ୍ତରେ ଜଗନ୍ନାଥ ମହିମା ସ୍ୱୀକୃତ ସ୍ପଷ୍ଟ ହୁଏ। ସୂଚିତବ୍ୟଂ ଧ୍ୟାନକୃଷ୍ଣ ମଧ୍ୟ ରସକଲ୍ଲୋଳ ପ୍ରଥମ ଛାନ୍ଦ ୧୩ ପଦଠାରୁ ୧୭ ପଦ—କମଳନେତ୍ରୀ କମଳା ପ୍ରାଣନାୟକ

× × ×

କଉତୁକେ ବୋଲାଇବା ପଶୁପାଳକ—ଏହି ଉକ୍ତିଗୁଡ଼ିକୁ ଶ୍ରଦ୍ଧପ୍ରାଣରେ ଉଚ୍ଚାରଣ କରିଛନ୍ତି। କିନ୍ତୁ କବି ଧ୍ୟାନକୃଷ୍ଣଙ୍କ

Digitized by srujan ka@gmail.com

ବସ୍ତୁରଧାରରେ – ‘ବୈଭବ ପ୍ରକାଶ ସେଁଛେ ଦେବକୀ ତନୁଜ’— ଏହି ବସୁଦେବ ନନ୍ଦନ କୃଷ୍ଣ ଚନ୍ଦ୍ର ଏବଂ ସୌନ୍ଦର୍ଯ୍ୟ ଐଶ୍ୱର୍ଯ୍ୟ ମାଧୂର୍ଯ୍ୟ ବୈଦଗ୍‌ଧ୍ୟ ବିଳାସ । ବ୍ରଜେନ୍ଦ୍ର ନନ୍ଦନ ଇହାଁ ଅଧିକ ଉଲ୍ଲାସ—ତୋ: ତ:···ଇତ୍ୟାଦି ନନ୍ଦନନ୍ଦନ ଲୀଳାମୟ କୃଷ୍ଣଚନ୍ଦ୍ର – ତତ ସ୍ୱତନ୍ତ୍ର ତତ୍ତ୍ୱର ଅବଶ୍ୟ ଅନୁଶୀଳନୀୟ; ତେଣୁ କବି ରସ-କଲ୍ଲୋଳରେ ଗାଇଛନ୍ତି :–

କୃଷ୍ଣ ରୂପ କରୁଥିବ ଧିଆନ । କୃଷ୍ଣ ଚରିତ କରୁଥିବ ଗାନ ॥
କୃଷ୍ଣ କଥା ଶ୍ରବଣରେ ଶୁଣିବ । କୃଷ୍ଣ ବୋଲି ଜଗତକୁ ଜାଣିବ ॥
କୃଷ୍ଣନାମରେ ପାତକ୍ଷୟ ଯେତେ । କରି ନପାରେ ପାପୀ ପାପ ତେତେ ।

ପୁଣି ସେହି ଲୀଳାମୟଙ୍କ ଲୀଳା ଗାନ କରି କବି ଗାଇଛନ୍ତି :–

“କମଳ ସମ୍ଭବଆଦି ଦେବସ୍ତୁତି ଯାହାକୁ ଭୁଞ୍ଜି ମାଇ ।
କମଳୀ ଧବଳୀ ମଲୀ କୁଞ୍ଜଗଳ ଗାଈ ଡାକବାକୁ ସେ ଯାଇ” ॥

ପୁଣି –

“କରେ ବେଦପତି ଯେତେ ରୁଚିପ ସ୍ତୁତି ବଶ ନୁହନ୍ତି ତାହାକୁ,
କର୍ଣ୍ଣ ଡେରିଥାନ୍ତି ବରଜ ଯୁବତୀ କଉତୁକେ ଡାକବାକୁ” ।

ଇତ୍ୟାଦି ଅସଂଖ୍ୟ ବର୍ଣ୍ଣନା ତାଙ୍କ ରଚନାରେ ନିହିତ ଯାହା ହିଁ—“ଶାସ୍ତ୍ରଂ ଭାଗବତଂ ପ୍ରମାଣମମଳମ୍”—ଏହି ଭାଗବତୀ ଶୁଦ୍ଧଭକ୍ତି ସିଦ୍ଧାନ୍ତର ପ୍ରତିଫଳନ ଅଟେ ।

ଉତ୍କଳୀୟ ବୈଷ୍ଣବ ବିଶେଷତଃ ପଞ୍ଚସଖା ଯୁଗରେ ପିଣ୍ଡ-ବ୍ରହ୍ମାଣ୍ଡତତ୍ତ୍ୱର ଆଲୋଚନା ଓଡ଼ିଶାରେ ବହୁପୂର୍ବରୁ ସହଜିଆ ଧର୍ମ

Digitized by srujan ka@gmail.com

ପ୍ରଭାବରୁ ପ୍ରଚଳିତ ପରମ୍ପରା ମାତ୍ର—ଏହା ଅବିସମ୍ବାଦିତ, ସୁତରାଂ ଘାନକୃଷ୍ଣଙ୍କ ପ୍ରଚଳିତ ପ୍ରୟୋଗ—"ମନକୁ ସ୍ଥାପି ସ୍ଥିରାସନେ"—ଇତ୍ୟାଦି ଉକ୍ତିକୁ ନେଇ ତାଙ୍କୁ ଯୋଗମାର୍ଗୀ ମନେ କରିବା ବୈଷ୍ଣବାଙ୍ଗର ପଦ୍ଧତି ଅନୁଶୀଳନ ଅଭାବର ବୋଧମାତ୍ର । ଶୁଦ୍ଧ-ଭକ୍ତି ସିଦ୍ଧାନ୍ତର ପ୍ରାମାଣିକ ଗ୍ରନ୍ଥ ଭାଗବତର ଅପ୍ରସଙ୍ଗ ବର୍ଜନ ପ୍ରସଙ୍ଗରେ :—

"ଶମୋଦମୋ ଭଗଶ୍ଚେତ୍ତି ଯଦ୍ପ୍ରଙ୍ଗାଦ୍ଯାତି ସଂକ୍ଷୟମ୍"—୩ । ୩୦ । ୩୩—୩୪ ଇତ୍ୟାଦିରେ ଏହି ଯୋଗତତ୍ତ୍ୱର ଅବଶ୍ୟ ଆଚରଣୀୟ କଥା ଉଲ୍ଲେଖ ରହିଛି । ପୁନଶ୍ଚ ରସକଲ୍ଲୋଳରେ କବିଙ୍କ ଭଗବଚ୍ଚରଣାରବିନ୍ଦରେ ଆତ୍ମସମର୍ପଣର ଉଜ୍ଜ୍ୱଳ ଚିତ୍ର ଆତ୍ମ-ବିଶ୍ୱାସ-ନିଷ୍ଠା, କୋମଳତା, ସରସତା ତଥା ତନ୍ମୟତା, ପୁଣି—

"କୋଟି ବ୍ରହ୍ମାଣ୍ଡରେ ଏମନ୍ତ ଠାକୁର ଥିବାର ଶୁଣିଛ କାହିଁ ? × ×
"କରି ଏହି ନାମ କୀର୍ତ୍ତନ, କରୁଥାଉ ଘାନକୃଷ୍ଣ ସୁଖେ ନର୍ତ୍ତନ" ।

ସେହିପରି—

"କଦମ୍ବବୃକ୍ଷରୁ ଓହ୍ଲାଇ ବଜାୟେ, କୃଷ୍ଣଦାସ ମନ ପଛେ ଗୋଡ଼ାଇଛି, ସେହିରୂପକୁ କିଏ ଲଭେ"—୧୫ । ୪୦ ଇତ୍ୟାଦି ଯେଉଁ ଚିତ୍ର କବି ପ୍ରାଣର ଶୁଦ୍ଧ ଭକ୍ତିଭାବ ଉର୍ଜ୍ଜସ୍ୱଳ; ଅତଏବ ଘାନକୃଷ୍ଣ ଶୁଦ୍ଧ ଭକ୍ତିବାଦୀ କବି ଏହା ଅବଶ୍ୟ ସ୍ୱୀକରଣୀୟ ।

———

Digitized by srujan ka@gmail.com

## ସଂକଳକଙ୍କ ବିଭିନ୍ନ ଲେଖାବଳୀରୁ କତିପୟ ଏଠାରେ ଉଲ୍ଲେଖ କରାଗଲା

**Age**—An old man is twice a child—ବାଳବୃଦ୍ଧ ସବୁ ସମାନ

**Anger**—Anger is a full hot horse—କ୍ରୋଧ ହେଉଛି ତେଜସ୍ୱାନ ଘୋଡ଼ା

**Beauty**—Beauty lives with kindness.

(2) Beauty provoketh thieves sooner than gold.

**Calumny**—Be thou as chaste as ice, and pure as snow, thou shalt not escape calumny—ବରଫ ଭଳି ଯେତେ ସ୍ୱଚ୍ଛ, ନିର୍ମଳ ଓ ନିଷ୍କଳଙ୍କ ହୁଅ ପଛକେ ଅପବାଦରୁ ବର୍ତ୍ତି ପାରିବ ନାହିଁ ।

**Confidence**—Trust not him that hath once broken faith—ଯେ ଥରେ ମାତ୍ର ବିଶ୍ୱାସ ଭଙ୍ଗ କରିଛି, ତା'ଠାରେ ଆଉ କେବେହେଁ ବିଶ୍ୱାସ ସ୍ଥାପନ କରନାହିଁ

**Cowards**—Cowards die many times before their death, the valiant never tastes of death but once.—ଭୀରୁମାନେ ମୃତ୍ୟୁ ପୂର୍ବରୁ ବହୁବାର ମରନ୍ତି, କିନ୍ତୁ ସତ୍ସାହସିକ ବ୍ୟକ୍ତି ଥରେ ମାତ୍ର ମରେ

**Crown**—Uneasy lies the head that wears a crown—ମୁକୁଟମଣ୍ଡିତ ରାଜଶିର କୁହକ ଶାନ୍ତିର ଆସ୍ପଦ ।

Digitized by srujan ka@gmail.com

**Delay** – Defer no time, delays have dangerous ends—ସମୟ ଗଡ଼ାଅ ନାହିଁ, ବିଳମ୍ବର ବିପଦଜନକ ପରିଣତି ହୁଏ

(b) In delay we waste our lights in vain; like lamps by day – ଦିନବେଳେ ବତୀ ଜାଳିଲେ ଯେପରି ତା'ର ଆଲୋକ ନଷ୍ଟ, ସେହିପରି ବିଳମ୍ବ କଲେ ଆମ୍ଭମାନଙ୍କ ସମସ୍ତ କର୍ମ ନଷ୍ଟ ହୋଇଥାଏ ।

**Discretion** – Let your own discretion be your tutor ; Suit the aotion to the word, and the word to the action—ନିଜର ବୁଦ୍ଧି ତୁମ୍ଭର ଶିକ୍ଷକ ହେଉ; ବାକ୍ୟ ଉପଯୋଗୀ କର୍ମ କର, କର୍ମଉପଯୋଗୀ ବାକ୍ୟ କୁହ ।

The better part of valour is discretion – ସାହସର ପ୍ରଧାନ ଅଙ୍ଗ ହେଉଛି ନିଜର ବୁଦ୍ଧି

**Good deed** – How far that little candle throws its beams ! So s'iines a good deed in a naughty world – କ୍ଷୁଦ୍ର ବତୀଟି ଯେପରି ତା'ର ଜ୍ୟୋତିକୁ ବହୁ ଦୂର ବିକ୍ଷେପ କରେ ସେହିପରି ଏ ଦୁର୍ବୃତ୍ତ ସଂସାରରେ ସତ୍କାର୍ଯ୍ୟର ମହତ୍ତ୍ୱ ବହୁଦୂର ଖେଳାଇ ହୋଇଯାଏ ।

**Devil**—The devil can cite Scripture for his purpose – ଦୁର୍ବୃତ୍ତ ବି ତା'ର ଉଦ୍ଦେଶ୍ୟ ସାଧନପାଇଁ ଶାସ୍ତ୍ରକୁ ମଧ୍ୟ ଉପଲକ୍ଷ ଦିଏ ।

**Difficulty** – All difficulties are
but easy when they are known.

**Excess** – To gild refined gold, to paint the lily,
To throw a perfume on the violet,
To smooth the ice or add another hue
Unto the rainbow, or with taper-light
To seek the beauteous eye of heaven
to garnish

Digitized by srujan ka@gmail.com

Is wasteful and ridiculous excess.—
ଖାଣ୍ଟି ସୁନାକୁ ସୁନେଲି ରଙ୍ଗ କରିବା
କଇଁଫୁଲକୁ ଚିତ୍ର କରିବା
ବରଫକୁ କୋମଳ କରିବା
ଇନ୍ଦ୍ରଧନୁରେ ଅନ୍ୟ ରଙ୍ଗ ଯୋଡ଼ିବା
ଏ ସବୁ ବ୍ୟର୍ଥ ପ୍ରୟାସ ଓ ଉପହାସଜନକ

**Face**—God has given you one face, and you make yourselves another.—ଈଶ୍ବର ତୁମ୍ଭଙ୍କୁ ଗୋଟିଏ ମୁଖ ଦେଇଛନ୍ତି; କିନ୍ତୁ ତୁମ୍ଭେ ନିଜେ ଆଉ ଗୋଟିଏ ମୁଖ ଯୋଡ଼ୁଛ ।

**Familiarity**—Be thou familiar,
but by no means valgar.—ସମସ୍ତଙ୍କ ସହିତ ବନ୍ଧୁତା କରି ମିଳାମିଶା କର, କିନ୍ତୁ କାହା ସହିତ ଦେହଘସା ହୋଇ ଲେଷଡ଼ା ହୁଅନାହିଁ ।

**Friendship**—Most friendship is feigning, most loving mere folly—ଅଧିକାଂଶ ସ୍ଥଳରେ ବନ୍ଧୁତା ଛଳନା ମାତ୍ର—ଭଲ ପାଇବା ନିର୍ବୋଧତା ମାତ୍ର ।

**Flattery**—He that loves to be flattered is worthy of the flatterer.—ଯେ ନିଜେ ତୋଷାମୋଦକାରୀ ସେ ତୋଷାମଦକୁ ଭଲ ପାଏ ।

**Fate**—Heaven from all creatures hides the book of fate—ଭଗବାନ ସବୁ ଜୀବଙ୍କ ଭାଗ୍ୟ ଡୋର ଲୁଚାଇ ରଖନ୍ତି, ଏହାକୁ ଅଦୃଷ୍ଟ ବୋଲି କହନ୍ତି ।

**Gratitude**—O Lord, who's lends me life, lends me a heart replete with thankfullness—
ହେ ପ୍ରଭୁ ଯେ ମତେ ପ୍ରାଣ ଦେଇଛ, ସେ ମତେ କୃତଜ୍ଞତାପୂର୍ଣ୍ଣ ହୃଦୟ ମଧ୍ୟ ଦେଇଛ ।

Digitized by srujan ka@gmail.com

**Greatmen**—Some are born great, some achieve greatness and some have greatness thurst upon e'm—କେତେକ ଜନ୍ମରୁ ବଡ଼, କେତେକ କର୍ମ କରି ବଡ଼ ହୁଅନ୍ତି । କେତେକଙ୍କ ଉପରେ ବଡ଼ପଣ ଲଦି ଦିଆଯାଏ ।

**Gifts**—Rich gifts wax poor when givers prove unkind—ଦାତା ଯଦି ଦାନ କରି ନିଷ୍ଠୁର ବ୍ୟବହାର କରେ, ତେବେ ତାହାର ଦାନ ନିଷ୍ଫଳ ହୋଇଯାଏ ।

**Glory**—Glory is like a circle in the water

**Guilt**—The mind of guilt is full of scorpions—ପାପୀ ମନ ବିଷପୂର୍ଣ୍ଣ ।

**Hate**—In time we hate that we often fear.—ଯାହାକୁ ଅଧିକାଂଶ ସମୟରେ ଆମ୍ଭେମାନେ ଘୃଣା କରୁ ତାକୁ ଅଧିକାଂଶ ସମୟରେ ଭୟ ମଧ୍ୟ କରୁ ।

**Heaven**—Heaven, the treasury of everlasting joy.—ସ୍ୱର୍ଗ ହେଉଛି ଚିର ଆନନ୍ଦର କୋଠ ଭଣ୍ଡାର ।

**Honesty**—No legacy is so rich as honesty—ସାଧୁତାଠାରୁ ବଳି ଧନ ଆଉ ନାହିଁ ।

**Heart**—A good heart is worth gold—ସହୃଦୟତା ସୁବର୍ଣ୍ଣ ସଙ୍ଗେ ସମାନ ।

Do not hold out hopes,
There is nothing more cruel—କାହାରକୁ ଆଶା ଦିଅ ନାହିଁ, ଆଶା ଦେଇ ନରଖିବାଠାରୁ ବଳି ନିଷ୍ଠୁରତା ଆଉ ନାହିଁ ।

**Hope**—The meserables have no other medicine but only hope—ଦୁଃସ୍ଥ ବ୍ୟକ୍ତିର ଆଶା ବ୍ୟତୀତ ଅନ୍ୟ କୌଣସି ଔଷଧ ନାହିଁ ।

Digitized by srujan ka@gmail.com

**Honour**—Mine honour let me try,
In that I live and for that will I die.
If I lose mine honour, I lose myself—ମୁଁ ଯଦି ଆତ୍ମସମ୍ମାନ ହରାଏ, ତେବେ ଜାଣ ଯେ ମୁଁ ନିଜକୁ ହରେଇଲି ।
(2) Mine honour is my life—both grow in one.
Take honour from me & my life is done—
ମୋର ସମ୍ମାନ ମୋର ଜୀବନ—ମୋର ସମ୍ମାନ ଚୁଲିଗଲେ ମୋର ଜୀବନ ଗୁଲ୍ଲ ।

**Ingratitude**—How sharper than a serpant's tooth it is to have a thankless child.—
କୃତଘ୍ନ ପୁତ୍ର-କନ୍ୟାମାନେ ସର୍ପଠାରୁ ବଳି ବିଷଧର ଅଟନ୍ତି ।
Ingratitude ! thou marble-hearted fiend,
More hideous, when thow showest
thee in a child—
Than a sea-monster !
Thieves for their robbery have authority,
when Judges steal themselves—ବିଚାରପତି ଯେବେ ନିଜେ ଚୋର ହୁଏ ଚୋରମାନେ ତାକୁ ନଜର ଦିଅନ୍ତି ।

**Lending**—
Neither a borrower nor a lender be
For loan loses both itself and friend—ଧାର ଆଣ ନାହିଁ କି ଧାର ଦିଅ ନାହିଁ, କାରଣ ଧାର ନିଜକୁ ତ ଆଉ ଫେରେ ନାହିଁ ; ବରଂ ବନ୍ଧୁତା ଲୋପ ପାଏ ।

**Love**—Love is blind, and loves cannot see the prethy follies they themselves commit—
ଭଲ ପାଇବା ଗୁଣଟା ଅନ୍ଧ, କାରଣ ଯେଉଁମାନେ ପରସ୍ପରକୁ ଭଲପାନ୍ତି, ସେମାନେ ନିଜ ନିଜର ତ୍ରୁଟି ଭୁଲ ମଧ୍ୟ ଦେଖିପାରନ୍ତି ନାହିଁ ।

Digitized by srujan ka@gmail.com

**Master**—Men, at some time are masters of their fate—ମନୁଷ୍ୟ ସମସ୍ତ ସମୟରେ ବି ତା'ର ଭାଗ୍ୟ ନିୟନ୍ତ୍ରକ ହୋଇଥାଏ ।

The quality of mercy is not strain'd;
It droppeth as the gentle rain from heaven
Upon the place beneath; it is twice blest;
It blesseth him that gives and him that takes;
This mightiest in the mightiest : it becomes
The throned monarch better than his crown ;
And earthly power doth then show likest God's
When mercy seasons justice.

—**Shakespeare**, Merchant of Venic

ଅର୍ଥ—

ଦୟା ଅନୁକମ୍ପା) କେ ସ୍ୱର୍ଗୀୟ ଗୁଣ । ଏହା ବର୍ଷା ପାଣିପରି ଆକାଶରୁ ଝରେ । ଯେ ଏହା (ଦୟା) ଦେଖାଏ ଓ ଯେ ତାହାକୁ ଦେଖାଏ ଉଭୟେ ଆଶୀର୍ବାଦ ପାନ୍ତି । ରଜାର ମୁକୁଟ ଅପେକ୍ଷା ଏହା ଉତ୍କୃଷ୍ଟ ।

**Money**—Who steals my money steals trash—ଯେ ମୋ ଟଙ୍କା ଥଳି ଚୋରି କରି ନାଏ ସେ କେବଳ ମୋ ଅଳିଆ ଗଦା ଚୋରିକରେ ।

**Misery** - Misery acquaints a man with strange bedfellows —ବିପଦ ବେଳେ ବାଘ ଛେଳି ଏକାଠି ପାଣିଖାନ୍ତି ।

**Misfortune** - When sorrows come they come not single spies, but in battalions—ଯେତେବେଳେ ଦୁଃଖ ଆସେ, ଏହା ଗୋଟି ଗୋଟିକରି ଗୁପ୍ତଚରଭଳି ଆସେ ନାହିଁ, ମାତ୍ର ଏହା ଦଳ ଦଳ ହୋଇ ସୈନ୍ୟଦଳଭଳି ମାଡ଼ିଆସେ ।

**Necessity**—There is no virtue like necessity—ଅଭାବ କଷ୍ଟ ମନୁଷ୍ୟକୁ ସତ୍‌ମାର୍ଗରେ ନିଏ ।

Digitized by srujan ka@gmail.com

**Name**—What is in a name? The which we call a rose by any other name would smell as sweet.—ନାଁରୁ କ'ଣ ମିଳଇ ? ଗୋଲାପ ଫୁଲକୁ ଯେ କୌଣସି ନାଁ ଦଅ ତାହାର ମାଧୁରୀ ସବୁକାଳ । ଗୁଲାବୀ ଯୁକ୍ତ ଗନ୍ଧରୁ ବାସେ ।

**Obedience**—Let them obey that know not how to rule.—ଯେଉଁମାନେ ଶାସନ କରିଜାଣନ୍ତି ନାହିଁ । ସେମାନେ ଶାସନ ପ୍ରଣାଳୀ ବା ଆଇନ ମାନି ଚଳନ୍ତୁ—

**Opinion**—

Opinion's but a fool, that makes us scan
The outward habit by the inward man—
ନିର୍ବୋଧର ମନ୍ତବ୍ୟରେ ମୂଲ୍ୟ ନାହିଁ, କାରଣ ସେ ମନୁଷ୍ୟର ଅନ୍ତର ଦେଖି ମନ୍ତବ୍ୟ ଦିଏ ନାହିଁ ।

**Punctuality**—Better be three hours too soon than one minute too late—ତିନ ଘଣ୍ଟା ଆଗରୁ ପହଞ୍ଚ ଭଲ, ମୁହୂର୍ତ୍ତେ ବିଳମ୍ବ କରିବ ନାହିଁ ।

**Poet**—The lunatic, the lover, and the poet
Are of imagination all compact.—
ପାଗଳ, ପ୍ରେମିକ, କବି ଏମାନଙ୍କ ମୁଣ୍ଡରେ କଳ୍ପନା ଜମାଟ ବାନ୍ଧିଛି ।

**Providence**—We must follow, not force providence.—ବିଧାତାର ବିଧାନକୁ ମାନି ଚଳିବ, ତାକୁ ଅତିକ୍ରମ କରିବ ନାହିଁ ।

**Quarrel**—In a false quarrel there is no true valour.—ଅହେତୁକ କଳହରେ ପ୍ରକୃତ ସାହସ ଦେଖାଯାଏ ନାହିଁ ।

**Rage**—In rage deaf as the sea; hasty as fire.—କ୍ରୋଧବେଳେ ମନୁଷ୍ୟ ସମୁଦ୍ର ପରି କାଲ ଓ ଅଗ୍ନି ପରି ଦ୍ରୁତ ଓ ଉନ୍ମତ୍ତ ହୋଇଯାଏ ।

Digitized by srujan ka@gmail.com

**Reputation**—

The purest treasure mortal times afford,
Is spotless reputation

**Reputation**—

Seeking the bubble reputation
Even in the cannon's mouth.
—ତୋପ ମୁହଁକୁ ଯଇ ପାଣି ଫୋଟକା ପରି ଖ୍ୟାତି ଆଶା କରିବା ।

**Revenge**—Revenge has ears more deaf than adders to the voice of any true decision.
ପ୍ରତିହିଂସା ପ୍ରବୃତ୍ତ ଲୋକ ବିବେକ ବାଣୀ ଶୁଣେନାହିଁ ।

**Self-love**—Love thyself last—ସମସ୍ତଙ୍କ ସ୍ୱାର୍ଥ ଆଗେ ଦେଖି ପରେ ନିଜ ସ୍ୱାର୍ଥ ଦେଖିବ ।

**Slander**—Done to death by slanderous tongues
—ବହୁଜନ ନିନ୍ଦିତ ବ୍ୟକ୍ତି ମୃତ ଶବ ତୁଲ୍ୟ

Slander lives upon succession
Forever housed where it
Once gets possession.

**Self-will**—Lawless are they that make their wills their law.—ଯେଉଁମାନେ ନିଜ ଇଚ୍ଛାକୁ ଆଇନ ବୋଲି ଧରି ନିଅନ୍ତି (କାମ କରନ୍ତି) ସେମାନେ ହେଉଛନ୍ତି ଆଇନ ଅମାନ୍ୟ (ଲଙ୍ଘନ)କାରୀ ।

**Society**—Society Is no comfort to one not sociable.—ଯିଏ ସମାଜରେ ସମସ୍ତଙ୍କ ସଙ୍ଗରେ ମିଳିମିଶି ଚଳିପାରେ ନାହିଁ—ତାକୁ ସମାଜ ସୁଖ ଦିଏ ନାହିଁ ।

O how wretched Is that poor man that hands on princes' favours !—ଯେ ରାଜ ଅନୁଗ୍ରହ ଖୋଜି ବୁଲେ ସେ କେଡ଼େ ହୀନ

Digitized by srujan ka@gmail.com

